# ଶିକ୍ଷାବିତ୍‌ର ଆତ୍ମଲିପି

(ଆତ୍ମଜୀବନୀ)

**ପ୍ରଫେସର ଡକ୍ଟର ଗଙ୍ଗାଧର ବଳ**
'ଗାୟତ୍ରୀ କୃପା', ନୀଳାଦ୍ରି ବିହାର, ନୂଆ ବଜାର, କଟକ - ୪

ପ୍ରକାଶକ : ବିଜୟିନୀ ପବ୍ଲିକେଶନ
ଶଙ୍କରପୁର, ଅରୁଣୋଦୟ ମାର୍କେଟ, କଟକ - ୭୫୩ ୦୧୨

ପ୍ରଥମ ପ୍ରକାଶ : ଫେବୃୟାରୀ, ୨୦୧୦

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ ୧୫୦

---

# Sikshyabitra Atmalipi

(An Autobiography)

By
**Prof. Dr. Gangadhar Bal**
'Gayatri Krupa', Niladri Vihar, Naya Bazar, Cuttack - 4

Publisher : **Bijayinee Publications**
Shankarpur, Arunoday Market, Cuttack - 753 012

First Edition : February, 2010

Cover Design : Bijay Pradhan

Printed at : Sangeeta Printers, Cuttack

Price : Rs. 150

**ISBN : 978-81-89881-51-1**

# ମୁଖଶାଳା

ପୃଥିବୀରେ ବହୁ ଜୀବନୀ ଓ ଆତ୍ମଜୀବନୀ ଲେଖାଯାଇଛି, ବର୍ତ୍ତମାନ ମଧ ଲେଖାଚାଲିଛି । ସେଗୁଡ଼ିକ ମଧ୍ୟରେ ଜାତୀୟ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ମହାତ୍ମା ଗାନ୍ଧୀ, ଲିଓ ଟଲ୍‌ଷ୍ଟୟ, ବାଳଗଙ୍ଗାଧର ତିଳକ ଏବଂ ଓଡ଼ିଶାରେ ବ୍ୟାସକବି ଫକୀର ମୋହନ ସେନାପତି, ରମାଦେବୀ ଚୌଧୁରୀ, ସଚି ରାଉତରାୟ, ମାୟାଧର ମାନସିଂହ, ସୁରେନ୍ଦ୍ର ମହାନ୍ତି, କାଳିନ୍ଦୀଚରଣ ପାଣିଗ୍ରାହୀ, ମନମୋହନ ଚୌଧୁରୀ, ଫତୁରାନନ୍ଦ (ରାମଚନ୍ଦ୍ର ମିଶ୍ର), ହୃଦାନନ୍ଦ ରାୟ ଓ ପଠାଣି ପଟ୍ଟନାୟକ ପ୍ରଭୃତିଙ୍କ ଆତ୍ମଜୀବନୀ ଆମ୍ଭମାନଙ୍କ ଦୃଷ୍ଟି ଆକର୍ଷଣ କରେ ।

ଆତ୍ମଜୀବନୀ ରଚନା ମୂଳରେ କିଛି ଅଭିମାନ ନାହିଁ । ସମାଜ ତଥା ରାଷ୍ଟ୍ରରେ ମୋ ଅପେକ୍ଷା ବହୁ ଯୋଗ୍ୟ ବ୍ୟକ୍ତି ଅଛନ୍ତି, ତେବେ ଆତ୍ମଜୀବନୀ ଲେଖିବା ମୂଳରେ ରହିଛି ଏକ ସ୍ୱତଃସ୍ଫୂର୍ତ୍ତ ନୈସର୍ଗିକ ପ୍ରେରଣା । ପକ୍ଷୀଟିଏ ତରୁଶାଖାରେ ବସି ବେଳେବେଳେ କାକଳି ପ୍ରକାଶ କରି ଶ୍ରୋତା ମନରେ ଆନନ୍ଦ ଭରିଦିଏ । ବିହଙ୍ଗର କୂଜନ ପରି ଯେ କୌଣସି ବ୍ୟକ୍ତିର ଆତ୍ମଲିପି ଲିଖନ । କାକଳି ଶ୍ରୋତାକୁ ଆନନ୍ଦ ଦିଏ, ଆତ୍ମଲିପିରୂପକ କାକଳି ପାଠକ ଓ ଶ୍ରୋତା ମନରେ ଆନନ୍ଦ ଓ ଉତ୍ସାହ ସଂଚାର କରିବାର ଆଶା କରାଯାଏ ।

ଆତ୍ମଜୀବନୀରେ ବର୍ଣ୍ଣିତ ଘଟଣା କେତେ ଦୂର ସତ୍ୟ, କେହି କେହି ଜିଜ୍ଞାସୁ ପାଠକ ପ୍ରଶ୍ନ କରିଥାନ୍ତି । ବ୍ୟକ୍ତିର ଜୀବନରେ ପ୍ରତ୍ୟେକ ଘଟଣା ଯେ ଉପାଦେୟ ଓ ଉଲ୍ଲେଖଯୋଗ୍ୟ, ତା' ନୁହେଁ । ଜୀବନ ପ୍ରବାହରେ ସତ୍ୟ, ସୁନ୍ଦର ଓ ସାବଲୀଳତା ରହିଥିଲେ ସେ ପ୍ରବାହ ପାଠକ ତଥା ଶ୍ରୋତା ଚିତ୍ତରେ ନିଶ୍ଚୟ ଆନନ୍ଦ ଭରିଦେବ; କିନ୍ତୁ ମିଥ୍ୟାଚାର, କପଟତା ରହିଥିଲେ ତାହା ପାଠକମାନଙ୍କର ସନ୍ଧାନୀ ଦୃଷ୍ଟି ଏଡ଼ିଯାଏ ନାହିଁ ।

ଏଣୁ ବ୍ୟକ୍ତିର ଜୀବନରେ ଯାହା ସତ୍ୟ, ସୁନ୍ଦର ଓ ଶୁଭଙ୍କର ଏବଂ ପାଠକ ପକ୍ଷରେ ଆନନ୍ଦ ଓ ପ୍ରେରଣାଦାୟକ ତାହା ଆତ୍ମଲିପିରେ ଉଲ୍ଲେଖ କରିବାକୁ ପ୍ରୟାସ କରିଛି ।

ଉଦ୍ଦିଷ୍ଟ ପୁସ୍ତକର ତିନି ଚତୁର୍ଥାଂଶ ରବିବାସରୀୟ ପ୍ରଜାତନ୍ତ୍ରରେ ଧାରାବାହିକ ଭାବରେ 'ଅବାଞ୍ଛିତର ଆତ୍ମଲିପି' ଶିରୋନାମରେ ପ୍ରକାଶ ପାଇଥିଲା । କେତେକ ପାଠକ ଆତ୍ମଲିପିର ପ୍ରଶଂସା କରିବା ସହ କେତେକ ନାମ ସଂପର୍କରେ ପ୍ରଶ୍ନ କରିଛନ୍ତି । ଏ ପ୍ରକାର ନାମ ପ୍ରଥମତଃ କାହିଁକି ଦିଆଯାଇଥିଲା, ତାହା ଜୀବନର ପୂର୍ବପର ଘଟଣା ଅନୁଧାନ କଲେ

# ଶିକ୍ଷାବିତ୍ର ଆତ୍ମଲିପି

(ଆତ୍ମଜୀବନୀ)

**ପ୍ରଫେସର ଡକ୍ଟର ଗଙ୍ଗାଧର ବଳ**
'ଗାୟତ୍ରୀ କୃପା', ନୀଳାଦ୍ରି ବିହାର, ନୂଆ ବଜାର, କଟକ - ୪

ପ୍ରକାଶକ : **ବିଜୟିନୀ ପବ୍ଲିକେଶନ**
ଶଙ୍କରପୁର, ଅରୁଣୋଦୟ ମାର୍କେଟ, କଟକ - ୭୫୩ ୦୧୨

ପ୍ରଥମ ପ୍ରକାଶ : ଫେବ୍ରୁୟାରୀ, ୨୦୧୦

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ ୧୫୦

---

# Sikshyabitra Atmalipi

(An Autobiography)

By
**Prof. Dr. Gangadhar Bal**
'Gayatri Krupa', Niladri Vihar, Naya Bazar, Cuttack - 4

Publisher : **Bijayinee Publications**
Shankarpur, Arunoday Market, Cuttack - 753 012

First Edition : February, 2010

Cover Design : Bijay Pradhan

Printed at : Sangeeta Printers, Cuttack

Price : Rs. 150

**ISBN : 978-81-89881-51-1**

# ମୁଖଶାଳା

ପୃଥିବୀରେ ବହୁ ଜୀବନୀ ଓ ଆତ୍ମଜୀବନୀ ଲେଖାଯାଇଛି, ବର୍ତ୍ତମାନ ମଧ୍ୟ ଲେଖାଚାଲିଛି । ସେଗୁଡ଼ିକ ମଧ୍ୟରେ ଜାତୀୟ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ମହାତ୍ମା ଗାନ୍ଧୀ, ଲିଓ ଟଲ୍‌ଷ୍ଟୟ, ବାଳଗଙ୍ଗାଧର ତିଳକ ଏବଂ ଓଡ଼ିଶାରେ ବ୍ୟାସକବି ଫକୀର ମୋହନ ସେନାପତି, ରମାଦେବୀ ଚୌଧୁରୀ, ସଚ୍ଚି ରାଉତରାୟ, ମାୟାଧର ମାନସିଂହ, ସୁରେନ୍ଦ୍ର ମହାନ୍ତି, କାଳିନ୍ଦୀଚରଣ ପାଣିଗ୍ରାହୀ, ମନମୋହନ ଚୌଧୁରୀ, ଫତୁରାନନ୍ଦ (ରାମଚନ୍ଦ୍ର ମିଶ୍ର), ହୃଦାନନ୍ଦ ରାୟ ଓ ପଠାଣି ପଟ୍ଟନାୟକ ପ୍ରଭୃତିଙ୍କ ଆତ୍ମଜୀବନୀ ଆମ୍ଭମାନଙ୍କ ଦୃଷ୍ଟି ଆକର୍ଷଣ କରେ ।

ଆତ୍ମଜୀବନୀ ରଚନା ମୂଳରେ କିଛି ଅଭିମାନ ନାହିଁ । ସମାଜ ତଥା ରାଷ୍ଟ୍ରରେ ମୋ ଅପେକ୍ଷା ବହୁ ଯୋଗ୍ୟ ବ୍ୟକ୍ତି ଅଛନ୍ତି, ତେବେ ଆତ୍ମଜୀବନୀ ଲେଖିବା ମୂଳରେ ରହିଛି ଏକ ସ୍ୱତଃସ୍ଫୂର୍ତ୍ତ ନୈସର୍ଗିକ ପ୍ରେରଣା । ପକ୍ଷୀଟିଏ ତରୁଶାଖାରେ ବସି ବେଳେବେଳେ କାକଳି ପ୍ରକାଶ କରି ଶ୍ରୋତା ମନରେ ଆନନ୍ଦ ଭରିଦିଏ । ବିହଙ୍ଗର କୂଜନ ପରି ଯେ କୌଣସି ବ୍ୟକ୍ତିର ଆତ୍ମଲିପି ଲିଖନ । କାକଳି ଶ୍ରୋତାକୁ ଆନନ୍ଦ ଦିଏ, ଆତ୍ମଲିପିରୂପକ କାକଳି ପାଠକ ଓ ଶ୍ରୋତା ମନରେ ଆନନ୍ଦ ଓ ଉତ୍ସାହ ସଂଚାର କରିବାର ଆଶା କରାଯାଏ ।

ଆତ୍ମଜୀବନୀରେ ବର୍ଣ୍ଣିତ ଘଟଣା କେତେ ଦୂର ସତ୍ୟ, କେହି କେହି ଜିଜ୍ଞାସୁ ପାଠକ ପ୍ରଶ୍ନ କରିଥାନ୍ତି । ବ୍ୟକ୍ତିର ଜୀବନରେ ପ୍ରତ୍ୟେକ ଘଟଣା ଯେ ଉପାଦେୟ ଓ ଉଲ୍ଲେଖଯୋଗ୍ୟ, ତା' ନୁହେଁ । ଜୀବନ ପ୍ରବାହରେ ସତ୍ୟ, ସୁନ୍ଦର ଓ ସାବଲୀଳତା ରହିଥିଲେ ସେ ପ୍ରବାହ ପାଠକ ତଥା ଶ୍ରୋତା ଚିତ୍ତରେ ନିଶ୍ଚୟ ଆନନ୍ଦ ଭରିଦେବ; କିନ୍ତୁ ମିଥ୍ୟାଚାର, କପଟତା ରହିଥିଲେ ତାହା ପାଠକମାନଙ୍କର ସନ୍ଧାନୀ ଦୃଷ୍ଟି ଏଡ଼ିଯାଏ ନାହିଁ ।

ଏଣୁ ବ୍ୟକ୍ତିର ଜୀବନରେ ଯାହା ସତ୍ୟ, ସୁନ୍ଦର ଓ ଶୁଭଙ୍କର ଏବଂ ପାଠକ ପକ୍ଷରେ ଆନନ୍ଦ ଓ ପ୍ରେରଣାଦାୟକ ତାହା ଆତ୍ମଲିପିରେ ଉଲ୍ଲେଖ କରିବାକୁ ପ୍ରୟାସ କରିଛି ।

ଉଦ୍ଦିଷ୍ଟ ପୁସ୍ତକର ତିନି ଚତୁର୍ଥାଂଶ ରବିବାସରୀୟ ପ୍ରଜାତନ୍ତ୍ରରେ ଧାରାବାହିକ ଭାବରେ 'ଅବାଞ୍ଛିତର ଆତ୍ମଲିପି' ଶିରୋନାମରେ ପ୍ରକାଶ ପାଇଥିଲା । କେତେକ ପାଠକ ଆତ୍ମଲିପିର ପ୍ରଶଂସା କରିବା ସହ କେତେକ ନାମ ସଂପର୍କରେ ପ୍ରଶ୍ନ କରିଛନ୍ତି । ଏ ପ୍ରକାର ନାମ ପ୍ରଥମତଃ କାହିଁକି ଦିଆଯାଇଥିଲା, ତାହା ଜୀବନର ପୂର୍ବାପର ଘଟଣା ଅନୁଧ୍ୟାନ କଲେ

ସହୃଦୟ ପାଠକ ଉପଲବ୍ଧି କରିପାରିବେ । ତେବେ 'ଅବାଞ୍ଛିତର ଆତ୍ମଲିପି' ନାମ ବାଦ୍ ଦେଇ 'ଶିକ୍ଷାବିତ୍‌ର ଆତ୍ମଲିପି' ନାମ ରଖି ପୁସ୍ତକଟି ପ୍ରକାଶ କଲି । ସହୃଦୟ ପାଠକ ମୋ ପରି ଜଣେ ସାଧାରଣ ଶିକ୍ଷାବିତ୍‌ର ଜୀବନଯାତ୍ରାରୁ କିଞ୍ଚିତ୍ ପ୍ରେରଣା ପାଇଲେ ଆନନ୍ଦିତ ହେବି । ପାଠକମାନଙ୍କର କଲ୍ୟାଣ କାମନା କରୁଛି ଏବଂ 'ବିଜୟିନୀ ପବ୍ଲିକେଶନ୍ସ'ର ପରିଚାଳକ ଶ୍ରୀମାନ୍ ଦିଲୀପ କୁମାର ବେଉରା ପୁସ୍ତକଟିର ପ୍ରକାଶ କରିଥିବାରୁ ତାଙ୍କୁ ଆଶୀର୍ବାଦ କରିବା ସହ ସାଧୁବାଦ ଅର୍ପଣ କରୁଛି ।

କଟକ
ଜନ୍ମାଷ୍ଟମୀ, ୨୦୦୯

ଡକ୍ଟର ଗଙ୍ଗାଧର ବଳ

# ସୂଚୀପତ୍ର

## ପ୍ରଥମ ଅଧ୍ୟାୟ


ବୁଢ଼ାମାଷ୍ଟେ ଓ ମୋର ସିଦ୍ଧିରସ୍ତୁ - ॥ ୦୯ ॥
ଗୁଣ୍ଡୁଚିମୂଷା ଓ ସେତୁବନ୍ଧ - ॥ ୧୨ ॥
ମୋ ଅଜା (ବାବା) - ॥ ୧୯ ॥
ଆମ ଗାଁ - ॥ ୨୪ ॥
ଗାଁର ଯାନିଯାତ୍ରା ଓ ପର୍ବପର୍ବାଣି - ॥ ୨୯ ॥
ଗାଁ ଇସ୍କୁଲ୍ - ॥ ୪୫ ॥


## ଦ୍ୱିତୀୟ ଅଧ୍ୟାୟ


ମୋର ମାଇନର୍ ପଢ଼ା - ॥ ୪୯ ॥
ମୋର ମ୍ୟାଟ୍ରିକ୍ ପଢ଼ା - ॥ ୫୮ ॥


## ତୃତୀୟ ଅଧ୍ୟାୟ


ରେଭେନ୍ସା କଲେଜ୍‌ରେ ଅଧ୍ୟୟନ - ॥ ୭୨ ॥
ଗାଁରେ ବିକାଶମୂଳକ କାର୍ଯ୍ୟକ୍ରମ - ॥ ୮୬ ॥
ବି.ଏ. ଶ୍ରେଣୀରେ - ॥ ୮୮ ॥


## ଚତୁର୍ଥ ଅଧ୍ୟାୟ


ବୃତ୍ତି ଓ ବ୍ରତ (ଅଧ୍ୟାପକ ଜୀବନ) - ॥ ୯୩ ॥
ଭଦ୍ରକ କଲେଜ୍‌ରେ ପ୍ରଥମ ଅଧ୍ୟାପକ ଜୀବନ - ॥ ୯୮ ॥
ଅଧ୍ୟାପକମାନଙ୍କୁ ପଦେ - ॥ ୧୦୩ ॥
ସାଂସ୍କୃତିକ ସପ୍ତାହ - ॥ ୧୦୭ ॥
ବର୍ଷା ଋତୁରେ ଭଦ୍ରକ - ॥ ୧୦୯ ॥

| | | |
|---|---|---|
| ଅନ୍ୟାନ୍ୟ ଋତୁରେ ଭଦ୍ରକ | - | ॥ ୧୦୯ ॥ |
| ଗଗନବିହାରୀ ମହାନ୍ତିଙ୍କ ପରଲୋକ | - | ॥ ୧୧୧ ॥ |
| ଛକଡ଼ି ମହାନ୍ତି | - | ॥ ୧୧୨ ॥ |
| ନରେନ୍ଦ୍ର ପ୍ରସାଦ ଦାସ | - | ॥ ୧୧୩ ॥ |
| ଭୂୟାଁ କୋଠିରେ ରହଣି | - | ॥ ୧୧୪ ॥ |
| କେତେ ବନ୍ଧୁ କେତେ ସ୍ମୃତି | - | ॥ ୧୧୬ ॥ |

॥ ଦୁଇ ॥

| | | |
|---|---|---|
| ରେଭେନ୍ସା କଲେଜ୍‌ରେ ଅଧ୍ୟାପନା | - | ॥ ୧୨୪ ॥ |
| ମୋର ପୁସ୍ତକ ରଚନା ଓ ପ୍ରକାଶକଙ୍କ ସହ ସଂପର୍କ | - | ॥ ୧୩୪ ॥ |
| କଟକ ବାସଗୃହ ସମସ୍ୟା | - | ॥ ୧୩୭ ॥ |
| କଟକ ନଗର-ଏକାଳ ସେକାଳ | - | ॥ ୧୩୮ ॥ |

॥ ତିନି ॥

| | | |
|---|---|---|
| ଫକୀର ମୋହନ କଲେଜ୍‌ରେ ଅଧ୍ୟାପନା | - | ॥ ୧୪୦ ॥ |
| ଫକୀର ମୋହନ ସାହିତ୍ୟ ପରିଷଦ | - | ॥ ୧୪୧ ॥ |
| ଶାନ୍ତିକାନନର ସାନ୍ତ୍ୱନା | - | ॥ ୧୪୩ ॥ |
| କଲେଜ୍ ଲାଇବ୍ରେରୀ | - | ॥ ୧୪୫ ॥ |
| ଗବେଷଣା ପ୍ରସ୍ତୁତି | - | ॥ ୧୪୬ ॥ |
| ବାଲେଶ୍ୱରର ନାନା ସ୍ମୃତି | - | ॥ ୧୪୯ ॥ |
| ହାଟ ମଧ୍ୟରେ ବ୍ରହ୍ମଜ୍ଞାନ | - | ॥ ୧୫୦ ॥ |
| ଜ୍ଞାନରଂଜନ ପଟ୍ଟନାୟକ | - | ॥ ୧୫୧ ॥ |
| ମୋର ବସାଘର | - | ॥ ୧୫୩ ॥ |
| ବଦଳି ଆଦେଶ | - | ॥ ୧୫୪ ॥ |

॥ ଚାରି ॥

| | | |
|---|---|---|
| ଢେଙ୍କାନାଳ କଲେଜରେ ଅଧ୍ୟାପନା | - | ॥ ୧୫୫ ॥ |
| ଓଡ଼ିଶା ଶିକ୍ଷା ସେବାର ପ୍ରଥମ ଶ୍ରେଣୀକୁ ଉନ୍ନୀତ | - | ॥ ୧୫୮ ॥ |
| ଯତନ ନଗର | - | ॥ ୧୫୯ ॥ |

|| ପାଞ୍ଚ ||

| | | |
|---|---|---|
| ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ୍‌ରେ ଅଧ୍ୟାପନା | - | \|\| ୧୬୦ \|\| |
| ହେମର ପରଲୋକ | - | \|\| ୧୬୪ \|\| |
| ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ | - | \|\| ୧୬୭ \|\| |

|| ଛଅ ||

| | | |
|---|---|---|
| ପୁନଶ୍ଚ ଭଦ୍ରକ କଲେଜରେ ଯୋଗଦାନ | - | \|\| ୧୭୪ \|\| |
| ଅଧ୍ୟାପକମାନଙ୍କ ପ୍ରତି ମୋର ସୂଚନା | - | \|\| ୧୭୬ \|\| |
| ୧୯୭୧ର ଝଡ଼ବାତ୍ୟା | - | \|\| ୧୭୮ \|\| |
| ଭଦ୍ରକର ସାରସ୍ୱତ ପରଂପରା ଓ ସାହିତ୍ୟ ସଭା | - | \|\| ୧୭୯ \|\| |
| ସାହିତ୍ୟ ସଂସ୍କୃତି ପରିଷଦ | - | \|\| ୧୮୦ \|\| |
| ଲେଖା ଓ ଗବେଷଣା | - | \|\| ୧୮୨ \|\| |
| ୟୁ.ଜି.ସି. ଗବେଷଣା ଓ ମଙ୍ଗଳପୁର (ସୋରୋ) | - | \|\| ୧୮୬ \|\| |
| ଛାତ୍ରଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ | - | \|\| ୧୮୮ \|\| |

|| ସାତ ||

| | | |
|---|---|---|
| ପୁନଶ୍ଚ ରେଭେନ୍ସା କଲେଜ୍‌ରେ ଅବସ୍ଥାପନ | - | \|\| ୧୯୨ \|\| |
| ଅଧ୍ୟାପକମାନଙ୍କର ମୁଖ୍ୟ କର୍ତ୍ତବ୍ୟ ଓ ଦାୟିତ୍ୱ | - | \|\| ୧୯୫ \|\| |
| ପୂର୍ବ ଓ ପରର ରେଭେନ୍ସା କଲେଜ | - | \|\| ୧୯୯ \|\| |
| ଅସୁସ୍ଥତା | - | \|\| ୨୦୨ \|\| |
| ଅବସର ଗ୍ରହଣ | - | \|\| ୨୦୬ \|\| |
| ରେଭେନ୍ସା ବହାବିଦ୍ୟାଳୟ ପକ୍ଷରୁ ବିଦାୟ ସମ୍ବର୍ଦ୍ଧନା | - | \|\| ୨୦୯ \|\| |
| ଅରୁଣର ଚିଠି | - | \|\| ୨୧୨ \|\| |

ପଞ୍ଚମ ଅଧ୍ୟାୟ

| | | |
|---|---|---|
| ଅବସର ପର୍ଯ୍ୟାୟ | - | \|\| ୨୧୩ \|\| |
| ଜ୍ଞାନ ଓ ଦକ୍ଷତା | - | \|\| ୨୧୪ \|\| |
| ଗବେଷଣା | - | \|\| ୨୧୪ \|\| |
| ଗବେଷଣା ତତ୍ତ୍ୱାବଧାନ | - | \|\| ୨୧୪ \|\| |
| ବିଭିନ୍ନ ପୁରସ୍କାର ପାଇଁ ରେଫରୀ | - | \|\| ୨୧୪ \|\| |
| ଅଭିଜ୍ଞତା | - | \|\| ୨୧୫ \|\| |

| | | |
|---|---|---|
| ସାହିତ୍ୟିକ ଓ ସାଂସ୍କୃତିକ ଭାବବିନିମୟ ଯୋଜନା | - | ॥ ୨୧୫ ॥ |
| ଭ୍ରମଣ ଓ କ୍ଷେତ୍ରାଧ୍ୟୟନ | - | ॥ ୨୧୫ ॥ |
| ବୃତ୍ତି ଓ ବ୍ରତ | - | ॥ ୨୧୬ ॥ |
| ୟୁ.ଜି.ସି.ର ଫେଲୋସିପ୍ ଯୋଜନା ଓ ବିଭିନ୍ନ ସ୍ଥାନରେ ଭାଷଣ | - | ॥ ୨୧୯ ॥ |
| ଉତ୍ତର ଭାରତ ଭ୍ରମଣ | - | ॥ ୨୨୧ ॥ |
| ଜୟପୁର ଓ ଉଦୟପୁର | - | ॥ ୨୨୩ ॥ |
| ମାୟାପୁର ଯାତ୍ରା | - | ॥ ୨୨୪ ॥ |
| ଗଙ୍ଗାସାଗର ଯାତ୍ରା | - | ॥ ୨୨୪ ॥ |
| ପ୍ରଶାସନିକ ଓ ପରିଚାଳନାଗତ ଅଭିଜ୍ଞତା | - | ॥ ୨୨୫ ॥ |
| ବିଭିନ୍ନ କମିଟିର ସଦସ୍ୟ | - | ॥ ୨୨୫ ॥ |
| ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସଂପର୍କ | - | ॥ ୨୨୬ ॥ |
| ପତ୍ରିକା ସଂପାଦନା | - | ॥ ୨୨୭ ॥ |
| ସାରସ୍ୱତ ସାଧନା | - | ॥ ୨୨୭ ॥ |
| ମୋ ପରିବାରର କଥା | - | ॥ ୨୨୯ ॥ |
| ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ | - | ॥ ୨୩୨ ॥ |
| ସାୟାହ୍ନେ ସିଂହାବଲୋକନ | - | ॥ ୨୩୩ ॥ |


## ଷଷ୍ଠ ଅଧ୍ୟାୟ

## ପରିଶିଷ୍ଟ


| | | |
|---|---|---|
| ବଂଶାବଳୀ | - | ॥ ୨୩୭ ॥ |
| ବିଭିନ୍ନ ସେମିନାର୍, ରିଫ୍ରେସର କୋର୍ସ ଓ ପ୍ରାଚ୍ୟବିଦ୍ୟା ସମ୍ମିଳନୀରେ ଯୋଗଦାନ | - | ॥ ୨୩୯ ॥ |
| ପ୍ରକାଶିତ ପୁସ୍ତକାବଳୀ | - | ॥ ୨୪୧ ॥ |
| ସାରସ୍ୱତ ସମ୍ମାନ ଓ ପୁରସ୍କାର | - | ॥ ୨୫୦ ॥ |
| କେତୋଟି ସମ୍ମାନ, ସମ୍ବର୍ଦ୍ଧନା ଓ ପୁରସ୍କାର ପତ୍ରର ପ୍ରତିଲିପି | - | ॥ ୨୫୪ ॥ |
| ଫଟୋ ପୃଷ୍ଠା | - | ॥ ୨୬୧ ॥ |




## ।। ପ୍ରଥମ ଅଧ୍ୟାୟ ।।

### ବୁଢ଼ାମାଷ୍ଟେ ଓ ମୋର ସିଦ୍ଧିରସ୍ତୁ :

ଗଉଡ଼ସାଇ ମୁଣ୍ଡ ବରଗଛ ମୂଳରୁ ଦେଖାଗଲେ ବୁଢ଼ାମାଷ୍ଟେ । ଆମ ସାଇ (ନୂଆସାଇ) ଆଡ଼କୁ କଠଉ ଠକଠକ କରି ଆସିବାର ଜଣାଗଲେ । ସାଇ-ଦାଣ୍ଡ-ବଉଳଗଛ ଓ ଘର ପିଣ୍ଡାରେ ବୀରତ୍ୱର ସହ ଖେଳୁଥିବା ପିଲାଙ୍କର ଅବସ୍ଥା ଦେଖ । 'ଆଇଲେଣି' ବୋଲି ଚିତ୍କାର କରି ଗମ୍ଭୀରି ଘର ସଙ୍ଗା, ବାଡ଼ି ପଛଆଡ଼େ ଗାଡ଼ିଆ ଆଉ ତାଳ, କନିଅର ମୂଳ ଆଡ଼କୁ ଦୌଡ଼-ଧାପଡ଼ ଲଗେଇ ଦିଅନ୍ତି ବୀରପୁଙ୍ଗବ ଗଣ ।

ବୁଢ଼ାମାଷ୍ଟେ, ନାମ ଅଚ୍ୟୁତାନନ୍ଦ ଦାସ । ତିଗିରିଆ ନିବାସୀ । ପୁରୁଣାକାଳିଆ ମଧ-ଭର୍ଣ୍ଣାକ୍ୟୁଲ୍ ପଢ଼ା । ଖାଲି ସାର୍ଟିଫିକେଟ ଖଣ୍ଡେ ଧରିଲେ ତ ଚଳିବ ନାହିଁ । ଯେଉଁଠାକୁ ଯାଅ, ରୀତିମତ ମୁହେଁ ମୁହେଁ ବିଦ୍ୟାର ପରୀକ୍ଷା ଦେବାକୁ ହେବ । ଚାକିରି ଉଦ୍ଦେଶ୍ୟରେ କାହିଁ କେଉଁ କୈଶୋରରୁ ରାଜୁଡ଼ା କେଉଁଝର ଆଡ଼କୁ ଆସି ଦୈବକ୍ରମେ ପହଞ୍ଚନ୍ତି ଆମ ଗାଁ ପୁରୁଣିଆରେ । ଗାଁର ମୁଖିଆ ପଧାନ ରାମ ନାହାକ (ନାୟକ), ମୋର ଅଜା ଦୁର୍ଯ୍ୟୋଧନ ବଳ ମାଷ୍ଟର୍‌ଙ୍କର ପାଠର ପରୀକ୍ଷା ନିଅନ୍ତି । ବଡ଼ ପରୀକ୍ଷା ହେଲା ଅଙ୍କ ଓ ମାନସାଙ୍କ; ନଳ, କୁଟା, ଶୋଧ୍ୟ, ଓଡ଼ାଙ୍କ, ଫେଡ଼ାଙ୍କ ସାଧିପାରୁଛନ୍ତି କି ନାହିଁ- ଗାଣିତିକ କୌତୁକ ପ୍ରଶ୍ନର ଉତ୍ତର ମୁହେଁ ମୁହେଁ ଦେଇପାରୁଛନ୍ତି କି ନାହିଁ; କଡ଼ା ପଣକିଆ, ପାହି ପଣକିଆ ଏତ ଅତି ସାଧାରଣ କଥା । ପୁଣି ରାମାୟଣ, ମହାଭାରତ, ଭାଗବତ, ଛାନ୍ଦ, ଚଉତିଶା, ଶ୍ଳୋକ, ସ୍ମୃତି ତ ଅଛି ।

ବୁଢ଼ାମାଷ୍ଟେ ଏ ଗାଉଁଲି କଠୋର ପରୀକ୍ଷାରୁ ଉତୁରିଗଲେ । ମୋ ଅଜା ଆଉ ରାମ ନାହାକଙ୍କ ମତରେ ସେତେବେଳେ ସେ ଜଣେ ପୋଖତ ମାଷ୍ଟର । ଆଉ କାହାର ଆପତ୍ତି କରିବାକୁ ନାହିଁ । ଗାଁ ପ୍ରାଇମେରୀ ସ୍କୁଲ୍‌ରେ ନିଯୁକ୍ତି ପାଆନ୍ତି । ଅବଶ୍ୟ ନିଯୁକ୍ତି ପତ୍ର ଦିଅନ୍ତି ରାଜ ସରକାରଙ୍କର ସ୍କୁଲ୍ ଡେପୁଟି ଇନିସ୍‌ପେକ୍ଟର, ସୁପାରିଶ କିନ୍ତୁ ଅଜାଙ୍କର ।

ବାପା, ଦାଦା, ଗାଁର ଅନ୍ୟ ଗୁରୁଜନ ଶ୍ରେଣୀର ଲୋକେ ତାଙ୍କର ଚାଟ । ତାଙ୍କର ଶିଷ୍ୟତ୍ୱ ପରେ ଆମ୍ଭେମାନେ ତାଙ୍କର ସୁଯୋଗ୍ୟ (?) ଶିଷ୍ୟ ହେବାର ଗୌରବ ଅର୍ଜନ କରୁଁ । ସକାଳେ, ସଂଧ୍ୟାବେଳେ ବୋର୍ଡ଼ିଂ ଘରେ ପାଠ ଓ ଢ଼ୋଳ ସହ ଧର୍ମଦାସଙ୍କର ଆବିର୍ଭାବ !

ପଟାସ୍ ପଟାସ୍ ପିଠିରେ ନ ପଡ଼ିବା ପର୍ଯ୍ୟନ୍ତ ପଢ଼ାର ଗାମ୍ଭୀର୍ଯ୍ୟ ଫୁଟେ ନାହିଁ । ଧର୍ମଦାସଙ୍କର ସକ୍ରିୟତାରେ ପଥଚାରୀ ଗାଁବାଲାଙ୍କ ତୁଣ୍ଡରୁ ପ୍ରଶଂସା ଝରିପଡ଼େ- ''ପାଠପଢ଼ା କହନ୍ତି ଏଇଆକୁ; ଛାଟ ନ ହେଲେ କି ପାଠ ? ଆମ୍ଭମାନଙ୍କର ଚିତ୍କାର ଓ ଯାବତ ଅମେଧ ବସ୍ତୁ ଗ୍ରହଣ କରିବାର ଶପଥ ଧର୍ମଦାସଙ୍କର ସତ୍ତୋର ଓ ସଶବ୍ଦ କ୍ରିୟାଶୀଳତାରେ ବୁଡ଼ିଯାଏ । ପିଠିର ନୋଳାମାନ ଦେଖି ମା' ଗୋସମା ଓ ଖୁଡ଼ୀମାନଙ୍କର ଅଶ୍ରୁଳ ନେତ୍ର ଏବଂ ମାଷ୍ଟ୍ରଙ୍କ ଉଦ୍ଦେଶ୍ୟରେ ଗ୍ରାମ୍ୟଭାଷାରେ ଦି'ଚାରିପଦ ବ୍ୟାଜସ୍ତୁତି ଯେ ଝରି ନପଡ଼େ, ତା' ନୁହେଁ ।

ରାତି ପାହିଲାମାତ୍ରେ ଛନକା ପଶିଯାଏ । ଅଜା, ଦାଦା ତାଗିଦ୍ କରି ଦିଅନ୍ତି । କାର୍ଯ୍ୟୋପଲକ୍ଷରେ ସେମାନଙ୍କର ବହିର୍ଦ୍ଦେଶ ଗମନ ପରେ ଆମ୍ଭମାନଙ୍କର ନିରାପଦ ସ୍ଥାନର ସନ୍ଧାନ ଚାଲେ । ପୁରୁଣାକାଳିଆ ମରହଟ୍ଟୀ ଘର । କେବଳ ବିଲେଇ ପଶିବା ପାଇଁ ଜଳାକବାଟିଟି ମାନ । ଭାଡ଼ିତଳ, ଅମାର, ଭାଡ଼ିସ୍ଥିତ ଧାନ କହରିମାନଙ୍କର ପଶ୍ଚାଦେଶ ଓ ଘର ସଙ୍ଗା- ନଳିତାବାଡ଼ି (ବର୍ଷା କାଳରେ), ନିହାତି ଅଭାବ ପକ୍ଷରେ ହାଣ୍ଡିଶାଳ । ଏ ନିରାପଦ ସ୍ଥାନମାନଙ୍କର ନିରାପତ୍ତା ନଷ୍ଟ ହୋଇଯାଏ ବଡ଼ଚାଟଙ୍କର ଆବିର୍ଭାବରେ । ହାଣ୍ଡିଶାଳ ଆଉ ଅଭୟ ଦେଇ ପାରେନା । ଚାଟବ୍ୟୂହ ଲଙ୍ଗଳା ହୋଇ ସିଧାସିଧା ଟେକିନେଇ ଯାଆନ୍ତି ଯମ-ସ୍ଥଳୀକୁ ।

ବର୍ଷାକାଳ ! ଘରବାଡ଼ି ପାଖ ନଳିତା ଗଛ ଖୁବ୍ ବଡ଼ ବଡ଼ ନିଘଞ୍ଚ ହୋଇଥାଏ । ବାବୁ (ବୈକୁଣ୍ଠ) ଆଉ ମୁଁ ଇସ୍କୁଲ ନ ଯିବା ମତଲବରେ ସେ ବାଡ଼ି ଭିତରେ ଥରେ ଲୁଚିଲୁଁ । ଦୈବାତ୍ ଆମ ଉପରେ ଶୁଭଦୃଷ୍ଟି ପଡ଼େ ସୁମନାନୀର । ସୁମନାନୀ ଭାରୀ ଦୟାଶୀଳା, ମତେ ଭାରୀ ଶ୍ରଦ୍ଧା କରେ । ବେଳେବେଳେ ଗଉଡ଼ସାଇରୁ ଧାନ ବଦଳରେ ଦୁଧ-ଛେନା କିଣି ଆଣି ମତେ ଖୁଆଏ । ସେଦିନ ଆମ ଦୁହିଁଙ୍କୁ ଖୋଜା ଚାଲିଥାଏ । ତାକୁ କହିଥାଉଁ : କେହି ପଚାରିଲେ ଦେଖିନାହୁଁ ବୋଲି କହିବୁ । ଏହା କହି ନଳିତାବାଡ଼ି ଭିତରେ ଚୋରଙ୍କ ପରି ଲୁଚି ବସିଲୁଁ । ଦେଖିଲୁଁ, ଦାଦା ଆମକୁ ଖୋଜିବାରେ ଲାଗିଛନ୍ତି । ତାଙ୍କର ଗୋଡ଼ ଦେଖାଯାଉଥାଏ । ଦାଦା ସୁମନାନୀକୁ ପଚାରିବାରୁ ସେ କହିଲା- କାହିଁ ସେମାନଙ୍କୁ ତ ମୁଁ ଦେଖିନାହିଁ, ଆଉ କୁଆଡ଼େ ଯାଇଥିବେ । ଛାତି ବରଡ଼ାପତର ପରି ଥରୁଥାଏ । ସୁମନାନୀର ଏ ନିରାପତ୍ତା ସୂଚକ ବାଣୀରେ ମନରେ ଟିକିଏ ଦମ୍ଭ ଆସିଯାଉଥାଏ । ଦାଦା ଅନ୍ୟ ଆଡ଼କୁ ଚାଲିଯିବାରୁ ପିଣ୍ଡରେ ପ୍ରାଣ ପଶେ ।

କିନ୍ତୁ ସବୁଦିନେ କ'ଣ ଚୋରଙ୍କର ଅନ୍ଧାର ରାତି ଥାଏ ? ଦିନେ ଲକ୍ଷ୍ମୀ ଆଉ ମୁଁ ଜଣକର ଘର ସଂଘାରୁ ବାହାରି ପୁରୁଣାସାଇ ପୋଖରୀ ବଗଚରା ପାଖରେ ବସି ଗପ-ମଉଜରେ ମାତି ଥାଉଁ । ଇସ୍କୁଲ ନ ଯାଇ ଆମେ ଯେ ଲୁଚିଛୁଁ, ଏ ଧାରଣା ମନରୁ ପୋଛି ହୋଇଯାଇଥାଏ । ବଡ଼ ପାଟିରେ ଆମର ହସ ପରିହାସ ମଜାକଥା ଚାଲିଥାଏ । ମୋ ପାଟିରୁ ବାହାରି ପଡ଼ିଥାଏ- ''ଅଜା ଲୋ ଅଜା, ମୁଢ଼ି କି ନଡ଼ିଆ କେଡ଼େ ମଜା''- ପହଲିଟି

ସରିଛି କି ନାହିଁ ପିଠିରେ ପଟାସ୍ ପଟାସ୍ ତେନ୍ତୁଳି ଛାଟ ସ୍ପର୍ଶରେ ମୋ ପହଳିର ମୁଢ଼ି ନଡ଼ିଆ ଓ ଖଜାଖିଆ ମଜା ବାହାରି ପଡ଼େ । ଦୁହେଁ ପିଠିରେ ଉତ୍ତମ ମଧ୍ୟମ ପାଇ ନିଆଯାଉ ଯମ ମନ୍ଦିରକୁ ।

ଚକ୍ଷମାରେ ଗାଡ଼େଇ ଚାହିଁ ବୁଢ଼ାମାଷ୍ଟେ ଆମ ପିଠି ପରୀକ୍ଷା କରିନେଲେ । ନୋଳାମାନଙ୍କର ଆବିର୍ଭାବରେ ସଦୟ ହୋଇ ଆଉ ଧର୍ମଦାସକୁ ଆହ୍ୱାନ କରିନାହାନ୍ତି, କେବଳ ଚେୟାର ପଡ଼ିଲୁଁ କିଛି ସମୟ ।

ସ୍କୁଲହତା ଭିତରେ ଗୋଟାଏ ବଡ଼ ଜରଗଛ (ୟୁକାଲିପଟ୍‌ସ୍ ଗଛ) ଥାଏ । ଦରମା ପାଇଁ ମାଷ୍ଟେ ଯାଆନ୍ତି ଆନନ୍ଦପୁର ପ୍ରତିମାସ ୧୫ ତାରିଖରେ । ସେ ଦିନର ଆନନ୍ଦ କହିଲେ ନ ସରେ । ସେଦିନ ଫେରି ନପାରିଲେ ତହିଁ ଆରଦିନ ତାଙ୍କର ଅନାଗମନ ପଥକୁ ଦୁଷ୍ଟ କେଇଟା ବଡ଼ଚାଟ ଜରଗଛ ଉପରେ ଚଢ଼ି ଦୂରବୀକ୍ଷଣ ଦୃଷ୍ଟିରେ ଚାହିଁରହନ୍ତି ।

ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀରେ ମୁଁ ଅଙ୍କ ଓ ମାନସାଙ୍କ କିଛି ବୁଝେ ନାହିଁ, ଏ ଉର୍ବର ମସ୍ତିଷ୍କରେ କିଛି ପଶେ ନାହିଁ । ଅଙ୍କ କଷିବାକୁ ଦିଆଗଲେ ଦେହରେ ପିନ୍ଧାକାନି ଖୋଲି ଘୋଡ଼େଇ ହୋଇପଡ଼େ ଏବଂ ଯାବତ ସଂଖ୍ୟା ଲେଖି ସିଲଟ ଭର୍ତ୍ତି କରିଦିଏ । ଶ୍ରେଣୀରେ ଗୋଟିଏ କଣରେ ଠିଆ ହୋଇଥାଏ ବାଉଁଶ ତିଆରି ଫିଲ୍‌ଟର୍ ଯନ୍ତ୍ର । ମନେମନେ ଭାବୁଥାଏ: ଏଇଟା ଆଜି ପଡ଼ିଯାଇ ସବୁ ହାଣ୍ଡି ଭାଙ୍ଗି ଯାଆନ୍ତାକି; ସ୍କୁଲ୍ ବନ୍ଦ ହୋଇଯାଆନ୍ତା ।

ଶ୍ରେଣୀରେ ପଢ଼ା ସମୟରେ ବାପା, ଦାଦା, ବଡ଼ଭାଇ କାହାରି ଆବିର୍ଭାବ ହେଲେ ମନରେ ଗୋଟାଏ ଦମ୍ଭ ଆସେ, କାରଣ ସେମାନଙ୍କୁ ଦେଖିଲେ ମାଷ୍ଟେ ମାରିବେ ନାହିଁ । ଥରେ ସେକେଣ୍ଡ ମାଷ୍ଟେ ଗୋଟିଏ ଅଙ୍କ ପ୍ରଶ୍ନ ଡାକିଲେ : ହାତୀ ବନ୍ଧା ଏରିଆରେ (ହାତୀବନ୍ଧା ନାମକ ଗାଁ ପାଖରେ ଥିବା ଝାଉଁ ବଣ) ୫୭୯ଟି ଶିଶୁଗଛ, ୭୫ ଟି ଆମ୍ବଗଛ ଏବଂ ୨୭ଟି ଜାମୁଗଛ ଅଛି । ଏରିଆରେ ମୋଟରେ କେତୋଟି ଗଛ ଅଛି ? ଅଜା ବୁଲି ଆସିଥିଲେ । ହଠାତ୍ ପଚାରିଲେ, ମାଷ୍ଟେ ! ଏ ଗଛ ସଂଖ୍ୟା କ'ଣ ଆପଣ ଗଣିଛନ୍ତି ? ମାଷ୍ଟେ ହସି ହସି କହିଲେ, ନାଁ ତା ନୁହେଁ, କେବଳ ଅନୁମାନ କରି ଗଛସଂଖ୍ୟା ଦିଆଯାଇଛି, ପିଲାମାନଙ୍କର କେବଳ ଅଙ୍କ କଷିବାର କଥା । ଅଙ୍କ ପ୍ରତି ମୋର ଏତେ ଶ୍ରଦ୍ଧା ଯେ, ଅଙ୍କ ବହି ବାହାରେ ଥିଲେ ମୁଁ ବସ୍ତାନିରେ ଲୁଚେଇ ଦିଏଁ । ସାହିତ୍ୟ ବହି ଦେଖିଲେ ଖୁସି ଲାଗେ । ବହିର ଛବିଗୁଡ଼ିକ ମନରେ ରେଖାପାତ କରେ ।

ଧର୍ମଦାସଙ୍କର ତାଡ଼ନା ଓ ଅଙ୍କରେ ଲୀଳାବତୀଙ୍କର ଅନୁକମ୍ପା (?) ଦେଖି ପାଠପଢ଼ା ପ୍ରତି ମୋର ବିତୃଷ୍ଣା ଆସିଗଲା । ଏ ସ୍କୁଲ୍ ଜଞ୍ଜାଳରୁ କିପରି ମୁକ୍ତି ପାଇବି, ନାନା ଫିକର ଖୋଜୁଥାଏଁ । ବେଲବାହାଳି ଆମ୍ବତୋଟାରେ ସେତେବେଳେ ଗୋଟିଏ ସାପ୍ତାହିକ ହାଟ ବସୁଥାଏ । ଥରେ ଥରେ ହାଟବାରି ଦିନ ଦାଦାଙ୍କର ଦୃଷ୍ଟି ଏଡ଼େଇ ହାଟର ଚାଳିଆ ଦୋକାନ ପଛରେ ଲୁଚି ବୁଲୁଥାଏଁ ।

ଥରେ ଶୀତଯାଇ ବସନ୍ତକାଳ ଆସୁଥାଏ । ଗାଁ ନାଳ ପାଖ ଆଖୁଶାଳରେ ଆଖୁପେଡ଼ା ଓ ଗୁଡ଼ରନ୍ଧା ସରିଯାଇଥାଏ । କିଆରିରେ ଲଗେଇବା ପାଇଁ ଆଖୁ ବିହନ ଟଙ୍ଗା ଚାଲିଥାଏ । ଦାଦାଙ୍କୁ ସିନା ଡ଼ର, ଅଜାଙ୍କୁ ମୋର ଡ଼ର ନଥାଏ । ଇସ୍କୁଲ୍ ଚାଲିବା ପୂର୍ବରୁ ତାଙ୍କ ସାଂଗରେ ବେଳେବେଳେ ମାଟି ତାଡ଼ି ଟେଳାମାନ ବୋହିବାକୁ ସଙ୍କେତ ଦିଅନ୍ତି । ବୀରଦର୍ପରେ ପେଟରେ ଟେଳାମାନ ଥୋଇ ଯଥାସ୍ଥାନରେ ପକେଇ ଚାଲେ । ଅଜା ଓ ଅନ୍ୟ ଥଟ୍ଟାଳିଆ ଲୋକେ ମୋର ବୀରତ୍ୱର ପ୍ରଶଂସା କଲେ ଛାତି ମୋର କୁଣ୍ଢେମୋଟ ହୋଇଯାଏ ।

ଆଖୁଶାଳରେ ଦିନେ ବେଳ ଉଣ୍ଡି ଅଜା ଖୁସିମନରେ ଥିଲାବେଳେ ଗୋଟିଏ ପ୍ରସ୍ତାବ ଦେଲି : ''ବାବା, ମୁଁ ଆଉ ପାଠ ପଢ଼ିବି ନାହିଁ । ଇସ୍କୁଲ୍‌ରୁ ମୋ ନାଁ କଟାଇ ଆଣ ।'' ଅଜା କହିଲେ, ''ହଉ ଆଣିବା ।'' ମନେମନେ ଭାରୀ ଖୁସି, ନାଁ କଟେଇ ଆଣିବେ, ଆଉ ଅଙ୍କ ନାଁ ଧର୍ମଦାସ !

ଦିନେ ନୁହେଁ, ମାସେ ନୁହେଁ, ବର୍ଷେ ନୁହେଁ- ଦୀର୍ଘକାଳ ଚାଲିଗଲା; ନାଁ କଟା କାହିଁ ? ଯେଉଁ ଇସ୍କୁଲ୍‌କୁ ସେଇ ଇସ୍କୁଲ୍, ପୁଣି ସେ କୋକୁଆ ଡ଼ର; ଯେଉଁ ଧର୍ମଦାସକୁ ସେଇ ଧର୍ମଦାସ !

ଅଜା ପ୍ରତିଶ୍ରୁତି ଭଙ୍ଗ କରିଛନ୍ତି ବୋଲି ମନେମନେ ରାଗିଲେ ମଧ ଦଣ୍ଡ ଦେବାର ଶକ୍ତି ବା କାହିଁ ?

## ଗୁଣ୍ଡୁଚିମୂଷା ଓ ସେତୁବନ୍ଧ :

ଯେଉଁ ସମୟର କଥା କହୁଛି, ତାହା ହେଉଛି ୧୩୩୪ ସାଲର କଥା । ମୋର ସର୍ଟିଫିକେଟ୍‌ରେ ଜନ୍ମ ତାରିଖରେ ଲେଖାଅଛି– ୧୦ ଅଗଷ୍ଟ, ୧୯୨୭ । ଭାଦ୍ରବ ମାସ, ତିନି ଦିନ ଶୁକ୍ଳ ଚତୁର୍ଦ୍ଦଶୀଗତେ ପୂର୍ଣ୍ଣିମା ତିଥିରେ ବ୍ରାହ୍ମମୁହୂର୍ତ୍ତରେ ମୋର ଜନ୍ମ ବୋଲି ଘର ଲୋକେ କହନ୍ତି । ମାମୁଁ ଘର ହେଉଛି : କେନ୍ଦୁଝର ଜିଲାର ଆନନ୍ଦପୁର ସବ୍‌ଡ଼ିଭିଜନର ପୁରୁଣିଆଁ ଗ୍ରାମରେ; ବର୍ତ୍ତମାନର ଭୀମକୁଣ୍ଡ ପ୍ରୋଜେକ୍ଟର ସୁପରିନ୍‌ଟେଣ୍ଡିଂ ଅଫିସ୍‌ର ଠିକ୍ ଦକ୍ଷିଣପୂର୍ବକୁ । ଏବେ ପୁରୁଣିଆଁକୁ ବେଶ ମୋରମରାସ୍ତା ହୋଇଗଲାଣି; ଆଗରୁ ଥିଲା କଚା ଗାଡ଼ିଗୁଳା ରାସ୍ତା । ମାମୁଁ ଘରକୁ ଆସିବା ଏବଂ ସେଠି ଶେଷ ପର୍ଯ୍ୟନ୍ତ ରହିଯିବା ବାସ୍ତବିକ୍ ଏକ ଆକସ୍ମିକ ଘଟଣା ।

ମୋର ପୈତୃକ ଘର ହେଉଛି ଯାଜପୁର ଜିଲାର ଟମକା ଥାନାର ଅଶ୍ୱତ୍ଥପାଳ (ଓସ୍ତପାଳ) ଗ୍ରାମରେ । ଏବେ ଖଣିଜ ସଂପଦ ଯୋଗୁଁ ପ୍ରସିଦ୍ଧି ଲାଭ କରିଥିବା ଟମକା ପର୍ବତ ଆମ ଗାଁର ଦକ୍ଷିଣ-ପଶ୍ଚିମକୁ, ପ୍ରାୟ ଚାରି ମାଇଲ୍ । ଆମ ନୟାବାଦୀ ଜମି ପାଖ ଦେଇ ଏବେ ଦଇତାରିକୁ ରେଲଲାଇନ୍ ପଡ଼ିଗଲାଣି । ଏବେ ଟମକା ପର୍ଯ୍ୟନ୍ତ ଜଙ୍ଗଲ ଫଙ୍ଗଲ କିଛି ନାହିଁ; ସେତେବେଳେ ଗାଁ ଏ ମୁଣ୍ଡ ଓ ସେ ମୁଣ୍ଡରେ ଥିଲା ଶାଳ ଜଙ୍ଗଲ, ଯେଉଁ ଆଡ଼କୁ ଚାହିଁବ, ଖାଲି ଜଙ୍ଗଲ ।

ମୋର ଜେଜେବାପାଙ୍କ ନାମ ଜଗବନ୍ଧୁ ଶା, ବାପାଙ୍କ ନାମ ନନ୍ଦକିଶୋର ଶା, ମା' ଉଷା ଦେଈ । ଅଶ୍ୱସ୍ଥପାଳରେ ଆମ ଘର ଥିଲା ସେତେବେଳେ ଏକ ବୁନିୟାଦ ଘର । ପଚିଶି ଏକରରୁ ଅଧିକ ଭୂସଂପତ୍ତି, ଗୋରୁଗାଈ ଗୁହାଳରେ ଭର୍ତ୍ତି । ବାପା କହନ୍ତି- ପିଲାଦିନେ ସେ ଦୁଧ ଘିଅରେ ଭାସୁଥିଲେ । କାଳକ୍ରମେ ଘରର ଅବସ୍ଥା ପଡ଼ିଗଲା । ଘରପୋଡ଼ି ଦୁଇଥର ହୋଇଯାଇଛି । ଭାଗ୍ୟ-ଚକ୍ରର ଘୂର୍ଣ୍ଣନରେ ଗାଁର ନଥିଲା ଲୋକେ ବ୍ୟବସାୟ ଧନ୍ଦାକରି ଜମିବାଡ଼ି, ଧନ ସଂପତ୍ତିରେ ଉଠି ବସିଛନ୍ତି, ଆମ ଘର ପଡ଼ିଯାଇଛି । ମୋ ଜନ୍ମ ସମୟକୁ ମା'ଙ୍କ ଦେହର ଅବସ୍ଥା ଶୋଚନୀୟ । ଓସ୍ତପାଳ ଅଞ୍ଚଳରେ ସେତେବେଳେ ଚିକିତ୍ସାର ବ୍ୟବସ୍ଥା ନଥିବାରୁ ମା'ଙ୍କୁ ଓ ମୋତେ ଅଜା, ଆଈ (ମାମା) ପୁରୁଣିଆଁ ନେଇଗଲେ । ସବାରିରେ ବସିବା ପୂର୍ବରୁ ମା' ଅଶ୍ରୁଳ ନେତ୍ରରେ ବାପାଙ୍କ ପାଦରେ ପ୍ରଣାମ କରି କୁଆଡ଼େ କହିଥିଲେ- 'ବଞ୍ଚିଲେ ଦେଖାହେବ ।'

ମା'ଙ୍କ ସହ ମାମୁଁ ଘରକୁ ଆସିଲି । ପୁରୁଣିଆଁର ଉତ୍ତରକୁ ଟକୁଣା ବ୍ରାହ୍ମଣ ଶାସନ, ତାର ଉତ୍ତରକୁ ବୈତରଣୀ ସେପାରି ଫକୀରପୁର । ସେତେବେଳକୁ ଫକୀରପୁର ବୈଦ୍ୟଙ୍କ ନାମ ଡାକ । ଦୁଇମାସ ଧରି ବୈଦ୍ୟ ଚିକିତ୍ସାରେ ଲାଗିଗଲେ; କିନ୍ତୁ ସବୁ ଚିକିତ୍ସା ପାଣି ଫାଟିଗଲା । ମା' ଚିରଦିନ ପାଇଁ ଆଖି ବୁଜିଲେ । ଜନ୍ମାନ୍ତରୀଣ ଦୁର୍ଭାଗ୍ୟ ହେତୁ ଜନ୍ମର ଦୁଇମାସ ବେଳୁଁ ମା'ଙ୍କୁ ହରାଇଲି । ଜୀବନସାରା ମାତୃସୁଖ କ'ଣ ଜାଣିନାହିଁ । ମା' ମୋତେ ଜନ୍ମ ଦେଇ ସଂସାରରୁ ବିଦାୟ ନେଇ ଚାଲିଯାଇଛନ୍ତି : ଏହା କେବଳ ଉଭୟ ପରିବାର ଓ ଗାଁର ଲୋକଙ୍କ ମୁହଁରୁ ଶୁଣେ । ମା'ଙ୍କର ବ୍ୟବହାର, ବିଦାୟ-ମୁହୂର୍ତ୍ତ କଥା ବର୍ଣ୍ଣନା କରି ଏବେବି ଦେଖିଥିବା ସ୍ତ୍ରୀଲୋକମାନେ ଆଖି ଛଳଛଳ କରିପକାନ୍ତି । ମୁଁ କେବଳ ଆଗ୍ରହରେ ଶୁଣେଁ । ଦୁଇମାସର ଶିଶୁ ପକ୍ଷେ ମାତୃ ସ୍ମୃତି ଅସମ୍ଭବ ।

ମା'ଙ୍କ ମୃତ୍ୟୁପରେ ଘର ଆମର ଏକପ୍ରକାର ଭାଙ୍ଗିଗଲା । ମୋ ପୂର୍ବରୁ ଗୋଟିଏ ଭଉଣୀ (ଜେମା), ଦୁଇଟି ଭାଇ (ଘନଶ୍ୟାମ, ନଟବର) ଜନ୍ମ ହୋଇଥିଲେ । ସମସ୍ତେ ଛୋଟ ଛୋଟ । ମା'ଙ୍କ ମୃତ୍ୟୁପରେ ଅଜା ମୋର ନାନୀ ଓ ବଡ଼ ଦୁଇଭାଇଙ୍କୁ ପୁରୁଣିଆଁ ନେଇଗଲେ । ବାପା ଘରକୁ ଥାନ୍ତି ଏକୁଟିଆ । ସେତେବେଳେ ସେ ସଂସାର ଓ ପରିବାର ପ୍ରତି ଉଦାସୀନ ହୋଇ ଧର୍ମ-ଚର୍ଚ୍ଚାରେ ଏକ ପ୍ରକାର ଦିନ କଟାଇଲେ । ବାପା କହନ୍ତି- ''ଜଣେ ଅମୀନ ସେତେବେଳେ ଆମ ଗାଁକୁ ଆସିଥିଲେ । ତାଙ୍କ ସହ ବାପାଙ୍କର ଭାଗବତ ଓ ଅନ୍ୟ ଧର୍ମଗ୍ରନ୍ଥ ଚର୍ଚ୍ଚା ହୁଏ । ଦିନେ ରାତିରେ ଭାଗବତ ବୋଲୁ ବୋଲୁ ହଠାତ୍ ଏକ ଛାୟା ତାଙ୍କ ଆଖି ଆଗରେ ଝଲସି ଉଠିଲା- ସେ ଛାୟା ତାଙ୍କଠାରୁ ବିଦାୟକାଳୀନ ଅଶ୍ରୁମୁଖୀ ମା'ଙ୍କର ଛାୟା !''

ବାପାଙ୍କ ତୁଣ୍ଡରୁ ଅଜାଣତରେ ଝରି ପଡ଼ିଲା- ଚାଲିଗଲା ! ଚାଲିଗଲା ! ଭାଗବତ ବୋଲା ବନ୍ଦ କରି ବାଷ୍ପରୁଦ୍ଧ କଣ୍ଠରେ ବାପା ଘରକୁ ଚାଲିଆସନ୍ତି । ତହିଁ ଆରଦିନ ଓସ୍ତପାଳରେ

ଖବର ପହଞ୍ଚିଲା : ମା' ଆଉ ଇହଧାମରେ ନାହାନ୍ତି । ସମଗ୍ର ପରିବାରରେ କାନ୍ଦଣାର ସୁଅ ଛୁଟିଲା । ଗାଁର ସ୍ତ୍ରୀ ଓ ପୁରୁଷଙ୍କ କାନ୍ଦଣା ଓ ଆହା ଧ୍ୱନିରେ ପରିବେଶ ଆହୁରି କରୁଣ ହୋଇ ଉଠିଲା ।

ସମୟକ୍ରମେ ରୋଦନ ଓ ଦୁଃଖର ମାତ୍ରା କମିଆସିଲା । ସୁଖବେଳେ ଯେପରି ସୂର୍ଯ୍ୟ ଚନ୍ଦ୍ର ଉଠନ୍ତି ଓ ଅସ୍ତ ଯାଆନ୍ତି, ଦୁଃଖବେଳେ ମଧ୍ୟ ସେହିପରି । ସେ ସନାତନ ନିୟମର ବ୍ୟତିକ୍ରମ କାହିଁ ? କାଳସ୍ରୋତ ତାର ଅପ୍ରତିହତ ବେଗରେ ଚାଲିଛି- କେତେ ବୁଦ୍‌ବୁଦ ତା ବକ୍ଷରେ ଦେଖା ଦେଇ ଲୀନ ହୋଇଯାଉଛନ୍ତି । ସୁଖର ହେଉ, ଦୁଃଖର ହେଉ, ଜୀବନ ବହିଥିଲେ ନାନା ଘଟଣା ଘଟିବ, ପୁଣି ତିଷ୍ଠି ରହିବାକୁ ହେଲେ ସେ ଘଟଣାର ମୁକାବିଲା କରିବାକୁ ହେବ ।

ପରିସ୍ଥିତିର ଅଲଂଘ୍ୟ ଚାପାରେ ବାପାଙ୍କର ଔଦାସୀନ୍ୟ, ସନ୍ନ୍ୟାସୀ ପ୍ରାୟ ଆଚରଣ ଏବଂ ଅମୀନ ପ୍ରଭୃତି ଗ୍ରାମକୁ ଆସୁଥିବା ବ୍ୟକ୍ତିମାନଙ୍କ ସହ ଇତସ୍ତତଃ ଭ୍ରମଣ ପରିବାରର ଅନ୍ୟ ଖୁଡ଼ୁତାମାନଙ୍କ ମନରେ ଭାବାନ୍ତର ସୃଷ୍ଟିକଲା । ବଡ଼କକା ଚୈତନ୍ୟ ଶା ନାନା ଅଯୌକ୍ତିକ କଥା ଉଠାଇ ଭିନେ ହୋଇଯିବାର ଧମକ ଦେଲେ ।

ଜେଜେବାପା ଜଗବନ୍ଧୁ ଶା ମହରଟ୍ଟା ଧରଣର ପାଠୁଆ ହେଲେ ମଧ୍ୟ ଭାରୀ ସରଳମନା; ଛନ୍ଦ କପଟ କ'ଣ ଜାଣନ୍ତି ନାହିଁ । ସେ ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ ଦେଖିଛି : ସେ ସକାଳେ ଓ ସଂଧ୍ୟାବେଳେ ସ୍ତୁତି, ଭଜନଗୁଡ଼ିଏ ଗାଆନ୍ତି । ପ୍ରତ୍ୟେକଙ୍କର ପିଲାଙ୍କୁ ଶ୍ରଦ୍ଧା କରନ୍ତି । ଜେଜେମା' ମଧ୍ୟ ଠିକ୍ ତାଙ୍କରି ପରି ସରଳମନା । ବନ୍ଧୁବାନ୍ଧବ ଘରକୁ ଭାର ଗଲେ ସାଙ୍ଗରେ ଯାଆନ୍ତି ଜେଜେବାପା । ବନ୍ଧୁବାନ୍ଧବଙ୍କର ବିଭା ନିମିତ୍ତରେ ତାଙ୍କ ଛଡ଼ା ଆଉ କିଏ ଯିବ ? ଏକ ମଜା କଥା : ପୁରୁଣିଆଁକୁ (ମାମୁଁ ଘର ଗାଁ) ଆସିଥାନ୍ତି ଜେଜେବାପା । ସେ ମରହଟ୍ଟୀ ପାଠୁଆ ହେଲେ କ'ଣ ହେବ, ଭାରୀ ଚୋର ମୁହାଁ । ମାମୁଁଘର ଗାଁର ମୁଖିଆଙ୍କ ସଙ୍ଗରେ କଥାବାର୍ତ୍ତା କରିବାକୁ ତାଙ୍କୁ ଭାଷା ପଇଟେ ନାହିଁ । ଅନ୍ୟମାନେ ଥଟ୍ଟା କରି କହିଲେ କେବଳ ଫିକ୍ କରି ହସିଦିଅନ୍ତି । ଥରେ ସେ ଦାଣ୍ଡ ପିଣ୍ଡାରେ ନ ବସି ଦାଣ୍ଡର ଗୋଟିଏ ପାଖକୁ ଥୁଆ ହୋଇଥିବା ଗୋଟିଏ ସବାରି ଭିତରେ ଶୋଇଥାଆନ୍ତି । ଖାଇବା ସମୟ ହେବାରୁ ଅଜାଙ୍କ ସମୁଦି ସମୁଦି ଡାକରେ ତରବର ହୋଇ ସୁଆରି ଭିତରେ ଉଠିବସନ୍ତି ଏବଂ ନୂଆବୋହୂ ନଇଁ ବାହାରିଲା ଭଳି ବାହାରନ୍ତି । ତାଙ୍କୁ ଏ ଅବସ୍ଥାରେ ଦେଖି ଗୋଟାଏ ହସର ଜୁଆର ଉଠେ । ଅଜା କହନ୍ତି- ସମୁଦି, ତୁମକୁ ଜାଗା ମିଳିଲା ନାହିଁ, ମାଇଚିଆଙ୍କ ଭଳି ସୁଆରି ଭିତରେ ବସିଛ ! ସେଇ ଫିକ୍ କରି ହସଟି ଛଡ଼ା ଜେଜେଙ୍କ ତୁଣ୍ଡରୁ ଆଉ କିଛି ବାହାରେ ନାହିଁ ।

ବଡ଼କକାଙ୍କ ବାକ୍ୟବାଣରେ ଅତିଷ୍ଠ ହୋଇ ଭଦ୍ରଲୋକଙ୍କ ଉପସ୍ଥିତିରେ ବାପା ଦୁର୍ଦ୍ଦିନରେ ଭାଇମାନଙ୍କ ଠାରୁ ଭିନେ ହୋଇ ଯିବାକୁ ବାଧ୍ୟ ହେଲେ । ଜେଜେବାପା ଘୋର ମାନସିକ

ଅଶାନ୍ତି ଭୋଗିଲେ ମଧ୍ୟ କିଛି କରିପାରିଲେ ନାହିଁ । କେବଳ ବାପାଙ୍କର ଏ ଦୁଃସମୟରେ ଏ ଅପ୍ରତ୍ୟାଶିତ ଘଟଣାରେ ଆଖିରୁ ତାଙ୍କର ଦୁଇଧାର ତାତିଲା ଲୁହ ଗଡ଼ିପଡ଼ିଲା । ବନକକା ଓ ନରିକକା ବିଭା ହୋଇସାରିଥିଲେ । ଗିରିକକାଙ୍କର ବିଭାଘର ହୋଇନଥାଏ । ସେ ରହିଲେ ବାପାଙ୍କ ସାଙ୍ଗରେ, ପୁଣି ବଂଶର ପ୍ରତିଷ୍ଠିତ ହରିବଂଶ ଠାକୁର ଗାଦିର ଦାୟିତ୍ୱ ବହନ କରନ୍ତି ବାପା, ବାପର ବଡ଼ ପୁଅ ଭାବରେ ।

ଘରର ଏ ଅବସ୍ଥା ଦେଖି ପିଲାଗୁଡ଼ିଙ୍କର ପାଳନ ପୋଷଣ ପାଇଁ ଅନ୍ୟମାନଙ୍କର ବାଧ୍ୟବାଧକତା ଏବଂ ଅଜାଙ୍କର ବିଚାରଶୀଳତା ଯୋଗୁଁ ଅନିଚ୍ଛା ସତ୍ତ୍ୱେ ବାପା ଦ୍ୱିତୀୟାଦାର ଗ୍ରହଣ କରନ୍ତି; ସେ ପୁଣି କେହି ନୁହେଁ, ମୋର ମାଉସୀ (ସୁଶୀଳା) ମା'ଠାରୁ ସାନ । ପରିବାରରେ ସର୍ବଦା ରହଣି ହେତୁ ନାନୀ ଓ ବଡ଼ ଦୁଇ ଭାଇ ମାଉସୀକୁ ମା'ଠାରୁ ବଳି ଆଦରି ନେଇଯାଆନ୍ତି । ସମସ୍ତଙ୍କ ତୁଣ୍ଡରେ ମା'ଡାକ । ମୁଁ ମାମୁଁଘରେ ବିଚ୍ଛିନ୍ନ ଭାବରେ ସବୁଦିନେ ରହିବାରୁ ଆଉ ମା'ଡାକ ଅଭ୍ୟାସ ମୋର ହୋଇପାରିଲା ନାହିଁ, ଯଦିଓ ସମ[redacted] ଦୃଷ୍ଟିରେ ମୁଁ ଥିଲି ଅତି ଆଦରର ।

ଜନ୍ମବେଳୁଁ ମା'ଙ୍କୁ ସିନା ହରାଇଲି, କିନ୍ତୁ ମା' ଛେଉଣ୍ଡ ଏ ଅବୋଧ ଶିଶୁଟିକୁ ଦେଖି ଶତଶତ ଜନନୀଙ୍କର ମାତୃତ୍ୱ ମୁଣ୍ଡଟେକି ଉଠିଛି । ଜାତିବର୍ଣ୍ଣ ନିର୍ବିଶେଷରେ ଶତଶତ ଜନନୀଙ୍କର ବକ୍ଷର ରସରେ ଏ ପିଣ୍ଡ ପରିପୁଷ୍ଟ ହୋଇଛି । ଜଗଜ୍ଜନନୀ ଶତଶତ ଜନନୀ ରୂପରେ ଆବିର୍ଭୂତା ହୋଇ ତା'ର ଏ ଅବୋଧ ଶିଶୁଟିର ପାଳନ ପୋଷଣ ଦାୟିତ୍ୱ ବହନ କରିଛନ୍ତି । ସେଇ ଅଜଣା ଅପରିଚିତା ଜନନୀଙ୍କର ଚରଣରେ ମୁଁ କୋଟି କୋଟି ପ୍ରଣତି ଜଣାଉଛି ।

ଜେଜେବାପା କୌତୁକିଆ ଲୋକ । ସେ କହନ୍ତି- ଦିନେ ମୋତେ କାନ୍ଧେଇ କାନ୍ଧେଇ ମାମୁଁଘର ଗାଁକୁ ଆଣୁଥାନ୍ତି । ନିହାତି ଶିଶୁ, ପଦଚାରଣର ଶକ୍ତି ହୋଇନାହିଁ । ଖରାରେ ଶ୍ରାନ୍ତ, କ୍ଳାନ୍ତ, ମୁହଁରେ ଝାଳ ବିନ୍ଦୁବିନ୍ଦୁ । ମାମୁଁଘର ଗାଁ ଆଉ ମାଇଲିଏ ଥାଏ । ବାଟରେ ଗୋଟିଏ ଜଳପୂର୍ଣ୍ଣ ପାଟ ପଡ଼େ- ତା ନାଁ ଭୈରବ-ପାଟ; ଗ୍ରୀଷ୍ମ କାଳରେ ପଦ୍ମଫୁଲରେ ଭରା । ସେଇ ପାଟ କୂଳରେ ଥିବା ଝଙ୍କାଳିଆ ଗଛ ଛାଇରେ ଜେଜେ ମୋତେ ଓହ୍ଲେଇ ଥକ୍କା ମାରୁଥାନ୍ତି । ଘୁଷୁରିଆ ଜାତିର ସ୍ତ୍ରୀ ଲୋକଟିଏ ମୋତେ ଦେଖି ମୋର ଖବର ଜେଜେଙ୍କୁ ପଚାରେ । ମା' ଛେଉଣ୍ଡ, ପୁଣି ଖରାତରାରେ ଏତେ ବାଟ କାନ୍ଧରେ ବସି ଆସିଲାଣି । ଭୋକରେ ଆଉଟୁ ପାଉଟୁ ହୋଇଯାଉଥିବ । ମୋତେ କୋଡ଼ରେ ବସାଇ ଅତି ଆଦରରେ କ୍ଷୀର ପାନ କରାଏ । କ୍ଷୀର ଦେଇସାରି ମୁଣ୍ଡ ଓ ଦେହସାରା ସ୍ନେହରେ ଆଉଁସି ଦେଇ ତାଙ୍କ ପାଖରେ ଛାଡ଼ିଦିଏ । କେବଳ ଥରେ ନୁହେଁ, ଏକାଧିକବାର ଜେଜେଙ୍କ ମୁହଁରୁ ଏଇ କଥା ଶୁଣିଛି । ମନରେ କାହିଁକି ଏକ ଅଜଣା ଆନନ୍ଦ ଖେଳିଯାଏ । ସଂସାରରେ ଯେଉଁମାନେ ଶୈଶବରେ ବାପା ମା' ହରାଇଥାନ୍ତି, ବିଶ୍ୱଜନନୀଙ୍କର ଆଶୀର୍ବାଦ କିପରି ଭାବରେ ଅଲକ୍ଷ୍ୟରେ ଆସି ପହଞ୍ଚିଯାଏ, ଭାବିଲେ ଆନନ୍ଦ ଓ ବିସ୍ମୟରେ ଅନ୍ତର ଭରିଉଠେ ।

ବାଲ୍ୟାବସ୍ଥାରେ ନାନୀର ବିଭାଘର ହୋଇଯାଏ । ଓସ୍ତପାଳ ନିକଟସ୍ଥ ଅଲେଖପୁରର ଚୌଧୁରୀ ପରିବାରରେ । ଯୁବାବସ୍ଥାରେ ପ୍ରସୂତି ରୋଗରେ ସେ ସଂସାର ଛାଡ଼ି ଚାଲିଯାଏ । ନାନୀକୁ ମୁଁ ଦେଖିଛି, ତା ପାଖରେ କେତେ ଅଳିଅର୍ଦ୍ଦଳି କରିଛି । ରାଗରେ ତାକୁ ମାରିଛି, ସ୍ନେହରେ ହସି ହସି ସେ ସବୁ ସହିଛି ।

ମୋ ଉପର ଦୁଇଭାଇ ନିମ୍ନ ପ୍ରାଥମିକ ପଢ଼ା ସାରି ଓସ୍ତପାଳ ଚାଲିଯାନ୍ତି; ମାମୁଁ ଘରେ ରହିଯାଏ କେବଳ ମୁଁ । ରହିଯିବାର କାରଣ, ମୋର ଦୁଇଜଣ ମାମୁଁ । ବଡ଼ମାମୁଁ ଭୀମସେନ ସେ ସମୟରେ ଥିଲେ ଜଣେ ପ୍ରତିଭାଶାଳୀ ଛାତ୍ର । ପିଲାଦିନେ ଯେପରି ଦୁଷ୍ଟଥିଲେ, ପାଠରେ ସେହିପରି ଧୁରନ୍ଧର ଥିଲେ । ତାଙ୍କ ପ୍ରତିଭାରେ ଆମ ଗ୍ରାମବାସୀ, ବୁଢ଼ାମାଷ୍ଟେ ଓ ଆଖପାଖର ଲୋକେ ତାଙ୍କ ପ୍ରତି ଆକୃଷ୍ଟ ହୋଇ ନିଜ ନିଜର ପିଲାଙ୍କ ପଢ଼ାଦିଗରେ ବିଶେଷଧ୍ୟାନ ଦିଅନ୍ତି । ସେ ନିମ୍ନପ୍ରାଥମିକ ଓ ମାଇନର ବୃତ୍ତିଲାଭ କରି ଚାଲିଯାନ୍ତି ସତ୍ୟବାଦୀ ବନବିଦ୍ୟାଳୟକୁ । କେତେକ କାରଣରୁ ସେ ସତ୍ୟବାଦୀ ତ୍ୟାଗ କରି କଟକ ଭିକ୍ଟୋରିଆ ହାଇସ୍କୁଲରେ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ) ଅଧ୍ୟୟନ କରନ୍ତି । ତାଙ୍କର ସଙ୍ଗାତ ଥାନ୍ତି ଆନନ୍ଦପୁରର ସେକାଳର ଜଣାଶୁଣା ଧନୀବ୍ୟକ୍ତି ଫକୀର ତିଆଡ଼ୀଙ୍କ ପୁଅ ରତନ ତିଆଡ଼ୀ ।

ବଡ଼ମାମୁଙ୍କର ସେ ସମୟର ଚଳଣି ଅନୁସାରେ ବାଲ୍ୟାବସ୍ଥାରେ ବାଙ୍ଗରକୋଟାର (କୁଶଳେଶ୍ୱର ଦେଓଗାଁ ନିକଟବର୍ତ୍ତୀ) ବଳ ପରିବାରରେ ବିବାହ ହୋଇଯାଇଥାଏ । ପୁଆଣି ଘର ସାରି ମାମୁଁ କଟକ ଚାଲିଯାଆନ୍ତି । କିଛିଦିନ ପରେ ତାଙ୍କର ସଙ୍ଗାତ ରତନ ତିଆଡ଼ୀ ସମ୍ବାଦ ପଠାନ୍ତି ଯେ ସଙ୍ଗାତ ଆଉ ଇହଧାମରେ ନାହାନ୍ତି । କଟକରେ ସେତେବେଳେ ଭାରୀ ହଇଜା, ଶତଚେଷ୍ଟା ସତ୍ତ୍ୱେ ସେଇଥିରେ ସେ ଚାଲିଗଲେ । ଅଜା ପାଣିଢ଼ାଳେ ଧରି ସକାଳେ ପଡ଼ିଆକୁ ବାହାରିଥାନ୍ତି । ଏ ଖବର ଶୁଣି ସେ ଢ଼ାଳରେ ଢ଼ୋ କରି ମୁଣ୍ଡ ପିଟିଦିଅନ୍ତି । ଗାଁ-ସାରା କାନ୍ଦଣାର ଢ଼େଉ ଖେଳିଯାଏ । ଆଈମା'ଙ୍କର ଅବସ୍ଥା କହିଲେ ନ ସରେ । ମାମୁଙ୍କୁ ଆଦର୍ଶ କରି ଯେଉଁମାନେ ଏଠି ସେଠି ପଢୁଥିଲେ, ହଠାତ୍ ଯେପରି ସମସ୍ତଙ୍କ ପାଠପଢ଼ାରେ ଡ଼ୋରି ବନ୍ଧା ହୋଇଯାଏ । ସାନମାମୁଁ ବସନ୍ତ କୁମାରଙ୍କ (ଡାକ ନାମ ରଙ୍କ) ପଢ଼ା ପ୍ରତି ଅଜାଙ୍କର ସେତେ ଧ୍ୟାନ ରହେ ନାହିଁ । କିଛିକାଳ ପରେ ସାନ ମାମୁଁଙ୍କର ହାଟତିହିରେ ବିବାହ ହୁଏ । ସାନମାଇଁ ଆସନ୍ତି । ଅଜା, ଆଈ, ମାଉସୀ, ନାନୀ ଓ ବହୁ ସ୍ନେହ କାଙ୍ଗାଳୁଣୀ ସଂପର୍କୀୟାଙ୍କର ଆଦରରେ ମୁଁ ମାମୁଁଘରେ ବଢ଼େଁ । ମା' କ୍ଷୀରରୁ ତ ବଞ୍ଚିତ; ବାର୍ଲି ଓ ଗାଈ କ୍ଷୀର ଥିଲା ମୋର ଖାଦ୍ୟ । ଚମ୍ପା ମାଉସୀ (ସ୍ଥାନୀୟ ଶୈଳଙ୍ଗରେ ବିବାହିତା) କହେ : ମୁଁ କୁଆଡ଼େ ଶିଶୁ ଅବସ୍ଥାରେ ମୋଟାସୋଟା ଥିଲି । ଭୋକ ଲାଗିଲେ ମୁଁ ଚିତ୍କାର କରେଁ, ତୁଣ୍ଡରେ କିଛି ନ ପଡ଼ିବା ପର୍ଯ୍ୟନ୍ତ ଚିତ୍କାର ବନ୍ଦ ହୁଏ ନାହିଁ । ମୋର ଚିତ୍କାରର ଜଞ୍ଜାଳ ସତ୍ତ୍ୱେ ଅଜା ଆଈଙ୍କ ସ୍ନେହ ଓ ଅପୂର୍ବ ମାନବିକତାରେ ମାମୁଁଘରେ ମୋର ପାଳନ ପୋଷଣ ଚାଲେ ।

କିଛିଦିନ ପରେ ମାମୁଁଘରେ ମୋର ରହଣି ସଂପର୍କରେ ପ୍ରଶ୍ନଉଠେ । ବାପାଙ୍କର

ଇଚ୍ଛା- ବଡ଼ ଦୁଇଭାଇଙ୍କ ପରି ମୁଁ ବି ଓସ୍ତପାଳ ଫେରିଯାଏଁ; କିନ୍ତୁ ଅଜାଙ୍କର ହୃଦୟ ଅନ୍ୟ ପ୍ରକାର । ଅଜା ସମଦୁଃଖୀ, ସମ୍ବେଦନଶୀଳ, ଭଂଗା ଘରକୁ ସଜାଡ଼ିଲାବାଲା । ତାଙ୍କର ବିଚାରଶୀଳତା ଓ ଅତିଥିପରାୟଣତା ପାଇଁ କେବଳ ଗାଁରେ ନୁହେଁ, ଆଖପାଖ ଗାଁଗଣ୍ଡା, ଆନନ୍ଦପୁର, କେନ୍ଦୁଝରଗଡ଼ ଓ ସୁକିନ୍ଦାର ବନ୍ଧୁବାନ୍ଧବ ଗାଁ ମାନଙ୍କରେ ମଧ ସେ ବେଶ ଜଣାଶୁଣା । ଏହା ନ ହୋଇଥିଲେ ମା'ଙ୍କ ମୃତ୍ୟୁପରେ ମାଉସୀଙ୍କୁ ସେଠି ବିଭା ଦେଇନଥାନ୍ତେ, ପୁଣି ଚମ୍ପା ମାଉସୀଙ୍କୁ ସେଇ ଦୋବେଇ ବରରେ ବିଭା ଦେଇନଥାନ୍ତେ ।

ବଡ଼ମାମୁଁ ସମସ୍ତଙ୍କୁ ଦୁଃଖସାଗରରେ ଭସାଇ ଚାଲିଗଲେ । ପୁଆଣି ହୋଇ ଆସିଥିବା ମାଈଁ (ହାରାମଣି) ଜୀବନରେ ସ୍ୱାମୀ ସୁଖ କ'ଣ ଜାଣିଲା ନାହିଁ । ବିଧାତାର ନିଷ୍ଠୁର ନିର୍ଦ୍ଦେଶରେ ତା କପାଳର ସିନ୍ଦୂର ଚିରଦିନ ପାଇଁ ଲିଭିଗଲା । ତାର ଭଙ୍ଗାମନ, ଭଙ୍ଗା ସଂସାରରେ ବଞ୍ଚିବାର ସ୍ୱାଦ ପାଇଁ ଗୋଟିଏ ଚିନ୍ତା ଅଜାଙ୍କ ବିଚାରଶୀଳ ହୃଦୟରେ ଆଲୋଡ଼ନ ସୃଷ୍ଟିକଲା । ସେ ଚିନ୍ତାଟି ହେଉଛି : ଯେଉଁ ନାରୀଟି ଜୀବନସାରା ମାତୃତ୍ୱର ସୌଭାଗ୍ୟରୁ ବଞ୍ଚିତା, ତା' କୋଳରେ ମୋତେ ବସାଇ ତା'ର ନୀରସ ଶୁଷ୍କ ପ୍ରାଣରେ ବାତ୍ସଲ୍ୟର ଫଲ୍‌ଗୁଧାରା ସୃଷ୍ଟି କରିବା । ବାପା ଓ ଗାଁର ଅନ୍ୟ ଭଦ୍ରଲୋକମାନଙ୍କ ଉପସ୍ଥିତିରେ ତାଙ୍କର ବିଚାରଧାରା ପ୍ରକାଶ କରନ୍ତି । ଭଦ୍ରଲୋକମାନେ ଅଜାଙ୍କର ଏ ବିଚାର ବୋଧର ପ୍ରଶଂସା କରନ୍ତି; କିନ୍ତୁ ତୁଣ୍ଡ ଓ ଆଚରଣରୁ ଯେ ଏ ସଂପର୍କରେ ଆନ୍ତରିକ ସମର୍ଥନ ପ୍ରକାଶ ପାଏ, ତା' ନୁହେଁ । ମୁହଁରେ ପ୍ରତିବାଦ ନ କଲେ ମଧ ହୃଦୟରେ କେତେଜଣଙ୍କର କିନ୍ତୁ ରହିଯାଏ- ସମୟ ଓ ଅବସ୍ଥା ବିଶେଷରେ ବାକ୍ୟ-ବାଣରେ ବେଳେବେଳେ ତାର ନଗ୍ନ ସ୍ୱରୂପ ଫୁଟି ପଡ଼େ ।

ସେତେବେଳେ ମୋ ଅଜା ଆଉ ସାନ ଅଜାଙ୍କର (ଉପେନ୍ଦ୍ର) ପରିବାର ଏକ ଅନ୍ନରେ ଚଳୁଥାନ୍ତି । ସାନ ଅଜାଙ୍କୁ ମୁଁ ଦେଖିନାହିଁ, ଦେଖିଛି ସାନ ଅଜାଙ୍କର ମା'କୁ, ପୁଣି ଅଜାଙ୍କର ମା'କୁ । ଅଜାଙ୍କର ମା' ଅତି ବୁଢ଼ୀ ହୋଇଯାଇଥାଏ, କାମଦାମ କରିପାରେ ନାହିଁ; କିନ୍ତୁ ସାନ ଅଜାଙ୍କର ମା' ଶେଷ ନିଃଶ୍ୱାସ ଛାଡ଼ିଲା ପର୍ଯ୍ୟନ୍ତ କାମିକା ଥିବାର ଦେଖିଛି । ଆମ ଘରେ ପ୍ରତିଷ୍ଠିତ ଭାଗବତଗାଦି ଗୋସେଇଁଙ୍କ ପ୍ରତି ଅଜାଙ୍କର ମା'ର ଭାରୀ ଭକ୍ତି । ପୂଜାରୀ ଅପରାହ୍ଣରେ ଠାକୁର ଘର ଦ୍ୱାର ମୁହଁରେ ଯେତେବେଳେ ଭାଗବତ ପଢ଼େ, ଲକ୍ଷ୍ୟ କରିଛି; ବୁଢ଼ୀ ପ୍ରତିଦିନ ଆଗ୍ରହର ସହ ଶୁଣେ ।

ଅଜାଙ୍କର ସାନ ଭାଇଙ୍କର ଅକାଳରେ ପରଲୋକ ହୋଇଯିବାରୁ ଅଜା ତାଙ୍କ ପରିବାରର ଦାୟିତ୍ୱ ବହନ କରନ୍ତି । ପୁତୁରା ଲକ୍ଷ୍ମୀଧରଙ୍କୁ ମଣିଷ କରି ବିଭା କରାଚି ଠରାରେ । ପୁରୁଣା ସାଇରେ ବଳବଂଶକୁ ଜାଗା ନଅଣ୍ଟ ହେବାରୁ ଅଜା ନୂଆସାଇକୁ ଉଠିଆସିଥିଲେ । ଘରବାଡ଼ି ଯଥେଷ୍ଟ, ପ୍ରାୟ ତିନିଏକର ହେବ । ଅଜା ନୂଆସାଇରେ ଦୁଇଟି ଖଞ୍ଜାଘର ତିଆରି କରନ୍ତି । ଦକ୍ଷିଣ ପାଖ ଖଞ୍ଜାଟି ଟିକିଏ ସାନ, ଆରଟି ଟିକିଏ ବଡ଼ । ଘରର ପଶ୍ଚିମ, ଦକ୍ଷିଣ ଓ ପୂର୍ବକୁ ବିସ୍ତର ଜାଗା । ଆମ ବାଡ଼ିଆଡ଼ ପାଟ (ଘହୀର ଜଳଜମି) ଜମିକୁ ଲାଗି ଛୋଟ ପୋଖରୀଟିଏ । ପୋଖରୀ ହୁଡ଼ା ଚାରିପଟେ ତାଳ, କଣିଅର ଓ କରଞ୍ଜଗଛ ।

ବଡ଼ମାମୁଁଙ୍କର କଟକରେ ଦେହାନ୍ତ ହୋଇଯିବା ପରେ ଅଜାଙ୍କର ମନ ଭାଙ୍ଗିପଡ଼େ; କିନ୍ତୁ ନିଜ ପରିବାର ଓ ଗ୍ରାମବାସୀଙ୍କ ଶିକ୍ଷାପ୍ରତି ଥାଏ ତାଙ୍କର ଯଥେଷ୍ଟ ଆଗ୍ରହ । ଅଜା ପୁତୁରା ଲକ୍ଷ୍ମୀଧରଙ୍କୁ ଆନନ୍ଦପୁର ମଧ-ଇଂରାଜୀ ବିଦ୍ୟାଳୟରେ ପଢ଼ାଇବାରେ ଅବହେଳା କରିନାହାନ୍ତି । ବୁଢ଼ାମାଷ୍ଟରଙ୍କର ନିକଟବର୍ତ୍ତୀ ଜଳସୁଆଁ (କୁଶେଇ ନଦୀର ତୀରବର୍ତ୍ତୀ) ସ୍କୁଲ୍‌କୁ ବଦଳି ହୋଇଯିବାରୁ ତାଙ୍କ ତତ୍ତ୍ୱାବଧାନରେ ସାନମାମୁଁଙ୍କୁ (ବସନ୍ତ କୁମାର) ଜଳସୁଆଁରେ ଛାଡ଼ି ଦିଅନ୍ତି । କୈଶୋର ଅବସ୍ଥାରେ ଦୁଇ ମାମୁଙ୍କର ଆଗପଛ ହୋଇ ବିଭାଘର ହୁଏ । ଅଜା କ୍ରମଶଃ ଦୁର୍ବଳ ହୋଇ ଆସୁଥିବାରୁ ଘରଦ୍ୱାର ଓ ଚାଷବାସର ଦାୟିତ୍ୱ ବୁଝିବା ପାଇଁ ବଡ଼ମାମୁଁଙ୍କ (ଲକ୍ଷ୍ମୀଧର) ଉପରେ ନିର୍ଭର କରନ୍ତି । ସାନମାମୁଁ ମଧ ଶିକ୍ଷାରେ ଅଧିକ ଦୂର ଅଗ୍ରସର ନ ହୋଇ ଚାଷବାସ ବୁଝିବାରେ ଅଜା ଓ ବଡ଼ମାମୁଁଙ୍କୁ ସାହାଯ୍ୟ କରନ୍ତି । ବଡ଼ମାମୁଁଙ୍କର ତିନିପୁଅ ଓ ତିନିଝିଅ । ସାନ ମାମୁଁଙ୍କର ଗୋଟିଏ ପୁଅ (ରତ୍ନାକର) ହୋଇଥାଏ ।

ଘର ଭିତରେ ବଡ଼ମାମୁଁ ଧାନଚାଉଳ ଓ ଟଙ୍କା ପଇସାର ହିସାବ ବୁଝନ୍ତି । ବଡ଼ମାମୁଁଙ୍କର ପୁଅମାନେ ବଡ଼ମାମୁଁଙ୍କୁ ବାପା ଡାକୁଥିବାରୁ ମୁଁ ବି ବାପା ଡାକେଁ । ମୋର କ୍ଷୀଣ ସ୍ମୃତି ଯାହା ରହିଚି : ବଡ଼ମାମୁଁ ମୋତେ ଓସ୍ତପାଳକୁ ପଠାଇ ଦିଆନଯାଇ ନିଜ ବଡ଼ମାମୁଁଙ୍କର (ଭୀମସେନ) ପୁଅ କରି ଦେବାର ପ୍ରସ୍ତାବ ଅଜା ଉଠେଇ ଥିବାରୁ ବଡ଼ମାଇଁ (ଲକ୍ଷ୍ମୀଧରଙ୍କର ସ୍ତ୍ରୀ) ମନରେ ଅସ୍ୱସ୍ତି ଅନୁଭବ କରୁଥାନ୍ତି । ସମୟର ପ୍ରଭାବ ଓ ସ୍ୱାର୍ଥହେତୁକ ପାରିବାରିକ ମୋହ ହେତୁ ଅନ୍ୟମାନଙ୍କୁ ଯେ ଦୁର୍ବଳତା ସ୍ପର୍ଶ କରୁନଥାଏ, ତା' ନୁହେଁ ।

ଏକାନ୍ନବର୍ତ୍ତୀ ପରିବାରର ଅବସ୍ଥା ଯା' ହୁଏ, ସେଇଆ ହେଲା । ପରିବାର ଭିତରେ ପ୍ରାୟ ଅଧିକାଂଶ ଦିନ ସ୍ତ୍ରୀଲୋକଙ୍କ ଭିତରେ କଳି । ମୋର ଶିଶୁମନ ବଡ଼ ଅତିଷ୍ଠ ହୋଇ ଉଠୁଥାଏ ଏଥିରେ । ଶେଷରେ ବଡ଼ମାମୁଁ (ଲକ୍ଷ୍ମୀଧର), ଯାହାଙ୍କୁ ଛୋଉଣ୍ଡ ଅବସ୍ଥାରୁ ଅଜା ଲାଳନ ପାଳନ କରି ମଣିଷ କରିଥିଲେ, ମୁଣ୍ଡକୁ ହାତ ପାଇଯିବାରୁ ପୁଣି ବଡ଼ପୁଅ ତାଙ୍କ ଅଣ୍ଟାକୁ ଟାଣ କରିବାରୁ ଭିନେ ହେବାର ମହାନାଟକ ଆରମ୍ଭ କରିଦେଲେ । ଯେତେ ଦିନ ଏ ନାଟକର ଅଭିନୟ ଚାଲିଛି, ଘର ଭିତରେ ମୋର ଶିଶୁମନ ଶାନ୍ତି ପାଇନାହିଁ, ଅତିଷ୍ଠ ହୋଇପଡ଼ିଛି । ଭଦ୍ରଲୋକଙ୍କ କଥା ନ ମାନି ଦେହ ଓ ପାଟି ଜୋରରେ ମନଇଚ୍ଛା ଟିକ୍‌ଟିକ୍ କରି ସ୍ଥାବର ସଂପତ୍ତିର ଭାଗ ମାଡ଼ିବସିଲେ । ନିଜର ପିତୃପ୍ରତିମ ବଡ଼ବାପାଙ୍କ (ଅଜାଙ୍କ) ପ୍ରତି ସେ ଯେଉଁ ନିଷ୍ଠୁର ବ୍ୟବହାର କରିଛନ୍ତି ଓ ଅକଥ୍ୟ ଭାଷାରେ ଭର୍ତ୍ସନା କରିଛନ୍ତି, ତାହା ଏବେବି ମନେ ପଡ଼ିଲେ ଦେହ ଶୀତେଇ ଉଠେ ।

ଦେହ ଜୋର ଓ ପାଟି ନିକଟରେ ନ୍ୟାୟ ନିଶାପର ମୂଲ୍ୟ କିଛି ରହିଲା ନାହିଁ । ଅଜା ସାନ ଖଞ୍ଜା ଓ ସାନ ଖଳାଟିକୁ ନିଜ ଅଂଶରେ ନିଅନ୍ତି । ଘରବାଡ଼ି ସବୁ ସୁବିଧା ଅନୁସାରେ ଭାଗ ନ ହୋଇ ଇଚ୍ଛା ଓ ଜିଦ୍ ମୁତାବକ ଟିକି ଟିକି ହୋଇ ଭାଗବଣ୍ଟରା ହୁଏ । ପିଲାଦିନେ ଦେଖିଥିଲି : ଗୋଟାଏ ବଡ଼ ସିନ୍ଦୂକରେ ନାନା ଜିନିଷ ସହ ବହୁ ପୁରାଣ, ଅନ୍ୟାନ୍ୟ ଗ୍ରନ୍ଥ ଓ

ପତ୍ରପତ୍ରିକା ('ମୁକୁର', 'ଉତ୍କଳ ସାହିତ୍ୟ') ଥିଲା । ବହି ପତ୍ରପତ୍ରିକା ପ୍ରତି ମୋର ପିଲାଦିନୁ କାହିଁକି ଏକ ସହଜାତ ଶ୍ରଦ୍ଧା । ଅଜାଙ୍କୁ ବହିର ବାଣ୍ଡ ସଂପର୍କରେ ମୋର ବାଲ୍ୟସୁଲଭ ସରଳତାରେ ପଚାରିବାରୁ ତାଙ୍କଠାରୁ ଶୋଧନା ଖାଏଁ ।

ବର୍ଷା, ବୟାର ଚାଲିଗଲେ ମଧ ତାର ଧମସ କିଛି ସମୟ ରହିଲା ପରି ଭିନେ ହେବାର ରେଶଟା କାଳଛାୟା ଭଳି କିଛିକାଳ ରହିଗଲା । ସମୟ ବିଶେଷରେ ଯୁଦ୍ଧଂ ଦେହି ନାରୀ କଣ୍ଠର ସେ ଭଦ୍ରେତର ଭାଷାର ଉଦ୍‌କୂଳ ବନ୍ୟା ଯେ ମାଡ଼ି ନଆସେ, ତା' ନୁହେଁ ।

ସାନ ମାମୁଁଙ୍କର ଦୁଇଟି ପୁଅ ହୁଅନ୍ତି- ରତ୍ନାକର ଓ କରୁଣାକର । ପିଲାମାନଙ୍କୁ ଦେଖିଲେ ମୋତେ ଭାରୀ ଖୁସି ଲାଗେ । ଶିଶୁ ଅବସ୍ଥାରେ କରୁଣାକରର (ଡାକ ନାମ କର) ହାତ ଧରି ମୁଁ ଗଉଡ଼ସାଇ ପର୍ଯ୍ୟନ୍ତ ଚଲାଇ ନିଏ । ତା'ର ଗୋଟିଏ କାନରେ କଣାଟିଏ ଥାଏ । ସେ କଣାରେ ବେଳେବେଳେ କୌତୂହଳ ବଶତଃ ମୁଁ ସରୁ କାଠିଟିଏ ଗଳାଇ ଦିଏଁ ।

## ମୋ ଅଜା (ବାବା) :

ଭିନେ ହେବା ପରଠାରୁ ପରିବାରରେ ଏକପ୍ରକାର ଶାନ୍ତି ଥିଲେ ମଧ ବେଳେବେଳେ ଯେ ଶାନ୍ତି ଭଗ୍ନ ନହୁଏ, ତା ନୁହେଁ । ବିଶେଷତଃ ବଡ଼ମାଇଁ (ଯାହାଙ୍କୁ ମୋତେ ପୁଅ କରି ଦିଆଯାଇଥାଏ)ଙ୍କର ନିଜର ଭଉଣୀମାନଙ୍କ ପ୍ରତି ଆସକ୍ତି ଓ ଆନୁଗତ୍ୟ ହେତୁ ବେଳେବେଳେ ବୈଶାଖର ଝଡ଼ ବହିଯାଏ । ପୁତ୍ରରା ଦ୍ୱାରା ପ୍ରତାରିତ ହୋଇ ଅଜା ବହୁ ଅଶାନ୍ତି ଭୋଗିଛନ୍ତି । ସାନମାମୁଁ ଏକମାତ୍ର ପୁଅ ହୋଇଥିବାରୁ ଅଜା କିଛି କହନ୍ତି ନାହିଁ । ତାଙ୍କ ଉପରେ ଚାଷକାମର ଚୋର ଯେପରି ନ ପଡ଼େ ସେଥିପ୍ରତି ତାଙ୍କର ଧ୍ୟାନ । ନିଜେ ଲକ୍ଷ୍ୟ କରିଛି : ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ (ଡ଼ିସେମ୍ବର, ୧୯୪୪) ଅଜାଙ୍କର ହାତଗୋଡ଼ ସ୍ଥିର ହୋଇନାହିଁ । କାଠ ଚିରିବାଠାରୁ ଆରମ୍ଭ କରି କୋଡ଼ିହଣା, ଆଖୁ-ବାଡ଼ିରେ ପାଣିମଡ଼ା, ଧାନକଟା, ନଳିତାକଟା, ମୁଗ ଉପୁଡ଼ା, ବାଣୀକଟା ଇତ୍ୟାଦି ଚାଷର କୌଣସି ଗୋଟିଏ କାମ ନାହିଁ, ଯେଉଁଥିରେ ତାଙ୍କର ଅଭିଜ୍ଞତା ଓ ଶେଷ ପର୍ଯ୍ୟନ୍ତ ପାରଦର୍ଶିତା ନଥିଲା । ମୂଲିଆ ପନିଆ ଥିଲେ ମଧ ହାତଗୋଡ଼ ତାଙ୍କର ସ୍ଥିର ହୋଇନାହିଁ । ଆଜି ମାଇକ୍ ନ ହେଲେ ଆମର ଗତି ନାହିଁ । ପୂର୍ବରୁ ପାଲାବାଲା ଓ ଯାତ୍ରାର ଅଭିନେତାମାନେ ଯେତେବେଳେ ଗୀତ ଗାଉଥିଲେ ମାଇଲିଏ ଦୂରକୁ କଣ୍ଠସ୍ୱର ଶୁଣାଯାଉଥିଲା । ଅଜା ସକାଳୁ ମାଇଲିଏ ଦୂରସ୍ଥ ହରିଜନ ମୂଲିଆମାନଙ୍କୁ ଯେତେବେଳେ ବାଡ଼ି ପାଖରେ ଛିଡ଼ା ହୋଇ ଡାକ ଛାଡ଼ନ୍ତି, ସେତେବେଳେ ମୂଲିଆଙ୍କର ଜବାବ ନ ଦେଇ ଗତିନାହିଁ ।

ଅଜା ନିଜେ ଯେ କେବଳ ଖଟୁଥିଲେ ତା' ନୁହେଁ, ଆମ ଛୁଆମାନଙ୍କୁ ମଧ ନାନା କାମରେ ଶିକ୍ଷାନବିସ୍ ସୁଲଭ ତାଲିମ ଦେଉଥିଲେ । ଶୀତଦିନେ ଖଳାରୁ ଢୋଠିକୁ (ଅମାରକୁ) ଧାନ ବୋହିବା, ସକାଳୁ ମୁଗ ବିରି ଉପାଡ଼ିବା, ଧାନମଳା ସମୟରେ ବେଙ୍ଗଳା-ଯୋଚା

ବଳଦ ଅଡ଼ାଇବା, ଖରାଦିନେ ହଳିଆମାନଙ୍କ ପାଖକୁ ପାଣି-ତୋରାଣି ନେବା ଇତ୍ୟାଦି ନାନା କାମରେ ତାଲିମ୍ ଦେଉଥିଲେ ।

ନିଜ ପରିବାରକୁ ଛାଡ଼ି ଗାଁ, ସମାଜ ପୁଣି ଆନନ୍ଦପୁର ଓ କେନ୍ଦୁଝର ଗଡ଼ ପ୍ରଭୃତିରେ ବାବୁଭୟାଙ୍କ ସହ ସଂପର୍କ, ବାବୁଭୟା ଓ ଅପରିଚିତ ଗ୍ରାମାନ୍ତର ବ୍ୟକ୍ତିଙ୍କ ପ୍ରତି ଆତିଥ୍ୟ ଅଜାଙ୍କୁ ଏକ ଅନୁଷ୍ଠାନରେ ପରିଣତ କରିଥିଲା । ଗାଁ ଗଣ୍ଡାରେ ନିଶାପ ହେଲା ତ ଅଜାଙ୍କୁ ଡାକ । ସ୍କୁଲ୍‌ଘର ତିଆରି, ଛପର, ସ୍କୁଲ୍ କାଛଛଟା, ଲିପା, ବୋର୍ଡ଼ିଂ ଘର ତିଆରି ଓ ଛପର : ଏ ସବୁର ତତ୍ତ୍ୱାବଧାରକ ଅଜା । ସେତେବେଳେ ଆମ ପୁରୁଣିଆକୁ ଛାଡ଼ିଦେଲେ ବେଲବାହାଳି (ତୈଳିକ ସଂପ୍ରଦାୟ ପ୍ରଧାନ), ମଙ୍ଗଳପୁର, ଟୋଲଙ୍କପଡ଼ା, ହାତୀବନ୍ଧା, ଚାଟରା ଓ ହରିଡ଼ାପାଳ ଏଗୁଡ଼ିକରେ କେଉଁଠି ନି.ପ୍ରା. ସ୍କୁଲ୍ ନଥିଲା । ବିଭିନ୍ନ ଗାଁର ପିଲାମାନେ ପୁରୁଣିଆଁ ସ୍କୁଲ୍‌ରେ ନାମ ଲେଖାଇ ପଢୁଥିଲେ । ଶିକ୍ଷକମାନେ ରାଜ୍ୟ-ସରକାରଙ୍କଠାରୁ ଦରମା ପାଉଥିଲେ ମଧ ସ୍କୁଲ୍ ଘର ତିଆରି, ମରାମତି, ଛପର ଇତ୍ୟାଦିର ଦାୟିତ୍ୱ ଗାଁବାଲାଙ୍କର । ଏହି ସାଧାରଣ ଶିକ୍ଷାନୁଷ୍ଠାନଟିର ବିଭିନ୍ନ କାର୍ଯ୍ୟ କେବଳ ଅଜାଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲା । ପୁରୁଣା ସ୍କୁଲ୍‌ଘର ଭଙ୍ଗାଯାଇ ନୂଆ ସ୍କୁଲ୍ ଘର ତିଆରି ବେଳେ ଅଜାଙ୍କର ଖଟଣି ମୁଁ ନିଜେ ଆଖିରେ ଦେଖିଛି । ଏଥିପାଇଁ ଶେଷପର୍ଯ୍ୟନ୍ତ ଅଜା ରାଜସରକାରଙ୍କ ଦ୍ୱାରା ସ୍କୁଲ୍‌ର ସେକ୍ରେଟେରୀ ଭାବରେ ନିଯୁକ୍ତ ହୋଇଥିଲେ ।

ଆମ ସାଇର ଦକ୍ଷିଣ-ପୂର୍ବକୁ ଗୋଟିଏ ପୋତା ପୁରୁଣା ପୋଖରୀ ଥିଲା । ଅଜା ନିଜ ଖର୍ଚ୍ଚରେ ପୋଖରୀଟିକୁ ଖୋଳାଇ ଗ୍ରାମବାସୀଙ୍କର ଯେଉଁ ଉପକାର କରିଥିଲେ, ଆଜି ସୁଦ୍ଧା ତା'ର ସୁଫଳ ଭୋଗ କରୁଛନ୍ତି । ଲୋକଙ୍କ ତୁଣ୍ଡରେ ଏହା 'ମହନ୍ତ ପୋଖରୀ' ନାମରେ ପରିଚିତ । ଅଜାଙ୍କୁ ସମସ୍ତେ ମହନ୍ତ ଓ ନାତି ସ୍ଥାନୀୟ ଲୋକେ 'ମହନ୍ତବାବା' ବୋଲି ଡାକନ୍ତି । ଏହି ପୋଖରୀର ଉତ୍ତର ହୁଡ଼ାରେ ଅଲେଖ ସଂପ୍ରଦାୟର ଯେଉଁ ମଠଟି ତିଆରି ହୋଇଛି, ତାହା ହେଉଛି ଅଜାଙ୍କର ସମର୍ଥନ ତଥା ସହଯୋଗର ଫଳ । ମୁଁ ନିଜେ ଦେଖିଛି : କୁମ୍ଭୀପଟିଆ ବାବାଜୀଙ୍କୁ (ଶିବଦାସ) ଅଣାଇ ତାଙ୍କ ପାଇଁ ମଠଟିଏ ତିଆରି କରିଥିଲେ । ନିଜେ ମଧ ବାବାଜୀଙ୍କର ପଦସେବା କରିବାର ମୁଁ ବହୁବାର ଦେଖିଛି । ଗାଁର ଯାନିଯାତ୍ରା, ନ୍ୟାୟ ନିଶାପ, ହରିହାଟ, ଅଷ୍ଟପ୍ରହରୀ- କେଉଁଠି ତାଙ୍କର ହାତ ନାହିଁ, ଏପରି ନୁହେଁ ।

ଅଜାଙ୍କ ବ୍ୟକ୍ତିତ୍ୱର ଆଉ ଗୋଟିଏ ବୈଶିଷ୍ଟ୍ୟ ହେଲା ତାଙ୍କର ଚମତ୍କାର ହାସ୍ୟବୋଧ । ସେ ସମୟ, ସ୍ଥାନ, ପାତ୍ର ବିଶେଷରେ ଏପରି ସମୟେ ସମୟେ ପଦେ ପଦେ ମଜାକଥା କହନ୍ତି, ପାଖରେ ଥିବା ଲୋକେ ନ ହସି ରହିପାରନ୍ତି ନାହିଁ । ଯେଉଁମାନଙ୍କୁ କେନ୍ଦ୍ରକରି ହାସ୍ୟ ସୃଷ୍ଟି କରନ୍ତି, ସେମାନଙ୍କ ପ୍ରତି ତାଙ୍କ ଅନ୍ତରର ଶ୍ରଦ୍ଧା ଲକ୍ଷ୍ୟ କରିବାର ବିଷୟ । ନିଜର ଶଳା-ଭାଉଜ, ସମୁଦି, ସମୁଦୁଣୀ ଏପରିକି 'ପାତି' ନାମକ ଗୋଟିଏ ଗଉଡ଼ଘରର ବୋହୂ ପ୍ରତି ତାଙ୍କର ଗ୍ରାମ୍ୟ ପରିହାସ ବାକ୍ୟ ଆଜି ମନେପଡ଼ିଲେ ହସମାଡ଼େ-

''ଏ ଗାଁ ମାଙ୍କଡ଼, ସେ ଗାଁ ମାଙ୍କଡ଼
ପାତି ମାଙ୍କଡ଼ ।''

ନାତୁଣୀ ସ୍ଥାନୀୟା ବୋହୂଟି ଅଜାଙ୍କର ପହଳି ଶୁଣି ମୁରୁକି ମୁରୁକି ହସି ପକେଇ ଯାଏ । ସେହିପରି ଥରେ ବୁଢ଼ାମାଷ୍ଟ ପୁଅ ନବ କ'ଣ ଖବର ଦେବାକୁ ଅଜାଙ୍କ ପାଖକୁ ଆସିଲା । ଅଜା ପଚାରିଲେ- ମାଷ୍ଟେ କେଉଁଠି ଅଛନ୍ତି ?

ନବ - ବସାରେ

ଅଜା - ବସା ? କୁଆବସା ନା ବଣିବସା ?

ଏପରିକି ଗାଁବାଲା ଯାତ୍ରା କରୁଥିବା ବେଳେ ଯାତ୍ରା ଶେଷରେ ନିଜେ ମଧ ହାର୍‌ମୋନିୟମ୍ ଧରି ସା-ରେ-ଗା-ମା-ପା-ଧା-ନି-ସା ତାଳରେ ବଜାଇ କେଁ କାଁ କରନ୍ତି । ମୁଁ ଶୁଣିଛି : ଅଜା କୁଆଡ଼େ ବହୁ ପୂର୍ବରୁ ଆମ ଗାଁ ଯାତ୍ରାଦଳର ଥିଲେ ପୃଷ୍ଠପୋଷକ । ନିଜେ ଗାଁ-ଯାତ୍ରାଦଳ ସହ ଦୂରଦୂରାନ୍ତ ଗାଁକୁ ଯାଉଥିଲେ ।

ବେଳେବେଳେ ମଜାକଥା କହି ଆମ ପିଲାମାନଙ୍କୁ ଭୁଲାଇବା, ପିଲାଙ୍କ ମନରେ ଆତ୍ମ-ପ୍ରତ୍ୟୟ ଆଣିଦେବା ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ଆକର୍ଷଣୀୟ ଦିଗ । ଥରେ ଅଜା ମୋତେ ଗୋଟିଏ ସୁନ୍ଦର ବେତବାଡ଼ି ଆଣିଦେଲେ । କେଉଁଠୁ ପାଇଲ ବୋଲି ପଚାରିବାରୁ ସେ କହିଲେ- ସଡ଼କରେ ଆନନ୍ଦପୁର ଯାଉଥିଲି । ଗୋଟିଏ ଚିହ୍ନାଲୋକ ସହିତ ଭେଟ ହେଲା । ସେ ପଚାରିଲା- ମହନ୍ତେ ! କୁଆଡ଼େ ଯାଉଛ କି ? ଅଜା କହିଲେ- ଆନନ୍ଦପୁର । ଚିହ୍ନାଲୋକ କହିଲା- ଆଚ୍ଛା, ଏଇ ବେତଟି ନିଅ, ଗାଙ୍ଗୁକୁ ଦେବ । ଅଜାଙ୍କ ତୁଣ୍ଡରେ ମୋର ଡ଼ାକ ନାମ ଗାଙ୍ଗୁ । ଓସ୍ତପାଳର ବୟସ୍କା ସ୍ତ୍ରୀ ଲୋକମାନଙ୍କ ତୁଣ୍ଡରେ ମୋର ଡାକ ନାମ 'ବୋଡ଼ା', ଜନ୍ମବେଳେ ବୋଡ଼ା ସାପ ପରି ହେଉଥିଲି ବୋଲି । ମୋର ପିଲାମନ ଏହାର ସତ୍ୟତା ସଂପର୍କରେ କିଛି ପ୍ରଶ୍ନ କରେନା, ବରଂ ଆନନ୍ଦ ପାଏଁ । ବେଳେବେଳେ ତାଙ୍କ ସଙ୍ଗରେ ମୁଁ ଅନ୍ୟ ଗାଁକୁ ବୁଲି ବାହାରି ଯାଏଁ । ବାଟସାରା ତାଙ୍କର ମଜା କଥାରେ ବାଟଚଲା ଜଣାପଡ଼େନା ।

ତାଙ୍କର ଚମତ୍କାର ହାସ୍ୟବୋଧ ସତ୍ତ୍ୱେ ତାଙ୍କର ଶୃଙ୍ଖଳା ଓ ଶିଷ୍ଟାଚାରବୋଧ ମନରେ ଭୀତି ସଞ୍ଚାର କରେ । ସଂଧ୍ୟା ହେବାମାତ୍ରେ ପ୍ରାର୍ଥନା ଗାଇ ପିଲାମାନଙ୍କର ପାଠପଢ଼ାରେ ବସିଯିବା : ଏଥିପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି । ପଢୁଁପଢୁଁ ଦୈବାତ୍ ତନ୍ଦ୍ରା ଆସିଗଲେ ପିଠିରେ ଦୁମ୍‌ଦାମ୍ ବସିଯାଏ । କଥା କହିଲାବେଳେ ହିଁ ହିଁ ହସିଲେ ଅଜା ଭାରୀ ଡାଗିବା କରନ୍ତି; ପୁଣି ଭାତ ଖାଇବାବେଳେ ଥାଳି ଚାରିପଟେ ଭାତ ପଡ଼ିଲେ 'ଲକ୍ଷ୍ମୀଛଡ଼ା' ଗାଳିରୁ ତ୍ରାହି ନାହିଁ । ଗୁରୁଜନମାନେ ବସିଥିବାବେଳେ ସେମାନଙ୍କୁ ଉପଯୁକ୍ତ ସମ୍ମାନ ନ ଦେଖାଇ ଚାଲିଯିବା ତାଙ୍କ ଦୃଷ୍ଟିରେ ଶିଷ୍ଟାଚାର ବିରୁଦ୍ଧ । ଦାଣ୍ଡ ପିଣ୍ଡାରେ ଅଜା ଓ ଅନ୍ୟ ଗୁରୁଜନ ବସିଥିଲେ, ମୁଁ ଲକ୍ଷ୍ୟ କରିଛି, ଅନ୍ୟ ବୟୋକନିଷ୍ଠ ବ୍ୟକ୍ତି, ହରିଜନ ଶ୍ରେଣୀର ଲୋକ ନଇଁ ନଇଁ ହାତ ଆଡ଼େଇ ନୀରବରେ ଚାଲିଯାଉଥିବେ ।

ଯାନିଯାତ୍ରା, ପର୍ବପର୍ବାଣି ବାଦେ ଅନ୍ୟ ଦିନମାନଙ୍କରେ ପିଲାଙ୍କ ପକ୍ଷେ ତାସ ଖେଳିବା ଏକ ଗୁରୁତର ଅପରାଧ । ମୁଁ ଦିନେ ଦେଖିଛି : ଶ୍ୟାମଭାଇ ଓ ଆଉ କେତେଜଣ ବଉଳଗଛ ମୂଳେ ତାସ ଖେଳୁଥିଲେ । ଅପ୍ରତ୍ୟାଶିତ ଭାବରେ ଅଜା କେଉଁଆଡ଼ୁ ପହଞ୍ଚିଯାଇ ହାତରେ ଧରିଥିବା ବାରିସିରେ ତାସ ମୁଠାକୁ ହାଣି ଦିଅନ୍ତି । ପିଲାମାନେ ଭୟରେ ଯେ ଯେଉଁଆଡ଼େ ଛୁ । ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଓ ତାଗିଦାରେ ମୋର ଶିଶୁମନ ବେଳେବେଳେ ବିରକ୍ତ ହୋଇଉଠେ ।

ଦଣ୍ଡର ନିଶ୍ଚିତ ସମ୍ଭାବନା ଜାଣି ବେଳେବେଳେ ଅଜାଙ୍କ ଶାସନର ପରୋକ୍ଷ ଅବମାନନା ଯେ କରାନଯାଏ, ତା ନୁହେଁ । ବିଶେଷତଃ ଖରାଦିନେ ଖାଇପିଇ ସାରି ଅଜା ଦିନେ ଦିନେ ଆମକୁ ଜବରଦସ୍ତ ଧରି ନେଇ ଗୋଟିଏ ଘରେ ଶୁଆଇ ନିଜେ ଶୁଅନ୍ତି । ମୁହୂର୍ତ୍ତକ ଭିତରେ ତାଙ୍କର ଭାତ-ନିଦ ଚାଲିଆସେ । ଆମକୁ ନିଦ ହେବ ବା କାହିଁକି । ଖାଲି ଘାଲେଇ ଶୋଇବାର ଛଳନା କରୁଁ । ଟିକିଏ ଘୁଙ୍ଗୁଡ଼ି କାନରେ ବାଜିବାମାତ୍ରେ ଆମେ ସଦଳବଳେ ଅତି ଧୀରେ କବାଟ ସାମାନ୍ୟ ମେଲା କରି ଚଂପଟ ଦେଉଁ- ସେଇ ପ୍ରଚଣ୍ଡ ଖରାରେ, ସିଧା ଆମ୍ବତୋଟାକୁ । ପୋପଡ଼ ମାରି କଞ୍ଚା ଆମ୍ବ ଖିଆଚାଲେ । ଛାଇଲେଉଟ ବେଳକୁ ଲୁଚି ଲୁଚି ବାଡ଼ି ପଛଆଡ଼ୁ ଚୁପ୍ କରି ଘର ଭିତରେ ଭଲ ପିଲାଟି ପରି ପଶିଯାଉଁ । ଚାରିଟାବେଳେ ଚାଲେ ପଖାଳ ଖିଆ । ତା'ର କରାମତି ପ୍ରକାଶ ପାଏ ସନ୍ଧ୍ୟା ପାଠପଢ଼ା ବେଳେ । ତନ୍ଦ୍ରା ଘୋରରେ ଦେହ-ଝୁଲା ଆରମ୍ଭ ହୋଇଯାଏ; ଏଣେ ପିଠିରେ ବସିଯାଏ ଉତ୍ତମ ମଧ୍ୟମ । ଦଣ୍ଡ ସତ୍ତ୍ୱେ ଏହାର ଯେ ପୁନରାବୃତ୍ତି ନ ହୁଏ, ତା ନୁହେଁ ।

ଅଜାଙ୍କ ସଂପର୍କରେ ଆଉ ଏକ କାହାଣୀ ଲୋକ-ମୁଖରୁ ଶୁଣାଯାଏ, ଯାହାକି ତାଙ୍କୁ ସରକାରୀ ମହଲରେ ବିଶେଷ ପରିଚିତ କରାଇ ଦେଇଥିଲା । ଘଟଣାଟି ହେଉଛି : ବହୁ ପୂର୍ବରୁ ଆମର ମଇଁଷିପଲ ଥିଲା । ସେଇ ପଲ ମଧ୍ୟରୁ ଗୋଟିଏ ବିଜାର-ପଣ୍ଡା ଜୋର ଜବରଦସ୍ତ ଧରି ନେଇ ପଞ୍ଚୁପଲ୍ଲୀ ଗାଁ ବାଲାମାନେ ଚଣ୍ଡୀଙ୍କ ପାଖରେ ବଳି ଦେବାକୁ ମସୁଧା କରନ୍ତି । ସେମାନେ ଆସି ବଳାତ୍କାର କରିବାରୁ ମଇଁଷିଆଳ ବାଧା ଦିଏ ଏବଂ ଅଜାଙ୍କ ପାଖକୁ ଅନ୍ୟ ଲୋକ ହାତରେ ଖବର ପଠାଏ । ଅଜା ପହଞ୍ଚିଲା ବେଳକୁ ପଞ୍ଚୁପଲ୍ଲୀବାଲା ଏତେ ଉତ୍ତ୍ୟକ୍ତ ହୋଇଥାନ୍ତି ଯେ ହଠାତ୍ ପ୍ରଶ୍ନକଲେ- ବଳି ପାଇଁ ପଣ୍ଡା ଦେବୁ କି ନାହିଁ ? ଅଜା ବଜ୍ର ଗମ୍ଭୀର କଣ୍ଠରେ କହନ୍ତି- ନାଁ ! ସେମାନେ ଆହୁରି ଅପମାନିତ ଓ ଉତ୍ତ୍ୟକ୍ତ ହୋଇ ଚିତ୍କାର କରି ଉଠିଲେ- ପଣ୍ଡା ନ ଦେଲେ ତତେ ବଳି ଦେବୁଁ । ଅଜା କହିଲେ- ମତେ ବଳିଦେବ ? ତାକତ ଅଛି ତ ?

ପଞ୍ଚୁପଲ୍ଲୀ ବାଲା ଆହୁରି ଉତ୍ତ୍ୟକ୍ତ ହୋଇ 'ଜୟ ମା ଚଣ୍ଡୀ' ଉଚ୍ଚାରଣ କରି ଅଜାଙ୍କ ବେକରେ ଫୁଲମାଳ ପକାଇ ଧରି ନେଇଗଲେ । ଆମ ଗାଁ ଚୌକିଦାର ରାମ ଜେନା ଏ ଖବର ପାଇ ଆଖି ପିଛୁଳାକେ ଆନନ୍ଦପୁର-ଥାନାକୁ ଛୁଟିଯାଏ । ଏସ୍.ଡ଼ି.ଓ.ଙ୍କ କାନରେ ଏହା ବାଜିଲା ମାତ୍ରେ ଥାନାରୁ କେତୋଟି ସିପାହୀ ରାମଜେନା ସହ ପଞ୍ଚୁପଲ୍ଲୀ ଉଦ୍ଦେଶ୍ୟରେ ଦୌଡ଼ ଦିଅନ୍ତି । ଅଜାଙ୍କୁ ଧମକଚମକ ଦିଆଯାଇ ଚଣ୍ଡୀଙ୍କ ପାଖରେ ପ୍ରୋକ୍ଷଣ କରାଯାଉଥାଏ ।

ସିପାହୀମାନେ ପହଞ୍ଚିଯାଇ ପଞ୍ଚୁପଲ୍ଲୀବାସୀଙ୍କୁ ହଳହଳ କରି ବାନ୍ଧି ନେଇ ଆନନ୍ଦପୁର ଥାନାକୁ ନେଇଯାଆନ୍ତି । ବିଚାର ପାଇଁ ଏସ୍.ଡ଼ି.ଓ.ଙ୍କ ଆଦେଶରେ ଜେଲ ହାଜତରେ ଭର୍ତ୍ତି କରନ୍ତି । ସେମାନଙ୍କୁ ବେତମାଡ଼ ଦିଆଯାଇ ଜୋରିମାନା କରାଯାଇ ସତର୍କ କରି ଦିଆଯାଏ- ଭବିଷ୍ୟତରେ ଆଉ କେବେ ଯେପରି ଏହାର ପୁନରାବୃତ୍ତି ନ ହୁଏ ।

ନ୍ୟାୟ ନିଷ୍ଠାପରେ ଅଜାଙ୍କର ନିରପେକ୍ଷ ବିଚାର, ତାଙ୍କର ନ୍ୟାୟ ବୋଧ, ପରୋପକାର ଦୃଷ୍ଟିଭଙ୍ଗୀ, ଅତିଥି ପରାୟଣତା, ଶିକ୍ଷାପ୍ରୀତି, ବିଚାରଶୀଳତା ଓ ମାନବିକ ଦୃଷ୍ଟିଭଙ୍ଗୀ ହେତୁ ସେ ସବୁ ଶ୍ରେଣୀର ଲୋକଙ୍କର ଶ୍ରଦ୍ଧା ଓ ସମ୍ମାନଭାଜନ ହୋଇଥିଲେ ।

ଆଉ ଆଈ (ମାମା) ମୋର ସ୍ନେହ, କରୁଣା, କୋମଳତା ଓ ସହିଷ୍ଣୁତାର ମୂର୍ତ୍ତିମନ୍ତ ବିଗ୍ରହ । ତାକୁ ମୁଁ ଜେଜେମା ଡାକେ । ପିଲାଦିନେ ପୁରୁଣିଆଁ ଓ ଆଖପାଖ ଗାଁରେ ଜେଜେମା'କୁ 'ବୁଇ' ଡାକନ୍ତି । ବୁଇ ଶବ୍ଦ ବୃଦ୍ଧା ଶବ୍ଦରୁ ଉତ୍ପନ୍ନ, ଯେପରି ଆର୍ଯ୍ୟା ଶବ୍ଦରୁ ଆଈ ଶବ୍ଦ ଉତ୍ପନ୍ନ । ଆଈ ନା ଲାବଣ୍ୟ (ଗାଉଁଲି ଭାଷାରେ ନାବାଣ୍ୟ) । ତା' ଭାଇ ବଡ଼ ଅଜା (ବ୍ରଜକିଶୋର ନାୟକ) ପରି ଟିକିଏ ବଙ୍କେଇ ଚାଲିଲା ପରି ଜଣାଯାଏ । ସେଇ ଗାଁର ନାହାକ (ନାୟକ) ସାଇ ଝିଅ । କାନରେ ନୋଳି, ନାକରେ ନାକ ଫୁଲଟିଏ ପିନ୍ଧିଥାଏ । ନାକ ଚିରି ନେବାରୁ ନୋଥ ବହୁତ ଦିନ ହେଲା କାଢ଼ି ଦେଇଥିଲା । ହାତରେ ମୋଟା ନାଲି କାଚ କେଇପଟ । ରାଗ ନାହିଁ, ଛଳ ନାହିଁ । ବୋହୂଙ୍କ ଉପରେ କର୍ତ୍ତୃତ୍ୱ ଜାହିର କଲାଭଳି ପ୍ରବୃତ୍ତି କିମ୍ବା ପରୁଷ କଥା ନଥାଏ । କଳିକଜିଆର ପାଖ ପଶେନା । ମୁହଁରୁ ପଦେ ହେଲେ ରୋଷ, ଅଭିମାନ ବା କର୍କଶ କଥା ବାହାରିବାର କେହି ଶୁଣି ନାହିଁ । ଚାଲି, କଥାବାର୍ତ୍ତା ଯେମିତି ଧୀର, ସେମିତି ଶାନ୍ତ । ମୋ ପ୍ରତି ତା'ର ସ୍ନେହ ଅସୀମ । ସେ ଯେଉଁଆଡ଼େ ଯାଏ, କାୟାର ଛାୟା ପରି ତା' ପଛେ ପଛେ ମୋର ଦୌଡ଼ । ଦୈବାତ୍ ମୋତେ ସାଙ୍ଗରେ ନ ନେଇ ସାଇର କା' ଘରକୁ ଚାଲିଯାଇଥିଲେ ମନେମନେ ଖୋଜିହୁଏ ଏବଂ ତା'ର କାଚ ଝୁଣ୍ଟୁଝୁଣ୍ଟୁର ପରିଚିତ ଆବାଜ ମୋ କାନରେ ବାଜିଗଲେ ମାମା ଅଛି ବୋଲି ଠଉରେଇ ନିଏଁ । ବେଳେବେଳେ ଅବୁଝା ହୋଇ ତାକୁ ମାରେ ।

ଘର ଭିତରେ ଅଜାଙ୍କର ସବୁ ରାଗ, ସବୁ ତାନମାନ ମାମା ଉପରେ ଛିଡ଼େ । ମାମା ଯୁକ୍ତିତର୍କ କରିବ କ'ଣ, କେବଳ ନିଃସହାୟାର ବାଣୀ ପଦେ ତା' ତୁଣ୍ଡରୁ ବାହାରିବାର ମୁଁ ଅନେକ ବାର ଶୁଣେ- 'ମନି ନେଇ କି ଗନି ନେଇ ।' ବାସ୍ ଏତିକି ମାତ୍ର । ଅନ୍ୟ ସ୍ତ୍ରୀଲୋକଙ୍କ ପରି ଗୁଡ଼ାଏ ଆବୁରୁ ଜାବୁରୁ କହି ଅଯଥା ଜିହ୍ୱାର ଅସମ୍ମାନ କରେନା ବା ଶକ୍ତିର ଅପଚୟ କରେନା ।

ମୋର ବାଲ୍ୟ ଚପଳତା ସୁଲଭ ଦୁଷ୍ଟାମି ହେତୁ କିଛି ଭୁଲ କଲେ ଦାଦାଙ୍କ (ସାନମାମୁଁ) ହାତରୁ ମାଡ଼ ଖାଏଁ । ମାଡ଼ ମୁହୂର୍ତ୍ତରେ ମାମା ଦୌଡ଼ି ଆସି ଅଭିମାନରେ 'ଅଲେଇଖିଣା' (ଅଲକ୍ଷଣା) କହି ତା' ହାତ ପାପୁଲିରେ ଦୁଇଚାରି ଚାପଡ଼ା ପିଠିରେ ବସେଇ ଦିଏ, ତେଣେ କାନ୍ଦେ ।

ମାମା ଯେତେବେଳେ ବେମାର ପଡ଼େ, ମୁଁ ତା ପାଖରେ ଭାଗବତ ବୋଲେଁ । ଆମ ଘରର କେତେଜଣଙ୍କର ଅସୁସ୍ଥତା ଓ ମୃତ୍ୟୁଶଯ୍ୟା ନିକଟରେ ଅଜା, ଦାଦା ପ୍ରଭୃତି ମୋତେ ଭାଗବତ (ଏକାଦଶ ସ୍କନ୍ଧ) ବୋଲା କରାନ୍ତି, କାରଣ କୋମଳ, ମଧୁର କଣ୍ଠରେ ନବାକ୍ଷରୀ ଭାଗବତ ବୋଲିପାରେଁ ବୋଲି ଅଧିକାଂଶ ତାରିଫ୍ କରନ୍ତି । ଆନନ୍ଦପୁର ମାଇନର୍ ସ୍କୁଲ୍‌ରେ ପଢ଼ିବାବେଳେ ମୁଁ ହଷ୍ଟେଲ୍‌ରେ ରହୁଥିଲି । ମାସିକିଆ ଚାଉଳ ଖର୍ଚ୍ଚ କେତେବେଳେ ଅଜା ନେଇ ଯାଆନ୍ତି, କେତେବେଳେ ଭାରିଆ ହାତରେ ପଠାଇ ଦିଅନ୍ତି । ସେତେବେଳେ ବିଶ୍ୱାସୀ ଭାରୁଆ ଚାଉଳ ନେଇ ଯାଉଥିଲେ ମୋ ହାତଖର୍ଚ୍ଚ ପାଇଁ ମାମା ଚାରିଅଣା, ଆଠଅଣା ପଠାଇ ଦିଏ । ମାମାର ସ୍ନେହ- ଲାଞ୍ଛିତ ଖୁଚୁରା ପଇସା କେତୋଟି ହାତରେ ଦେଲାମାତ୍ରେ ମୁଁ ଆନନ୍ଦରେ ନାଚି ଉଠେଁ । ମାମା, ମାଉସୀ, ନାନୀ ପ୍ରଭୃତିଙ୍କ ସ୍ନେହ ସୋହାଗ ହେତୁ ମୁଁ ଯେ ମା'ଛେଉଣ୍ଡ, ଏ ଧାରଣା ମୋ ମନରେ କେବେ ଆସେନା । ମାମା ଥରେ ଭୀଷଣ ଜରରେ ପଡ଼ିବାର ଶୁଣିଲି । ଆନନ୍ଦପୁର ଦଧିବାମନ ଠାକୁରଙ୍କ ଠାରେ ତା'ର ଆରୋଗ୍ୟ ପାଇଁ ପ୍ରାର୍ଥନା କରି ଠାକୁରଙ୍କ ତୁଳସୀ-ଧଣ୍ଡାମାଳ ନେଇ ମୁଁ ଗାଁକୁ ଗଲି । ମାମା ବେକରେ ପିନ୍ଧାଇ ଦେଇ କହିଲି- ଏ ଦଧିବାମନଙ୍କ ଧଣ୍ଡାମାଳ, ଭଲ ହୋଇ ଯିବୁ । ଅଳ୍ପଦିନେ ତା' ଦେହ ଭଲ ହୋଇଯାଇଥିଲା ।

ମାମା ତା' ପ୍ରାଣର ସମସ୍ତ ସ୍ନେହ ଅଜାଡ଼ି ଦେଇ ମୋ ପାଇଁ ଯେ ଜୀବନ ଉତ୍ସର୍ଗ କରି ଦେଇଥିଲା, ଯା'ର ନିରବଚ୍ଛିନ୍ନ ସେବା ଓ ସହିଷ୍ଣୁତାରେ ମୁଁ ନୈସର୍ଗିକ ମାତୃ ସ୍ନେହ-ସୁଖ ଉପଲବ୍ଧି କରିଥିଲି, ତା'ର ଦେହାନ୍ତ ବେଳକୁ ତାକୁ ମୁଁ ଦେଖିପାରିଲି ନାହିଁ । କେନ୍ଦୁଝର ଗଡ଼ ଗିବ୍‌ସନ୍ ହାଇସ୍କୁଲ୍‌ର ନବମ ଶ୍ରେଣୀର ଛାତ୍ର ଥାଏଁ ସେତେବେଳେ । ମାମା ଆଉ ନାହିଁ ବୋଲି ଶୁଣିଲି । ନିର୍ଜ୍ଜନରେ ନୀରବରେ ବସି କେତେ ଅଶ୍ରୁ ମୁଞ୍ଚନ କଲି । ଆଜି ଜୀବନର ସାୟାହ୍ନରେ ମାମାର ସ୍ମୃତି ଚିତ୍ତପଟରେ ଜାଗରୂକ ହେଲେ ଆଖିର ଅଶ୍ରୁଧାର ବାଧା ମାନେନା । ଭୁକ୍ତଭୋଗୀ ବ୍ୟାସକବି ଫକୀରମୋହନଙ୍କର ଗୋଟିଏ ବାକ୍ୟ ମୋ ପ୍ରାଣକୁ ଆଲୋଡ଼ିତ କରିଦିଏ, ସେଇଟି ହେଉଛି :-

''ପାଳେ ତ ବାପର ମାଆ
ପାଳେ ତ ମାଆର ମାଆ ।''

ମାମା କାହିଁ କେଉଁ କାଳରୁ ଚାଲିଗଲାଣି; ତା'ର ଅମୂଲ୍ୟ ସ୍ମୃତି କେବଳ ଇହକାଳରେ ନୁହେଁ, ପରକାଳରେ ମଧ୍ୟ ମୋର ଗଚ୍ଛିଧନ ହୋଇ ରହିବ ।

## ଆମ ଗାଁ :

''ଛୋଟ ମୋର ଗାଆଁଟି
ଭୂଗୋଳ ପୋଥି ପତରେ ପଛେ ନ ଥାଉ ତାର ନାଆଁଟି ।''

(ସଚ୍ଚି ରାଉତରାୟ, ପଲ୍ଲିଶ୍ରୀ)

ପ୍ରକୃତରେ ଛୋଟ ହେଲେ କ'ଣ ହେବ, ଗାଁଟି ଆମର ଆଖପାଖରେ ଜଣାଶୁଣା । ଆଉ ଯାହା କାରଣ ଥାଉ ବା ନ ଥାଉ, ଶିକ୍ଷା ହେତୁ ଯେ ଗାଁଟିର ମହତ୍ତ୍ୱ ବଢ଼ିଛି, ଏଥିରେ ସନ୍ଦେହ ନାହିଁ । ଗାଁଟିକୁ ସେ ଅଞ୍ଚଳର ଛୋଟକାଟର ଅକ୍ସଫୋର୍ଡ଼ କହିଲେ ଚଳେ । ଘରଘରକା ସାକ୍ଷର ଓ ଶିକ୍ଷିତ; ଏପରିକି ଚୁଲିଚାଳ ନଥିବା ଲୋକ ମଧ୍ୟ ଶିକ୍ଷିତ ।

ଗାଁଟି ଆମର ଖଣ୍ଡାୟତ ବହୁଳ ବସତି; ବ୍ରାହ୍ମଣଘର ଗୋଟିଏ, ଶଅର ଘର ଗୋଟିଏ, ଭଣ୍ଡାରିଘର ଦୁଇଟି, ତନ୍ତୀଘର ତିନୋଟି, ଗଉଡ଼ ଘର ତିନୋଟି, ଦୁଇଟି ସାଇରେ କେତୋଟି ହରିଜନ ଘର । ଲୋକସଂଖ୍ୟା ପ୍ରାୟ ବାରଶହ ମଧ୍ୟରେ । ବୁଢ଼ାବୁଢ଼ୀଙ୍କ ଠାରୁ ଶୁଣିଛୁଁ : ଆମେ ସବୁ ଖୋର୍ଦ୍ଧା ଆଡୁ ଲଳିତଗିରି, ଆଲମଗିରି ହୋଇ କେନ୍ଦୁଝରର ଆନନ୍ଦପୁର ଅଞ୍ଚଳକୁ ଉଠି ଆସିଛୁଁ । ଆମ ଭିତରେ ଅଧିକାଂଶଙ୍କର ସଂଜ୍ଞା (ସାଙ୍ଗିଆ) ବଳ; ଅବଶ୍ୟ ପୂର୍ବରୁ ଲେଖୁଥିଲେ ଭୋଳ । ଅନ୍ୟ ସଂଜ୍ଞାଗୁଡ଼ିକ ହେଉଛି : ରାଉତ, ନାୟକ, ସ୍ୱାଇଁ, ଚନ୍ଦ, ଚକ୍ର ଓ ପରିଡ଼ା । କିମ୍ବଦନ୍ତୀ ପ୍ରଚଳିତ ଅଛି : ସେ ସ୍ଥାନ ଥିଲା ଘୋର ଜଙ୍ଗଲମୟ । ଆମ ବଳବଂଶର ପୂର୍ବପୁରୁଷ ସେଠାରେ ବାସ କରୁଥିବା କୋଳିତା ଚଷାମାନଙ୍କୁ ବିତାଡ଼ିତ କରି ସେ ସ୍ଥାନରେ ବସବାସ କଲେ; ସେମାନେ ଅପର କେନ୍ଦୁଝର ଓ ଢେଙ୍କାନାଳ ଆଡ଼କୁ ଚାଲିଗଲେ ।

ପରିହାସ ଛଳରେ କେତେକ କହନ୍ତି : ଆଗେ ପୁରୁଣି ଶାଗ ପ୍ରଚୁର ମିଳୁଥିବାରୁ ଗାଁଟି ନାଁ ପୁରୁଣିଆ । ଯାଜପୁର-କେନ୍ଦୁଝର ରୋଡ଼ରୁ କେଉଁଝରକୁ ଯେଉଁ ରାସ୍ତା ଯାଇଛି (ଏବେ ହୋଇଯାଇଛି ଜାତୀୟ ରାଜପଥ), କୁଶେଇ ନଦୀ ପାର ହେଲେ ବେଲବାହାଳି; ତାର ଉତ୍ତରକୁ ଦୁଇ ଫର୍ଲଙ୍ଗ ଦୂରରେ ପୁରୁଣିଆଁ । ଦୁଇ ଗାଁ ମଝିରେ ମସ୍ତବଡ଼ ଆମ୍ବତୋଟା ପଡ଼େ ।

ଗାଁର ପଶ୍ଚିମକୁ ସଡ଼କ ପାର୍ଶ୍ୱରେ ବାରି ଗାଁ । ଉତ୍ତର ପଶ୍ଚିମକୁ ବୈତରଣୀର ଭୀମକୁଣ୍ଡ ଜଳସେଚନ ପ୍ରକଳ୍ପର ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର୍ ଅଫିସ୍, ଯାହାକି ଅଳ୍ପ କେତେବର୍ଷ ପୂର୍ବେ ଥିଲା ଜଙ୍ଗଲ (ଶାଳପଡ଼ା ଜଙ୍ଗଲ ନାମରେ ପ୍ରସିଦ୍ଧ) । ବେଲବାହାଳିରୁ ଆମ ଗାଁ ମଧ୍ୟଦେଇ ଏବେ ସଡ଼କ ରାସ୍ତା ତିଆରି ହୋଇଛି । ବାରିଗାଁର ଉତ୍ତର ପାଖଦେଇ ଗାଁକୁ ଆମର ମଧ୍ୟ ଏବେ ପକ୍କାରାସ୍ତା ତିଆରି ହୋଇଯାଇଛି, ଯା'ର ଗୋଟିଏ ପାଖରେ ଆନନ୍ଦପୁର ମହିଳା କଲେଜ୍ ପ୍ରତିଷ୍ଠିତ ହୋଇଛି ।

ଗାଁର ଉତ୍ତରକୁ ବୈତରଣୀ କୂଳରେ ଚୁକୁଣା ବ୍ରାହ୍ମଣ ଶାସନ । ଆମର ବିଭା, ପୁଆଣି ଆଦି ମଙ୍ଗଳ କାର୍ଯ୍ୟରେ ପୁରୋହିତ ଆସନ୍ତି ଚୁକୁଣା ଶାସନରୁ । ଗାଁ ପୂର୍ବ ପାଖରେ ସରକାରୀ ଜଙ୍ଗଲ ବିଭାଗ ପକ୍ଷରୁ ଝାଉଁ ଓ ଶିଶୁ ଜଙ୍ଗଲ ପ୍ରସ୍ତୁତ କରାଯାଇଛି, ତାହା ହାତୀବନ୍ଧା ଏରିଆ ନାମରେ ପରିଚିତ । ୧୯୯୯ର ପ୍ରଳୟଙ୍କରୀ ମହାବାତ୍ୟା ଓ ବନ୍ୟା ସମୟରୁ କୁଣ୍ଡକେଳ ଠାକୁରାଣୀଙ୍କ ନିକଟରେ ରାଜରାସ୍ତା ଭାଙ୍ଗିଦେଇ କୁଶେଇଠୁ ଏକ ନୂଆ ନଈ ବେଲବାହାଳି ଓ ପୁରୁଣିଆଁ ମଝିରେ ସୃଷ୍ଟି ହୋଇଛି । ଫଳରେ ଉଭୟ ଗାଁର ତୋଟା, ପାଳ ଓ ଧାନ ଜମିରେ ବାଲିଚର ହୋଇଯାଇଛି ।

ଗାଁର ଦକ୍ଷିଣ-ପୂର୍ବରେ ଗୋଟିଏ ପୋଖରୀ, ପୁରୁଣା ଗଡ଼ିଆ ନାଁରେ ପ୍ରସିଦ୍ଧ, ଅଜା ନିଜ ଖର୍ଚ୍ଚରେ ଯା'ର ସଂସ୍କାର କରିଥିଲେ । ପୋଖରୀର ଉତ୍ତର ହୁଡ଼ାରେ ଶିବଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ଅଲେଖମଠ- ସମଗ୍ର ହୁଡ଼ା ବ୍ୟାପୀ ସୁନ୍ଦର ବଗିଚା- ତାଳ, କଦଳୀ, ଆମ୍ବ, ଜାମ୍ବୁ, ଗୁଆ, ନଡ଼ିଆ, ଡାଳିମ୍ବ, ଅନେଇଚ, କମଳା, ଲେମ୍ବୁ, ପିସ୍ତଳି ଏମିତି କେତେ ଜାତିର ଗଛ ଓ ଲତା । ବାବାଜୀ ଓ ଗ୍ରାମର ଭକ୍ତମାନଙ୍କ ଉଦ୍ୟମରେ ମଠର ସମୃଦ୍ଧି ଘଟିଥିଲା । ମଠରେ ଧୂନି ମନ୍ଦିର, ଦେହରକ୍ଷା ମନ୍ଦିର ଓ ଶୂନ୍ୟ ମନ୍ଦିର ଆଦି ତିଆରି ହୋଇଛି । ମଠରେ ପକ୍କା ବେଦୀ ଥାଇ ବଡ଼-କୂଅଟିଏ ମଧ୍ୟ ଖୋଳାଯାଇଛି । ମଠଟି ଅଲେଖ-ସଂପ୍ରଦାୟର ହେଲେ ମଧ୍ୟ ଗ୍ରାମର ଲୋକଙ୍କୁ ବିଭିନ୍ନ ଯାନି, ଯାତ୍ରା ଓ ଉତ୍ସବ କରିବାର ସୁଯୋଗ ଦିଆଯାଏ । ପ୍ରତି ଚତୁର୍ଦ୍ଦଶୀରେ ଅଖଣ୍ଡ ଦୀପ ଜଳେ । ପୂର୍ଣ୍ଣିମାର ପ୍ରାତଃ କାଳରେ ଭକ୍ତ ଓ ଲୋକଙ୍କ ମଧ୍ୟରେ ଅମୃହଣିଆ (ମଠର ଭୋଗ) ବିତରଣ କରାଯାଏ । ପ୍ରତ୍ୟହ ସଂଧ୍ୟାରେ ବିଶେଷତଃ ଶୁକ୍ଳ ଚତୁର୍ଦ୍ଦଶୀରେ ଖଞ୍ଜଣି ବାଦ୍ୟ ସହ ଭୀମ ଭୋଇ ଓ ପଞ୍ଚସଖାଙ୍କର ଭଜନ ଗ୍ରାମବାସୀ ଓ ପଥଚାରୀଙ୍କର ଶ୍ରୁତି ଆକର୍ଷଣ କରେ ।

ସେଇ ପୁରୁଣା ପୋଖରୀର ଦକ୍ଷିଣ ହୁଡ଼ାରେ କାହିଁ କେଉଁ କାଳରୁ ପ୍ରତିଷ୍ଠିତ ହୋଇଛନ୍ତି ତାରିଣୀ, ବୋଧହୁଏ ଘଟଗାଁ ତାରିଣୀଙ୍କ ଆଦର୍ଶରେ । ଦକ୍ଷିଣ ପଶ୍ଚିମକୁ ପାଳ ମଝିରେ ବାଉତି ଠାକୁରାଣୀ । ତାରିଣୀ ଶାଳରେ ପ୍ରକାଣ୍ଡ ତେନ୍ତୁଳିଗଛ ଓ ବେଲଗଛମାନ । ଠାକୁରାଣୀଙ୍କ ପୋଡ଼ାମାଟିର ଗମ୍ଭୀରା ଦକ୍ଷିଣମୁଖୀ । ଗମ୍ଭୀରାକୁ ଲାଗି ପୋଡ଼ାମାଟିର ବଡ଼ ବଡ଼ ଓ ସାନ ସାନ ଘୋଡ଼ା, ହାତୀ । ଲୋକଙ୍କର ପ୍ରୟୋଜନବେଳେ ତାରିଣୀଶାଳ ଗହଳ ଚହଳ ହୋଇଉଠେ । ପିଲାଦିନେ ଲକ୍ଷ୍ୟ କରିଥିଲି : ହଇଜା, ବସନ୍ତ (ଠାକୁରାଣୀ) ସମୟରେ ଠାକୁରାଣୀଙ୍କ ଆସ୍ଥାନ ଚମକି ଉଠେ । ଠାକୁରାଣୀଙ୍କୁ ପାଣି ପଣା ଦିଆଯାଏ । କାହାରି କାହାରିକୁ ଠାକୁରାଣୀ ଅବତାରନ୍ତି । ସେ (କାଳିସୀ) ଶୂନ୍ୟକୁ ଏକ ଧ୍ୟାନରେ ଚାହିଁ ଚାହିଁ କିଛିକାଳ ଧ୍ୟାନସ୍ଥ ହୋଇଯାଏ । ତା'ପରେ ତା'ର ଦେହ, ହାତ ଓ ଗୋଡ଼ ଭୀଷଣ ଭାବରେ ଥରେ; ଶେଷରେ ବିଚିତ୍ର କୁହାଟମାନ ମାରି ଛାତି ଓ ଭୂଇଁରେ ବିଧାମାନ ମାରି ନିଜେ ଠାକୁରାଣୀଙ୍କର ଅବତାର ବୋଲି ପ୍ରକାଶ କରେ ଏବଂ ସ୍ୱର ଧରି କହେ : ''ମୋତେ ବୋଲୁ ଥାଇରେ ବିଛାତି କୁମର ।'' ଗାଁର ପୁରୁଖା ଲୋକମାନେ ହାତଯୋଡ଼ି ପ୍ରତ୍ୟକ୍ଷ ଠାକୁରାଣୀ ସ୍ଥାନରେ ଗାଁର ଭଲମନ୍ଦ ସଂପର୍କରେ ନାନା ପ୍ରଶ୍ନ କରନ୍ତି ଏବଂ ଠାକୁରାଣୀଙ୍କ ଅସନ୍ତୋଷର କାରଣ ପଚାରନ୍ତି । ଠାକୁରାଣୀ ତ ଅସନ୍ତୁଷ୍ଟ ହେବାର କଥା । କାରଣ ପୂର୍ବରୁ ନିୟମିତ ଭାବରେ ଦେହୁରୀ (ଶଅର) ଯେପରି ଘରଘରକା ଘିଅ, ଚାଉଳ, ସିନ୍ଦୂର, ତେଲ, ହଳଦୀ ଆଦି ଆଦାୟ କରି ନେଉଥିଲା ଏବଂ ପ୍ରତି ସଂକ୍ରାନ୍ତିରେ ଠାକୁରାଣୀଙ୍କର ମାଜଣା ଓ ପୂଜା ଆଦି କରୁଥିଲା, ତା'ର ବହୁ ବ୍ୟତିକ୍ରମ ଦେଖାଦେଇଥିଲା । ଅନ୍ୟ ସମୟରେ ତାରିଣୀଶାଳ ଶୁଖିଲା ପତ୍ରରେ ଭର୍ତ୍ତି, କେବଳ ଗାଁ ବାଲାଙ୍କର ପ୍ରୟୋଜନ ବେଳେ ଟିକିଏ ଆସ୍ଥାନରେ ଯାହା ଗହଳ ଚହଳ ହୁଏ ।

ପିଲାଦିନର କଥା, ମନେ ଅଛି । ବର୍ଷାକାଳ । ଜନ୍ତାଳ ଦିଆଯାଉଥାଏ । ଗାଁ ଲୋକେ ତାରିଣୀଶାଳରେ ଜମା ହୋଇଥାନ୍ତି । ବାଜା, ହରିବୋଲ ଧ୍ୱନିରେ ଠାକୁରାଣୀଙ୍କ ବିଜେସ୍ଥଳୀ କମ୍ପି ଉଠୁଥାଏ । ଠାକୁରାଣୀଙ୍କ ଗମ୍ଭୀରା ମୁହଁରେ ପାଣିପଣା, ସିନ୍ଦୂର, ଝୁଣା, ଗୋଗଳ ଦିଆ ଯାଇଥାଏ । ଗମ୍ଭୀରାଠାରୁ ୧୫/୨୦ ହାତ ଛାଡ଼ି ତେନ୍ତୁଳି ଓ ବେଲମୂଳେ ଜନ୍ତାଳ ପାଇଁ ବୋଦାମାନ ଅଣାଯାଇଥାଏ । ୩/୪ ଜଣ ଲୋକଙ୍କୁ ଠାକୁରାଣୀ ଅବତାରି ଥାନ୍ତି । ବିକଟ ନାଦରେ ତାରିଣୀଶାଳ କମ୍ପି ଉଠୁଥାଏ । ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ଯେଉଁ ବୋଦା ଦେହୁରୀ ଦ୍ୱାରା ହଣାଯାଉଥାଏ, ବିଚିତ୍ର ଚିତ୍କାର କରି କାଳିସୀମାନେ ରକ୍ତପାନ କରିଯାଉଥାନ୍ତି । ସେହିପରି ପୁରୁଖା ଲୋକଙ୍କର ଗାଁ ସଂପର୍କରେ ନାନା ପ୍ରକାର ପ୍ରଶ୍ନ । କାଳିସୀମାନେ ଠାକୁରାଣୀଙ୍କର ଇଚ୍ଛା ଜଣାଇ ଗାଁର ଭଲମନ୍ଦ ଖବର କହି ସାରିବା ପରେ ଧୀରେ ଧୀରେ ଜନ୍ତାଳର ଗମ୍ଭୀର ପରିବେଶ ଶିଥିଳ ହୋଇଆସେ । କାଳିସୀମାନେ ନୀରବ ହୋଇ ହାତମୁଠା କରି ପାଟି ବନ୍ଦ କରି ଭୂଇଁରେ ପଡ଼ିଥାନ୍ତି- ଧୀରେ ଧୀରେ ସେମାନଙ୍କର ସ୍ୱାଭାବିକ ଅବସ୍ଥା ଫେରିଆସେ । ସେମାନେ ପାଖରେ ବହିଯାଉଥିବା ନାଳରେ ଗାଧୋଇ ପରିଷ୍କାର ପରିଚ୍ଛନ୍ନ ହୁଅନ୍ତି । ମୋତେ ଜନ୍ତାଳ ଦେଖାଇବା ପାଇଁ ମୋର ଅସୁସ୍ଥତା ସମୟରେ କେହି ଜଣେ ମୋତେ କାଖେଇ କରି ନେଇଥାଏ । ହଠାତ୍ ଗମ୍ଭୀରା ଦୁଆର ମୁହଁରେ ମୋର ଦୃଷ୍ଟି ପଡ଼ିଗଲା । ଦେଖିଲି : କୁକୁରଟାଏ ପଣା ଆଟିକା ମାରିବାରୁ ଗୋଟାଏ ମସ୍ତବଡ଼ ବେଙ୍ଗ ଗମ୍ଭୀରା ଭିତରୁ କୁକୁର ଆଡ଼କୁ ଡ଼େଇଁପଡ଼ି ପୁଣି ଗମ୍ଭୀରାରେ ପଶିଗଲା । ବେଙ୍ଗ ମୁଣ୍ଡରେ ପୁଣି ମେଞ୍ଚେ ସିନ୍ଦୂର । ମୋର ଶିଶୁ ମନରେ ଭାବୁଛି : ଠାକୁରାଣୀ ବୋଧହୁଏ ବେଙ୍ଗ ରୂପରେ ଡ଼େଇଁପଡ଼ି ପୁଣି ଗମ୍ଭୀରାକୁ ଚାଲିଗଲେ । ବର୍ତ୍ତମାନ ତାରିଣୀ, ବାଉତି ଅପାଣିଆ ଓ ଅପଚରା ଠାକୁରାଣୀ ଭାବେ ପଡ଼ି ରହିଛନ୍ତି । ଦେହୁରୀକି ଗାଁ ଲୋକେ କେହି ପଚାରୁ ନାହାନ୍ତି । ଲୋକେ ଦିନକୁ ଦିନ ବସ୍ତୁବାଦୀ ହୋଇ ପଡୁଥିବାରୁ ପୂର୍ବର ଗ୍ରାମ୍ୟ ଲୋକଙ୍କର ସରଳ ଦେବଦେବୀ ବିଶ୍ୱାସ, ଅଧ୍ୟାତ୍ମଭାବନା ଆଉ ନାହିଁ । ସହରଠାରୁ ଆରମ୍ଭ କରି ପଲ୍ଲୀ ପର୍ଯ୍ୟନ୍ତ ଲୋକେ ନିର୍ବିଚାର ଭାବରେ ନାନା ଦୁଷ୍କର୍ମ କରି ଚାଲିଛନ୍ତି । ସାମାଜିକ ଓ ରାଷ୍ଟ୍ରୀୟ ଜୀବନରେ ଆଜି ନୈତିକ ଅଧୋପତନ ଆମର ଜାତୀୟ ଜୀବନକୁ ଛାରଖାର କରିଦେଲାଣି । ଅବଶ୍ୟ ଦେବଦେବୀଙ୍କୁ ରକ୍ତପାୟୀ କରିଛି ମଣିଷର ଆଦିମ ଧାରଣା । ସେଥିପାଇଁ ଦୀର୍ଘକାଳ ଧରି ନିର୍ବିଚାର ଭାବେ ପଶୁବଳି ଚାଲିଥିଲା, ନିଜର ଅନ୍ତରର ପଶୁଭାବକୁ ବଳି ନଦେଇ । ଆଜିର ବୈଜ୍ଞାନିକ ଯୁଗରେ ଏଇ ଆଦିମ ଅନ୍ଧବିଶ୍ୱାସର ଅବସାନ ଘଟିଛି । ଦେବୀ ଆମର କବି ଓ ସାଧକଙ୍କ ଦୃଷ୍ଟିରେ ଜଗଜ୍ଜନନୀ; ଜନନୀ କ'ଣ ସନ୍ତାନର ରକ୍ତପାନ କରିବା ପାଇଁ ପାଗଳିନୀ ?

ଅଲେଖମଠର ଉତ୍ତରକୁ କେତୋଟି ଧାନକିଆରି ପାରିହେଲେ ଆଉ ଏକ ଦେବତାଶାଳ; କେହି କେହି କହନ୍ତି ସେଠି ଗ୍ରାମଦେବତୀ ଓ କ୍ଷେତ୍ରପାଳଙ୍କ ଅଧିଷ୍ଠାନ । ନାନା ଗଛଲତାରେ ଦେବତାଙ୍କର ବିଜେସ୍ଥଳୀ ଅନ୍ଧାରିଆ ହୋଇ ଗମ୍ଭୀର ହୋଇ ଉଠିଥିଲା । କେତୋଟି ଗମ୍ଭୀରା

ଓ ପୋଡ଼ାମାଟିର ହାତୀ ଓ ଘୋଡ଼ାରେ ସ୍ଥଳଟି ପୂରି ଉଠିଥିଲା । ତାରିଣୀଶାଳ ପରି ଏଠି ମଧ୍ୟ ଜନ୍ତାଳ ଦିଆଯାଉଥିଲା । ବର୍ତ୍ତମାନ ଦୁଇଚାରୋଟି ଗଛ ଓ ଭଙ୍ଗା ଗମ୍ଭୀରା ଛଡ଼ା କିଛି ନାହିଁ ।

ନୂଆସାଇ ଓ ପୁରୁଣାସାଇର ଦୋଛକି ରାସ୍ତା ପୂର୍ବକୁ ପ୍ରକାଣ୍ଡ ବରଗଛ ମୂଳେ ମଙ୍ଗଳାଙ୍କର ଆସ୍ଥାନ । ତାଙ୍କର ଆସ୍ଥାନ ଓ ପାର୍ଶ୍ୱବର୍ତ୍ତୀ ସ୍ଥାନ ପ୍ରଶସ୍ତ, ଗୋଟିଏ ଛୋଟ ପଡ଼ିଆ ଅଛି । ପଡ଼ିଆରେ ଆଉ କେତୋଟି ବର, କୃଷ୍ଣଚୂଡ଼ା ଓ ଓସ୍ତଗଛ, ଟିକିଏ ଦୂରକୁ ବବୁରି ଗଛ ଅଛି । ପୂର୍ବରୁ ତାରିଣୀଶାଳ ପରି ମଙ୍ଗଳାଙ୍କର ବଡ଼ ଗମ୍ଭୀରା ଥିଲା । ପୋଡ଼ାମାଟିର ଘୋଡ଼ା ଓ ହାତୀରେ ଗମ୍ଭୀରା ପାର୍ଶ୍ୱବର୍ତ୍ତୀ ସ୍ଥାନ ପରିପୂର୍ଣ୍ଣ ଥିଲା । ଗମ୍ଭୀରା ଭିତରେ ସିନ୍ଦୂର ଲିପ୍ତ ଶିଳା ମଙ୍ଗଳାଙ୍କର ପ୍ରତୀକ । କଳାଶାଢ଼ୀରେ ଗମ୍ଭୀରା ଆଚ୍ଛନ୍ନ । ଅନ୍ୟାନ୍ୟ ଗ୍ରାମ-ଦେବାଦେବୀଙ୍କ ପରି ମଙ୍ଗଳା ଅପଚରା ନାହାନ୍ତି । ଦେହୁରୀ ସଂକ୍ରାନ୍ତିରେ ନିୟମିତ ପୂଜା ଦେଇଯାଏ ଏବଂ ବିଭାବ୍ରତମାନଙ୍କରେ ମଙ୍ଗଳାଙ୍କର ବିଜେସ୍ଥଳୀ ବାଦ୍ୟନାଦ ଓ ପୂଜା ହୋମରେ ଚମକି ଉଠେ । ଏବେ ମଙ୍ଗଳାଙ୍କର ଛୋଟ ଦେଉଳଟିଏ ତିଆରି ହେଲାଣି । ଗାଁର ଉତ୍ସାହୀ ପିଲାମାନେ ଲକ୍ଷ୍ମୀ ପୂଜା ପାଇଁ ଘରଟିଏ ତିଆରି କରିଛନ୍ତି । ମଙ୍ଗଳାଙ୍କର ବିଜେସ୍ଥଳୀ ଚାରିପାଖରେ ଘର ତିଆରି ହୋଇଯିବାରୁ ଦେବୀଙ୍କ ପ୍ରତି ସ୍ଥାନୀୟ ଅଧିବାସୀଙ୍କର ଦୃଷ୍ଟି ଅଧିକ । ମାନିଲେ ଠାକୁର, ନ ମାନିଲେ ପଥର ।

ମାନତି ହେତୁ ସିନା ଘଟଗାଁ ତାରିଣୀ ଖାଲି କେନ୍ଦୁଝର କାହିଁକି ଓଡ଼ିଶାରେ ସର୍ବତ୍ର ପ୍ରସିଦ୍ଧି ଲାଭ କରିଛନ୍ତି । ଯେଉଁ ଘଟଗାଁର ତାରିଣୀଙ୍କର ଆସ୍ଥାନ କାହିଁ ଜଙ୍ଗଲ ଭିତରେ ଗଛଲତା ଘେରରେ ଏକପ୍ରକାର ଅଦୃଶ୍ୟ ଥିଲା, ବର୍ତ୍ତମାନ ଦେବୀ ଲୋକଲୋଚନର ଗୋଚରରେ । ଯାତ୍ରୀ ଗାଡ଼ିରୁ ଓହ୍ଲେଇବାକୁ ସମୟ ନ ପାଇଲେ ମଧ୍ୟ ସେଇ ଗାଡ଼ିରୁ ଦେବୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଏ । ତାଙ୍କ ଉଦ୍ଦେଶ୍ୟରେ ନଡ଼ିଆ, କଦଳୀ, ଭୋଗ ପାଇଁ ଦେହୁରୀ ହାତରେ ସମର୍ପି ଦିଏ । ଏବେ ଧର୍ମଶାଳା, ତାରିଣୀ ଅନୁଷ୍ଠାନର ପରିଚାଳନା ପାଇଁ ଗୃହ ଏବଂ ପଥଚାରୀଙ୍କ ପାଇଁ କୂପ ଖୋଦିତ ହୋଇଯାଇଛି । ତାରିଣୀଙ୍କ ଯୋଗୁଁ ତାଙ୍କରି ନାମରେ ଘଟଗାଁରେ ଏକ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି । ଦେବୀଙ୍କ ଯୋଗୁଁ ବହୁ ଲୋକ ଦୋକାନ, ହୋଟେଲ କରି ପେଟପାଟଣାର ବ୍ୟବସ୍ଥା କରୁଛନ୍ତି ।

ଆମ ଗାଁ ମଙ୍ଗଳା-ଡିହ (ପରିଚିତ ନାମ ଗୋଠ ଉପର) ଟିକିଏ ପ୍ରଶସ୍ତ ଥିବାରୁ ଏଠାରେ ହରିହାଟ, ସପ୍ତା, ପାଲା, ଯାତ୍ରା, ଥିଏଟର ଓ ସଭାସମିତିମାନ ଅନୁଷ୍ଠିତ ହୁଏ । ଗଛସଂଖ୍ୟା ଅପେକ୍ଷାକୃତ ଭାବରେ ବେଶି ଥିବାରୁ ବେଳେବେଳେ ଆଖୁଶାଳ ବସି ଶିଶୁ ଓ ପଥଚାରୀଙ୍କର ଦୃଷ୍ଟି ଆକର୍ଷଣ କରେ । ମଙ୍ଗଳାଶାଳ ଉତ୍ତରକୁ ନୂଆ ପୋଖରୀ, କେହି କେହି ମହାଜନ ପୋଖରୀ ବୋଲି କହନ୍ତି ।

ଗାଁଟି ଆମର ମୁଖ୍ୟତଃ ଉତ୍ତର-ଦକ୍ଷିଣ ହୋଇ ଲମ୍ୱା । ଚାରୋଟି ସାଇ । ଦକ୍ଷିଣରେ ଗଉଡ଼ସାଇ, ତା'ର ଦକ୍ଷିଣ ପୂର୍ବକୁ ଗାଁର ଅପର ପ୍ରାଇମେରୀ ଓ ମାଇନର ସ୍କୁଲ । ଏଇ

କେତେ ବର୍ଷ ହେଲା ହାଇସ୍କୁଲ୍ ପ୍ରତିଷ୍ଠିତ ହୋଇଛି; ଗ୍ରାମର ଉତ୍ତର ପ୍ରାନ୍ତରେ ଏବେ ତା'ର ପକ୍କା ଗୃହ ନିର୍ମିତ ହୋଇଛି । ଗଉଡ଼ସାଇ ଉତ୍ତରକୁ ନୂଆସାଇ (ଆମ ସାଇ), ତା'ପରେ ପୁରୁଣାସାଇ । ପୁରୁଣାସାଇ ପୂର୍ବ ଆଡ଼କୁ କିଛି ବାଟ ଲମ୍ବିଯାଇଛି । ଏ ସାଇର ପୂର୍ବ ମୁଣ୍ଡରେ ହରିଜନ ସାଇ, ତା'ର ଉତ୍ତରକୁ ବିଲ କେତେ କିଆରି ପାରିହେଲେ ଆଉ ଏକ ହରିଜନ ସାଇ ।

ଗାଁର ଦକ୍ଷିଣକୁ ନାଳ, ଦାଣ୍ଡିରାସ୍ତା, ଗାଁର ପାଳଜମି ଓ ଆମ୍ବତୋଟା । ଏଇ କେତେ ବର୍ଷ ହେଲା ନିଶା ପରିଡ଼ା ନାମକ ଜଣେ ମହିମାପନ୍ଥୀ ଭକ୍ତ ତୋଟାର ଉତ୍ତର ପାଖରେ ମଠଟିଏ ତିଆରି କରିଛନ୍ତି । ମଠରେ ଧୂନି ମନ୍ଦିର, ସାଧୁମାନଙ୍କ ବିଶ୍ରାମ ଓ ରହଣି ପାଇଁ ଛୋଟଘର, ଗୋଟିଏ ପକ୍କା ମଣ୍ଡପ । ତା'ଛଡ଼ା ବିସ୍ତୃତ ଆୟତନର ବଗିଚା । ସେଥିରେ ଆମ୍ବ, ଜାମୁ, ପିଜୁଳି, ଡାଳିମ୍ବ, ବେଲ, ଗୁଆ ପ୍ରଭୃତି ନାନା ଜାତିର ଗଛ । ପାଖରେ କେତୋଟି ସମାଧି ।

ଗାଁକୁ ଲାଗି ଚତୁର୍ଦ୍ଦିଗରେ ଧାନଜମିମାନ ବିସ୍ତୃତ । ଗ୍ରାମ ସରହଦରେ ବିଭିନ୍ନ କିସମର ଜମି ରହିଛି । ଗହୀର ଖାଲ ବିଲଗୁଡ଼ିକୁ ପାଟ ଓ ପଣି କହନ୍ତି; ଏଗୁଡ଼ିକରେ ଭଲ ଧାନ ହୁଏ, କିନ୍ତୁ ମୋଟା । ଟିକର (ଉଚ୍ଚା) ଜମିମାନଙ୍କରେ ଯେଉଁ ଧାନ ହୁଏ, ତାହା ଚଞ୍ଚଳ ପାଚିଯାଏ , ଖାଇବାକୁ ସୁଖକର (ପିମ୍ପୁଡ଼ିବାସ ପ୍ରଭୃତି) । ଆଉ କେତେଗୁଡ଼ିଏ ଟିକର ଜମି ରହିଛି ଯେଉଁଠି ନଳିତା, ଧଣିଚା, ମୁଗ, ବିରି ପ୍ରଭୃତି ଫସଲ କରାଯାଏ । ପାଳଜମିରେ ପାଳଧାନ (ବିଆଳି), ଆଖୁ, ମାଣ୍ଡିଆ, ହରଡ଼, କୋଳଥ ଓ ବିରି ପ୍ରଭୃତି ଏବଂ ଶୀତଦିନେ କୋବି, ମୂଳା, ବିଲାତି, ବାଇଗଣ, ଲଙ୍କା, ବୋଇତାଳୁ ଆଦି ନାନା ପନିପରିବା ଫସଲ କରାଯାଏ ।

ତୋଟାର ଦକ୍ଷିଣ-ପୂର୍ବ ପାଖକୁ ନନ୍ଦପୁରଡିହ । ଏ ଡିହ ସଂପର୍କରେ ଏକ କିମ୍ବଦନ୍ତୀ ପ୍ରଚଳିତ ଅଛି : ସେଠାରେ ଜଣେ କାପାଳିକ ଚଣ୍ଡୀ ସାଧନ କରୁଥିଲେ । କାପାଳିକଙ୍କର ଦେହାନ୍ତ ପରେ ଚଣ୍ଡୀ ଅପୂଜା ରହି ବନ୍ୟାରେ ପୋତି ହୋଇଗଲେ । ପଥଚାରୀ ବହୁ ବ୍ୟକ୍ତି ରାତିରେ ଚଣ୍ଡୀଙ୍କର ଛାୟାଦର୍ଶନ କଥା କହି ଆତଙ୍କ ସୃଷ୍ଟି କରନ୍ତି । ଶୁଣାଯାଏ : ଜଣେ ଗୁଣିଆ ସେଠାରେ ପୂଜାକରି ଚଣ୍ଡୀଙ୍କର କୋପ ଶାନ୍ତ କରିଥିଲା ଏବଂ ତାଙ୍କୁ ଅନ୍ୟତ୍ର ନେଇଯାଇଥିଲା । ସେ ସ୍ଥାନ ଖୋଳା ହେଲେ ସେଠାରେ ପ୍ରାଚୀନ ବସତିର ବହୁ ନମୁନା ମିଳିବାର ସମ୍ଭାବନା ରହିଛି ।

## ଗାଁର ଯାନିଯାତ୍ରା ଓ ପର୍ବପର୍ବାଣି :

ଗ୍ରାମଟି କୃଷି ପ୍ରଧାନ ଗ୍ରାମ ହୋଇଥିବାରୁ ବର୍ଷର ବିଭିନ୍ନ ସମୟରେ ନାନା ପ୍ରକାର ଚିତ୍ତାକର୍ଷକ ପର୍ବ ପାଳିତ ହୁଏ; ସେଗୁଡ଼ିକ ମଧ୍ୟରେ ଅକ୍ଷୟ ତୃତୀୟା, ସାବିତ୍ରୀ ଅମାବାସ୍ୟା, ରଜୋତ୍ସବ, ଚିତାଲାଗି ଅମାବାସ୍ୟା, ଭାଲୁକୁଣି ଓଷା, ବୁଧେଇ ଓଷା, କାଞ୍ଜି ଅଁଳା ଓଷା,

ଯମରାଜା ଓଷା, ଦ୍ୱିତୀୟା ଓଷା, ଗହ୍ମାପୂର୍ଣ୍ଣିମା, ଶମ୍ବର ଦଶମୀ, ଦୋଳ, ପଣାସଂକ୍ରାନ୍ତି ଇତ୍ୟାଦି ପ୍ରଧାନ । ଅକ୍ଷି ତୃତୀୟାକୁ ଚାଷୀ ସକାଳୁ ଗାଧୋଇ ସାରି ଝୋଟିଦିଆ ଟୋକେଇରେ ବିହନ, କୋଡ଼ି, ଫୁଲ, ଭୋଗ ସରଞ୍ଜାମ ଓ ନୂଆ ଲୁଗା ଧରି କ୍ଷେତକୁ ଯାଏ । କ୍ଷେତର କୌଣସି ଗୋଟିଏ କିଆରି କଣରେ କୋଡ଼ିରେ ହାଣିଦେଇ ଧାନ ବୁଣି, ଗୁଡ଼ ଦୁଧ କଦଳୀ ଆଦି ଭୋଗ ଲଗାଏ । ପିଲାମାନେ ସାଙ୍ଗରେ ଯାଇଥିଲେ ଭୋଗ ପାଇ ପରମ ଆନନ୍ଦ ଅନୁଭବ କରନ୍ତି ।

ଗହ୍ମାପୂର୍ଣ୍ଣିମାରେ ବଳଦେବଙ୍କର ପୂଜା ହୁଏ । ଚାଷୀମାନେ ଗାଈ ଗୋରୁଙ୍କର ବେକରେ ଫୁଲମାଳ ଦେଇ ପୂଜା କରନ୍ତି । ସ୍ତ୍ରୀ ଲୋକମାନେ ଘର ଓ ଗୁହାଳ କାନ୍ଥରେ ଗାଈ ବଳଦଙ୍କର ଚିତ୍ର ପିଠଉରେ ଆଙ୍କନ୍ତି ।

ଗର୍ଭଣା ସଂକ୍ରାନ୍ତି ଚାଷୀଙ୍କର ଗୋଟିଏ ମନୋଜ୍ଞପର୍ବ । ଢ଼ଗ ପ୍ରଚଳିତ ଅଛି : 'ଆଗ ବୁଣ, ପଛ ବୁଣ, ଗରଭଣାକୁ ଟୁଣ୍ଟୁଣ୍' । ଧାନ ଆଗେ ବା ପଛେ ବୁଣାଯାଉ, ଗର୍ଭଣା ସଂକ୍ରାନ୍ତିକୁ ଧାନଗଛରେ କ୍ଷୀର ଢୁକେ । ଚାଷୀ ଗାଧୁଆପାଧୁଆ ସାରି ଅଣଲେଉଟା ପିଠା, ଗୁଡ଼, ଦୁଧ, ଫୁଲ ଭୋଗ ଦେଇ ଘରକୁ ଫେରେ ।

ମାର୍ଗଶୀର ମାସରେ ମାଣବସା ଗୁରୁବାରରେ ଲକ୍ଷ୍ମୀପୂଜା ହୁଏ । ସମଗ୍ର ଓଡ଼ିଶାରେ ଏହା ଚାଷୀମାନଙ୍କର ଅତି ପ୍ରିୟ ପର୍ବ । ଲିପା ହୋଇଥିବା ଖଳା ସୁନାଫସଲ ଗଦାରେ ଭରିଉଠେ । ମାର୍ଗଶୀର ମାସ ସାରା ପ୍ରତି ଗୁରୁବାର ସକାଳେ ବା ପୂର୍ବ ରାତିରୁ ନୂଆ-ଅରୁଆ ଚାଉଳ ପିଠଉରେ ନାନା ପ୍ରକାର ଝୋଟି, ଚିତା ଆଙ୍କି ବୋହୂ, ଝିଅମାନେ ନିଜ ନିଜର କଳାକୁଶଳତାର ପରିଚୟ ଦିଅନ୍ତି । ଶାମ୍ବଦଶମୀରେ ମଧ୍ୟ ଖଳା ମେରିଦଣ୍ଡ ପାଖରେ ସୂର୍ଯ୍ୟ ପୂଜା କରାଯାଇ ଶମ୍ବରାସୁରକୁ ନାନା ପିଠାପଣା ଭୋଗ ଦିଆଯାଏ । ଅଘି ପୂର୍ଣ୍ଣିମାରେ ଅଗ୍ନ୍ୟୁତ୍ସବ ପାଳିତ ହୁଏ- ଲୋକେ ଅଘିରାକୁ ବାଇଗଣ ପୋଡ଼ି ବେଶ ଆନନ୍ଦ ଅନୁଭବ କରନ୍ତି ।

ଫାଲଗୁନରେ ଦୋଳୋତ୍ସବ, ଗାଁ ଗଣ୍ଡାରେ ରାଧାକୃଷ୍ଣ ମେଲଣ, ଠାକୁରଙ୍କ ପାଖରେ ଆମ୍ବକଷି ଭୋଗ ଓ ନବାତପଣା ଏବଂ ହୋଲି ଉତ୍ସବ (ଅବିର ରଂଗ ପିଚିକାରୀ ମରା) ବିଶେଷ ଉପଭୋଗ୍ୟ । ଚଇତ୍ର ମାସରେ ଝଙ୍କଡ଼ ଅଞ୍ଚଳରୁ ବୁଲାରି ମଙ୍ଗଳାଙ୍କର ଆଗମନ ହୁଏ । ମଙ୍ଗଳା ଭକ୍ତ ରଣପା ସାହାଯ୍ୟରେ ନାନା ଭଙ୍ଗୀରେ ନୃତ୍ୟ କରି ମଙ୍ଗଳାଙ୍କର ପ୍ରତୀକ ଏକ କାରୁକଳା ମଣ୍ଡିତ କାଷ୍ଠ ଖଣ୍ଡରୁ ମଙ୍ଗଳାଙ୍କ ପ୍ରସାଦ ଦିଅନ୍ତି ।

ବିଷୁବ ବା ପଣା ସଂକ୍ରାନ୍ତିରେ ପାଟୁଆନାଚ, ପିଠିପୋଡ଼ା ଏବଂ ବଉଳଗଛ, ତୁଳସୀ ଚଉଁରା, ଓସ୍ତ ଓ ବର ଗଛମାନଙ୍କରେ ଛିଦ୍ର ଥିବା ଠେକି ବସାଯାଇ ମାସ ସାରା ସ୍ନାନ ପରେ ଜଳଦାନ କରାଯାଏ ଏବଂ ରାସ୍ତା ଘାଟରେ ଜଳଛତ୍ର ଖୋଲାଯାଏ । ଗୋରୁଗାଈଙ୍କର ପିଇବା ପାଇଁ ମଧ୍ୟ ସ୍ଥାନେ ସ୍ଥାନେ ମାଟି ହାଣ୍ଡିମାନ ବସାଯାଇ ଜଳପୂର୍ଣ୍ଣ କରାଯାଏ । କଥାରେ

କହନ୍ତି ବାର ମାସରେ ତେର ପର୍ବ । କୃଷି ପ୍ରଧାନ ଗାଁଟିରେ କୌଣସି ପର୍ବ ପାଳନରେ ଊଣା କରାଯାଏ ନାହିଁ । ସବୁ ଓଷା ପର୍ବ ମଧ୍ୟରେ ରଜୋତ୍ସବ ଏବଂ ଭାଲୁକୁଣି ବା ଖୁଦୁରୁକୁଣୀ ଓଷା ଖୁବ୍ ଆଡ଼ମ୍ବରରେ ପାଳନ କରାଯାଏ ।

## ରଜପର୍ବ :

ସମଗ୍ର ଓଡ଼ିଶାରେ ରଜ ଏକ ଜାତୀୟ ପର୍ବ ହେଲେ ମଧ୍ୟ କେନ୍ଦୁଝର, ମୟୂରଭଞ୍ଜ ଏବଂ କଟକ ଜିଲାର ସୁକିନ୍ଦା ଓ ଯାଜପୁର ପ୍ରଭୃତି ଅଞ୍ଚଳରେ ଯେପରି ବହୁ ଆଡ଼ମ୍ବରରେ ପାଳିତ ହୁଏ, ଅନ୍ୟତ୍ର ସେପରି ଦେଖାଯାଏନା । କେନ୍ଦୁଝର ଜିଲାର କେନ୍ଦୁଝର ସଦର ଓ ମୟୂରଭଞ୍ଜରେ ଏ ପର୍ବ ପାଳନର ଏକ ବିଶେଷତ୍ୱ ଅଛି । ଭୂୟାଁ, ମାଝି, କୁଡ୍ମି, ସାନ୍ତାଳ ପ୍ରଭୃତି ଆଦିବାସୀ ଶ୍ରେଣୀର ଲୋକେ ତାଙ୍କର ପଡ଼ୋଶୀ ଓଡ଼ିଆ ଭାଇଭଉଣୀଙ୍କୁ ଅନୁକରଣ କରି ଜାକଜମକରେ ଏହା ପାଳନ କରିଥାନ୍ତି । ରଜର ମାସକ ପୂର୍ବରୁ ଆଦିବାସୀ ଯୁବକଯୁବତୀଙ୍କ ମଧ୍ୟରେ ରଜଗୀତ ଆରମ୍ଭ ହୋଇଯାଏ ଏବଂ ରଜ ସରିବାର ମାସେ ପର୍ଯ୍ୟନ୍ତ ମଧ୍ୟ ଏହାର ରେଶ କଟିନଥାଏ ।

ଗାଁ ଗଣ୍ଡାରେ, ବାଟଘାଟରେ, ତୋଟା କୁଞ୍ଜରେ ନାନା ପ୍ରକାର ଦୋଳି ପଡ଼େ, ଯଥା- ଦଉଡ଼ିଦୋଳି, ପଟାଦୋଳି, ଚକିଡ଼ି ଦୋଳି, ଖାଇ ବା ରାମଦୋଳି ଇତ୍ୟାଦି । ଦୋଳିରେ ବସିଲେ ଆଦିବାସୀ ଯୁବକଯୁବତୀଙ୍କ ମଧ୍ୟରେ ନାନା ହାସ ପରିହାସ, ଚଢ଼ାକୁ ଉତ୍ତର, ବ୍ୟକ୍ତିଗତ ଅନୁଭୂତି ରଞ୍ଜିତ ନାନା ଗୀତ ଉଚ୍ଚ ସ୍ୱରରେ ପାଟିରୁ ଅବାରିତ ଧାରାରେ ଛୁଟେ । ଏ ଗୀତ ତ କିଛି ଶିକ୍ଷା କରାଯାଇଥାଏ, ପୁଣି ଦୋଳି, ବୟସ ଓ ସମୟୋଚିତ ଉତ୍ସାହ ଓ ଉଦ୍ଦୀପନାକୁ ନେଇ ସେମାନେ ଏକ ଏକ ଆଶୁ ଲୋକକବିରେ ପରିଣତ ହୋଇଯାଆନ୍ତି । ଆଦିବାସୀ ଯୁବତୀ ଗଭାକୁ କୂଟଜ (କୋରେଇଁ), ମଲ୍ଲୀ ଓ ଜାମୁର କଅଁଳ କିଶଳୟରେ ସଜ୍ଜିତ କରି ନୂଆ ଲୁଗା ପିନ୍ଧି ଦଳଦଳ ହୋଇ ଗାଁ ବୁଲି ବାହାରନ୍ତି । ଅନ୍ୟ ଦଳ ସହ ଭେଟ ହୋଇଗଲେ ଚଢ଼ାକୁ ଉତ୍ତର ଚାଲେ ।

ରଜୋତ୍ସବ ଦୀର୍ଘକାଳ ଧରି ଗ୍ରାମର ଶିଶୁମାନଙ୍କ ଠାରୁ ଆରମ୍ଭ କରି ବୃଦ୍ଧଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକଙ୍କ ରକ୍ତରେ ନବଜୀବନ, ନୂତନ ଉନ୍ମାଦନ ଖେଳେଇ ଦିଏ । ଅଭାବ ଅନଟନ ଆଉ, ରଜ ପାଖେଇ ଆସିଲେ ଲୋକେ ସବୁ କିଛି ଭୁଲି ତିନି, ଚାରିଦିନ ପାଇଁ ଏକ ଅଜଣା ଆନନ୍ଦରେ ଶିହରି ଉଠନ୍ତି । ବରଷକେ ଥରେ କି ସଜବାଜ ଧରି ରଜ ଆସି ପହଞ୍ଚେ, କେବଳ ଅନୁଭବୀ ତାହା କହିବ ।

ପ୍ରଥମ ରଜର ପୂର୍ବ ଦିନକୁ ଆମ ଗାଁ ଓ ଆଖପାଖ ଗାଁ ମାନଙ୍କରେ ପାଣିବୁହା କହନ୍ତି । ପ୍ରଥମ ରଜ ଜ୍ୟେଷ୍ଠ ମାସର ଶେଷ ଦିନରେ ପଡ଼େ; ତା' ଆରଦିନ ରଜ ସଂକ୍ରାନ୍ତି (ଆଷାଢ଼ ମାସର ପ୍ରଥମ ଦିନ), ତା'ପର ଦିବସ ତୃତୀୟ ରଜ । ପାଣି ବୁହା ଦିନରୁ

ପିଠାପଣା ପାଇଁ ଚୂନାକୁଟା ଚାଲେ । ପହିଲି ରଜ ଦିନ ସକାଳୁ ଗାଁ ଦାଣ୍ଡରେ ଘରେ ଘରେ ଆନନ୍ଦର ଫୁଆରା । କାହାର ଦାଣ୍ଡ ଓରାରେ ଦଉଡ଼ି ଦୋଳି ପଡ଼ିଲାଣି ତ, ବଉଳ, ବର ଓ ଓସ୍ତଗଛ ଡାଳରେ ଦୋଳି ପଡ଼ିଲାଣି । କା ବାଡ଼ିରେ ପଟାଦୋଳି ଚାଲିଛି ତ କା ବାଡ଼ିରେ ଚକିଡ଼ି ଦୋଳି । ମଙ୍ଗଳା ଡିହରେ ଖାଇ ଦୋଳି । ପୁଅ ଝିଅମାନେ ସକାଳୁ ଉଠି ଗାଧୋଇ ପାଧୋଇ ନୂଆ ଲୁଗା ପିନ୍ଧି ଚନ୍ଦନଟିପା ମାରି ହୋଇ ଠାକୁରଙ୍କ ପାଖରେ ଲାଗିଥିବା ପ୍ରସାଦ ପାଇ ସିଧା ଦୋଳିରେ ବସିଯାନ୍ତି । କିଶୋର କିଶୋରୀ, ଯୁବତୀ, ଝିଅବୋହୂ ସମସ୍ତେ ନାନା ଅଳଙ୍କାର ଓ ରଙ୍ଗବେରଙ୍ଗର ବସ୍ତ୍ର ପହରଣ କରି ରଜୋତ୍ସବ ଉପଭୋଗ କରନ୍ତି । ସୁବାସ ମସଲା ଦିଆ ପାନ ଖିଆ ବେଶ୍ ଚାଲେ । ସାନ ସାନ ପିଲାମାନେ ରଜ-ପାନ ଖାଇ ପାଟି ନାଲି କରି ଦାନ୍ତ ଦେଖାଇ ଦୋଳି ମଉଜ କରୁଥାନ୍ତି ।

ପୂର୍ବପ୍ରଥା ଅନୁସାରେ ଦୋଳିରେ ବସିବା ପୂର୍ବରୁ ମଙ୍ଗଳାଶାଳରେ ଠାକୁରାଣୀଙ୍କ ପାଇଁ ଛୋଟ ଦୋଳିଟିଏ ତିଆରି କରାଯାଇ କଳାଶାଢ଼ୀ ଓ ଭୋଗ ଦିଆଯାଇ ପୂଜା କରାଯାଏ ଓ ଦୋଳିଟିକୁ ସାତଥର ପହଞ୍ଚାଇ ଦିଆଯାଏ । ଲୋକଙ୍କ ଶ୍ରଦ୍ଧା ଓ ବିଶ୍ୱାସରେ ଠାକୁରାଣୀ ପ୍ରଥମତଃ ଦୋଳି ଖେଳନ୍ତି । ତା'ପରେ ଗାଁସାରା ଚାଲେ ରଜମଉଜ ।

ପିଲାଙ୍କୁ ପହିଲୁ ଦୋଳିରେ ବସାଇ ତାଙ୍କର ଉତ୍ସାହ ବଢ଼ାଇବା ପାଇଁ ଗୀତ ଶିଖାଇ ଦିଆଯାଏ-

ଗଡ଼ିଆ ଆଡ଼ିରେ ବେତ
ମାଆ ମଙ୍ଗଳାଙ୍କୁ ଦଣ୍ଡବତ,
ଦଣ୍ଡବତ
ଅନୁକୂଳ ହେଲା ଗୀତ ।
ନୂଆ ଡାଟିଆରେ ଘିଅ
ସୀତା ଠାକୁରାଣୀ କାହାର ଝିଅ
ଗୀତର ଜବାବ ଦିଅ ।
ତୋଟାକୁ ତୋଟା ଲାଗିଛି
ମଧୁବନ ତୋଟା କିଏ ଜଗିଛି,
କିଏ ଜଗିଛି
ଡାଳିମ୍ବ ଝଡ଼ି ପଡୁଛି ।

ଏହିପରି ପିଲାଙ୍କଠାରୁ ଆରମ୍ଭ କରି ବୁଢ଼ାଙ୍କ ପର୍ଯ୍ୟନ୍ତ ନାନା ପ୍ରକାରର ନାନା ଅନୁଭୂତିର ଗୀତ ଚାଲେ । କେହି କେହି ପୁଅ ପିଲା ରଙ୍ଗରସ ସୃଷ୍ଟି କରିବା ପାଇଁ ଗାଆନ୍ତି-

ମାଡୁଆ କଙ୍କଡ଼ା ପିଠି
ଯାଆରେ ମାଡୁଆ ଦୋଳିରୁ ଉଠି,

ଦୋଳିରୁ ଉଠି
ଗାଲ ଖାଇଯିବ ଚଟି ।
ନଈରେ କୋଚିଆ ଗାତ
କୋଚିଆ ବୋଲି ମୁଁ ଧରି ପକାଇଲି
ନୂଆ ସମୁଦ୍ରଣି ହାତ ।

ଦୋଳିରେ ଚଢ଼ାକୁ ଉଭାର ଚାଲେ । ପୁଣି ଆଦିବାସୀ ଗାଁ ଗଣ୍ଡାରେ ଯୁବକଯୁବତୀ ଭେଟାଭେଟି ହୋଇଗଲେ ଚଢ଼ାକୁ ଉତ୍ତରା ମାତ୍ରା ବଢ଼ିଯାଏ । ଯୁବକ ବୋଲେ-

ବାହାଲ ଉପରେ ଲେମ୍ବୁ
ହାରିଗଲେ ଟୋକୀ ଭାରିଯା ହେବୁ,
ଭାରିଯା ହେବୁ
ନିତି ଗୋଡ଼ ଘଷି ଦେବୁ
ବାଉଁଶ ପତର ସରୁ
ତୋତେ ନେଇଯିବି ସମ୍ବଲପୁରୁ,
ସମ୍ବଲପୁରୁ
ଧାନ କଟାକଟି ସରୁ ।

ନୂଆବୋହୂକୁ ଥଟ୍ଟା କରି ନଣନ୍ଦ ବୋଲେ-

ନଈରେ ପଚା ପଣସ
ଆସ ନୂଆ ବୋହୂ ବେଦୀରେ ବସ,
ବେଦୀରେ ବସ
ନନା ଯିବେ କପିଳାସ ।

ସ୍ଥାନେ ସ୍ଥାନେ ଅତି ଉତ୍ସାହରେ ସମବୟସ୍କ ଓ ସମଧର୍ମୀଙ୍କ ମେଳରେ ଟିକିଏ ନଗ୍ନ ଆଦିରସ ପ୍ରଧାନ ଗୀତର ସୁଅ ଛୁଟେ । ଦିନ ଅପେକ୍ଷା ରାତିରେ ଗୀତର ଲହରୀ ବେଶି ।

ରଜରେ ଆଉ ଏକ ଆକର୍ଷଣୀୟ ଦୃଶ୍ୟ ହେଲା ଜୁଆଁଇଙ୍କର ପୂନେଇ ଖିଆ । ବିଭା ହୋଇ ଯେ ଶଶୁର ଘରକୁ ପ୍ରଥମ ଆସିନଥାଏ । ରଜ ନିକଟବର୍ତ୍ତୀ ହେଲେ ତାକୁ ନିମନ୍ତ୍ରଣ କରାଯାଇ ଆଦର ସମ୍ମାନ କରାଯାଏ । ପିଠାପଣା, ପାନଫୁଲ ଓ ନାନା ପ୍ରକାର ଗାଉଣା ବାଜଣାର ବ୍ୟବସ୍ଥା ଚାଲେ । ବେଶ ମନମୁତାବକ ଜାମା ଯୋଡ଼ ପିନ୍ଧାଇ ନାନା ପ୍ରକାର ଉପହାର ଦ୍ରବ୍ୟ ସହ ରଜ ପରେ ପରେ ଜୁଆଁଇମାନଙ୍କୁ ବିଦାୟ ଦିଆଯାଏ । ଜୁଆଁଇମାନଙ୍କୁ କେନ୍ଦ୍ରକରି ଶଳାଶାଳୀଙ୍କର ନାନା ଥଟ୍ଟା ପରିହାସ ବେଶ ଉପଭୋଗ୍ୟ ହୁଏ । ଜଣେ କବିଙ୍କ ଭାଷାରେ-

ରଜ ପୂନିଅ ଡାକର ପଡ଼ିଯାଏ ହୁରି,
ଘରେ ଘରେ ଖାଲି ନୂଆ ଜୁଆଁଇଙ୍କ ମେଳା

କେତେ ହାସ ପରିହାସ ଚାଲେ ଦିନରାତି
ଷଡ଼ଯନ୍ତ୍ରେ ନାୟକ ବୋଲାନ୍ତି ଶାଳୀ ଶଳା ।

କୌଣସି କୌଣସି ବର୍ଷ ଗାଁର ପିଲାମାନେ ଉତ୍ସାହିତ ହୋଇ ଥିଏଟର କରିପକାନ୍ତି । କୌଣସି କୌଣସି ବର୍ଷ ପାଲା ଗାନ ଚାଲେ । କିଶୋର, ଯୁବକ ଓ ବୟସ୍କ ବ୍ୟକ୍ତିମାନେ ବିଭିନ୍ନ ସ୍ଥାନରେ ତାସଖେଳରେ ମାତିଯାନ୍ତି ପୁଣି ପୁରୁଖା ପୁରୁଖା ଲୋକେ କୋଠଘରେ ପଶାପାଲି ପକେଇ ପଶାକାଠି ଦୁଇ ହାତରେ କଡ଼କଡ଼ କରି 'କଚେବାର' ଡାକରେ କାନରେ ଅତଡ଼ା ପକାଇ ଦିଅନ୍ତି । ସଂକ୍ରାନ୍ତି ଓ ତୃତୀୟ ରଜ ଦିନ ନାଳବାଲି ଓ ତୋଟାରେ ଡୁଡୁ ଖେଳ ପ୍ରତିଯୋଗିତା ବେଶ ଉତ୍ସାହର ସହ ଚାଲେ । ଖେଳାଳିଙ୍କୁ ଉତ୍ସାହିତ କରିବାପାଇଁ ଦଳ ଜିତିବା ସମୟରେ ବେଶ ଜମକରେ ଢ଼ୋଲ ପିଟାଚାଲେ ।

କେହି କେହି ସଂଧ୍ୟାବେଳେ ଭଜନ ଓ କୀର୍ତ୍ତନର ଆସର ଜମେଇ ଦିଅନ୍ତି । ଗ୍ରାମର ଲୋକେ ଅନ୍ୟ ଗ୍ରାମକୁ ଏବଂ ଗ୍ରାମାନ୍ତରର ଲୋକେ ଆମ ଗ୍ରାମକୁ ବୁଲିଆସି ଏକ ଅପୂର୍ବ ସାମାଜିକତା, ସ୍ନେହ ଓ ଭ୍ରାତୃତ୍ୱର ଆନନ୍ଦ ଅନୁଭବ କରନ୍ତି । କି ଧନୀ, କି ଗରିବ ରଜ ସମସ୍ତଙ୍କର ପ୍ରିୟ, ସାନବଡ଼ ଭେଦଭାବର ବିଚାର କରାଯାଏନା।

ତୃତୀୟ ଦିନ ଆସିଗଲେ ଆନନ୍ଦ ଉତ୍ସବକାରୀଙ୍କର ମନ କ୍ରମଶଃ ଫିକା ପଡ଼ିଆସେ । ରଜ ଚାଲିଯିବ, ବଞ୍ଚି ରହିଲେ ବର୍ଷକ ପରେ କେବେ ରଜ ଆସିବ ।

ତୃତୀୟ ଦିନ ସଂଧ୍ୟାରେ ସ୍ତ୍ରୀଲୋକମାନଙ୍କ ମଧ୍ୟରେ ରଜ-ବିଦାୟପାଲା ଅନୁଷ୍ଠିତ ହୁଏ । ଏ ପାଲାରେ ଗ୍ରାମର ସ୍ତ୍ରୀମାନେ ବିଶେଷତଃ ପ୍ରୌଢ଼ାମାନେ ଟିକିଏ ଶ୍ଳୀଳତାର ମାତ୍ରା ଲଂଘନ କରି ସେ ଦିନ ପାଇଁ ସ୍ୱାଧୀନ ହୋଇଥାନ୍ତି। ଅନ୍ୟ ବୟସର ଝିଅ, ବୋହୂ ଓ ଯୁବତୀମାନେ ସେଥିରେ ଭାଗ ନ ନେଲେ ମଧ୍ୟ ପାଲା-ମଉଜ ଅନୁଭବ କରନ୍ତି । ଏହି କୃଷିଭିତ୍ତିକ ପର୍ବଟି ବର୍ଷ-ଯାକର କୃଷିପାଇଁ କ୍ଷେତ୍ର ପ୍ରସ୍ତୁତ କରେ । ରଜରେ ବସୁମତୀ ରଜସ୍ୱଳା ହୁଏ (ଆଷାଢ଼ର ଆଗମନ ହେତୁ), ଅର୍ଥାତ୍ ଆମ ଓଡ଼ିଆଙ୍କର ବାର୍ଷିକ ବୃତ୍ତି ଚାଷର ଏ ହେଉଛି ଆଦିପର୍ବ ।

**ଦଶହରା :**

ଆଜି ସିନା ଓଡ଼ିଶାର ସହର ବଜାର ଓ ପୁରପଲ୍ଲୀରେ ବଙ୍ଗଦେଶୀୟ ରୀତିରେ ଦୁର୍ଗାପୂଜା ଚାଲିଛି, କିନ୍ତୁ ଆମ ଗାଁ ଗଣ୍ଡାରେ ସେ ରୀତିରେ ଦୁର୍ଗାପୂଜା ବା ଦଶହରା ଅନୁଷ୍ଠିତ ହୁଏନା । ଦଶହରାକୁ ବିଭିନ୍ନ ବ୍ୟବସାୟୀ ଓ କାରିଗର ଶ୍ରେଣୀର ଲୋକେ (କମାର, ବଢ଼େଇ, ଖରୁଡ଼ା, ବଣିଆ ଆଦି) ନିଜର ସଜ ପୂଜା କରନ୍ତି । କୌଣସି କୌଣସି ଅଞ୍ଚଳରେ ଦୁର୍ଗାମୂର୍ତ୍ତି ନିର୍ମାଣ କରାନଯାଇ ଘଟକୁ ଦୁର୍ଗାଙ୍କର ପ୍ରତୀକ କରାଯାଇ ପୂଜା କରାଯାଏ । ଦଶହରା ଦିନ ଆମ ଘରେ ସଞ୍ଚିତ ଥିବା ଖଣ୍ଡାୟତର ଅତୀତ ବୀରତ୍ୱ ଓ ଗର୍ବର ସ୍ମାରକୀ ଖଣ୍ଡା, ତରୁଆଲ, ବର୍ଚ୍ଛା ଆଦି ଅସ୍ତ୍ରଶସ୍ତ୍ର ପୂଜା କରାଯାଏ । ପିଲାଦିନେ ଆମେ ଶୁଣୁଁ : ଆମ ସାଇରେ ଜଣେ ସାଆନ୍ତ ବାପା ଥିଲେ, ନାମ ତାଙ୍କର ମହାଦେବ । ମାଂସପେଶୀ ତାଙ୍କର ବଳିଦେବା ପରି ।

ଦଶହରା ଦିନ ଖଣ୍ଡା ପଟେ ଧରି ଖପ୍‌କରି ଡ଼େଇଁପଡ଼ି ଡାକ ଛାଡ଼ନ୍ତି- ଦ୍ରିଯୋ୍ୟାଧନ (ମୋ ଅଜା) ଚାଲିଆ; ହେଇଯାଉ ଖଣ୍ଡେ ପଟେ । ପୂର୍ବ ପୁରୁଷମାନେ କେବେ ଲଢ଼େଇ କରୁଥିଲେ । କଳଙ୍କି ଲଗା ଖଣ୍ଡାକୁ ଧରି କୁଦାକୁଦି କରି ଦୁହିଁଙ୍କର କିଛି ସମୟ ଖେଳ ଚାଲେ । ଦେଖଣାହାରୀଙ୍କର ସାବାସ୍ ସାବାସ୍ ଧ୍ୱନି ମଧରେ ଖେଳର ଇତିଶ୍ରୀ ହୁଏ । ଦଶହରା ଦିନ ଗାଁ ଝିଏ ଦେବୀ ଦର୍ଶନ ସାରି ସଂଧାବେଳେ ଆଗାମୀ କୁଆଁର ପୁନେଇଁ ପାଇଁ ପ୍ରସ୍ତୁତ ହୋଇଯାଆନ୍ତି ।

### ଭାଲୁକୁଣି ଓଷା :

ଭାଦ୍ରବ ମାସରେ ଭାଲୁକୁଣି ବା ଖୁଦୁରୁକୁଣି ଓଷା ଓଷେଇତୁଣୀଙ୍କ ଠାରୁ ଆରମ୍ଭ କରି, ପିଲା ଭେଣ୍ଡା ଓ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ ମନରେ ଆନନ୍ଦର ଜୁଆର ଖେଳାଇ ଦିଏ । ଓଡ଼ିଶାରେ ଅତୀତର ସାଧବ ପୁଅଙ୍କର ସାଗର ପାରରେ ଗୌରବୋଜ୍ଜ୍ୱଳ ନୌବାଣିଜ୍ୟକୁ କେନ୍ଦ୍ର କରି ଗଢ଼ିଉଠିଥିବା ଓଷାର ଏହି ଉପାଖ୍ୟାନଟି ଅତି ଲୋକପ୍ରିୟ । ମଙ୍ଗଳାଙ୍କ ଆଶୀର୍ବାଦରୁ ତଅପୋଇ ବହୁ କଷ୍ଟ ଓ ଜ୍ୱାଳା ସହି ଶେଷରେ ସାଧବ ଭାଇମାନଙ୍କର ସ୍ନେହାନୁଗତ୍ୟ ପାଇଥିଲା । ଗାଁର ଅଭିଆଡ଼ୀ ଝିଅମାନେ ଶେଷ ପର୍ଯ୍ୟନ୍ତ ଭାଇମାନଙ୍କର ସ୍ନେହରୁ ବଞ୍ଚିତ ନ ହେବାପାଇଁ : ଏଇ କାମନା ପୋଷଣ କରି ମଙ୍ଗଳାଙ୍କର ପୂଜା କରିଥାନ୍ତି ।

ଭାଲୁକୁଣି ଓଷାର ପହିଲି ପାଳି ଆରମ୍ଭ ହେବା ପୂର୍ବରୁ (ପ୍ରତି ରବିବାରରେ) କୁମାରୀ ଝିଅମାନେ ଘଣ୍ଟା ଓ ଶଙ୍ଖ ବଜାଇ ମୂର୍ତ୍ତି ନିର୍ମାଣ ପାଇଁ ଉପଯୁକ୍ତ ସ୍ଥାନରୁ ମାଟି ଆଣନ୍ତି । ତା' ପରେ ମୂର୍ତ୍ତି ତିଆରି ଚାଲେ । ମଙ୍ଗଳାଙ୍କ ମୂର୍ତ୍ତି ସହ ଆଉ ଦିଓଟି ମୂର୍ତ୍ତି ତିଆରି ହୁଏ । ଆଜିକାଲି ଗାଁ ଗଣ୍ଡାରେ କଟକ ତିଆରି କିଣାମୂର୍ତ୍ତି ପୂଜା କରୁଛନ୍ତି । ଆମ ପିଲାଦିନେ ମୂର୍ତ୍ତି ପାଇଁ ବାହାରକୁ ଯିବାକୁ ପଡୁନଥିଲା । ଗାଁ ଗାଁକେ କୌଣସି କୌଣସି ଜାଗାରେ ପୁରୁଷ ଶିଳ୍ପୀ ମୂର୍ତ୍ତି କରନ୍ତି- କିନ୍ତୁ ମୁଁ ଦେଖିଛି : ଆମ ସାଇର ମୂର୍ତ୍ତି ତିଆରି ବେଳକୁ ମା'କୁ (ବଡ଼ ମାଇଁ) ଡକରା ପଡ଼େ । ସେ ତା'ର ଗ୍ରାମ୍ୟ ଶିଳ୍ପୀ ସୁଲଭ ଆବେଗ ଓ ଅନୁପ୍ରାଣନା ନେଇ କାଠର ପିଢ଼ି ଉପରେ ମୂର୍ତ୍ତି ତିନୋଟିକୁ ତିଆରି କରେ । ପୋଖତ ଶିଳ୍ପୀର ଆନୁପାତିକ ଜ୍ଞାନ ଓ ସୌନ୍ଦର୍ଯ୍ୟବୋଧର ଅଭାବ ରହିଥିଲେ ମଧ ସେ ଯାହା ଯେପରି କରିଦିଏ, ସମସ୍ତଙ୍କ ଆଖିରେ ଭାରୀ ସୁନ୍ଦର ଦିଶେ । ମୂର୍ତ୍ତି ଖରାରେ ଶୁଖିଗଲେ ହରିତାଳ ରଙ୍ଗ ମୁହଁ ଓ ଦେହରେ ବୋଳି ଦିଏ । ମଙ୍ଗଳା ଓ ଅନ୍ୟ ମୂର୍ତ୍ତିଙ୍କ ନାକ, ହାତ, ବେକ ଓ ଗୋଡ଼ରେ ଗାଉଁଲି ଅଳଙ୍କାର ଛାଇଦିଏ- ନାକରେ ନୋଥ, ନାକଫୁଲ, ବେକରେ ଚମ୍ପାକଢ଼ି ମାଳ, ହାତରେ ଖଡୁ, ଗୋଡ଼ରେ ମଲ, ପାଝୁଲି । କେଶ ଚିହ୍ନିତ କରିବା ପାଇଁ ଚିକ୍କଣ କଳାରଙ୍ଗ ଦିଆଯାଏ । ଆଖିର ରଙ୍ଗ କଲାବେଳେ ଡ଼ୋଳା ଓ ଆଖିପତା ଏପରି ଆଙ୍କେ, ଯେମିତି ମଙ୍ଗଳା ଓ ଅନ୍ୟ ମୂର୍ତ୍ତିଗୁଡ଼ିକ ଶୂନ୍ୟକୁ (ଆକାଶକୁ) ଚାହିଁଛନ୍ତି । ପ୍ରତ୍ୟେକଙ୍କ ମୁଣ୍ଡରେ ସୁନ୍ଦର ନୋଳ ମୁକୁଟ ।

ଭାଦ୍ରବ ମାସର ପ୍ରତି ରବିବାର ଦିନ ସକାଳୁ ଅଭିଆଡ଼ୀ ଝିଅମାନେ ଶଙ୍ଖ, ଘଣ୍ଟା ବଜାଇ ପୋଖରୀକୁ ଗାଧୋଇବା ପାଇଁ ଯାଆନ୍ତି ଏବଂ ଫୁଲ (କଇଁଫୁଲ, କଣ୍ଡିଫୁଲ) ଓ ବେଲପତ୍ର ତୋଳି ଆଣନ୍ତି । ସନ୍ଧ୍ୟା ହେବାମାତ୍ରେ ଯାହାଙ୍କର ଘରର ଓସାରିଆ ପିଣ୍ଡାରେ ଓଷା ହେବାର ଥାଏ, ପୂର୍ବରୁ ଲିପି ଦିଆଯାଇ କାନ୍ଥରେ ନାନା ଝୋଟିଚିତ୍ର କରାଯାଇଥାଏ । ଓଳିଛାରୁ କଇଁଫୁଲ ମାଳା ଲମ୍ବେଇ ଦିଆଯାଏ । ପୂଜା ସମ୍ମୁଖସ୍ଥ ଦାଣ୍ଡ ଅଂଶଟିକୁ ମଧ୍ୟ କଇଁ ଫୁଲ ମାଳାରେ ସଜାଯାଏ । ଦୀପ ଆଲୁଅରେ ମଙ୍ଗଳାଙ୍କ ମୁହଁ ଉଜ୍ଜ୍ୱଳ ଦେଖାଯାଏ । ଉତ୍ସାହୀ ବାଳକ ଓ ବୟସ୍କମାନେ ଓଷା ସ୍ଥାନରେ ଜମା ହୋଇଯାଆନ୍ତି । ଗାଁ ଢୋଲିଆ ଆସି ଗୋଟିଏ ପିଣ୍ଡାରେ ବସି ବରାଦ ମାତ୍ରେ ବାଜାରେ ବାଡ଼ି ପକାଉଥାଏ । ଓଷେଇତୁଣୀଙ୍କ ମଧ୍ୟରେ ଜଣେ ମୁଖ୍ୟ ଥାଏ, ତାକୁ କହନ୍ତି ମେଣ୍ଟା ନାହାକାଣୀ । ଗାଁର ମା', ବୋହୂ, ଗୋସମା, ଆଈ: ଏମାନେ ଓଷା-ବହର ବେଳକୁ ପୂଜା ପିଣ୍ଡାରେ ଉପସ୍ଥିତ ହୋଇ ଓଷେଇତୁଣୀମାନଙ୍କୁ ଉତ୍ସାହ ଓ ନାନା ପରାମର୍ଶ ଦେଉଥାନ୍ତି । ସଂଧ୍ୟାରୁ ପୂଜା ଓ ଭାଲୁକୁଣୀ ଗୀତ ଚାଲେ । ଝିଅମାନେ ଦୀପର ସଳିତା ଖୁଣ୍ଟି ଦେଉଥାନ୍ତି । ପିଲାମାନେ ମଝିରେ ମଝିରେ ଘଣ୍ଟ ବଜାଉଥାନ୍ତି । ମଝିରେ ମଝିରେ ଶଙ୍ଖ ଧ୍ୱନିରେ ଓଷା ସ୍ଥାନ ଆନନ୍ଦ ଉଦ୍ଦୀପନାମୟ ହୋଇ ଉଠୁଥାଏ । ରାତି ଆଠ ବା ସାଢ଼େ ଆଠଟା ବେଳକୁ ଗାଁର ଦକ୍ଷିଣରେ ଥିବା ନାଳକୁ ଓଷେଇତୁଣୀମାନେ ନାରିକେଳ ଖଚିତ କଳସ ଓ ଦୀପ ଧରି କଳସ ବୁଡ଼େଇବା ପାଇଁ ବାହାରନ୍ତି । ଭାଲୁକୁଣି ଗୀତର ସୁଅ ଛୁଟିଥାଏ । ବାଜା ଓ ଶଙ୍ଖ ଧ୍ୱନିରେ ଶୋଭାଯାତ୍ରା ଉଚ୍ଛୁଳି ଉଠେ । ପିଲା ଓ ଭେଣ୍ଡାଙ୍କର ନାନା ଭଙ୍ଗୀରେ ନାଚ ଓ ସେମାନଙ୍କର ଆମୋଦ ଦେଖିବାର କଥା ।

କଳସ ବୁଡ଼ାଇ ଓଷେଇତୁଣୀମାନେ ଫେରନ୍ତି ଏବଂ ଚିରାଚରିତ ରୀତିରେ ପୂଜା ଓ ବନ୍ଦାପନା କରାଯାଇ ତଅପୋଇ ଗୀତ ବୋଲା ଚାଲେ । ଶେଷରେ ଭୋଗ ଲଗାଯାଇ (କଦଳୀ, ନଡ଼ିଆ ଦୁଧ ଓ ଖଇ) ହୁଳହୁଳି ମଧ୍ୟରେ ଗୋଟିଏ ବାଗିର ପୂଜା ସରେ । ମୂର୍ତ୍ତିଗୁଡ଼ିକୁ ଜଣକ ଘରକୁ ଉଠାଇ ନିଆଯାଏ । ପ୍ରତିଦିନ ମେଣ୍ଟା ନାହାକାଣୀ ମଙ୍ଗଳାଙ୍କ ପାଖରେ ଖଇ, ଉଖୁଡ଼ା ଓ କ୍ଷୀରର ଭୋଗ ଦିଏ ।

ଭାଲୁକୁଣି ଓଷା ସାଇ ସାଇ ଭିତରେ ପ୍ରତିଯୋଗିତା ଓ କଳହ ବଢ଼େଇ ଦିଏ । କା ଭାଲୁକୁଣୀ କିପରି ହୋଇଛି ସେ ସଂପର୍କରେ ପରସ୍ପରକୁ ଖୁଞ୍ଚା ଦିଆ ଗୀତ ଚାଲେ-

ଆମ ଭାଲୁକୁଣୀ ହାତରେ ଶଙ୍ଖା
ତାଙ୍କ ଭାଲୁକୁଣୀ ମୁହଁଟା ବଙ୍କା ।
ଆମ ଭାଲୁକୁଣୀ ଖାଏ ଦହି
ତାଙ୍କ ଭାଲୁକୁଣୀ ଯାଏ ବହି ।
ଆମ ଭାଲୁକୁଣୀ ନାକରେ ନୋଥ
ତାଙ୍କ ଭାଲୁକୁଣୀ ମୁହଁରେ ବଥ । ଇତ୍ୟାଦି... ।

ଆମ ସାଇ ଓ ଆର ସାଇ ମଧ୍ୟରେ ଭାଲୁକୁଣୀକୁ କେନ୍ଦ୍ର କରି ଓଷାବାର ମାନଙ୍କରେ ବାତାବରଣ ସରଗରମ ହୋଇଉଠେ । ଏଇ ପ୍ରତିଯୋଗିତା ବେଶ ଉପଭୋଗ୍ୟ ହୋଇଥାଏ, କିନ୍ତୁ ତିକ୍ତତା ସୃଷ୍ଟି ହେବାକୁ ଦିଆଯାଏ ନାହିଁ ।

ଭାଦ୍ରର ପାଞ୍ଚଟି ରବିବାରରେ ପାଞ୍ଚପାଳି ପୂଜା ହୁଏ । ପଞ୍ଚମ ବା ଶେଷ ପାଳି ଓଷା ସମସ୍ତଙ୍କ ମନରେ ଅଲିଭା ହୋଇ ରହେ । ରାତିସାରା ଓଷେଇତୁଣୀମାନେ ଜାଗ୍ରତ ରହନ୍ତି । ସଂଧ୍ୟା ପହରରେ କଳସ ବୁଡ଼ା, ପାରଂପରିକ ପୂଜା ହୁଳହୁଳି ଓ ତଅପୋଇ ଗୀତ କଥା ସରିଗଲେ ଓଷେଇତୁଣୀମାନେ ମଙ୍ଗଳା ବା ଦୁର୍ଗାଙ୍କ ସଂପର୍କରେ ନାନା ଲୋକଗୀତ ଗାଆନ୍ତି । ସେ ଗୀତରେ ଗ୍ରାମ୍ୟ ଜୀବନର ନାନା ସୁଖ ଦୁଃଖ ଅନୁଭୂତିର ଚିତ୍ର ରହିଥାଏ, ଯଥା-

ଉଠିଥିଲେ ଦୁର୍ଗାଦେବୀ କେତେ ଦୂର ଗଲେ,
ମାଳୀଘର ଦ୍ୱାରେ ଯାଇ ପ୍ରବେଶ ହୋଇଲେ
ମାଳୀଘର ଝିଅ ଲୋ ତୁ ଅପୂର୍ବ ସୁନ୍ଦରୀ
ଫୁଲ ଗୁଚ୍ଛ ଗୁଚ୍ଛ ହୁଏ ରାତ୍ର ଷୋଳ ଘଡ଼ି
ସେହିଫୁଲ ଗୁଚ୍ଛ ଗୁଚ୍ଛ ଲାଗିଗଲା ଧନ୍ଦା
ରାମଙ୍କର ରତ୍ନ ମୁଦି ସୀତା ନେଲେ ବନ୍ଧା ।

କୌଣସି କୌଣସି ପାଳିରେ କାଳିସୀଙ୍କ ଆବିର୍ଭାବ ହୁଏ । ନିଶା ପରିଡ଼ା ଜଣକ ପିଣ୍ଡାରେ ବସି ଶୂନ୍ୟକୁ ଏକଧ୍ୟାନରେ ଚାହିଁ ଧୀରେ ଧୀରେ ଥରିବାକୁ ଆରମ୍ଭ କରେ । ପାଖକୁ ଉତ୍ସାହଦାତା ଜୁଟିଯାଆନ୍ତି । ଯେତିକି ହରିବୋଲ ହୁଳହୁଳି ପଡ଼େ, ସେତିକି ଅଧିକ ଥରିବାକୁ ଲାଗେ- ଚରମ ଅବସ୍ଥାରେ ହୁଂକାର ଦେଇ ହନୁମାନ ପରି ବାଡ଼ ଡ଼େଇଁ ତାର ଜଣା ସ୍ଥାନମାନଙ୍କରୁ କାକୁଡ଼ି ଆଦି ଛିଡ଼େଇ ଖାଇଚାଲେ । ଶେଷକୁ ଓଷା ସ୍ଥାନକୁ ଧାଇଁ ଆସି ଥରି ଥରି ହାତ ମୁଠା ମୁଠା କରି ପଡ଼ିଯାଏ । ତାକୁ କେନ୍ଦ୍ର କରି ଗାଁ ଲୋକେ କେତେ ମଉଜ କରନ୍ତି- ଗାଁର ଭଲମନ୍ଦ ପଚାରନ୍ତି । କାଳିସୀ ଅନୁନାସିକ ସ୍ୱରରେ କହିଚାଲେ : ତୋତେ ବୋଲୁ ଥାଇରେ ବିଛାତି କୁମର, ହୁଁ-ଉଁ, ହୁଁ-ଉଁ, ହୁଁ-ଉଁ । କେତେବେଳକରେ କାଳିସୀ ଛାଡ଼େ- ହାତ ଗୋଡ଼ ଛାଟି ଦେଇ ନିଶ୍ଚଳ ହୋଇ ପଡ଼ିଯାଏ- କିଛି ସମୟ ପରେ ଚେତା ଫେରେ ।

ଶେଷପାଳି ପୂଜା- ରାତି ଯେତିକି ଘନେଇ ଆସେ ଓଷେଇତୀଙ୍କ ମନରେ ସେତିକି ବିଷାଦର ଛାୟା ଖେଳିଯାଏ । ବରଷକର ଏ ସୁଯୋଗ ଚାଲିଯାଉଛି, ବଞ୍ଚିଥିଲେ ବର୍ଷକ ପରେ ଓଷା ତା'ର ଆଗମନୀ ଶଙ୍ଖ ବଜାଇ ଆସିବ । ଅନ୍ୟ ମୃଣ୍ମୟୀ ମୂର୍ତ୍ତିକୁ ଯେପରି ବିସର୍ଜନ ଦିଆଯାଏ, ସେହିପରି ଏକ ନାଟକୀୟ ଗ୍ରାମ୍ୟ ରୀତିରେ ବିସର୍ଜନ ପାଲା ଚାଲେ । ଗାଁ ଭିତରୁ ଜଣକୁ ବୈଦ୍ୟ ଭାବରେ ବଛାଯାଇଥାଏ । ସେ ରାତି ଶେଷବେଳକୁ ଆସି ସମସ୍ତଙ୍କ ଉପସ୍ଥିତିରେ ଭାଲୁକାଣୀଙ୍କର ନାଡ଼ୀ ପରୀକ୍ଷା କରେ ଏବଂ ସେମାନଙ୍କର ଆୟୁର

ଶେଷ କାଳର ନିଷ୍ଠୁର ସମ୍ବାଦ ଗ୍ରାମ୍ୟ ରୀତିରେ ଘୋଷଣା କରେ- କହେ : ଦେହ ଶୀତଳ ହେଇଗଲାଣି, ସନ୍ନିପାତ ! ତା'ପରେ ଓଷେଇତୀଙ୍କର କାନ୍ଦଣା ଚାଲେ-

ବଇଦ ପୁଅ, ବେଲା କଂସାରୁ ଅଧାକ ନିଅ
ସୁନାରୁପାରୁ ଅଧାକ ନିଅ, ଶାଶୁବୁଢ଼ୀକୁ ଆୟୁଷ ଦିଅ ।
ଆଉ କିଛି ଦିନ ରହିଲ ନାହିଁ, ହେ ବଇଦେହୀ !
ଯାଉଛ ଦରିଆ ପାଆରି ହୋଇ, ହେ ବଇଦେହୀ !
କଳାଶାଢ଼ୀ ଖଣ୍ଡ କାହାକୁ ଦେଇ, ହେ ବଇଦେହୀ !
ଆଉ କିଛି ଦିନ ରହିଥାଆନ୍ତ, ହେ ବଇଦେହୀ !
ପାଳଧାନ କ୍ଷୀରି ଖାଇଥାଆନ୍ତ, ହେ ବଇଦେହୀ !
ଗୁଣ୍ଡିଚା ମଣ୍ଡପ ଖାଲି ପଡ଼ିଲା, ହେ ବଇଦେହୀ !
ପଣସିଆ ତୁଠ ପୂରି ଉଠିଲା, ହେ ବଇଦେହୀ !

କାନ୍ଦଣା ଗୀତରେ ରାତି ପାହିଯାଏ । ଭୋରୁଅ ଆକାଶରେ ସୂର୍ଯ୍ୟ ଉଠନ୍ତି । ଆୟୋଜନ ଚାଲେ ଭସାଣିର । ଘଣ୍ଟା, ଶଙ୍ଖ, ମହୁରୀ ଓ ଢୋଲ ଧ୍ୱନିରେ ଗାଁ ଦାଣ୍ଡ କଂପି ଉଠେ । ତିନିଜଣ ଭେଣ୍ଡା ତିନୋଟି ମୂର୍ତ୍ତିକୁ ମୁଣ୍ଡରେ ଧରନ୍ତି । ହରିବୋଲ ହୁଳହୁଳିରେ ଦାଣ୍ଡ ଉଚ୍ଛୁଳି ପଡ଼େ । ଓଷେଇତୀମାନେ ବିଦାୟକାଳୀନ କାନ୍ଦଣା ଗୀତ ଗାଇ ଗାଇ ଗାଁ ନାଳ ଆଡ଼କୁ ଅଗ୍ରସର ହୁଅନ୍ତି । ପୂଜାଫୁଲ, ବେଲପତ୍ର ପାଛିଆରେ ଆଗେ ଆଗେ ନିଆଯାଉଥାଏ । ଓଷେଇତି ଖଇ ବିଞ୍ଚି ବିଞ୍ଚି ଚାଲୁଥାନ୍ତି । ସମସ୍ତଙ୍କ ଦ୍ୱାର ଓ ପିଣ୍ଡା ଖାଲି ମୁଣ୍ଡମାଳ । ଏ ଦୃଶ୍ୟରେ ସ୍ତ୍ରୀଲୋକଙ୍କର ଆଖିରୁ ଲୁହ ଝରିପଡ଼େ । ନାଳରେ ମୂର୍ତ୍ତି ଉଜେଇ ଦେଇ ନିଥର ନୀରବ ଭାବରେ ଓଷେଇତୀମାନେ ଘରକୁ ଫେରନ୍ତି ।

## କୁମାର ପୂର୍ଣ୍ଣିମା :

ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କୁମାର ପୂର୍ଣ୍ଣିମା ଯାଏଁ ଝିଅଙ୍କର ସଂଧ୍ୟାରେ ଛତ୍ରଓଷା, ତାଳଖୁକୁଣ୍ଡି ଓ ଉଖୁଡ଼ା ଭୋଗ ଏବଂ ପୂର୍ଣ୍ଣିମାରେ ଚାନ୍ଦବଢ଼ା ଆମ ପିଲାମାନଙ୍କ ପକ୍ଷରେ ବେଶ ଉପଭୋଗ୍ୟ । ନଳିତା ଖାଡ଼ିରେ ଛତ୍ର ତିଆରି କରି ପୂଜାସ୍ଥାନ ଚଉଁରା ମୂଳେ ଓ ଘର ଚାଳରେ ଖଞ୍ଜାଯାଇ ରଖାଯାଏ, କଣ୍ଟିଫୁଲ ମଧ୍ୟ ପ୍ରତ୍ୟେକ ସଂଧ୍ୟାରେ ଖଞ୍ଜାଯାଏ । ଚଉଁରା ପାଖରେ କଇଁଫୁଲ ପାଖୁଡ଼ାରେ ଝିଅମାନେ କୋଠି କରନ୍ତି । ଶାରଦୀୟ ଜ୍ୟୋସ୍ନାରେ କୁଆଁରୀ-ମାନଙ୍କର ଲୋକଗୀତ ଏକାନ୍ତ ଉପଭୋଗ୍ୟ, ଯଥା-

ସାତ ସମୁଦର ଦେଉଳ ଚୁଆ ଚନ୍ଦନ ଗୋଟି
ରାମ ସଙ୍ଗେ ସୀତା ଖେଳନ୍ତି ଜୁଅ କଉଡ଼ି ମୁଠି
ସାତ ମୁଠି ଜୁଅ ଖେଳିଲେ ରାମ ହୋଇଲେ ଧନ୍ଦା
ରାମଙ୍କର ରତ୍ନ ମୁଦି ଯେ ସୀତା ରଖିଲେ ବନ୍ଧା

ପୁଣି ଚମ୍ପାବତୀ ରାଜକନ୍ୟାର ସ୍ୱପ୍ନରେ ଗାଆନ୍ତି-

ଚମ୍ପା ଫୁଲଟିଏ ପାଇଲି ବନହଳଦୀ ପ୍ରାୟେ
ଶିବ ଉପାସନା କରିବି କାନ୍ତ ଆସିବା ଯାଏ
ଚମ୍ପାବତୀ ରାଜକୁମାରୀ ସେ ଯେ ନବ ତରୁଣୀ
ଗୀତଗାଏ ନିଜ ନଅରେ ନିଜ ମନରେ ଗୁଣି ।

**ଗାଁର କୋଠ ଠାକୁର :**

ରାଧାକୃଷ୍ଣ ହେଉଛନ୍ତି ଗାଁର କୋଠ ଠାକୁର । ତାଙ୍କ ନାମରେ ସ୍ୱତନ୍ତ୍ର ଜମି ଓ ଘରବାଡ଼ି ରହିଛି । ପ୍ରତିଷ୍ଠିତ ବିମାନରେ ରାଧାକୃଷ୍ଣ ବିଗ୍ରହ ପୂଜିତ ହୁଅନ୍ତି । ରାଧାକୃଷ୍ଣଙ୍କର ମୂର୍ତ୍ତି ପିତଳ ମୂର୍ତ୍ତି । ସଂକୀର୍ତ୍ତନ ପାଇଁ ଆନୁଷଙ୍ଗିକ ଖୋଳ, କରତାଳ, କୁବୁଜି ଏବଂ ରାଧାକୃଷ୍ଣଙ୍କର ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ କିଛି ରହିଛି । ମୋର ବାଲ୍ୟାବସ୍ଥାରେ ଅର୍ଜ୍ଜୁନ ପଣ୍ଡା ବୋଲି ଜଣେ ବ୍ରାହ୍ମଣ  ରାଧାକୃଷ୍ଣଙ୍କର ପୂଜା କରୁଥିଲେ । ସେ ନିଜର ପରିବାର ସହ ଅନ୍ୟତ୍ର ଚାଲିଯିବାରୁ ମୁରଲିଧର ପତି ନାମରେ ଜଣେ ବ୍ରାହ୍ମଣଙ୍କୁ ପୂଜାପାଇଁ ନିଯୁକ୍ତି ଦିଆଗଲା । ସେ ରାଧାକୃଷ୍ଣଙ୍କ ଉଦ୍ଦେଶ୍ୟରେ ସମର୍ପିତ ବାଡ଼ିରେ ଘର ତିଆରି କରି ରହିଲେ ଏବଂ ବିଗ୍ରହର ପୂଜା କଲେ ।

ମୁରଲି ପତି ଭଲ ଛାନ୍ଦବନ୍ଧୀ ଜାଣିଥିବା ଜଣେ ସ୍ନେହୀ ସ୍ୱଭାବର ଲୋକ । ବୈଦେହୀଶ ବିଳାସର ବହୁ ଛନ୍ଦ ତାଙ୍କର ମୁଖସ୍ଥ । ପଦେ କେଉଁଠି ନ ଝୁଣ୍ଟି ସେ ବୈଦେହୀଶ ବିଳାସର ସୂର୍ପଣଖା ପ୍ରସଙ୍ଗ ଗାଇବାର ମୁଁ ଏକାଧିକବାର ତାଙ୍କ ମୁଖରୁ ଶୁଣିଛି । ସେ ପିଲାଛୁଆ ଧରି ଆମ ଗାଁରେ ବେଶ ଆନନ୍ଦରେ ରହିଥିଲେ । ମଣିଷର କି ଦୁର୍ଯୋଗ ! ଥରେ ଗ୍ରୀଷ୍ମକାଳରେ ଦାଣ୍ଡ ଓ ଦାଣ୍ଡପିଣ୍ଡାରେ ତାଙ୍କର ସ୍ତ୍ରୀ ଓ ଛୁଆପିଲା ଶୋଇଥିବା ସମୟରେ କୁକୁର କାମୁଡ଼ାରେ ସେମାନେ (ଗୋଟିଏ ପିଲାକୁ ଛାଡ଼ି) ପରଲୋକ ଗମନ କଲେ । ମୁଁ ସେତେବେଳେ ଏମ୍.ଏ. ପଢୁଥିଲି । ଗ୍ରୀଷ୍ମଛୁଟିରେ ଘରକୁ ଆସିଥାଏଁ । ବିଚରା ପତି ଆମ ଘର ଠାକୁରଙ୍କ ପୂଜା ସାରି ଚାଲିଗଲେ । ପୂର୍ବ ଦିନରେ ବର୍ଷାବୟାର ହୋଇଥିବାରୁ ଗୋଟିଏ ଗୋଖର ସାପ ଆର ସାଇର ଠାକୁର ଘରର ଭୋଗ ହାଣ୍ଡିରେ କୁଣ୍ଡଳୀ ହୋଇ ଶୋଇଥାଏ । ପତି ଭୋଗ ଦେବେ ବୋଲି ହାଣ୍ଡିରେ ହାତ ଭର୍ତ୍ତି କଲାମାତ୍ରେ ସାପ ଚୋଟ ମାରିଲା । ସନ୍ଦେହ କରି ପୁଣି ହାତ ପୂରାଇବାରୁ ପୁଣିଥରେ ଚୋଟ ମାରିଲା । ଭୋଗ ହାଣ୍ଡି ଟେକି ନେଇ ପଦାରେ ଥୋଇ ଦେବାମାତ୍ରେ ବିଷାକ୍ତ ସାପ ଦେଖି ସଙ୍ଗେ ସଙ୍ଗେ ଲୋକମାନଙ୍କୁ ଜଣାଇ ଦେଲେ । ଅଜା ହୃଷୀ ନାହାକ ବିଷ ଝାଡ଼ିବାରେ ଧୂରନ୍ଧର । ସେ ସହସା ଆସି ଝଡ଼ା ଆରମ୍ଭ କଲେ । ସାମାନ୍ୟ ଉଶ୍ୱାସ ଅନୁଭବ କରିବାରୁ ପତି ଖରାରେ ଆମ ସାଇରେ ଥିବା ତାଙ୍କ ଘରକୁ ଚାଲି ଆସିଲେ । ଖାଇବେ ବୋଲି ଆମ୍ବ କିଣାଯାଇ ରଖାଯାଇଛି । ଆମ୍ବ ସ୍ଥାନରେ ଆମ୍ବ ରହିଲା । ସାପ ବିଷ କ୍ରମେ ଦେହସାରା ଚରିବାକୁ ଲାଗିଲା । ଜାତି ବର୍ଣ୍ଣ ନିର୍ବିଶେଷରେ ସ୍ଥାନୀୟ ଗୁଣୀ ଲାଗିଗଲେ- ଏପରିକି ଦଂଶିଥିବା ସାପକୁ ମଧ ଗୁଣିଆ ଆକର୍ଷଣ କରି ଆଣିଲା । କିନ୍ତୁ

ସେଦିନ ମଙ୍ଗଳବାର, ଅମାବାସ୍ୟା । କି ଦୁର୍ଯୋଗ ! ବିଷ ନ ଝଡ଼ି କ୍ରମଶଃ ତାଙ୍କର ମସ୍ତିଷ୍କକୁ ଉଠିଲା । ମୁଁ ଏ ଅପ୍ରତ୍ୟାଶିତ ସମ୍ବାଦରେ ସ୍ତମ୍ଭୀଭୂତ ହୋଇ ଦୌଡ଼ିଯାଇ ଦେଖେଁ : ପତିଙ୍କର ଚେତା ରହିଛି, କିନ୍ତୁ ଆଖିକୁ ଜାଲଜାଲିଆ ଦିଶି ଆସିଲାଣି । 'ବାବୁ ଆସିଲେ' ବୋଲି ପତିଙ୍କ ମୁହଁରୁ ଏ ପଦକ ଶୁଣିଛି, କିନ୍ତୁ ଆମ୍ଭମାନଙ୍କର ଘନୀଭୂତ ଉଦ୍‌ବେଗ ଓ ଉତ୍‌କଣ୍ଠାକୁ ଏଡ଼େଇ ଦେଇ ସେ ଅନ୍ୟ ଲୋକକୁ ଚାଲିଗଲେ । ଏ କରୁଣ ଦୃଶ୍ୟରେ ସମସ୍ତଙ୍କ ଆଖିରେ ଲୁହ । ଶେଷ ନିଃଶ୍ୱାସ ତ୍ୟାଗ ପରେ ତୁଣ୍ଡରୁ ତାଙ୍କର ବହେ ନୀଳଗରଳ ।

ପତିଙ୍କର ଶୋଚନୀୟ ମୃତ୍ୟୁପରେ ପୁଅଟି ତା'ର ମୋର ଜନ୍ମସ୍ଥାନ ଓସ୍ତପାଳରେ ଆମ ଘର ଠାକୁର ପୂଜା କରି ବାପାଙ୍କ ଠାରୁ କିଞ୍ଚିତ୍ ଶିକ୍ଷାଦୀକ୍ଷା ପାଏ । ଶେଷରେ ପୁରୁଣିଆଁ ଫେରିଆସେ ଏବଂ ରାଧାକୃଷ୍ଣଙ୍କ ସହ ଗାଁର ସବୁ ଠାକୁର ପୂଜା କରେ । ବାବାଜୀକୁ ଗାଁ ଲୋକେ ବିଭାଚୂରା କରାଇଲେ । ବାବାଜୀ ଆନନ୍ଦରେ ଅଛି । ପୁଅଟିଏ ତାର ବି.କମ୍. ପାଶ୍ କରି କଟକ ମାଧ୍ୟମିକ ଶିକ୍ଷା କାର୍ଯ୍ୟାଳୟରେ କିରାଣି ରହିଛି ।

ଗାଁରେ ରାଧାକୃଷ୍ଣଙ୍କୁ ଛାଡ଼ିଦେଲେ ଆମ ଘରେ ଭାଗବତଗାଦି; ଆର ସାଇ ଆମ ବଳବଂଶରେ ମଧ୍ୟ ସେଇ ଭାଗବତଗାଦି ଏବଂ ପଧାନ ଘରେ ଭାଗବତଗାଦି । କିଛି ବର୍ଷ ତଳେ କାହ୍ନୁଚରଣ ବଳ ନାମକ ଜଣେ ଦାଦା ତାଙ୍କ ଘରେ ଗଣେଶ ବିଗ୍ରହ ପ୍ରତିଷ୍ଠା କରି ପୂଜା କରି ଆସୁଛନ୍ତି ।

ପ୍ରତ୍ୟେକ ଗାଦିରେ ଜଗନ୍ନାଥ ଦାଶଙ୍କ ଭାଗବତ ସହ ମହାଭାରତ, ରାମାୟଣ ଓ ଅନ୍ୟାନ୍ୟ ପୋଥି ପୂଜିତ ହୁଅନ୍ତି । ଉପରବେଳା ଆମ ଠାକୁର ଘର ଦ୍ୱାର ମୁହଁରେ ପୋଥିପାଠ କରାଯାଏ । ଏହାଛଡ଼ା ମୁଁ ଲକ୍ଷ୍ୟ କରିଆସିଛି : ଆର ସାହି ବଉଳମୂଳ ପାଖ ଠାକୁର ଘର ପିଣ୍ଡାରେ ରଘୁ ନାୟକ (ପଧାନ) ତାଙ୍କର ଜଳଦ ଗମ୍ଭୀର ସ୍ୱରରେ ମହାଭାରତ ଓ ଅନ୍ୟାନ୍ୟ ପୋଥିପାଠ କରନ୍ତି । ଶ୍ରୋତାମାନଙ୍କ ମଧ୍ୟରେ ବୃଦ୍ଧ, ପ୍ରୌଢ଼ ଓ କେତେକ ଯୁବକ । ତା'ଛଡ଼ା ବୟସ୍କା ଓ ବୃଦ୍ଧା ସ୍ତ୍ରୀ ଲୋକମାନେ ଅନ୍ତରାଳରେ ବସି ପୋଥିପାଠ ଶୁଣନ୍ତି । ରଘୁ ନାୟକଙ୍କର ଦୀର୍ଘ କୃଷ୍ଣକାୟ ବପୁ ଏବଂ କାନର ନୋଳି ଏବେବି ମୋ ସ୍ମରଣରେ ଆସୁଛି । ସେ ପୋଥି ପଢ଼ାରେ ଯେପରି ଧୂରନ୍ଧର, ଚାଷକାମରେ ମଧ୍ୟ ସେହିପରି । ମୋର ମନେ ଅଛି : ଆଖୁବାଡ଼ିରେ କାମ କରୁଥିଲାବେଳେ ସେ ଢକଢ଼କ କରି ଗୋଟିଏ ସାନଠେକିରେ ଠେକିଏ ପାଣି ପିଇଦେଲେ । ଶାସନୀ ବ୍ରାହ୍ମଣମାନେ ମୁଣ୍ଡ ଲଣ୍ଡା କରି ଶିଖା ମୂଳରେ ବାଳ ପେଣ୍ଡାଏ ରଖିଥିଲା ପରି ନାୟକେ ସେହିପରି ବାଳପେଣ୍ଡା ରଖିଥାଆନ୍ତି । ତାଙ୍କୁ ଲୁହା ଲେଖନୀରେ ପୋଥି ନକଲ କରିବାର ଦେଖିଛି । ତାଙ୍କ ଲେଖା ପୋଥିର ଅକ୍ଷରଗୁଡ଼ିକୁ ଅଇଣ୍ଠୁ ଚାଉଳ ବାଇଗଣ ମଞ୍ଜି ସହ ତୁଳନା କରନ୍ତି । ପୋଥି ପାଠରେ ଆଉ ଜଣେ ଥିଲେ ଧୂରନ୍ଧର, ସେ ହେଉଛନ୍ତି ହୃଷୀ ନାହାକ (ନାୟକ) । ଗାରୁଡ଼ିମନ୍ତ୍ର ସାହାଯ୍ୟରେ ସେ ସାପବିଷ ଝାଡ଼ିବାରେ ପ୍ରବୀଣ । ବହୁ ସାପ କାମୁଡ଼ା ରୋଗୀଙ୍କୁ ମନ୍ତ୍ର ବଳରେ ରକ୍ଷା କରିଛନ୍ତି । ସେ ମଧ୍ୟ ଅତି ସୁନ୍ଦର ଭାବରେ

ପୋଥି ଗାଆନ୍ତି । କାଞ୍ଜିଓଳିଆ ଓଷା, ବୁଧେଇ ଓଷା ପ୍ରଭୃତିରେ ପୋଥି ପଢ଼ିବା ପାଇଁ ତାଙ୍କୁ ଡ଼କାଯାଏ ।

ଆମ ଠାକୁର ଘରେ ଭାଗବତ ପୋଥି ସହ ଓଡ଼ିଆ ଓ ସଂସ୍କୃତର ଅନ୍ୟାନ୍ୟ ପୋଥି ରହିଛି । ଚଉତିରିଶି ସାଲ ବୈତରଣୀ ବନ୍ୟାରେ ଭାସିଆସିଥିବା ସଂସ୍କୃତ ଅଧ୍ୟାତ୍ମ ରାମାୟଣ ପୋଥି ଆମ ଗାଦିରେ ଥିବାର ଲକ୍ଷ୍ୟ କରିଛି ।

ରାଧାକୃଷ୍ଣ ଗାଁର କୋଠ ଠାକୁର ହୋଇଥିବାରୁ ତାଙ୍କୁ କେନ୍ଦ୍ର କରି ବିଭିନ୍ନ ସମୟରେ ବିଭିନ୍ନ ହରିବାସରୀୟ ପର୍ବ ଯଥା ହରିଜନ୍ମ, ରାଧାଷ୍ଟମୀ, ଝୁଲଣ ଓ ଦୋଳ ଅନୁଷ୍ଠିତ ହୁଏ । ଦୋଳ ପର୍ବରେ ଆମ ଗାଁର ସଂକୀର୍ତ୍ତନ ଦଳ ଖୋଳ କରତାଳ ସହ ବିମାନରେ ରାଧାକୃଷ୍ଣଙ୍କୁ ଆନନ୍ଦପୁରର ବଡ଼ଦାଣ୍ଡରେ ଅନୁଷ୍ଠିତ ହେଉଥିବା ପ୍ରକାଣ୍ଡ ବିମାନରେ ନିଅନ୍ତି । ମେଳନ ସାରି ବିଭିନ୍ନ ସ୍ଥାନରେ ଅଟ୍ଟି କରି ସଂଧ୍ୟାରେ ଗାଁକୁ ଫେରନ୍ତି । ଗାଁରେ ଦୋଳମଣ୍ଡପ ନଥିଲେ ମଧ୍ୟ ନିର୍ଦ୍ଦିଷ୍ଟ ସ୍ଥାନରେ ପୂର୍ବମୁଖା କରି ତାଙ୍କୁ ଝୁଲାଯାଏ ଓ ଝୁଲଣଗୀତ ବୋଲାଯାଏ । ନାହାକ (ଜ୍ୟୋତିଷ) ନୂଆ ପାଞ୍ଜି ପଢ଼ି ଆଗାମୀ ବର୍ଷର ଶୁଭାଶୁଭ ଫଳ ସଂପର୍କରେ ଗ୍ରାମବାସୀଙ୍କୁ ଅବହିତ କରାଏ । ଭୋଗରାଗ ପରେ ଝୁଲଣ କ୍ରୀଡ଼ା ଶେଷ ହୁଏ ।

ରାଧାକୃଷ୍ଣଙ୍କୁ କେନ୍ଦ୍ର କରି ଏକ ସଂକୀର୍ତ୍ତନ ଦଳ ଗାଁରେ ଗଢ଼ି ଉଠିଥିଲା । ପୋଖତ ଓସ୍ତାଦ୍ ଅଣାଯାଇ ତାଳ, ବାଦ୍ୟରେ ମଧ୍ୟ ତାଲିମ ଦିଆଯାଉଥିଲା । ଏକାଦଶୀ ବଳ ନିରକ୍ଷର ହେଲେ ମଧ୍ୟ ସଂକୀର୍ତ୍ତନ ଗାନ ଓ ତାଳବାଦ୍ୟରେ ଏପରି ପ୍ରବୀଣ ଥିଲେ, ବୃଦ୍ଧାବସ୍ଥାରେ ମଧ୍ୟ ତାଙ୍କ କଣ୍ଠରୁ ସଂକୀର୍ତ୍ତନ ଗାନ ଶୁଣି ମୁଁ ବିସ୍ମିତ ହୋଇଛି ।

ମୋର ବାଲ୍ୟାବସ୍ଥାରେ ପ୍ରତିବର୍ଷ ଅଷ୍ଟପ୍ରହରୀ ହେଉଥିଲା ଏବଂ ସମସ୍ତ ଉପକରଣ ଯଥା- ଖୋଳ, କରତାଳ, ଝାଞ୍ଜ, କୁବୁଜି, ପତାକା ରହିଥିଲା । ନଗର-କୀର୍ତ୍ତନ ଦିବସର ଆନନ୍ଦ ଭାଷାରେ ପ୍ରକାଶ କରିହୁଏ ନାହିଁ, ବିଶେଷତଃ ଯେତେବେଳେ ମୁଆଁ ଫୋପଡ଼ା ଯାଏ, ତାହା ଧରିନେଇ ଖାଇବା କମ୍ କୌତୁକ ଲାଗେ ନାହିଁ ।

ଗାଁରେ ସେହିପରି ସ୍ୱତନ୍ତ୍ର ନାଟଦଳ ଥିଲା । ବାହାରୁ ଓସ୍ତାଦ୍ ଆସି ଗାଁର ବିଭିନ୍ନ ଅଭିନେତାଙ୍କୁ ଶିକ୍ଷା ଦେଉଥିଲେ । ଦଳର ହାର୍‌ମୋନିୟମ୍, ଢ଼ୋଲକି, ପଖାଉଜ, କୁବୁଜି, ଯାତ୍ରା ପୋଷାକପତ୍ର ଓ ଚାନ୍ଦୁଆ ଆଦି ସବୁ ରହିଥିଲା । ପିଲାଦିନେ ବିଭିନ୍ନ ପର୍ବପର୍ବାଣିରେ ଗାଁରେ ଯାତ୍ରାଭିନୟ କେତେବାର ମୁଁ ଦେଖିଛି । ଗ୍ୟାସ ଆଲୁଅ ଜଳାଯାଇଥାଏ । ଗାଁରେ ବ୍ରଜକିଶୋର ବଳ ବୋଲି ଜଣେ ଥିଲେ ଯେ କି ରାଜା ଭୂମିକାରେ ଅଭିନୟ କରୁଥିଲେ । ଫକୀର ବଳ ଓ ବିଦ୍ୟାଧର ରାଉତ ଦୁଆରି ପାର୍ଟ କରୁଥିଲେ । ଦୁଆରିର ଅଭିନୟ ଜୀବନ୍ତ, ବାସ୍ତବ ଓ ଅନୁଭୂତିମୂଳକ ଥିଲା । ଦୁଆରିଗୀତ ପଦେ ମନେପଡୁଛି :-

୧. ରଜା ଘରେ ଚାକିରି ଖଟି
ମାସକରେ ଦି' ଦିନ ଛୁଟି

୨. ରଜ ସଜବାଜ ମଉଜକୁ
ଝିପିଝିପି ବର୍ଷା ସାରିଦେଲାରେ ।

ରାକ୍ଷସ ପାର୍ଟରେ ଅଭିନୟ କରୁଥିବା ନିଶା ପରିଡ଼ାର ଗୀତ ଏବେବି ମନେପଡ଼େ-

ଭୋକରେ ମୋ ଗାଡ଼ପେଟ ଗର୍ଜି ଉଠେ ଛଟପଟ
ଘଡ଼ଘଡ଼ି ପରାୟେ ଶୁଭେ ଘଡ଼ ଘଡ଼ ଘଡ଼ ।

ରଙ୍ଗାଧର ବଳ, ଇନ୍ଦ୍ରମଣି ବଳ (ମିଟଭାଇ) ଫିମେଲ୍ ପାର୍ଟ ଏବଂ ବରଜୁ ବଳ ସହ ଗଙ୍ଗାଧର ନାୟକ ରାଜା ଭୂମିକାରେ ଅଭିନୟ କରୁଥିଲେ । ଚନ୍ଦ୍ରୁ ବଳ, ସଙ୍କୁରୁ ଚନ୍ଦ ତବଲା, ଢ଼ୋଲିକି, ପଖାଉଜ, ଗିନି ଏବଂ ଶୁକୁଟା ଅଚା ହାରମୋନିୟମ୍ ବଜାଉଥିଲେ । ମୋର କଲେଜ୍ ଅଧ୍ୟୟନ କାଳରେ ଯାତ୍ରା ପାର୍ଟିକୁ ପୁନର୍ଜୀବନ ଦିଆଯାଇଥିଲା । ଦଳ ଭାଙ୍ଗିଗଲାପରେ ଅର୍ଗାନ୍ ହାରମୋନିୟମ୍‌ଟିକୁ ପାଖରେ ରଖି ନିଜ ଚେଷ୍ଟାରେ ଶିଖି ଛାନ୍ଦ, ଚମ୍ପୂ, ଓଡ଼ିଶୀ, ଲଘୁ ସଙ୍ଗୀତ ପ୍ରଭୃତି ଗାଇ ବଜାଇ ପାରୁଥିଲି । ଅନଭ୍ୟାସେ ବିଷଂ ବିଦ୍ୟା, ଅଭ୍ୟାସ ନ ରହିବା ଫଳରେ ଗାଇବା ବଜାଇବା ଆଉ ସେପରି ମନୋମତ ହୋଇପାରୁ ନାହିଁ ।

ମୋର ଶୈଶବ ଓ ଯୌବନ କାଳର ଗ୍ରାମର ଅବସ୍ଥା ପରିଣତ ବୟସରେ ବହୁତ ବଦଳି ଯାଇଛି । ଶୈଶବରେ ଗୋଟିଏ ଗାଁରୁ ଅନ୍ୟ ଗାଁକୁ ରାସ୍ତା ଘାଟର ସେପରି ସୁବିଧା ନଥିଲା । କେତେକ ଧାନଜମି ହିଡ଼ରେ ମୁଁ ପୁରୁଣା ଜଙ୍ଗଲର ଅସ୍ତିତ୍ୱ ଦେଖିବାକୁ ପାଉଥିଲି । ବର୍ଷା କାଳରେ ଗୋଟିଏ ଘରୁ ଆଉ ଗୋଟିଏ ଘରକୁ ଯିବାକୁ ହେଲେ ଆଣ୍ଠୁଏ କାଦୁଅରେ ଯିବାକୁ ହେଉଥିଲା । ବର୍ତ୍ତମାନ ମାଟି ଓ ମୋରମ ପଡ଼ି ଗାଁଦାଣ୍ଡ ଉଚ୍ଚ ଓ ମଜଭୁତ ହୋଇଯାଇଛି । କିନ୍ତୁ ଆମ ବାଲ୍ୟାବସ୍ଥାରେ ବର୍ଷା ଥିଲା ବେଶ୍ ଉପଭୋଗ୍ୟ । ସମବୟସର ସାଥିମାନେ ଗାଧୁଆବେଳେ ନାଳରେ ଭୀଷଣ ପହଁରୁଥିଲୁଁ, ବୁଡୁ ଥିଲୁଁ, ନାଳ ସୁଅରେ ଭାସି ଭାସି ଯାଉଥିଲୁଁ ଏବଂ ପୁରୁଣା ପୋଖରୀ ହୁଡ଼ାରେ ପାଣି ଢ଼ାଳି ଆହୁରି ଖସଡ଼ା କରି ଲଙ୍ଗଳା ହୋଇ ଖସଡ଼ା ଖେଳୁଥିଲୁଁ । ବେଳେବେଳେ ଗୁଡ଼ରନ୍ଧା ତାଉଳାରେ ନାଳ ପାରି ହେଉଥିଲୁଁ; ସଂଖ୍ୟା ବେଶି ହେଲେ ତାଉଆ ବୁଡ଼ିଯିବା ଗୋଟାଏ ମଜା ଖେଳଥିଲା । ଯେ କୌଣସି ସମୟରେ କଳାହାଣ୍ଡିଆ ମେଘ ଭାସି ଆସି ଦୁରୁଦୁରୁ ବରଷି ଯାଉଥିଲେ ଆମର ଗୀତ ଲହରୀ ଛୁଟୁଥିଲା-

''ମେଘ ବରଷିଲା ଟପର ଟପର
କେଶୁର ମାଇଲା ଗଜା
କେଉଁ ରାଇଜରେ ରହିଲେ ମୋ ରଜା
ତେଲିଙ୍ଗି ବାଇଦ ବଜା ।''

ସମୟ ସମୟରେ ଲୋକଙ୍କର କାମର ଫୁରୁସତ୍ ବେଳେ ବା ସଂଧ୍ୟାବେଳେ ଅଧିକ ବୟସର ଲୋକ କିମ୍ବା ମଉଜିଆ ମୂଲିଆ ଓ ଭାରୁଆମାନଙ୍କ ଠାରୁ ଅଜବ କଥାଶୁଣି ସତ ବୋଲି ବିଶ୍ୱାସ କରିଯାଉଥିଲୁଁ ଏବଂ ସେଥିରେ ବେଶ ଆନନ୍ଦ ପାଉଥିଲୁଁ । ମନେ ଅଛି : କାମା ବୋଲି ଆମର ଗୋଟିଏ ମୂଲିଆ ପିଲାଙ୍କ ସଙ୍ଗେ ଗେହ୍ଲା ହୁଏ ଏବଂ ନାନା ଅଜବକଥା କହି ହସାଏ । ମୁଁ ତାକୁ ଦିନେ ପଚାରିଲି : ତୁ କେମିତି ବଡ଼ ହୋଇଗଲୁ ? ସେ କହିଲା- ମୋତେ କାଠ ଫାଳିଆରେ ଜଣେ ଢ଼ାଉ କରି ପିଟି ଦେବାରୁ ବଡ଼ ହୋଇଗଲି । ଯେଉଁମାନଙ୍କର ଗାଲ ପଶି ହନୁହାଡ଼ ବାହାରକୁ ଦେଖାଯାଉଥିଲା ତାଙ୍କୁ ଲକ୍ଷ୍ୟ କରି ଜଣେ କହିଲା- ସେମାନେ ଭାରି ପାଠୁଆ । ସେମାନଙ୍କର ହନୁହାଡ଼କୁ ଗଣେଶ ଦାନ୍ତ ବୋଲି କହୁଥିଲା । ମୋର ଏପରି ବିଶ୍ୱାସ ହୋଇଯାଇଥିଲା ଯେ ଏ ପ୍ରକାର ଲୋକଙ୍କୁ ଦେଖି ମୁଁ ପାଠୁଆ ବୋଲି ଭାବୁଥିଲି ।

ଘଟଗାଁ ନିକଟବର୍ତ୍ତୀ ତରା ଗାଁ ସହ ଆମ ଗାଁର ବନ୍ଧୁବାନ୍ଧବ ସଂପର୍କ । ତରା ସଦର ସବ୍‌ଡ଼ିଭିଜନ ବା ଅପର କେନ୍ଦୁଝରର ଅନ୍ତର୍ଭୁକ୍ତ । ସେ ଅଞ୍ଚଳର ଲୋକଙ୍କର ଭାଷା ଓ କହିବା ଭଙ୍ଗୀ ଆମ ଅଞ୍ଚଳଠାରୁ ପୃଥକ୍ । ସେ ଗାଁରୁ ଆସିଥିବା ବୋହୂମାନେ ସୁନ୍ଦର ପିଠାପଣା କରିପାରନ୍ତି । ସେ ଅଞ୍ଚଳର ଖସାଲଡୁ, ଖଜାପଣସ, ଜାଡି ଜାଡିକା ବଡ଼ି ଆମ୍ଭମାନଙ୍କ ପକ୍ଷରେ ବଡ଼ ଆକର୍ଷଣ । ଯେଉଁ ଭାରିଆମାନେ ପୁନେଇ ପର୍ବରେ ଭାର ଧରି ୨୪/୨୫ ମାଇଲ ପାହାଡ଼, ପର୍ବତ ଓ ଜଙ୍ଗଲ ଭିତର ଦେଇ ଆମ ଗାଁକୁ ଆସନ୍ତି, ସେମାନେ ନାନା ମଜାକଥା କହି ଆମ ପିଲାଙ୍କୁ ଆଶ୍ଚର୍ଯ୍ୟ କରିଦିଅନ୍ତି । ଜଣେ ଭାରିଆ କହୁଁ କହୁଁ ଦିନେ କହିଲା- 'କେଁଝିରୀ ରଜା ନାକରେ ଦଣ୍ଡୀ ଆଉ ନୋଥ ପିନ୍ଧନ୍ତି । ସେ କ'ଣ ଆମ ଭଳି ଚାଉଳର ଭାତ ଖାଆନ୍ତି ? ସେ ପରା ସୁନାଚାଉଳର ଭାତ ଖାଆନ୍ତି ।'

କେତେ ମଉଜିଆ ବୟସ୍କ ଲୋକ ଥାଆନ୍ତି, ଯେଉଁମାନେ ଆମ ପିଲାଙ୍କ ମେଳରେ ତାଙ୍କ ଜୀବନର ଅଜବ ଅନୁଭୂତି ସବୁ ବର୍ଣ୍ଣନା କରନ୍ତି । ଜଣେ କହେ- ରାତିରେ ଦାଣ୍ଡପିଣ୍ଡାରେ ଶୋଇଥିଲି । ନିଶା ଗର୍ଜୁଛି, ତାରିଣୀ ଠାକୁରାଣୀ ଘୋଡ଼ାରେ ବସି ଦାଣ୍ଡରେ ଯାଉଥାନ୍ତି, ରୁଣୁଝୁଣୁ ଶୁଭୁଥାଏ । ଏ ଦୃଶ୍ୟ ଦେଖି ମୋ ଦେହ ଥରିଉଠିଲା, ଆଖିବୁଜି ହୋଇଗଲା, ମୋର ହୋସ୍ ରହିଲା ନାହିଁ । ଆଉ କେତେକ ରାତିରେ ଆଖୁବାଡ଼ିକୁ ପାଣି ବାହିବାକୁ ଭୂତ ଡାକିବା କଥା; ତୋଟାରେ ଦୁଇ ଗଛ ଉପରେ ଗୋଡ଼ ଲମ୍ବେଇ ବସିଥିବା ବ୍ରହ୍ମରାକ୍ଷସ କଥା; ତଳକୁ ହାତ ଓ ଉପରକୁ ଗୋଡ଼ କରି ଅମେଧ ସେବନ କରୁଥିବା ଚରାଡାହାଣୀ କଥା, ଭାଲୁକୁ କେନ୍ଦ୍ର କରି ଅଜବ ନଖୀପକ୍ଷୀ କଥା କହନ୍ତି । କଥାଗୁଡ଼ିକ ଆମ ଶିଶୁ ମନରେ ଗଭୀର ରେଖାପାତ କରେ । ପିଲାଦିନରୁ ଏମିତି ଡରେଇ ଦିଆଯାଇଥାଏ ଯେ ସାଇ ଦୋଛକୀ, ପୋଖରୀ, ତୋଟା, ପଡ଼ିଆ, ନାଳ ଓ ନିର୍ଦ୍ଦିଷ୍ଟ ଗଛରେ କିଏ ସବୁ ରହିଛନ୍ତି, ସେ ଅଜବ କାହାଣୀ ଏବେ ମଧ୍ୟ ରାତିରେ ଘରକୁ ଫେରିଲେ ମନେପଡ଼ିଯାଇ ଦେହ ରୋମାଞ୍ଚିତ ହୋଇଉଠେ ।

ଆମେ ବୁଝୁଁ ବା ନା ବୁଝୁଁ ପାଖ ଗାଁ ଟୁକୁଣା, ବେଲବାହାଳି, ଫକୀରପୁର ଓ ଆନନ୍ଦପୁରରେ ବାଦୀ ପାଲା ଶୁଣିବା ଆମ ଗାଁର ବୁଢ଼ାଙ୍କ ଠାରୁ ଆରମ୍ଭ କରି ପିଲାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଏକ ଉତ୍ତମ ଅଥଚ ଅମୋଦଜନକ ଅଭ୍ୟାସ । ପିଲାଦିନେ ଦୁର୍ଯ୍ୟୋଧନ ପଣ୍ଡା, ନରିନାଥ, ମଣିନାଥଙ୍କ ପାଲା ଦେଖିବାକୁ ସୁଯୋଗ ପାଇଛୁଁ । ଆମର ପିଲାମନ ସେଥିରେ ବହୁ ଆନନ୍ଦ ଓ ଆମୋଦ ପାଇଛି । ପିଲାମାନଙ୍କ ପାଇଁ ଦରକାର ପାଳିଆଙ୍କର ରଙ୍ଗହସ, ବାହାଣଙ୍କର ମୃଦଙ୍ଗ ବୋଲ ବଜାଇବାର ବାହାଦୁରି ଏବଂ ଅନ୍ୟ ଦଳ ପ୍ରତି ତାଙ୍କର ଥଟ୍ଟା ଓ ବ୍ୟଙ୍ଗ । ବିଶେଷତଃ ଗାହାଣଙ୍କର ଆଶୁପଦ ରଚନା ଏବଂ ସାରନା ସାହା ଆମ ମନରେ କମ କଳ୍ପନା କୋରକିତ କରେନା । ଛାନ୍ଦ ଓ ସଙ୍ଗୀତର ରାଗରାଗିଣୀ ଏବଂ ସାହିତ୍ୟ ପ୍ରତି ଶ୍ରଦ୍ଧା ପିଲାଦିନୁ ଦୃଢ଼ ସଂସ୍କାର ଭାବରେ କାମ କରିଆସିଛି । ପରେ ଅବଶ୍ୟ ହରିନାଥ, ଘନଶ୍ୟାମ ନାୟକ, ନିରଞ୍ଜନ କର, ଜଗନ୍ନାଥ ବେହେରା, ପରମାନନ୍ଦ ଶରଣ ପ୍ରଭୃତି ପ୍ରସିଦ୍ଧ ଗାୟକଙ୍କର ପାଲା ଶୁଣି ମୁଗ୍ଧ ହୋଇଛି ଏବଂ ସେମାନଙ୍କ ସହ ନିବିଡ଼ ପରିଚୟ ଘଟିଛି ।

ଆମ୍ଭମାନଙ୍କର କ୍ରୀଡ଼ାଚପଳତା ଓ ସାମୟିକ ଦଣ୍ଡ ପ୍ରାପ୍ତି ସତ୍ତ୍ୱେ ବାଲ୍ୟାବସ୍ଥାରେ ଗାଁରେ ଗୁରୁଜନଙ୍କ ପ୍ରତି ଭୟ ଓ ଭକ୍ତି, ପିଲାଙ୍କ ସମକ୍ଷରେ ବୟସ୍କ ଗୁରୁଜନମାନଙ୍କର ସଂଯତ ଓ ଆଦର୍ଶ ଚାଲିଚଳନ ଗାଁରେ ପ୍ରକୃତ ମଣିଷ ଗଢ଼ିବାର ବାତାବରଣ ସୃଷ୍ଟି କରୁଥିଲା । ତା'ଛଡ଼ା ଭାଗବତଠାରୁ ଆରମ୍ଭ କରି ଅନ୍ୟାନ୍ୟ ପୋଥିପାଠ, ଅନ୍ୟମାନଙ୍କର ଆଗ୍ରହରେ ଶ୍ରବଣ, ଶିଶୁଠାରୁ ଆରମ୍ଭ କରି ବୃଦ୍ଧଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ଚରିତ୍ର ଗଠନରେ ସହାୟକ ହେବା ସଙ୍ଗେ ସଙ୍ଗେ ଆଚରଣ ନିର୍ମଳ ଓ ପରିଶୁଦ୍ଧ କରୁଥିଲା ଏବଂ ବୟସ୍କ ଓ ଶିଶୁ ନିର୍ବିଶେଷରେ ଆଧ୍ୟାତ୍ମିକ ଚେତନା ଓ ଧର୍ମଭାବନା ଜାତ କରୁଥିଲା । ସେ ସମୟରେ ବନ୍ଧୁ ଓ କୁଣିଆଙ୍କ ପ୍ରତି ଆଦର, ଜଣକର ବନ୍ଧୁ ଆସିଲେ ଅନ୍ୟମାନଙ୍କର ଆନନ୍ଦ ଆଜି ଦୁର୍ଲଭ ହୋଇପଡ଼ିଛି । ବନ୍ଧୁ ଚାରି ପାଞ୍ଚଦିନ ନ ରହି ଯିବା ପର୍ଯ୍ୟନ୍ତ ଲୋକଙ୍କର ମନ ବୁଝୁନଥିଲା । ମୋର ବାପା ଯେତେବେଳେ ପୁରୁଣିଆଁ ଆସନ୍ତି, ତାଙ୍କୁ କେନ୍ଦ୍ର କରି ତାଙ୍କର ଶାଳକ (ବୟସ୍କ ଓ କନିଷ୍ଠ) ମାନଙ୍କର ସ୍ନେହ, ସଂଭ୍ରମ ଓ ଆନ୍ତରିକତା ପୂର୍ଣ୍ଣ ହାସ ପରିହାସ ମୋର ସ୍ମୃତିର ବିଷୟ ହୋଇ ରହିଛି । ତାଙ୍କର ଆଗମନରେ ସାଇ ଓ ଗାଁ ଏକପ୍ରକାର ଉତ୍ସବମୁଖର ହୋଇ ଉଠୁଥିଲା । ବାପା ଯେପରି ଥିଲେ ଧର୍ମପ୍ରାଣ, ସେହିପରି ସରଳ, ଉଦାର ଓ କୋମଳ ହୃଦୟ । ଚାଷ ଓ କାଠ କାମରେ ପ୍ରବୀଣତା ତାଙ୍କୁ ବହୁଲୋକଙ୍କ ନିକଟରେ ଆଦରଣୀୟ କରିଥିଲା । ଆଜି ଆଦର୍ଶ କୃଷକମାନଙ୍କୁ କୃଷି ପଣ୍ଡିତ ଉପାଧିରେ ଭୂଷିତ କରାଯାଉଛି; ସେ ପ୍ରକୃତରେ ଥିଲେ ଜଣେ କୃଷି-ପଣ୍ଡିତ । ପ୍ରୌଢ଼ ଓ ବାର୍ଦ୍ଧକ୍ୟ ଅବସ୍ଥାରେ ମଧ୍ୟ ଓସ୍ତପାଳଠାରୁ ଦୁଇ ମାଇଲ ଦୂରରେ ପଞ୍ଚୁଆ ବାହାଳିରେ ପ୍ରାୟ ପନ୍ଦର ଏକର ନୟାବାଦୀ ଜମି ପ୍ରସ୍ତୁତ କରି ମାଛଚାଷଠାରୁ ଆରମ୍ଭ କରି ବିଭିନ୍ନ ଫସଲ ଉତ୍ପାଦନ ପର୍ଯ୍ୟନ୍ତ ପରିଶ୍ରମର ଯେଉଁ ଆଦର୍ଶ ପ୍ରତିଷ୍ଠା କରିଯାଇଛନ୍ତି,

ତାହା ବର୍ତ୍ତମାନର ଲୋକଙ୍କଠାରେ ଦୁର୍ଲଭ । ଛନ୍ଦମନ୍ଦ କରି ବନ୍ଧାଛନ୍ଦା ପକାଇ ଅନ୍ୟମାନଙ୍କ ପରି ନିଜର କୌଶଳ ପ୍ରୟୋଗରେ ବହୁ ଭୂସଂପତ୍ତି କରିପାରିଥାନ୍ତେ, କିନ୍ତୁ ତାଙ୍କ ଜୀବନର ଲକ୍ଷ୍ୟ ଓ ଆଚରଣ ଭିନ୍ନ ପ୍ରକାର ଥିବାରୁ ବର୍ତ୍ତମାନର ତଥାକଥିତ ବୁଦ୍ଧିମାନ, ପ୍ରବଞ୍ଚକ ଓ ସଂସାରୀଙ୍କ ଦୃଷ୍ଟିରେ ସେ ଥିଲେ ନିର୍ବୁଦ୍ଧିଆ ।

ପିଲାଦିନରୁ ଭାଲୁକୁଣି ମୂର୍ତ୍ତି ଓ ସ୍କୁଲ୍‌ରେ ଗଣେଶ ଓ ସରସ୍ୱତୀ ମୂର୍ତ୍ତି ଦେଖି ମୋର ମୂର୍ତ୍ତି ଗଠନରେ ଶ୍ରଦ୍ଧାଜାତ ହୋଇଥିଲା । ମୁଁ ନାଳ କୂଳରେ ବସି କାଦୁଅ ଖୋଳି ସେଇଠି ମୂର୍ତ୍ତି ତିଆରି କରୁଥିଲି । ମୂର୍ତ୍ତି ତିଆରି ପାଇଁ କାଠ ଓ କୁଟାର ଛାଞ୍ଚ ମୋତେ ଜଣାନଥିଲା । ତେଣୁ କାଦୁଅରେ ମୂର୍ତ୍ତିଟିକୁ ବହୁ ଯତ୍ନ ସହ ତିଆରି କରୁଥିଲେ ମଧ ଊର୍ଦ୍ଧ୍ୱଭାଗର ଗୁରୁତ୍ୱ ହେତୁ ମୂର୍ତ୍ତିଟିମାନ ଭାଙ୍ଗିଯାଉଥିଲା ଏବଂ ମନ ଭାରି ଖରାପ ହେଉଥିଲା ।

ଗାଁରେ ଆଜି ଆମ ଶୈଶବର ଅନ୍ଧାର ନାହିଁ, ଇଲେକ୍‌ଟ୍ରିକ୍ ଲାଇନ୍ ଆସିଗଲାଣି । ଘର ରାସ୍ତାଘାଟ ବର୍ତ୍ତମାନ ଆଲୋକମୟ । ଏବେ କେତୋଟି ପକ୍କାଘର ତିଆରି ହୋଇଗଲାଣି, ବହୁ କୂଅ ଖୋଳା ସହ ଟିଉବୱେଲ୍ ବସିଗଲାଣି । ଗାଁର କୋଠଘର ରିକ୍ରିଏସନ୍ ସେଣ୍ଟର ନାମ ଗ୍ରହଣ କରିଛି । ମୋର ପଢ଼ା ସମୟର ସ୍ୱତଃସ୍ଫୂର୍ତ୍ତ ଉଦ୍ୟମରେ ଗାଁରେ ପାଠାଗାରଟିଏ (ପ୍ରଣବ ପାଠାଗାର) ସ୍ଥାପିତ ହୋଇଥିଲା । ବହୁ ପୁସ୍ତକ ସଂଗ୍ରହ ଓ କିଣାଯାଇଥିଲା । ବର୍ତ୍ତମାନର ଯୁବଗୋଷ୍ଠୀର ଉଦ୍ୟମରେ ପାଠାଗାରଟି ସୁପରିଚାଳନା ସହ ଲୋକପ୍ରିୟ ହୋଇଛି ।

କିନ୍ତୁ ବର୍ତ୍ତମାନ ଗାଁର ମୋର ଶୈଶବ ଓ ବାଲ୍ୟକାଳୀନ ନୈସର୍ଗିକ ମାଧୁରୀ ହଜିଯାଇଛି । ଲୋକଙ୍କ ମନରୁ ଗୁରୁଲଘୁ ଜ୍ଞାନ ଓ ଧର୍ମଜ୍ଞାନ ତୁଟିଯାଇଛି । ଗାଁରେ ପୂର୍ବର ସେ ସ୍ନେହ, ଆନ୍ତରିକତା ଓ ଏକତା ନାହିଁ । ଲୋକେ ଚାଲାକ୍ ଚତୁର ଓ କଚେରୀ ତଳିଆ ହୋଇଗଲେଣି । ଗାଁ କଳି ଗାଁରେ ଭାଙ୍ଗିବା ଅଭ୍ୟାସ ଧୀରେ ଧୀରେ ଲୋପ ପାଇଛି । ଇଲେକ୍‌ଟ୍ରିକ୍ ଆଲୁଅରେ ବାହାର ସିନା ଆଲୁଅ ହୋଇଗଲା, କିନ୍ତୁ ବର୍ତ୍ତମାନ ଗାଁ ମଣିଷର ମନରେ ଅନ୍ଧାରର ଅଳନ୍ଧୁ ଜମି ଚାଲିଛି ।

## ଗାଁ ଇସ୍କୁଲ୍ :

ଗାଁର ଦକ୍ଷିଣକୁ ନାଳ କୂଳରେ ଆମ ଗାଁ-ଇସ୍କୁଲ୍ । ଏବେ ସ୍କୁଲ୍‌ର ପଶ୍ଚିମ ପାଖରେ ପକ୍କା ରାସ୍ତା ଯାଇଛି । ଆଖି ଦୃଶିଆ ଫାଟକ ତିଆରି ହୋଇଛି । ଚାଳଘର ହୋଇ ଆଉ କିଛି ନାହିଁ । ଉତ୍ତର-ଦକ୍ଷିଣ ହୋଇ ଲମ୍ବା ଘରଟି ନି.ପ୍ରା. ସ୍କୁଲ୍; ଉତ୍ତରବାଡ଼ ପାଖରେ ପୂର୍ବ-ପଶ୍ଚିମ ହୋଇ ପକ୍କା ଘରଟି ୟୁ.ପି. ସ୍କୁଲ୍ ଏବଂ ଦକ୍ଷିଣବାଡ଼ ପାଖ ନାଳକୂଳକୁ ପୂର୍ବ-ପଶ୍ଚିମ ଲମ୍ବାରେ ତିଆରି ଘରଟି ମାଇନର ସ୍କୁଲ୍ । ଚାରିପାଖରେ ପାଚେରୀ ନଥିଲେ ମଧ ମଜଭୁତ ବାଡ଼; ବାଡ଼ ମଝିରେ ଜାମୁଗଛ । ଏଇ କେତେବର୍ଷ ହେଲା ଗାଁର ଉତ୍ତରପାଖ ଦାଣ୍ଡି କଡ଼ରେ ପକ୍କାରେ ହାଇସ୍କୁଲ୍ ଘର ତିଆରି ହୋଇଛି ।

ତୋଟାଆଡୁ ବାଟୋଇ ଗାଁଟିରେ ପହଞ୍ଚିବା ପୂର୍ବରୁ ଦେଖିବ ଗାଁ ପରିମଳ ସୂଚକ ଧୋବାତୁଠ ଏବଂ ଶିଶୁ କଳରବ ମୁଖର ଗାଁର ପବିତ୍ର ଶିକ୍ଷା-ପୀଠଟିକୁ ।

ଗଉଡ଼ସାଇକୁ ଲାଗି ବରଗଛ ପାଖରେ ଥିଲା ସ୍କୁଲ୍ ବୋର୍ଡ଼ିଂ, ଯାହା ସକାଳ ଓ ସଂଧ୍ୟାରେ ଶିଶୁଚାଟଙ୍କରର କଳରବ, ମଧୁପ-ଗୁଞ୍ଜନ-ମଧୁର ପାଠାବୃତ୍ତିରେ ଥିଲା ମୁଖର । ସଂଧ୍ୟାରେ କ୍ଷୀଣ ଆଲୋକରେ ବେତ୍ରାଘାତ-ଜର୍ଜର ଉଦାତ୍ତ କଣ୍ଠରୁ କାନ୍ଦୁରା-ସ୍ୱରରେ ଉଚ୍ଚାରିତ ହେଉଥିବା ନୂଆପାଠର ସେ ପିମ୍ପୁଡ଼ି-ଝିଣ୍ଟିକା ପଦ୍ୟ ମନେପଡ଼େ ।

ଝଁ ଝଁ ଝଁ ଝଁ ରେ ଭାଇ ଝଁ ଝଁ ଝଁ ଝଁ
ହସ ଖେଳ ନାଚ କୁଦ କାମ ନାହିଁ କିଛି ।

ଆଖପାଖ ଚାରି ପାଞ୍ଚୋଟି ଗାଁର ପିଲା ଆସି ସେଠି ପଢୁଥିଲେ । ମୋର ଶୈଶବରେ ସ୍କୁଲ୍ ଘରଟି ଥିଲା ଚାଳଘର ପ୍ରଥମେ ପୂର୍ବ-ପଶ୍ଚିମ ଲମ୍ବାରେ । ପାଖରେ ଏକ ପ୍ରକାଣ୍ଡ ଜରଗଛ । ସ୍କୁଲ୍‌ଟି ଦୁଇ ଭାଗରେ ବିଭକ୍ତ ହୋଇଥିଲା- ପଶ୍ଚିମ ଭାଗରେ ଶିଶୁ ଓ ତୃତୀୟ ଶ୍ରେଣୀ, ପୂର୍ବଭାଗରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ । ପ୍ରତ୍ୟେକ ଭାଗରେ ଶିକ୍ଷକଙ୍କର ଥିଲା ଗୋଟିଏ ମେଜ, ଗୋଟିଏ ଚେୟାର ଓ ଟୁଲ । ପୁଣି ପ୍ରତ୍ୟେକ ଶ୍ରେଣୀରେ କଳାପଟା (କାଠ ଷ୍ଟାଣ୍ଡ ଉପରେ) । ଶିଶୁ ଶ୍ରେଣୀର ପିଲାଙ୍କର ପାଠ୍ୟୋପକରଣ ଭିତରେ ସିଲଟ, ଖଡ଼ି ଓ ବହି ସହ କାଠି କୟାଁ ମଞ୍ଜି ନିଶ୍ଚୟ ରହୁଥିଲା । ଖଡ଼ି ରଖିବା ପାଇଁ ଛୋଟ କଳାମୁଣି, ସେଥିରେ ପୋଡ଼ାକୟାଁ ମଞ୍ଜି ମଧ ସ୍ଥାନ ପାଉଥିଲା । ତାର ପ୍ରତିବଦଳରେ ବେଳେବେଳେ ପିଲା ହଜିଥିବା ଖଡ଼ି ମଧ ସଂଗ୍ରହ କରୁଥିଲା । ସେତେବେଳେ ବ୍ୟାଗ୍ ବା ଟିଣବାକ୍ସ ନଥିଲା; କନା ଖଣ୍ଡିକରେ ବସ୍ତାନି ବନ୍ଧାଯାଉଥିଲା ।

ଶ୍ରେଣୀ ଭେଦରେ ବସ୍ତାନିର ଆକାର ଓ ଉଚ୍ଚତା ଟିକିଏ ବଡ଼ ହେଉଥିଲା । ବହିଖାତା ଓ ସିଲଟ ଖଡ଼ି ସହ କାଳି ଦୁଆତ, ନିବ୍ ଲଗା କଲମ, ଇଞ୍ଚପଟା, ପେନ୍‌ସିଲ୍ ଓ ରବର ଏଗୁଡ଼ିକ ଥିଲା ପିଲାର ସମ୍ବଳ । ପ୍ରତିଦିନ ନିଜେ ବାଲିକାଗଜ ବନ୍ଧା ଖାତାରେ ତିନି ଟିକିଆ ଓ ଶେଷରେ ଦୁଇ ଟିକିଆ ରୋଲ ପକାଇ ହସ୍ତାକ୍ଷର ଲେଖିବା ପିଲାଙ୍କର ପ୍ରତିଦିନର କାମ । ସ୍କୁଲରେ ପହଞ୍ଚି ସେଗୁଡ଼ିକୁ ଶିକ୍ଷକଙ୍କ ଦସ୍ତଖତ ପାଇଁ ଜମା କରିବାକୁ ହେଉଥିଲା । ଶିଶୁ ଓ ପ୍ରଥମ ଶ୍ରେଣୀର ପିଲାମାନଙ୍କୁ ଫଳା ଡାକିବା ସମୟରେ ଆବୃତ୍ତି କରିବାକୁ ହେଉଥିଲା । ସ୍କୁଲ୍ ଆରମ୍ଭରେ ତ ଥିଲା ପ୍ରାର୍ଥନା । ପ୍ରାର୍ଥନା ପରେ ଯେଝା ସ୍ଥାନରେ ନିଜ ନିଜ ଚଟେଇ (ତାଳପତର) ପକାଇ ବସିବାକୁ ହେଉଥିଲା । ଶିଶୁ ଶ୍ରେଣୀ ପିଲାଙ୍କର ସଂଖ୍ୟାଡାକ, ପ୍ରଥମ ଶ୍ରେଣୀ ପିଲାଙ୍କର ପଣକିଆ (ଗୁଣନଖନ୍ଦା) ଏବଂ ସଂଶ୍ଳେଷଣ ଓ ବିଶ୍ଳେଷଣ ଡାକ । ୩ ଠାରୁ ଆରମ୍ଭ କରି ୨୦ ପର୍ଯ୍ୟନ୍ତ ସଂଖ୍ୟାର ସଂ. ଓ ବି., ଏହା ମଧ ବିଭିନ୍ନ ପ୍ରକାରର ।

| | | |
|---|---|---|
| ୩ର | ୨+୧=୩ | ୩-୧=୨ |
| | ୧+୨=୩ | ୩-୨=୧ |
| | ୦+୩=୩ | ୩-୩=୦ |

| | | |
|---|---|---|
| ୪ର | ୩+୧=୪ | ୪ -୧=୩ |
| | ୨+୨=୪ | ୪-୨=୨ |
| | ୧+୩=୪ | ୪-୩=୧ |
| | ୦+୪=୪ | ୪-୪=୦ |

ଜଣେ ପିଲା ଡାକୁଥିଲେ ଅନ୍ୟମାନେ ସମବେତ କଣ୍ଠରେ ପୁନରାବୃତ୍ତି କରୁଥିଲେ, ଯାହା ଫଳରେ ସେସବୁ ମନେ ରହିଯାଉଥିଲା । ସଂଶ୍ଳେଷଣ ବିଶ୍ଳେଷଣ ଡାକିବା ସମୟରେ ୧୦ ଖଣ୍ଡିଆ କାଠିର ବିଡ଼ା ବନ୍ଧାଯାଇଥିବା ବାଉଁଶ କାଠିର ସାହାଯ୍ୟ ନିଆଯାଉଥିଲା ।

ସ୍କୁଲ୍ ଚାଲିଥିବା ସମୟରେ ଶିଶୁମାନଙ୍କର ମଧୁପଗୁଞ୍ଜନ ସୁଲଭ ଧ୍ୱନି (ସ୍ୱର) ଓ ଚଷମା ପିନ୍ଧା ବୁଢ଼ାମାଷ୍ଟଙ୍କର ଓ ସେକେଣ୍ଡ ମାଷ୍ଟଙ୍କର ଗମ୍ଭୀର ଚାହାଣି ସ୍କୁଲ୍‌ର ବାତାବରଣକୁ କରିଥିଲା ସଶଙ୍କ ଓ ଗମ୍ଭୀର । ଅଙ୍କ ଓ ମାନସାଙ୍କ ପିରିୟଡ୍ ମୋ ପକ୍ଷରେ ଥିଲା ଯମଦଣ୍ଡ । ସେଇ ପିରିୟଡ୍‌ମାନଙ୍କର ଚାପୁଡ଼ା, ବେତ ପାହାର ଓ କ୍ରନ୍ଦନର ମାତ୍ରା ଥିଲା ଅଧିକ । ସାହିତ୍ୟ ପାଠ, ଗଳ୍ପଶ୍ରବଣ ଓ କଥନ ଏବଂ କର୍ମ-ସଙ୍ଗୀତ ଆବୃତ୍ତି ବେଳକୁ ମନ କେତେକ ପରିମାଣରେ ଲଘୁ ଓ ଆନନ୍ଦମୁଖର ହେଉଥିଲା । ପଢ଼ାଶେଷରେ ଖେଳ ଓ ବଗିଚା କାମ ମଧ ହେଉଥିଲା । ଆମ ସମୟରେ ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରେ ବଡ଼ବଡ଼ ପିଲା ପଢୁଥିଲେ, ଯେଉଁମାନେ ଭେଣ୍ଡାଚାଷୀଙ୍କ ପରି କାମ କରିପାରୁଥିଲେ; ତେଣ୍ଡାରେ ମଧ ପାଣି ବାହି ପାରୁଥିଲେ । ସ୍କୁଲ୍ ହତାଟି ଅପେକ୍ଷାକୃତ ବଡ଼ଥିବାରୁ ବିଭିନ୍ନ ଋତୁରେ ନାନା ପ୍ରକାର ପନିପରିବା ଫସଲ କରାଯାଉଥିଲା । ବର୍ଷା ଋତୁରେ ଜହ୍ନି, ଭେଣ୍ଡି, ନୋଧିଆ (ଝୁଡ଼ଙ୍ଗ), ଗୁଆଁର, ସାରୁ, ବାଇଗଣ;ଶୀତଦିନେ ବାଇଗଣ, ବିଲାତି ବାଇଗଣ, କୋବି, ଲଙ୍କା, ଫିରିକି, କୋଶଳା ଶାଗ ଆଦି କରାଯାଉଥିଲା ।

ସ୍କୁଲ୍ ଫାଟକଠାରୁ ସ୍କୁଲ୍ ପର୍ଯ୍ୟନ୍ତ ଏବଂ ସ୍କୁଲ୍ ଘର ଆଗରେ ବିଭିନ୍ନ ଋତୁରେ ନାନା ପ୍ରକାର ଫୁଲଗଛ ଲଗା ହେଉଥିଲା । ମଝିରେ ମଝିରେ ସବ୍-ଇନିସ୍‌ପେକ୍ଟର ଓ ଡ଼େପୁଟି ଇନିସ୍‌ପେକ୍ଟର ସ୍କୁଲ୍ ପରିଦର୍ଶନ କରିବାକୁ ଆସୁଥିଲେ । ବାବୁଙ୍କ ଆଗମନ ଓ ପରିଦର୍ଶନ ଶିକ୍ଷକଙ୍କ ପକ୍ଷରେ ବ୍ୟସ୍ତତାର କାରଣ ହେଉଥିଲେ ମଧ ଆମ ପକ୍ଷରେ ଥିଲା ଆନନ୍ଦର ବିଷୟ । ପରିଦର୍ଶକ ପ୍ରତ୍ୟେକ ଶ୍ରେଣୀରେ ନାନା ପ୍ରକାର ପାଠ ପରୀକ୍ଷା କରି ତାଙ୍କର ମନ୍ତବ୍ୟ ଲେଖୁଥିଲେ ବା ପରେ ଲେଖି ପଠାଉଥିଲେ । ବାବୁ ବିଦାୟ ନେବାବେଳକୁ ଛୁଟିପାଇଁ ଆମର ପ୍ରାର୍ଥନା ହେଉଥିଲା । ବାବୁ ଖୁସି ହୋଇ ଆମକୁ ଦିନେ ଛୁଟି ଦେଉଥିଲେ । ଯେଉଁ ଶିକ୍ଷକ ପରିଦର୍ଶକଙ୍କୁ ଯେତିକି ସନ୍ତୁଷ୍ଟ କରି ପାରୁଥିଲେ ତାଙ୍କର ନିର୍ଦ୍ଦିଷ୍ଟ ସ୍କୁଲ୍‌ରେ ରହଣି ଦୀର୍ଘକାଳ ହେଉଥିଲା ।

ପ୍ରତିବର୍ଷ ପୁରସ୍କାର ବିତରଣ କରାଯାଉଥିଲା; ପୁରସ୍କାର ଭାବରେ ବହିଗୁଡ଼ିକ ପାଇ ମନରେ ଭାରୀ ଆନନ୍ଦ ହେଉଥିଲା । ସମୟେ ସମୟେ ପୁରସ୍କାର ବିତରଣକୁ ବାବୁ ଆସି ପାରୁନଥିଲେ ମୋର ଅଜାଙ୍କୁ ଡକାଇ ବିତରଣ କରାଯାଉଥିଲା ।

ମୋର ପ୍ରଥମ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢ଼ା ଯଥାତଥା କରି ଚାଲିଥିଲା- ନା ପାଠପଢ଼ାରେଆଗ୍ରହ, ନା ଦାୟିତ୍ୱବୋଧ । ଅଙ୍କ ଓ ମାନସାଙ୍କ ମୋ ପକ୍ଷରେ ଥିଲା ଅପାଠ୍ୟ । କିନ୍ତୁ ପ୍ରଥମରୁ ଦ୍ୱିତୀୟ ଶ୍ରେଣୀକୁ ଗଲାପରେ ସରସ୍ୱତୀଙ୍କର ମୋ ପ୍ରତି ଟିକିଏ କୃପା-କଟାକ୍ଷ ପଡ଼ିଲା । ମୁଁ ସାହିତ୍ୟ, ଭୂଗୋଳ, ଇତିହାସ, ରଚନା ଓ ଲିଖନ ସବୁଥିରେ ଆଗ୍ରହ ପ୍ରଦର୍ଶନ କଲି । 'ସମାନି ସମଶୀର୍ଷାଣି ଘନାନି ବିରଳାନିଚ' ଏଇ ଆଦର୍ଶରେ ହସ୍ତାକ୍ଷର ମୋର ଶିକ୍ଷକ ଓ ଅନ୍ୟମାନଙ୍କର ଦୃଷ୍ଟି ଓ ଆଗ୍ରହ ଆକର୍ଷଣ କଲା । ଅଙ୍କ ଓ ମାନସାଙ୍କରେ କଚା ରହିଗଲି । ସେଥିରେ ମୋର ବୋଧଶକ୍ତି ଟିକିଏ ମାନ୍ଦା ରହିଯାଇଥିଲା; ତଥାପି ପରୀକ୍ଷାରେ ୧୦୦ ରୁ ୧୦୦ ରହୁନଥିଲେ ମଧ୍ୟ ଖରାପ ନମ୍ବର ଯେ ରହୁଥିଲା, ତା ନୁହେଁ ।

ମୁଁ ଦ୍ୱିତୀୟ ଓ ତୃତୀୟ ଶ୍ରେଣୀରେ ପଢ଼ିଲାବେଳକୁ କୃଷ୍ଣଚନ୍ଦ୍ର ବଳ ଗାଁ ସ୍କୁଲ୍‌କୁ ହେଡ୍ ପଣ୍ଡିତ ଭାବରେ ଏବଂ ସାଇମନ୍ ମାଷ୍ଟ୍ରେ ଦ୍ୱିତୀୟ ଶିକ୍ଷକ ଭାବରେ ଆସିଲେଣି । କୃଷ୍ଣଚନ୍ଦ୍ର ବଳ (କୃଷ୍ଣବାବା) ଆମ ଗାଁର ଲୋକ । ସେ ପଞ୍ଚୁପଲ୍ଲୀ ନି.ପ୍ରା. ସ୍କୁଲ୍‌ରୁ ବଦଳି ହୋଇ ଆସିଲେ । ଗାଁର ଲୋକ ହୋଇଥିବାରୁ ଗାଁ-ସ୍କୁଲ୍ ପ୍ରତି ତାଙ୍କର ଦୃଷ୍ଟି ଥିଲା ତୀକ୍ଷ୍ଣ । ସେ ଥିଲେ ଜଣେ ଜ୍ଞାନୀ, ପରିଶ୍ରମୀ ଶୃଙ୍ଖଳା ପ୍ରିୟ ଶିକ୍ଷକ । ଅଙ୍କରେ ତାଙ୍କର ବୋଧଶକ୍ତି ଥିଲା ତୀକ୍ଷ୍ଣ । ଶିଶୁ ଶ୍ରେଣୀରୁ ସେ ପିଲାଙ୍କୁ ଏପରି ବୈଜ୍ଞାନିକ କୌଶଳରେ ଗଢ଼ି ଆଣୁଥିଲେ, ଅନ୍ୟ ଶ୍ରେଣୀରେ ମନୋମତ ଭାବରେ ସେମାନଙ୍କୁ ପରିଚାଳିତ କରିବା ତାଙ୍କ ପକ୍ଷରେ ଅସୁବିଧା ହେଉନଥିଲା । ବୈଜ୍ଞାନିକ ରୀତିରେ ତାଙ୍କର ସଂଖ୍ୟା ଓ ଅକ୍ଷର ପରିଚିତି, ସଂଶ୍ଳେଷଣ ଓ ବିଶ୍ଳେଷଣ ପରିଚିତି ଏବଂ ଦୈନିକ ଆବୃତ୍ତିମୂଳକ ଅଭ୍ୟାସ ପ୍ରବର୍ତ୍ତନ ଫଳରେ ଶିଶୁମାନଙ୍କର ପ୍ରାଥମିକ ଶିକ୍ଷା ଏକ ଦୃଢ଼ଭିତ୍ତିରେ ପ୍ରତିଷ୍ଠିତ ହେଉଥିଲା । ଏଇ ପଦ୍ଧତି ପରବର୍ତ୍ତୀ କାଳରେ ମୋର ପିଲାମାନଙ୍କଠାରେ ପ୍ରୟୋଗ କରି ତାର ସୁଫଳ ଲକ୍ଷ୍ୟ କରିଛି ।

ମୋର ହସ୍ତାକ୍ଷର, ସାହିତ୍ୟ ପୁସ୍ତକ ପଠନ ଓ ପଦ୍ୟାବୃତ୍ତି ଶିକ୍ଷକଙ୍କଠାରୁ ଆରମ୍ଭ କରି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ; ଏପରିକି ଗାଁରେ କାହାର ହ୍ୟାଣ୍ଡ୍‌ନୋଟ୍ କିମ୍ବା ଅନ୍ୟ କିଛି ଦଲିଲ୍ ଲେଖା ହେବାକୁ ଥିଲେ କୃଷ୍ଣବାବା ମୋ ଦ୍ୱାରା ଲେଖାଇ ନିଅନ୍ତି । କଣ୍ଠର ଲାଳିତ୍ୟ ହେତୁ ଅଜା ପ୍ରଭୃତି ମୋ ଦ୍ୱାରା ଭାଗବତ ପାଠ କରାନ୍ତି । ଶିଶୁ ଓ ପ୍ରଥମ ଶ୍ରେଣୀରେ ଗଳ୍ପକଥନ ପାଇଁ ଶିକ୍ଷକମାନେ ଗୁଡ଼ିଏ ଛବି ତିଆରି କରି ଶ୍ରେଣୀ କାନ୍ଥରେ ଝୁଲାଇଥାନ୍ତି । ସେ ଛବି ଦେଖି ମୋର ଛବି ଆଙ୍କିବାର ଆଗ୍ରହ ଜନ୍ମେ । ମୁଁ ବେଳେବେଳେ ଗଛର ଛବି ଆଙ୍କି ସେଥିରେ ପତ୍ର ଘଷି ରଙ୍ଗ କରେ । ତୃତୀୟ ଶ୍ରେଣୀରେ ଭଲ କରିବାରୁ ଟେଷ୍ଟ ପରୀକ୍ଷାରେ ନିର୍ବାଚିତ ହୋଇ ନି.ପ୍ରା. ବୃତ୍ତି ପରୀକ୍ଷା ଦେଇଥିଲି । ଅଙ୍କ, ସାହିତ୍ୟ, ଇତିହାସ, ଭୂଗୋଳ ସମସ୍ତ ବିଷୟରେ ଭଲ କରିଥିଲି । ଆନନ୍ଦପୁର ସବ୍‌ଡ଼ିଭିଜନରେ ମୁଁ ପ୍ରଥମ ସ୍ଥାନ ଅଧିକାର କରିଥିଲେ ମଧ୍ୟ ଡେପୁଟି ଇନିସ୍‌ପେକ୍ଟରଙ୍କର ଚକ୍ରାନ୍ତ ହେତୁ ତାଙ୍କର ଜଣେ ଆତ୍ମୀୟକୁ ପ୍ରଥମ କରି ଦିଆଗଲା । ଅଜା ଓ ଦାଦା ମୋର କୃତିତ୍ୱରେ ଆନନ୍ଦିତ ହୋଇ ଆନନ୍ଦପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇବା ପାଇଁ ଆଗ୍ରହୀ ହୋଇଥିଲେ । ●

## ॥ ଦ୍ୱିତୀୟ ଅଧ୍ୟାୟ ॥

### ମୋର ମାଇନର୍ ପଢ଼ା :

ମୁଁ ଭଲ ପଢୁଥିବାରୁ ଆନନ୍ଦପୁର ମଧ ଇଂରାଜୀ ବିଦ୍ୟାଳୟରେ ମୋର ନାମ ଲେଖାଇ ଦିଆଗଲା ।

ସ୍କୁଲ୍‌ର ହେଡ଼ମାଷ୍ଟର ଥାନ୍ତି ଦୟାନିଧି ପଣ୍ଡା ଯାଜପୁର ଅଧିବାସୀ । ସେ ଡେଙ୍ଗା ଓ ଗୋରା । ବିଦ୍ୟାଳୟରେ ଶୃଙ୍ଖଳା ଓ ନୀତି ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି । ମୁହଁରେ ହେଡ଼ମାଷ୍ଟର ସୁଲଭ ଗାମ୍ଭୀର୍ଯ୍ୟ । ସେ ସମୟରେ ହେଡ଼ମାଷ୍ଟର କହିଲେ ଶାସନ, ଭୟ ଓ ଭକ୍ତିର ମୂର୍ତ୍ତିମାନ ବିଗ୍ରହ । ପିଲାଙ୍କ ପଢ଼ାପଢ଼ି ପ୍ରତି ଯେପରି ତୀକ୍ଷ୍ଣ ଦୃଷ୍ଟି, ଚରିତ୍ର ଓ ଆଚରଣ ପ୍ରତି ତତୋଽଧିକ ଦୃଷ୍ଟି । ତାଙ୍କର ଗାମ୍ଭୀର୍ଯ୍ୟ ଓ ଭୀତିପ୍ରଦ ବ୍ୟକ୍ତିତ୍ୱ ତଳେ ସ୍ନେହ ଓ ଆଦରର ଯେଉଁ ଫଲ୍‌ଗୁ ପ୍ରବାହିତ ହେଉଥିଲା, ତା'ର ସ୍ୱାଦ ଆମେ ଚାଖୁଥିଲୁଁ । ହେଡ଼ମାଷ୍ଟରଙ୍କର ଗୁଡ଼ିଏ ପୋଷା ଗାଈ ଥିଲେ, ତାଙ୍କ ବସା ପଛକୁ ବଡ଼ କଦଳୀ ବଗିଚା । ବର୍ଷକେ ଥରେ ସେ ଆମ୍ଭମାନଙ୍କୁ ତାଙ୍କ ଘରକୁ ଡାକି ନେଉଥିଲେ । ଆମେ ଉତ୍ସାହିତ ହୋଇ କଦଳୀ ବାଡ଼ି ହାଣୁଥିଲୁଁ ଏବଂ ତାଙ୍କର ସ୍ତ୍ରୀ ଆମକୁ ସ୍ନେହରେ ଚହ୍ଲା ପିଇବାକୁ ଦେଉଥିଲେ ।

ପାଠ୍ୟୋତ୍ତର ବିଷୟରେ ଆଗ୍ରହ ବୃଦ୍ଧି ନିମିତ୍ତ ସେ ପ୍ରତ୍ୟେକ ଶ୍ରେଣୀରେ ପାଠାଗାର ଆରମ୍ଭ କରିଥିଲେ । ରବିବାର ସଂଧ୍ୟାରେ ଆମକୁ ବସାଇ ପ୍ରାଚୀନ ସାହିତ୍ୟ ବୈଦେହୀଶ ବିଳାସ, ରସକଲ୍ଲୋଳ ଓ ରାଧାନାଥ ଗ୍ରନ୍ଥାବଳୀ ପଢ଼ାଇ ବୁଝାଉଥିଲେ । ସମୟେ ସମୟେ ବିଶିଷ୍ଟ ଅଧ୍ୟାପକ ଓ ଅନ୍ୟ ଜ୍ଞାନୀଗୁଣୀ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରି ଭାଷଣ ଦିଆ କରାଉଥିଲେ । ଗୋଟିଏ ସାପ୍ତାହିକ ସଭା କଥା ମୋର ମନେଅଛି । ସେଦିନ ରାଜସରକାରଙ୍କର ଫରେଷ୍ଟ ବିଭାଗର ରେଞ୍ଜର୍ ପ୍ରାଣବନ୍ଧୁ ପଟ୍ଟନାୟକଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସେ ଥିଲେ ନିକଟସ୍ଥ ଖପରାଖାଇ ଗ୍ରାମର ଅଧିବାସୀ । ତାଙ୍କର କନ୍ୟା ସୁଜାତା ସେତେବେଳେ ସେଇ ସ୍କୁଲ୍‌ରେ ପଢୁଥିଲା । ପ୍ରାଣବଂଧୁ ବାବୁ ଗୌଡ଼ୀୟ ବୈଷ୍ଣବ ଦୀକ୍ଷା ଗ୍ରହଣ କରିଥିବାରୁ ବେକରେ ତୁଳସୀମାଳ ପକାଇଥିଲେ । ମୁଖରେ ବୈଷ୍ଣବ ସୁଲଭ ପ୍ରସନ୍ନତା ଓ ହସ । ପ୍ରାଚୀନ ସାହିତ୍ୟ ଓ ରାଧାନାଥ ସାହିତ୍ୟ ପ୍ରତି ଥିଲା ତାଙ୍କର ଅସାଧାରଣ ଅନୁରାଗ । ସେ କବିତା, ପ୍ରବନ୍ଧ, ଭ୍ରମଣକାହାଣୀ ରଚନା କରି କେନ୍ଦୁଝରର ବଳଭଦ୍ର ସାହିତ୍ୟ ସଂଘର ମୁଖପତ୍ର 'ବନବୀଣା'ରେ

ପ୍ରକାଶ କରାଉଥିଲେ । ଗୀତା ସଂପର୍କିତ ପ୍ରବନ୍ଧମାନ ଗୀତାଧ୍ୟାୟୀ ଛଦ୍ମ ନାମରେ ପତ୍ରିକାରେ ପ୍ରକାଶ ପାଉଥିଲା । ସେଦିନ ସଭାରେ ସେ ନିଜର ଚନ୍ଦ୍ରଭାଗା ଅନୁଭୂତି ଶୀର୍ଷକ ଏକ ପ୍ରବନ୍ଧ ପାଠ କରିବା ସଙ୍ଗେ ସଙ୍ଗେ କବିତାଂଶକୁ ସୁନ୍ଦର ଭାବରେ ଆବୃତ୍ତି କରିଥିଲେ-

'ଦେଖିଲି ଯା ଦେଖି ନଥିଲି ଏହି ଚର୍ମନୟନେ' । ସଭାରେ ଯୋଗ ଦେଇଥିଲେ ଆନନ୍ଦପୁରର ବଲିମାଷ୍ଟେ, ଯାହାଙ୍କର କଥା ଥିଲା କୌତୁକପୂର୍ଣ୍ଣ ।

ସ୍କୁଲ୍‌ର ଅନ୍ୟ ଶିକ୍ଷକମାନେ ଥିଲେ- ବିଶ୍ୱମ୍ଭର ଦାଶ, ଦାଶରଥି ଦାଶ, କୃପାସିନ୍ଧୁ ସାମନ୍ତରାୟ, ଲୋକନାଥ ମିଶ୍ର ଓ ବାଳକୃଷ୍ଣ ମିଶ୍ର । ବିଶ୍ୱମ୍ଭର ଦାଶ ଉପର ଶ୍ରେଣୀରେ ଆମକୁ ଅଙ୍କ ଓ ସାହିତ୍ୟ ପଢ଼ାଉଥିଲେ । କୃପାସିନ୍ଧୁ ସାମନ୍ତରାୟ (ବାଣପୁର) ତଳ ଶ୍ରେଣୀରେ ସାହିତ୍ୟ ଓ ଅଙ୍କ ପଢ଼ାଉଥିଲେ । ସେ ଥିଲେ ଭାରୀ ନୀତିବାଦୀ, ନିରଳସ, କର୍ମଠ ଓ ଜଣେ ଲେଖକ, ଯାହାଙ୍କର ଦାର୍ଶନିକ ଭାବ ସମ୍ବଳିତ ପ୍ରବନ୍ଧ ବନବୀଣାରେ ପ୍ରକାଶ ପାଉଥିଲା । ସେ ଥିଲେ ହଷ୍ଟେଲ୍ ସୁପରିନ୍‌ଟେଣ୍ଡେଣ୍ଟ୍ । ଗୈରିକ ବସ୍ତ୍ର ଖଣ୍ଡିଏ ପିନ୍ଧି ନିତ୍ୟକର୍ମ ସାରି ସଂଧ୍ୟାରେ ପିଲାଙ୍କ ପଢ଼ାର ଯତ୍ନ ନେଉଥିଲେ । ଚାରିଟାବେଳେ ଛାତ୍ରାବାସର ଅନ୍ତେବାସୀମାନଙ୍କୁ ନଈକୂଳ ଆଡ଼େ ବୁଲାଇ ନେଉଥିଲେ । ରାତିରେ ପଢ଼ିବାବେଳେ ତନ୍ଦ୍ରା ଆସୁଥିଲେ ତାଙ୍କର ଖଡ଼ମ ଶବ୍ଦ, ବେତହଲା ଓ ଦକ୍ଷିଣିଆ ପାଟିରେ ନିଦ ଭାଙ୍ଗିଯାଉଥିଲା । ଖରାଦିନେ ମଧ୍ୟାହ୍ନ ଭୋଜନ ପରେ ସ୍କୁଲ୍‌ରେ କିଛିସମୟ ବିଶ୍ରାମ ନେଇ ସାଢ଼େ ଚାରିଟା ପର୍ଯ୍ୟନ୍ତ ଲେଖାପଢ଼ାରେ ଲାଗି ଯାଉଥିଲୁଁ । ସେ ପୁଣି ହୁଇସିଲ୍ ବଜାଇ ଆମର ଡ୍ରିଲ୍ କରାଉଥିଲେ । ମନେ ଅଛି : ଚମ୍ପୁଆକୁ ତାଙ୍କର ବଦଳି ସମୟରେ ଏକ ବିଦାୟ ସଭା ହୋଇଥିଲା ଏବଂ ଏକ ସୁନାମୁଦି, ବାଡ଼ି ଓ ଅନ୍ୟ କେତେକ ଜିନିଷ ତାଙ୍କୁ ଉପହାର ଦିଆଯାଇଥିଲା । ଡଙ୍ଗା ଘାଟରେ ଆମେ ଓ ଅନ୍ୟ ଶିକ୍ଷକମାନେ ବିଦାୟ ଦେଲାବେଳେ ସମସ୍ତଙ୍କ ଆଖି ଲୁହ ଛଳଛଳ ହୋଇଯାଇଥିଲା । ତାଙ୍କର ବଦଳି ହୋଇ ଯିବାପରେ ବିଶ୍ୱମ୍ଭର ଦାଶ ହୁଅନ୍ତି ଆମର ହଷ୍ଟେଲ ସୁପରିଟେଣ୍ଡେଣ୍ଟ୍ । ସାହିତ୍ୟ ପ୍ରତି ତାଙ୍କର ଥିଲା ଗଭୀର ଶ୍ରଦ୍ଧା ।

ବାଳକୃଷ୍ଣ ମିଶ୍ର ସ୍କୁଲ୍‌ର ଥିଲେ ଆସିଷ୍ଟାଣ୍ଟ୍ ହେଡ୍‌ମାଷ୍ଟର । ସେ ଇଂରାଜୀ, ଭୂଗୋଳ ଓ ସ୍ୱାସ୍ଥ୍ୟରକ୍ଷା ପଢ଼ାନ୍ତି । ଲୋକନାଥ ମିଶ୍ର ଥିଲେ ଚତୁର୍ଥ ଶ୍ରେଣୀର ଶ୍ରେଣୀଶିକ୍ଷକ; ସେ ପଢ଼ାଉଥିଲେ ଅଙ୍କ ଓ ଭୂଗୋଳ । ସେତେବେଳେ ଆମର ଶିକ୍ଷା ଓ ଚରିତ୍ର ଗଠନ ପ୍ରତି ଥିଲା ସେମାନଙ୍କର ତୀକ୍ଷ୍ଣ ଦୃଷ୍ଟି । ଚତୁର୍ଥ ଶ୍ରେଣୀର ଘାସିରାମ ଓ ସେକେଣ୍ଡ ଅଫିସରଙ୍କ ଝିଅ ପୂର୍ଣ୍ଣପ୍ରଭା ଥିଲେ ମୋର ସାଙ୍ଗ । ଖେଳଛୁଟି ବେଳେ ଆଣିଥିବା ଜଳଖିଆ ଆମେ ଖାଉଁ ।

ଶ୍ରେଣୀରେ ଭଲ ପଢୁଥିବାରୁ ମୋ ପ୍ରତି ଶିକ୍ଷକମାନଙ୍କର ଅନୁକୂଳ ଦୃଷ୍ଟିଥାଏ । ଆଚରଣରେ ସାମାନ୍ୟ ତ୍ରୁଟି ଦେଖାଯାଉଥିଲେ ଦଣ୍ଡରୁ ରକ୍ଷା ମିଳୁନଥିଲା । ମନେ ଅଛି : ଶ୍ରେଣୀ ଶିକ୍ଷକ ଲୋକନାଥ ମିଶ୍ରଙ୍କ ପୁଅ ପଦ୍ମନାଭ (ପଦ୍ମ) ଓ ମୁଁ କେଉଁଠୁ ଏକ ଅତର ଶିଶି ପାଇଲୁଁ । ବାଲ୍ୟ ଚପଳତା ହେତୁ ମୁଣ୍ଡରେ ଅତର ମାରିଦେବାରୁ ଶ୍ରେଣୀରେ ବାସିଲା ।

ଅତର ଗନ୍ଧ ପାଇ ଲୋକନାଥ ବାବୁ ଆମର ରସିକତା ଆବିଷ୍କାର କରି ଶ୍ରେଣୀ ଆଗରେ ଦୁହିଁଙ୍କୁ ଆଣ୍ଠେଇ ଦେଲେ ଏବଂ କିଛି ସମୟ ପରେ ମୁଣ୍ଡଧୋଇ ଆସିବା ପାଇଁ ବୈତରଣୀ ଧାରକୁ ପଠେଇ ଦେଲେ ।

ଭଲ ଛାତ୍ର ଥିବାରୁ ଶିକ୍ଷକଙ୍କଠାରୁ ତ ଆଦର ପାଉଥିଲି ; ସାଙ୍ଗସାଥିମାନେ ମଧ୍ୟ ଶ୍ରଦ୍ଧା କରୁଥିଲେ । ଶ୍ରେଣୀରେ ପ୍ରତି ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରେ । ଶିକ୍ଷକମାନଙ୍କର ଯତ୍ନ ଓ ନିୟମିତ ଉଚ୍ଚମାନର ଶିକ୍ଷାଦାନ ହେତୁ ଟିଉସନର ଆବଶ୍ୟକତା ନଥାଏ । ମୁଁ ପ୍ରତ୍ୟେକ ଶ୍ରେଣୀରେ ମନିଟର୍ ହେଉଥିଲି । ଶ୍ରେଣୀରେ ପ୍ରଥମ ହେବାର ସମ୍ବାଦରେ ଅଜା, ଦାଦା ଓ ଗ୍ରାମବାସୀମାନେ ଆନନ୍ଦିତ ହେଉଥିଲେ । ସ୍କୁଲ୍‌ରେ ଡିବେଟିଂ ସୋସାଇଟି ଗଠନ କରାଯାଇଥିଲା । ଚତୁର୍ଥ ଓ ପଞ୍ଚମ ଶ୍ରେଣୀରେ ନୀତି ଶିକ୍ଷା ଘଣ୍ଟା ରଖାଯାଇଥିଲା । ମହାପୁରୁଷ ଓ ଧର୍ମ ପ୍ରଚାରକମାନଙ୍କର ଜୀବନୀ ପାଠ କରାଯାଉଥିଲା ।

ହଷ୍ଟେଲ୍‌ରେ ସକାଳେ ଓ ସଂଧ୍ୟାବେଳେ ଦୁଇଥର ପ୍ରାର୍ଥନା କରାଯାଉଥିଲା । ଆମେ ସମସ୍ତେ ସମବେତ କଣ୍ଠରେ ଭକ୍ତକବି ମଧୁସୂଦନଙ୍କ ପ୍ରସିଦ୍ଧ ଭକ୍ତି ଗୀତି 'ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ' ଗାଉଥିଲୁଁ । ସେତେବେଳେ ଚତୁର୍ଥଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ମଧୁସୂଦନଙ୍କର ସାହିତ୍ୟ କୁସୁମ ଓ ସାହିତ୍ୟ ପ୍ରସଙ୍ଗ ପାଠ କରାଯାଉଥିଲା; ଷଷ୍ଠରେ ପଢ଼ିଲାବେଳକୁ ସାହିତ୍ୟସୁଧା (କୁନ୍ତଳମଣି ଦାଶ) ଆମର ପାଠ୍ୟ ହେଲା ।

ସ୍କୁଲ୍‌ର ଦକ୍ଷିଣପାଖ ପଡ଼ିଆରେ ଭଲି, ଟେନିସ୍, ଫୁଟବଲ ଆଦି ଖେଳର ବ୍ୟବସ୍ଥା କରାଯାଉଥିଲା । ଫୁଟବଲ ଫିଲ୍‌ଡ୍ ପାଇଁ ବୈତରଣୀ କୂଳସ୍ଥ ଘୋଡ଼ାଡିହା ପଦାରୁ ଚାକୁଣ୍ଡା ଓ ଅନ୍ୟାନ୍ୟ ଗଛ ସଫା କରିବା ଏବେ ମୋର ମନେ ଅଛି । ହେଡ୍‌ମାଷ୍ଟେ ଆମ ସହ ଖେଳରେ ଯୋଗ ଦେଉଥିଲେ । ସମୟେ ସମୟେ ସଙ୍ଗୀତ ପ୍ରତିଯୋଗିତା ହେଉଥିଲା । ଆମେ ଛାନ୍ଦ, ପାଠ୍ୟ ପୁସ୍ତକର କବିତା ଓ ସେତେବେଳକାର ଗୀତାଭିନୟର ସଙ୍ଗୀତ ଗାଉଥିଲୁଁ ।

ହଷ୍ଟେଲର ଦକ୍ଷିଣକୁ ନଦୀକୂଳ ପଠାରେ ସ୍କୁଲ ବଗିଚା ତିଆରି କରି ନାନା ପ୍ରକାର ପନିପରିବା ଲଗାଉଥିଲୁଁ । ହଷ୍ଟେଲ୍‌ରେ ପ୍ରତିମାସ ଜଣେ ଜଣେ ମେସ୍ ମ୍ୟାନେଜର୍ ହେଉଥିଲେ । ପୂଜାରୀ ଓ ହଷ୍ଟେଲ ହେଲ୍‌ପର (ଟହଲିଆ)କୁ ନେଇ ମ୍ୟାନେଜର ବଜାର ସଉଦା ଓ ପନିପରିବା କିଣୁଥିଲା ଏବଂ ପିଲାଙ୍କ ଠାରୁ ଚାଉଳ ଆଦାୟ କରି ଷ୍ଟୋରରୁମରେ ରଖୁଥିଲା । ପ୍ରତ୍ୟେକ ପିଲାର ଚାଉଳ ହିସାବ ଓ ଟଙ୍କା ହିସାବ ରଖାଯିବା ସଙ୍ଗେ ସଙ୍ଗେ ମ୍ୟାନେଜର ବଜାର ହିସାବ ରଖୁଥିଲା ଏବଂ ସୁପରିଟେଣ୍ଡେଣ୍ଟ୍ ତାହା ତଦାରଖ କରୁଥିଲେ ।

ସପ୍ତାହରେ ଥରେ ଥରେ ମାଛ, ମାଂସ ହେଉଥିଲା । ମୋର ମନେ ଅଛି : ଛେକି ମୁହୁଲି ନାମକ ଜଣେ ଲୋକ ସେତେବେଳେ ହଷ୍ଟେଲକୁ ମାଂସ ଯୋଗାଉଥିଲା । ଏବେ ତା'ର ପୁଅମାନେ ବ୍ୟବସାୟ ବାଟକରି ଆନନ୍ଦପୁରରେ ଭଲ କୋଠାବାଡ଼ି କରି ଜଣାଶୁଣା ହୋଇଛନ୍ତି । ଖରାଦିନେ ହଷ୍ଟେଲ୍ ବାରଣ୍ଡାରେ ଆମେ ଲଣ୍ଠନ ଜାଳି ପଢୁଁ । ନଦୀଆଡୁ

ଦକ୍ଷିଣାବାଆ ବହୁଥାଏ । କୋଇଲି ରାବକୁ ଢଙ୍ଗ ଆଳୁଅ ବେଶ ଖୁସି ଲାଗେ । ଦୈବାତ୍ ଯଦି ନଈମାଛ ତରକାରୀ ହେଉଥାଏ, ପବନରେ ବାସନା ବାରି ମନଟା ଭାରି ଖୁସି ହୁଏ । ଶ୍ରୀଧର ନନା, ନଟନନା ଓ ମାଗୁଣି ନନା ଥିଲେ ଆମର ପୂଜାରୀ । ଘର ତାଙ୍କର ପଞ୍ଚୁପଲ୍ଲୀ ଓ ଫକୀରପୁର । ମା' ପରି ପିଲାମାନଙ୍କ ପେଟକଥା ସେମାନେ ଜାଣୁଥିଲେ । ଖାଇଲାବେଳେ ବେଶି ତରକାରୀ ବେଶି ଝୋଳ ଦେବାପାଇଁ ବେଳେବେଳେ ଆମେ ନଟନନାକୁ ଫୁସୁଲାଉଁ । ପୂଜାରୀଙ୍କ ଭିତରେ ଶ୍ରୀଧର ନନା ଭାରି ନୀତି ପରାୟଣ । ରୋଷେଇ ବାସ ସିନା କରେ, କିନ୍ତୁ ବ୍ରାହ୍ମଣର କ୍ରିୟାକର୍ମ କିଛି ତା'ର ଉଣା ନୁହେଁ । କାବ୍ୟ, ପୁରାଣରେ ଜ୍ଞାନ ମଧ ତା'ର କମ ନୁହେଁ । ଆମ ଦୃଷ୍ଟିରେ ସେ ଥିଲା ଜଣେ ଜାଣିବାର ଆଦର୍ଶ ବ୍ୟକ୍ତି । ଶ୍ରୀଧର ନନାକୁ ଏବେ ଦେଖୁନାହିଁ । ନଟନନା ଓ ମାଗୁଣି ନନା ବାଲୁକେଶ୍ୱର ଓ ଝାଡ଼େଶ୍ୱର ମନ୍ଦିରରେ ଏବେ ପୂଜାପାଠ କରୁଥିବାର ଦେଖେଁ । ଭେଟ ହୋଇଗଲେ ଉଭୟେ ସେ କାଳର କେତେ କଥା କହି ଆଖିରୁ ଲୁହ ଝରାନ୍ତି । ସେମାନଙ୍କ ହାତରେ କିଛି କିଛି ଦେଇ ବିଦାୟ ନିଏ ।

ସ୍କୁଲ୍‌ରେ ସ୍କାଉଟ୍ ୟୁନିଟ୍ ଥିଲା । ମୁଁ ସ୍କାଉଟ୍‌ରେ ଯୋଗ ଦେଇଥିଲି । ମନେ ଅଛି : ଥରେ ବୈତରଣୀରେ ବଡ଼ବନ୍ୟା ହୋଇ ପଞ୍ଚୁପଲ୍ଲୀ, ଫକୀରପୁର, ମୁଗୁପୁର, ବଣ୍ଟୋ ଓ ହାବଳେଶ୍ୱର ପ୍ରଭୃତି ନଈକୂଳିଆ ଗାଁମାନଙ୍କର ବହୁତ କ୍ଷତି ହୋଇଥିଲା । ହେଡ଼ମାଷ୍ଟଙ୍କ ପ୍ରେରଣାରେ ଆମେ ସ୍କାଉଟ୍ ପିଲାମାନେ ଗୀତ ଗାଇ ଗାଇ ଚାଉଳ ଓ ପଇସା ଭିକ୍ଷାକରି ବନ୍ୟାଗ୍ରସ୍ତ ଲୋକମାନଙ୍କ ଉଦ୍ଦେଶ୍ୟରେ ପଠାଇଥିଲୁଁ । ସ୍କାଉଟ୍ ପାଇଁ ଖାକିପେଣ୍ଟ, ସାର୍ଟ ଦଉଡ଼ି, ବାଡ଼ି, ଛୁରୀ, ସ୍କାର୍ଫ ଇତ୍ୟାଦି ସେତେବେଳେ କିଣିଥିଲି । ଆମେ (ସ୍କାଉଟ ପିଲାମାନେ) ଥରେ ଥରେ ଦେଓଗାଁ କୁଶଳେଶ୍ୱରଙ୍କର ଶିବରାତ୍ରିରେ ସ୍ୱେଚ୍ଛାସେବକ କାମ କରୁଥିଲୁଁ ।

ଆଜିକାଲି ନିମ୍ନ ପ୍ରାଥମିକ ଶ୍ରେଣୀରେ ପଢ଼ିବାଠାରୁ ଭଲ ପୋଷାକ ଖୋଜା । ଭଲ ଫାଉଣ୍ଟେନ ପେନ୍ ନ ହେଲେ (ଏବେ ଡଟ୍‌ପେନ) ଚଳୁନାହିଁ । ସେତେବେଳେ ଏସବୁ ଏକ ପ୍ରକାର ବିଳାସିତା ଥିଲା । ମୋର ମନେଅଛି : ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ମୁଁ କେବଳ କାଚରା ଜାମା ପିନ୍ଧୁଥିଲି । ଯୋତା କ'ଣ ଜାଣିନଥିଲି । ଫାଉଣ୍ଟେନ ପେନ୍ ତ ସ୍ୱପ୍ନର ବିଷୟ । କାଠି କଲମରେ ନିବ୍ (ପିତ୍ତଳ, ସୀସା) ଲଗାଇ ଲେଖୁଥିଲି । କାଳି ଟାବ୍‌ଲେଟ୍ (ଜେ.ବି.ଡ଼ି) ଆଣି ଦୁଆତରେ ପକାଇ କାଳି କରୁଥିଲୁଁ । ଏକ୍‌ସରସାଇଜ୍ ଖାତା ସ୍ୱପ୍ନର ବିଷୟ ଥିଲା । ବାଲି କାଗଜ (ମାଟିଆ) ଓ ଧଳା କାଗଜ କିଣି ଆଣି ଖାତା ନିଜେ ନିଜେ ବାନ୍ଧୁଥିଲୁଁ । ନିଜେ ନିଜେ ରୋଲ୍ ପକାଇ ଓଡ଼ିଆ ଓ ଇଂରାଜୀ ହସ୍ତାକ୍ଷର ଲେଖୁଥିଲୁଁ । ପରୀକ୍ଷା ଦିନ ସ୍କୁଲ୍‌ର ଦପ୍ତରି ଶଙ୍କର ହାଣ୍ଡିଏ କାଳି ତିଆରି କରେ । ଆମେ ଦୁଆତରେ ତା'ଠାରୁ କାଳି ଆଣି ସେଇ କାଳିରେ ପରୀକ୍ଷା ଦେଉଁ ।

ଆଜିକାଲି ଛୋଟଠାରୁ ଆରମ୍ଭ କରି ବଡ଼ ପର୍ଯ୍ୟନ୍ତ ଘଡ଼ି ଏକ ମାମୁଲି କଥା । ସେତେବେଳେ ହେଡ୍‌ମାଷ୍ଟରଙ୍କୁ ଛାଡ଼ିଦେଲେ ପ୍ରାୟ କା ହାତରେ ଘଡ଼ି ନଥିଲା । ସ୍କୁଲ୍‌ରେ

ଗୋଟଏ ଟେବୁଲ୍ କ୍ଲକ୍ ଥିଲା । ସମୟ ଜାଣିବାରେ ଆମକୁ ଅସୁବିଧା ହେଉନଥିଲା । ପାଖରେ ଥିବା ଜେଲ୍‌ଖାନା ଘଣ୍ଟା ଓ କଚେରୀ ଘଣ୍ଟା ବାଡ଼ିଆଯାଏ । ତାହାଥିଲା ଆମର ସମୟ ସୂଚକ । ସ୍କୁଲ୍‌ରେ ଟାଇପ୍ ମେସିନ୍ ନଥିଲା । ଅଫିସ୍ କାଗଜପତ୍ର ହାତରେ ଲେଖାଯାଉଥିଲା । କିରାଣି ନଥିଲେ । ହେଡ଼ମାଷ୍ଟଙ୍କ ଅଫିସ୍ ରୁମରେ ତାଙ୍କ ଟେବୁଲ୍ ତିନି ପାଖରେ ଅନ୍ୟ ଶିକ୍ଷକମାନେ ବସୁଥିଲେ ।

ସେତେବେଳେ ସ୍କାଉଟ-ପେଣ୍ଟ ଛାଡ଼ିଦେଲେ ଆମେ ସାଧାରଣତଃ ଅନ୍ୟ ପେଣ୍ଟ ପିନ୍ଧୁ ନଥିଲୁଁ । ଲୁଗା ଓ ହାଫ୍ ସାର୍ଟ ଥିଲା ଆମର ପୋଷାକ । ଲକ୍ଷ୍ମୀଧର ଥିଲା ସେତେବେଳେ ହଷ୍ଟେଲ ରଜକ (ଧୋବା) । ସେ କେତେକ ଲୁଗା ବାସିରେ ନେଉଥିଲା, କେତେକ ସଜ କାଚୁଥିଲା । ବାରିକ ପାଖରେ ଫେସନରେ କେହି ଖିଅର ହୋଇପାରୁନଥିଲୁଁ, ଏଥିପାଇଁ ବାରିକକୁ ଥିଲା ହେଡ଼ମାଷ୍ଟଙ୍କ କଡ଼ା ତାଗିଦ୍ । ପାଠପଢ଼ା ସହ ଆଚରଣ ଓ ଚରିତ୍ର ଗଠନ ପ୍ରତି କଡ଼ା ନଜର ଦିଆଯାଉଥିବାରୁ ପଥଭ୍ରଷ୍ଟ ହେବାର କୌଣସି କାରଣ ନଥିଲା ।

ଆନନ୍ଦପୁରରେ ବିଭିନ୍ନ ସମୟରେ ନାନା ଯାନିଯାତ୍ରା ହୁଏ । ଆନନ୍ଦେଶ୍ୱରଙ୍କ ନିକଟରେ ଯାତ୍ରା, ସ୍କୁଲ୍ ପାଖରେ ଲକ୍ଷ୍ମୀପୂଜା, ବଡ଼ ଦାଣ୍ଡରେ ମେଳଣ, ରାସଯାତ୍ରା, ଖରାଦିନେ ବାଦୀପାଲା, ଅଷ୍ଟପ୍ରହରୀ ଆଦି ଅନୁଷ୍ଠିତ ହୁଏ । ସମୟେ ସମୟେ ଶିକ୍ଷିତ ଯୁବକମାନେ ମଧ ଥିଏଟର୍ କରନ୍ତି । ଥରେ ଉତ୍ତରେଶ୍ୱର ମହାଦେବଙ୍କୁ ଜଳଶାୟୀ କରାଯାଇଥିଲା । ଆମ ହେଡ଼ମାଷ୍ଟରଙ୍କ ନେତୃତ୍ୱରେ ବୈତରଣୀଠାରୁ ଉତ୍ତରେଶ୍ୱର ପର୍ଯ୍ୟନ୍ତ ମାଠିଆରେ ହାତକୁ ହାତ ପାଣି ବଢ଼ାଯାଇ ଏହାର ବ୍ୟବସ୍ଥା ହୋଇଥିଲା ।

ଆନନ୍ଦପୁରର ଦ୍ୱିତଳ ପ୍ରାସାଦ ବିଶିଷ୍ଟ କଚେରୀ ବହୁ ଦୂରକୁ ଦେଖାଯାଏ, ଏପରିକି ୫/୬ ମାଇଲ ଦୂରସ୍ଥ ପଥର ପଦାର ପାହାଡ଼ପାଖରୁ ଚାହିଁଲେ କଚେରୀ ଦେଖାଯାଏ । ଏହା ଦ୍ୱିତଳ ବିଷିଷ୍ଟ ରାଜପ୍ରାସାଦ । ଉପରକୁ ଯିବାପାଇଁ ପାହାଚ, ଶୀର୍ଷ ପାହାଚ ପରେ ଗମ୍ବୁଜ । ଏଇ ଉଆସ ଭିତରେ ମାଟିତଳ ଘର ଥିଲା ବୋଲି କେତେକ କହନ୍ତି । କଚେରୀର ପଶ୍ଚିମକୁ ଲାଗି ଉତ୍ତରରେ ପାଟରାସାଇଠାରୁ ଦକ୍ଷିଣରେ ନଈକୂଳ ପର୍ଯ୍ୟନ୍ତ ବିରାଟ ବଗିଚା ଥିଲା, ଏହାକୁ ଉଆସବାଡ଼ି କହନ୍ତି ।

ଉଆସ ବାଡ଼ିରେ ବହୁ ଫଳଫୁଲ ଗଛ ସେତେବେଳେ ଥିଲା । ବାଘ, ସାପ ବି ରହୁଥିଲେ । ଏବେ କେତୋଟି ଆମ୍ବ, ତାଳ, ପିଜୁଳି ଗଛ ଛଡ଼ା ଆଉ କିଛି ନାହିଁ । ତା ମଧଦେଇ ଠାକୁର ମୁଣ୍ଡାକୁ ରାସ୍ତା ତିଆରି ହୋଇଛି । ଉଆସବାଡ଼ିର ଉତ୍ତର-ପଶ୍ଚିମକୁ ପାଟରା ସାଇକୁ ଲାଗି ସାଇର ଅଧିଷ୍ଠାତ୍ରୀ ଦେବୀ 'ବ୍ରାହ୍ମଣୀ-ଦେବୀ' ଆଗରୁ ପ୍ରସିଦ୍ଧ ଥିଲେ । ଏବେ ରାସ୍ତା ପାଖରେ ଦେବୀଙ୍କର ଆସ୍ଥାନ ଓ ଦେଉଳ ସଂସ୍କାର କରାଯାଇଛି ଏବଂ ପାଟରାସାଇର ପଶ୍ଚିମକୁ ନଦୀକୂଳକୁ ନୂତନ ସରକାରୀ ହାଇସ୍କୁଲ୍ କୋଠା ନିର୍ମିତ ହୋଇଛି । ଆମେ ପଢୁଥିବା ପୁରାତନ ମାଇନର ସ୍କୁଲ୍‌ରେ ଆନନ୍ଦପୁର ବାଳିକା ହାଇସ୍କୁଲ୍ ହେଉଛି ।

ଛାତ୍ର ଥିବାବେଳେ ଉଆସବାଡ଼ିରୁ କେତେବାର ଆମ୍ବ, ଜାମୁ, ଲିଚୁ, ଲଙ୍କା ଆମ୍ବ ଇତ୍ୟାଦି ମନଖୁସିରେ ଖାଇଛୁଁ, ନଈକୂଳିଆ ବାଲିକୁଆଁ ଡାଳମାନଙ୍କରେ ମାଙ୍କଡ଼ ପରି ଖେଳିଛୁଁ, ବଗିଚା ପାଖ ବାଲିରେ ବାଗୁଡ଼ି ଖେଳ ଖେଳିଛୁଁ । ଉଆସର ଏହି ଫୁଲଫଳ ବଗିଚା ପୂର୍ବରୁ (ଊନବିଂଶ ଶତାବ୍ଦୀରେ) ବଗିଚା ହୋଇନଥିଲା, ଥିଲା ଭୟଙ୍କର ଜଙ୍ଗଲ । ବାଘ, ଭାଲୁଠାରୁ ଆରମ୍ଭ କରି ଯାବତ ହିଂସ୍ର ଜନ୍ତୁ ଓ ବିଷାକ୍ତ ସାପ ରହୁଥିଲେ । ବ୍ୟାସକବି ଫକୀରମୋହନ ସେନାପତି କେନ୍ଦୁଝରର ଆସିଷ୍ଟାଣ୍ଟ ମ୍ୟାନେଜର ଥିଲାବେଳେ ଆନନ୍ଦପୁରରେ କିଛିଦିନ ଅବସ୍ଥାପିତ ହୋଇଥିଲେ ଏବଂ କଚେରୀ କାର୍ଯ୍ୟକୁ ଶୃଙ୍ଖଳିତ କରିଥିଲେ । ସେ ଆନନ୍ଦପୁରରେ ଏକ ପ୍ରେସ୍ ସ୍ଥାପନ କରିଥିଲେ ଏବଂ ତାଙ୍କର 'ଉତ୍କଳ ଭ୍ରମଣ' ପୁସ୍ତିକା ହାତୀ ପିଠିରେ ବସି ଲେଖି ଆନନ୍ଦପୁର ପ୍ରେସରେ ମୁଦ୍ରିତ କରିଥିଲେ । ସେ ଉଆସକୁ ଲାଗିଥିବା ଜଙ୍ଗଲ କଟାଇ ସଫାକରି ନାନା ପ୍ରକାର ଫୁଲଫଳ ଗଛ ଲଗାଇ ତା'ର ଆରଣ୍ୟକ ରୂପର ସଂସ୍କାର ସାଧନ କରିଥିଲେ, ଫଳରେ ତାହା ଉଆସବାଡ଼ି ନାମରେ ପରିଚିତ ହୋଇଥିଲା ।

ଫକୀରମୋହନ ସେତେବେଳେ ଆନନ୍ଦପୁରବାସୀଙ୍କର ବହୁ ଉପକାର କରିଥିଲେ । ଅନେକ ବିରକ୍ତିକର ଅଯୌକ୍ତିକ କର ବିଶେଷତଃ ଚୁଲିକର, ବିଧବା କର ଉଠାଇ ଦେଇଥିଲେ । ସେଥିରେ ଆନନ୍ଦପୁରର ବହୁ ବିଧବା ବୃଦ୍ଧା ଆନନ୍ଦିତ ହୋଇ ତାଙ୍କୁ ଦେବତା ପ୍ରାୟ ମନେ କରୁଥିଲେ ଏବଂ ପ୍ରଣାମ ଜଣାଉଥିଲେ । ମୋର ଅଜା ଫକୀରମୋହନଙ୍କୁ ଦେଖିଛନ୍ତି । ସେ କହନ୍ତି : ଥରେ ଗସ୍ତରେ ଆସିଥିବା ବେଳେ ଏକ ଚୋରି କେଶ୍‌ର ତଦନ୍ତ କରୁଥାଆନ୍ତି । ଏ ଚୋରିରେ ଆମ ଗାଁ ଚୌକିଦାରର ହାତ ଥିବାରୁ ଫକୀରମୋହନ ତାକୁ ପଚାରିଲେ : ଜେନା, କି ଲାଗି ତୁ ଚୁରିରେ ମାତିଲୁ ? ଯେନା ଥରି ଥରି ହାତଯୋଡ଼ି ଠିଆ ହୋଇଥାଏ । ମୋର ମନେ ଅଛି : ସେଇ ଉଆସ ବାଡ଼ିର ନଈକୂଳିଆ ଏକ ଅଂଶରେ ଥରେ ପ୍ରାଇମେରୀ ଶିକ୍ଷକମାନଙ୍କୁ ଆଦର୍ଶ ଶିକ୍ଷାଦାନ ପଦ୍ଧତି ସଂପର୍କରେ ତାଲିମ ଦିଆଯାଉଥିଲା- ଆମ ହେଡ୍‌ମାଷ୍ଟେ ଯହିଁରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ଆଜି ସେଇ ଉଆସ ବାଡ଼ିର ନାମ ପ୍ରାୟ ଲୋପ ହୋଇଆସୁଛି, କେବଳ ପୁରୁଣା ସ୍ମୃତିର ସ୍ୱାକ୍ଷର ବହନ କରିଥିବା ଇଷ୍ଟକ ବେଦୀ ଓ ଖମ୍ବ ଗୋଟିଏ ସ୍ଥାନରେ ରହିଛି । ଉଆସ ବା କଚେରୀକୁ ଲାଗି ଉତ୍ତର ପାଖରେ ସବ୍‌ଜଜ୍‌କୋର୍ଟ ଓ ସବ୍‌ଡ଼ିଭିଜନାଲ ମାଜିଷ୍ଟ୍ରେଟ୍ କୋର୍ଟ ତିଆରି ହୋଇଛି- ପୂର୍ବାଂଶରେ ଷ୍ଟେଟ୍‌ବ୍ୟାଙ୍କ କୋଠା ତିଆଁରି ହୋଇଛି ।

ଆନନ୍ଦପୁର କଚେରୀର ଅମଲାମାନେ ସଙ୍ଗୀତଜ୍ଞ କିରାଣୀ ହୃଷୀକେଶ ପଟ୍ଟନାୟକଙ୍କ ଘର ସାମ୍‌ନାରେ ପ୍ରତିବର୍ଷ ଅଷ୍ଟପ୍ରହରୀ ନାମଯଜ୍ଞ କରନ୍ତି । ମଫସଲର ବହୁ କୀର୍ତ୍ତନ ଦଳ ମଧ୍ୟ ଆସନ୍ତି । ଅଜା ବହୁବାର ଏଥିରେ ଯୋଗ ଦେଉଥିଲେ । ନିଜେ ନଗରକୀର୍ତ୍ତନ ସମୟରେ ଛୋଟ ଆଟିକାରେ ଘୋରା ଚନ୍ଦନ ଧରି ଲୋକଙ୍କ କପାଳରେ ଲେପୁଥିଲେ । ଆମେ ହଷ୍ଟେଲ ପିଲା ନିମନ୍ତ୍ରିତ ହୋଇ ପ୍ରସାଦ ସେବନ କରୁଥିଲୁଁ ।

ମୋର ସହପାଠୀମାନଙ୍କ ମଧ୍ୟରେ ରଙ୍ଗାଧର ଖଟୁଆ (ବି.ଏସ୍.ସି. ଅନର୍ସ, ପରେ କେନ୍ଦୁଝରର ଡି.ଏନ୍. ହାଇସ୍କୁଲରେ ବିଜ୍ଞାନ ଶିକ୍ଷକ) ମୋ ସହିତ ପରୀକ୍ଷାରେ ପ୍ରତିଯୋଗିତା କରେ । ପିଲାଙ୍କ ମଧ୍ୟରେ ନାନାପ୍ରକାର ହସ କୌତୁକ ହୁଏ । ଏ ପ୍ରକାର ହାସ୍ୟ ଉଦ୍ରେକକାରୀ ତିନି ଚାରିଜଣ ପିଲା ଥିଲେ, ସେମାନଙ୍କ ମଧ୍ୟରେ କମ୍ବୁ ପାଣିଗ୍ରାହୀ ଓ ପୁରୁଷୋତ୍ତମ ସାହୁଙ୍କ ନାମ ଉଲ୍ଲେଖଯୋଗ୍ୟ । ପୁରୁଷୋତ୍ତମ ଆନନ୍ଦପୁର ନିକଟବର୍ତ୍ତୀ ପଦ୍ମପୁରର ପିଲା । ସେ ଗ୍ରାମର ଅଧିବାସୀ ସେତେବେଳେ ଶିକ୍ଷିତ ନଥିଲେ; କାଁ ଭାଁ ଜଣେ ଆନନ୍ଦପୁର ସ୍କୁଲରେ ପଢୁଥିଲେ । ପଦ୍ମପୁରରେ ବହୁ ପନିପରିବା ଚାଷ ହୁଏ; ଆନନ୍ଦପୁର ଗୁରୁରି ବଜାର ପଦ୍ମପୁର ବାଇଗଣରେ ଭର୍ତ୍ତି ହୋଇଯାଏ । ପଦ୍ମପୁରିଆଙ୍କର ବୋକାମିକୁ କେନ୍ଦ୍ରକରି ଆମେ ସେତେବେଳେ ବହୁ ହାସ-କୌତୁକ କରୁଁ ।

ମୋର ପଢ଼ା ସମୟରେ ତିନିଥର ପୁରସ୍କାର ବିତରଣ ଉତ୍ସବ ହୋଇଥିଲା, ମୁଁ ଶ୍ରେଣୀରେ ପ୍ରଥମ ହେଉଥିବାରୁ ବହୁ ପୁରସ୍କାର ପାଉଥିଲି । ମୋର ମନେ ଅଛି : ସେତେବେଳକାର କେନ୍ଦୁଝରର ଦେଓ୍ୱାନ ଯୁଗଳ କିଶୋର ତ୍ରିପାଠୀ ପୁରସ୍କାର ବିତରଣ କରିଥିଲେ । ଆଉ ଥରେ ଏସ୍.ଡ଼ି.ଓ. କହ୍ନେଇ ଚରଣ ଦାସ ପୁରସ୍କାର ବାଣ୍ଟିଥିଲେ । ଏଇ କହ୍ନେଇ ବାବୁ ମ୍ୟାଟ୍ରିକ୍‌ରୁ ଅଧିକ ପଢ଼ି ନଥିଲେ, କିନ୍ତୁ ନିଜର ଯୋଗ୍ୟତା ବଳରେ ଉପରକୁ ଉଠିପାରିଥିଲେ । ଆମ ପଢ଼ା ସମୟରେ ଆଉ ଜଣେ ଏସ୍.ଡ଼ି.ଓ ଥିଲେ, ତାଙ୍କ ନାମ ରଘୁନନ୍ଦନ ତ୍ରିବେଦୀ । ସେ ବିହାରୀ । ଦେଖିବାକୁ ଗୋରା, ଦାଢ଼ୀ ଛାତିପର୍ଯ୍ୟନ୍ତ ଲମ୍ବିଥାଏ । ସେ ଜଣେ ବଳିଷ୍ଠ ବ୍ୟକ୍ତିତ୍ୱ ସଂପନ୍ନ ନିରପେକ୍ଷ ଅଫିସର୍ ଥିଲେ ।

ନାରାୟଣ ପାଢ଼ୀ ନାମକ ଜଣେ ପୁରାତନ ଛାତ୍ର କଲିକତାରେ ପଢୁଥିଲେ । ସେ ଥରେ ପେନ୍‌ସିଲ୍ ସାହାଯ୍ୟରେ ଡ୍ରଇଁ କାଗଜରେ ହଷ୍ଟେଲ ପୂଜାରୀ ନଟନନାଙ୍କର ମୁହଁକୁ ଆଦର୍ଶ କରି ଚାହୁଁ ଚାହୁଁ ମୁହଁଟିର ଚମତ୍କାର ଛବିଟିଏ ଆଙ୍କି ପେନ୍‌ସିଲ୍ ସେଡ୍ ଦେଇଦେଲେ । ଛବି ଅଙ୍କାରେ ତାଙ୍କର ଏ ଦକ୍ଷତା ଦେଖି ସେହିପରି ଛବି ଆଙ୍କିବାକୁ ଚେଷ୍ଟା କରିଛି ।

ଆମେ ନଈକୂଳିଆ ସହରରେ ରହୁଥିବାରୁ ନଈ ଆମକୁ ପହଁରା ଶିଖାଇଥିଲା । ବର୍ଷାଦିନେ ପହିଲି ପାଣି ପଡ଼ି ନଈ ବଢ଼ିଲେ ଆମେ ଟିକିଏ ଉପରମୁଣ୍ଡକୁ ଚାଲିଯାଇ ନଈ ସୁଅରେ ପହଁରୁ ପୁଣି ଝଳ ଦେଉଁ । ମୋର ସହପାଠୀ ଗୋପ (ଗୋପବନ୍ଧୁ ଦାସ, ତା'ପରେ ଜଣେ ରାଜନୈତିକ ବ୍ୟକ୍ତି) ପମ୍ପ ଦିଆ ମଟର ଟିଉବ୍ ନେଇ ନଈରେ ପହଁରେ ।

ଆଜି ଆନନ୍ଦପୁର କଲେଜ୍ ଯେଉଁଠି ହୋଇଛି, ସେଠି ଥିଲା ଘୋର ଜଙ୍ଗଲ । ଆନନ୍ଦପୁର ଓ ଫକୀରପୁର ମଝିରେ ଏଇ ଜଙ୍ଗଲ; ଗଛଲତାରେ ନିବିଡ଼ ଓ ନିରନ୍ଧ୍ର । ସେତେବେଳେ ବାଘ ବଉଳା ପର୍ବତରୁ (ଆନନ୍ଦପୁରଠାରୁ ଉତ୍ତର ପୂର୍ବକୁ ୭/୮ ମାଇଲ୍ ଦୂରବର୍ତ୍ତୀ ପର୍ବତ) ଗଡୁଥିଲା । ଥରେ ଆମେ କେତେଜଣ ପିଲା ହଷ୍ଟେଲ ପୂଜାରୀ ସହ ତାଙ୍କ ଗାଁ ଫକୀରପୁରକୁ ଯାଇଥିଲୁଁ । ଫେରୁ ଫେରୁ ରାତି ହୋଇଗଲା । ବୋଡ଼ାବାଲି ପାରି ହେବାପରେ ବାଘ ଗର୍ଜନ ଶୁଣି ଆତଙ୍କରେ ନିଆଁହୁଳା ଜାଳି ଆନନ୍ଦପୁର ଆସିଲୁଁ ।

ଆମ ପଢ଼ିବା ସମୟରେ ଦ୍ୱିତୀୟ ପୃଥିବୀ ମହାସମର ଲାଗିଯାଇଥାଏ । ଜର୍ମାନୀର ନିଆଁଗିଳା ହିଟଲର କଥା ଶୁଣୁଥାଉଁ । ୧୯୪୧ ଡିସେମ୍ବରରେ ମାଇନର୍ ବୃତ୍ତି ପରୀକ୍ଷା ଦେଇ ଗାଁକୁ ଚାଲିଯାଏଁ ।

ଆନନ୍ଦପୁର ରହଣିକାଳରେ ଭାରତୀୟ ଜାତୀୟ ଆନ୍ଦୋଳନର ଝଲକ ମାତ୍ର ଲକ୍ଷ୍ୟ କରିଥିଲି । 'ମହାତ୍ମାଗାନ୍ଧୀ କି ଜୟ !' ଧ୍ୱନି ଦେଇ ପଣ୍ଡୁଆ ଗ୍ରାମର ନାରାୟଣ ଚକ୍ର ଏବଂ ଦେଓଗାଁର କୀର୍ତ୍ତନ ବିହାରୀ ପାତ୍ର ଗିରଫ ହୋଇ ଆନନ୍ଦପୁର ଜେଲ ହାଜତରେ ଥିଲେ । ଏହିପରି କେତେକ ଘଟଣା ସେତେବେଳର କିଶୋର ମନରେ ଗଭୀର ରେଖାପାତ କରିଥିଲା ।

୧୯୪୨ ମସିହାର ବଡ଼ଦିନ । ପଢ଼ାପଢ଼ି ନଥାଏ । ଗାଁରେ ଅଜା ଓ ଦାଦାଙ୍କୁ କାମରେ ସାହାଯ୍ୟ କରୁଥାଏଁ । ଆମର ସେତେବେଳେ ଧାନର ମହାଜନି ଥିଲା । ବାଲିକାଗଜରେ ବହୁ ମହାଜନି ଖାତା ଘରେ ଥାଏ । ସେଇ ଖାତାର ଆଲେଖା ଫାଳକୁ ନେଇ ମୁଁ ବାଜେ ଖାତା କରିଥାଏଁ । ଦାଦାଙ୍କ ଆଦେଶରେ ମୁଁ ସେ ଖାତାମାନଙ୍କରେ ଋଣଗ୍ରହୀତାମାନଙ୍କର କରଜ କରିଥିବା ଧାନର ସୁଧ ହିସାବ କରେଁ । ତା'ଛଡ଼ା ଆମ ଗାଁରେ ଝୋଟଚାଷ ହେଉଥିବାରୁ ଝୋଟ ମହାଜନମାନେ ଶୀତଦିନେ ଗାଁରେ ଖଟି ପକାନ୍ତି । ପ୍ରଚୁର ଝୋଟ ବିକ୍ରି ହୁଏ । ମୁଁ କ୍ରେତାଙ୍କ ପକ୍ଷରୁ ପୁରୁଣିଆଁ ଓ ବେଲବାହାଳିରେ ଝୋଟ ଓଜନ କରାଇ ହିସାବ ଟିପିରଖି ଗୁମାସ୍ତାକୁ ବୁଝାଇ ଦିଏଁ । ଏ କାମ ଅବଶ୍ୟ ଥିଲା ମୋର ଅବୈତନିକ । ସାଇକେଲ୍ ଖଣ୍ଡେ ମିଳିଥିବାରୁ ସେଇଥିରେ ମୋର ନୂଆ ସାଇକେଲ୍ ଚଢ଼ିବାଟା ଦୋରସ୍ତ ହୋଇଯାଏଁ ।

ବୃତ୍ତି ପରୀକ୍ଷାର ଫଳ ବାହାରିଲା । ପରୀକ୍ଷାରେ ଦ୍ୱିତୀୟ ହୋଇ ଥିବାରୁ ଅଜା ଅସନ୍ତୁଷ୍ଟ ହୋଇ କହନ୍ତି- ମନ ମୋଟ ହୋଇଗଲା, ଫାଷ୍ଟ ହେବ କିପରି ? ଦିନେ ଚଉଁରା ପାଖରେ ଅଜା ମାଟିଗୁଡ଼ାଏ ଗଦାକରି ପାଣି ଢ଼ାଳି ଭିଜାଇଥାନ୍ତି । ଗୁହାଳର ଗୋଟାଏ ଛୋଟ କାନ୍ଥ ଦେବାର କଥା । ମୂଲିଆ ପାଦରେ କାଦୁଅ ଚକଟୁଥାଏ, ମୁଁ ବାଦ ଯିବି କିପରି ? ମୁଁ ମଧ କାଦୁଅ ଚକଟାରେ ଲାଗିଗଲି । ବହୁତବେଳ ଯାଏ ଚକଟା ଚାଲିଥାଏ । ଗାଁର ଜଣେ ଦାଦା (କ୍ଷେତ୍ରବାସୀ) ଦେଖି କହିଲେ- କ'ଣ ଆଉ କେହି ମିଳିଲେ ନାହିଁ ଯେ ଗଙ୍ଗାଧର କାଦୁଅ ଚକଟାରେ ଲାଗିବ ? କ'ଣ ପରୀକ୍ଷାରେ ସେକେଣ୍ଡ୍ ହୋଇଗଲା ବୋଲି ଏଇଟା ପୁରସ୍କାର ?

ମ୍ୟାଟ୍ରିକ୍ ପଢ଼େଇବେକି ନାହିଁ, ଆଶା ଆଶଙ୍କାରେ ଥାଏଁ । ଅଜା ତ ରାଗିଛନ୍ତି । ଦାଦା କିଛି କହୁ ନଥାନ୍ତି । ମୁଁ ଦିନେ ଅନ୍ୟ ଲୋକ ଜରିଆରେ ଦାଦାଙ୍କୁ ଶୁଣାଇ କହିଲି- ମ୍ୟାଟ୍ରିକ୍ ନ ପଢ଼ାନ୍ତୁ ପଛେ କାଡ଼ାଷ୍ଟ୍ରାଲ ସର୍ଭେ ଟ୍ରେନିଂ ନେବାର ବ୍ୟବସ୍ଥା କରିଦିଅନ୍ତୁ ।

ଡିସେମ୍ବର ମାସ ଶେଷ ହୋଇଗଲା । ୧୯୪୨ ଆରମ୍ଭ । ସେତେବେଳେ ସ୍କୁଲ୍‌ଗୁଡ଼ାକର ବିଭିନ୍ନ ଶ୍ରେଣୀ ଜାନୁୟାରୀରେ ଆରମ୍ଭ ହେଉଥିଲା । ମ୍ୟାଟ୍ରିକ୍ ଅଷ୍ଟମ ଶ୍ରେଣୀରେ ନାଁ ଲେଖାଇବାର କଥା । ହାଇସ୍କୁଲ୍ ଆନନ୍ଦପୁରରେ ନଥାଏ; କେନ୍ଦୁଝର ଗଡ଼ରେ ସମଗ୍ର ଜିଲ୍ଲା (ସେତେବେଳେ ଷ୍ଟେଟ୍) ପାଇଁ ଗୋଟିଏ ମାତ୍ର ହାଇସ୍କୁଲ୍- ନାମ ଗିବ୍‌ସନ୍ ହାଇସ୍କୁଲ୍ ।

ଆମ ଗାଁର ନାରାୟଣ ରାଉତ ମ୍ୟାଟ୍ରିକ୍ ଅଷ୍ଟମ ଶ୍ରେଣୀରେ ପଢୁଥିଲେ, ନବମକୁ ଉଠିଥାନ୍ତି । ତାଙ୍କର କେନ୍ଦୁଝରଗଡ଼ ଯିବା ଦିନ ଦାଦା ଅଚାନିକା ମୋ ହାତରେ ଦଶଟି ଟଙ୍କା ଦେଇ ତାଙ୍କ ସହ ଗଡ଼କୁ ପଠାଇ ଦିଅନ୍ତି । ଅଜା ଘରେ ନଥାନ୍ତି ।

ବୀରଗୋବିନ୍ଦପୁର ଠାରୁ କେନ୍ଦୁଝରଗଡ଼ ପର୍ଯ୍ୟନ୍ତ ନିଘଞ୍ଚ ଜଙ୍ଗଲ । ଘଟଗାଁ ତାରିଣୀଙ୍କ ପାଇଁ ବିଖ୍ୟାତ । ଆଜି ସିନା ତାରିଣୀଶାଳ ଦେଖାଯାଉଛି । ତାରିଣୀଙ୍କ ପାଇଁ ଦେଉଳ, ଘର, ଧର୍ମଶାଳା, ପାଚେରୀ, କୂଅର ବ୍ୟବସ୍ଥା ହୋଇଗଲାଣି- ସେତେବେଳେ ରାସ୍ତାକଡ଼ ଜଙ୍ଗଲ ଭିତରେ ଗଛମୂଳେ ତାରିଣୀଙ୍କ ଅଧିଷ୍ଠାନ । ଦେହୁରୀ ପୂଜାଦିଏ । ବଡ଼ବଡ଼ ଶାଳଗଛର ଜଙ୍ଗଲ ହେତୁ ରାସ୍ତାରୁ ତାରିଣୀଶାଳ ଦେଖାଯାଉନଥିଲା । ବସ୍‌ରେ ତାରିଣୀଙ୍କୁ ପ୍ରଣାମ ଜଣାଇଲି । ଜଙ୍ଗଲ ଭିତରେ ରାସ୍ତାର ବକ୍ଷଚିରି କେତେବେଳକରେ କେନ୍ଦୁଝର ଗଡ଼ରେ ବସ୍ ପହଞ୍ଚିଲା । ହାଇସ୍କୁଲ୍‌ର ଦୁଇଟି ହଷ୍ଟେଲ୍ । ନାରାୟଣ ରାଉତଙ୍କ ସହ ଦ୍ୱିତୀୟ ହଷ୍ଟେଲ୍‌ରେ ରହିଲି ।

ଯେଉଁଦିନ ପହଞ୍ଚିଲୁଁ ଅଷ୍ଟମ ଶ୍ରେଣୀରେ ନାମଲେଖା ପାଇଁ ତହିଁ ଆରଦିନ ଏକ ପ୍ରବେଶିକା ପରୀକ୍ଷା ଦେଲି । ଆସିଷ୍ଟାଣ୍ଟ୍ ହେଡ଼ମାଷ୍ଟର ଇଂରାଜୀରେ ଗୁଡ଼ିଏ ପ୍ରଶ୍ନ ଦେଲେ । ପରୀକ୍ଷାରେ ପ୍ରଥମସ୍ଥାନ ଅଧିକାର କଲି । ଦିନେ ଦୁଇଦିନ ପରେ ନାମ ଲେଖାଯିବ । ପରୀକ୍ଷା ପରଦିନ ଦେଖିଲି : ଅଜା ଓ ଗଙ୍ଗାଧରର ବାପା କିଣାରାମ ଖଟୁଆ ସାଙ୍ଗହୋଇ ହଷ୍ଟେଲ୍ ଆଡ଼କୁ ଆସୁଛନ୍ତି । ଖଟୁଆ ଗୋଟିଏ ଭାରରେ ଦୁଇଟି ଟ୍ରଙ୍କ୍ ଧରିଛି, ଗୋଟିଏ ମୋର, ଅନ୍ୟଟି ଗଙ୍ଗାଧରର । ବାବା (ଅଜା) ଆନନ୍ଦପୁର ସ୍କୁଲ୍‌ରୁ ଟ୍ରାନ୍ସଫର୍ ସାର୍ଟିଫିକେଟ୍ ନେଇଆସିଥାନ୍ତି ।

ତହିଁ ଆରଦିନ ଅଷ୍ଟମ ଶ୍ରେଣୀରେ ମୋର ଓ ଗଙ୍ଗାଧରର ନାଁ ଲେଖାଗଲା । ଅଜାଙ୍କୁ ହେଡ଼ମାଷ୍ଟର ଭାବଗ୍ରାହୀ ମହାନ୍ତି ପୂର୍ବରୁ ଜାଣିଥିଲେ । ସେ ପୂର୍ବରୁ ଥିଲେ ଆନନ୍ଦପୁରର ସ୍କୁଲ୍ ସବ୍-ଇନିସ୍‌ପେକ୍ଟର । ଘରୋଇ ଭାବରେ ବି.ଏ. ଓ ଏମ୍.ଏ. ପରୀକ୍ଷା ଦେଇ ପ୍ରମୋସନ ପାଇ ହାଇସ୍କୁଲ୍‌ର ହେଡ଼ମାଷ୍ଟର ହୋଇଥିଲେ । ଗୋରା ତକତକ ଚେହେରା, ପ୍ରଜାପତିଆ ନିଶ, ଗୋରା ମୁହଁକୁ ଭଲ ମାନେ । ସାହେବଙ୍କ ପରି ଫୁଲ୍ ଡ୍ରେସ୍ । ତାଙ୍କର ଚାଲି, କଥା ଓ ବ୍ୟକ୍ତିତ୍ୱ ବାସ୍ତବିକ ଆମ ଦୃଷ୍ଟିରେ ଥିଲା ଅନନ୍ୟ ।

ଅଜାଙ୍କୁ ଦେଖିଲାମାତ୍ରେ ହେଡ଼ମାଷ୍ଟର ଭାରୀ ଖୁସି ହୋଇଗଲେ, କହିଲେ- 'କିହୋ ବଳେ, କେମିତି ଅଛ ?'

ଅଜା ପାକୁଆ ପାଟିରେ ହସିହସି କହିଲେ- 'ଆଜ୍ଞା, ଆପଣଙ୍କ ଦୟାରୁ ଭଲ ଅଛି । ମା'ଛେଉଣ୍ଡ ନାତିଟି ଆପଣଙ୍କୁ ଲାଗିଲା ।' ମୋର ଗୁଣ ବଖାଣି ଚାଲିଲେ । ମୋତେ ଲାଜ ମାଡୁଥାଏ । ଅଜା ହେଡ଼ମାଷ୍ଟରଙ୍କ ହାତକୁ ମହାପ୍ରସାଦ ବଢ଼ାଇ ତାଙ୍କୁ ମୋର ଧର୍ମ-ପିତା କରାଇ ଦେଲେ ।

ହେଡ଼ମାଷ୍ଟର ହସି ହସି କହିଲେ- ବଳେ ! ସବୁ ପିଲା ମୋର ପୁଅ, ଗଙ୍ଗାଧର ବାଦ୍ ଯିବ କାହିଁକି ?

ହେଡ୍‌ମାଷ୍ଟରଙ୍କଠାରୁ ବିଦାୟ ନେଇ ଅଜା ମୋତେ ସାଙ୍ଗରେ ନେଇ ଟାଉନ୍‌ର ବିଭିନ୍ନ ପରିଚିତ ବ୍ୟକ୍ତିଙ୍କ ପାଖକୁ ଗଲେ । ଗାଁକୁ ଯିବା ପୂର୍ବରୁ ବାବା ରାଜାଙ୍କ ନୂଆ ଉଆସ ଆଡ଼େ ମୋତେ ନେଇଗଲେ । ଉଦ୍ଦେଶ୍ୟ : ରାଜା କିମ୍ବା ଛୋଟରାୟ ଲକ୍ଷ୍ମୀନାରାୟଣ ଭଞ୍ଜଙ୍କୁ ସାକ୍ଷାତ୍ କରି ମୋର ପଢ଼ା ପାଇଁ କିଛି ମାସିକ ବୃତ୍ତି ବା ସାହାଯ୍ୟ ନିବେଦନ କରିବା ।

ଉଆସର ଦକ୍ଷିଣ ସିଂହଦ୍ୱାରରେ ପହଞ୍ଚି ବୁଝିଲୁଁ ଯେ ରାଜା ବା ଛୋଟରାୟ କେହି ନାହାନ୍ତି, ବାହାରକୁ ଯାଇଛନ୍ତି । ତା'ପରେ ପଶ୍ଚିମ ଦ୍ୱାର ଆଡ଼େ ଗଲୁଁ । ଜଣେ ଚପରାସୀ ଛୋଟ ରାଜବଂଶୀୟା ଝିଅକୁ କାଖେଇ ଥାଏ । ସୁନ୍ଦର ରୂପ ଓ ବେଶଭୂଷା ଦେଖି ବାବା ଭାରି ଖୁସି ହୋଇଗଲେ । ତାକୁ କୋଳରେ ଟିକିଏ ଧରିବା ପାଇଁ ବାବା ଆଗ୍ରହ ପ୍ରକାଶ କରିବାରୁ ଚପରାସୀ ଝିଅଟିକୁ ବାବାଙ୍କ କୋଳରେ ଦିଏ । ବାବାଙ୍କ ରକ୍ତରେ ପ୍ରାଚୀନ ରାଜାନୁଗତ୍ୟ ଚେଇଁ ଉଠିଲା । ସେ ଝିଅଟିକୁ ଧରି ତନ୍ମୟ ହୋଇ କହି ଚାଲିଲେ- ମା ! ମଣିମାଙ୍କୁ ଧରି ମୁଁ ଧନ୍ୟ ହୋଇଗଲି, ମୁଁ ଧନ୍ୟ ହୋଇଗଲି, ଆଜି ମୋର ମହାଭାଗ୍ୟ ! ଝିଅଟି ବଲବଲ କରି ଚାହିଁଥାଏ । ତା'ପରେ ବାବା ଚପରାସୀ କୋଳରେ ଝିଅଟିକୁ ଦେଇ ଫେରିଲେ । ସେଦିନ ନାନା ଉପଦେଶ ଓ ପରାମର୍ଶ ଦେଇ ସେ ଗାଁକୁ ବାହୁଡ଼ିଲେ ।

## ମୋର ମ୍ୟାଟ୍ରିକ୍ ପଢ଼ା :

୧୯୪୨ ମସିହା ଜାନୁୟାରୀରେ ମୋର ମ୍ୟାଟ୍ରିକ୍ ପଢ଼ା ଆରମ୍ଭ ହୁଏ ଗିବ୍‌ସନ ହାଇସ୍କୁଲ୍‌ରେ । ବର୍ତ୍ତମାନ ରାଜା ଧନୁର୍ଜୟ ନାରାୟଣ ଭଞ୍ଜଙ୍କ ନାମାନୁସାରେ ସ୍କୁଲ୍‌ଟିର ନାମକରଣ କରାଯାଇଛି, ଯାହାଙ୍କ ସମୟରେ କେନ୍ଦୁଝରର ବିଖ୍ୟାତ ଭୂୟାଁ ବିଦ୍ରୋହ ହୋଇଥିଲା ଏବଂ ବ୍ୟାସକବି ଫକୀରମୋହନ ଥିଲେ ସେତେବେଳେ କେନ୍ଦୁଝରର ଆସିଷ୍ଟାଣ୍ଟ ମ୍ୟାନେଜର୍ ।

ହାଇସ୍କୁଲଟି ସାନ୍ତରାପୁର ଶାସନର ଦକ୍ଷିଣକୁ ବଡ଼ଦାଣ୍ଡ ଆଡ଼କୁ ଯାଇଥିବା ପ୍ରଧାନ ରାସ୍ତା ପାର୍ଶ୍ୱରେ ଅବସ୍ଥିତ । ସ୍କୁଲ୍‌ର ପଶ୍ଚିମକୁ କେନ୍ଦୁଝର ଗଡ଼ ଡାକ୍ତରଖାନାର ଡାକ୍ତରମାନଙ୍କର କ୍ୱାର୍ଟରସ ଓ ଡାକ୍ତରଖାନା । ପ୍ରଶସ୍ତ ସ୍ଥାନରେ ସ୍କୁଲ୍‌ଟି ନିର୍ମିତ ହୋଇଥିଲା । ତା'ର ପୂର୍ବକୁ ପୁରୁଣା ହଷ୍ଟେଲ୍‌ଟି ଉତ୍ତର ଦକ୍ଷିଣ ହୋଇ ତିଆରି ଏବଂ ତା'ର ପୂର୍ବପାଖରେ ଓ ସ୍କୁଲ୍ ପଡ଼ିଆର ଦକ୍ଷିଣ ପାଖକୁ ନୂଆ ହଷ୍ଟେଲ ଓ ରୋଷେଇ ଘର ତିଆରି ହୋଇଥାଏ । ହଷ୍ଟେଲ୍‌ର ଦକ୍ଷିଣକୁ ପର୍ବତ ପର୍ଯ୍ୟନ୍ତ ବିସ୍ତୃତ ଧାନଜମି । ପର୍ବତ ପାଖ ଗାଁ ମଣ୍ଡୁଆ, କାଶୀପୁର ପ୍ରଭୃତି । ସ୍କୁଲ୍‌ର ଦକ୍ଷିଣ-ପଶ୍ଚିମ କୋଣରେ ତାରିଣୀଶାଳ । ଖେଳପଡ଼ିଆର ପୂର୍ବକୁ ହେଡ଼ମାଷ୍ଟରଙ୍କ କ୍ୱାର୍ଟରସ୍ ଓ ପ୍ରକାଣ୍ଡ ବଗିଚା । ପୋଷ୍ଟ ଅଫିସ୍ ଅନ୍ୟ ଶିକ୍ଷକ ଓ ଅଫିସ୍‌ରମାନଙ୍କର କ୍ୱାର୍ଟରସ ସିଧାସିଧା ପୂର୍ବକୁ ଲମ୍ବିଯାଇଥିବା ପ୍ରଧାନ ରାସ୍ତାର ଦକ୍ଷିଣ ପଟେ ।

ସେତେବେଳେ ରାଜା ଥାଆନ୍ତି ବଳଭଦ୍ର ନାରାୟଣ ଭଞ୍ଜଦେଓ ଏବଂ ଡ଼େଭେଲପ୍‌ମେଣ୍ଟ କମିଶନର ଥାଆନ୍ତି ତାଙ୍କର ସାନଭାଇ ଛୋଟରାୟ ଲକ୍ଷ୍ମୀନାରାୟଣ

ଭଞ୍ଜ । କେନ୍ଦୁଝରରେ ଥାଆନ୍ତି ଜଣେ ଦେଓ୍ୱାନ । ମୟୂରଭଞ୍ଜ ଆଦର୍ଶରେ ରାଜା ଶାସନର ସଂସ୍କାର ସାଧନ କରି ତିନିଜଣ ମନ୍ତ୍ରୀ ନିଯୁକ୍ତ କରିଥିଲେ । ଜଣେ ଜଜ୍ ନିଯୁକ୍ତ ହୋଇଥିଲେ, ତାଙ୍କର ନାମ ସୂର୍ଯ୍ୟମଣି ଦାସ । ହାତଟଣା ରିକ୍ସାରେ ଜଣେ ଲୋକ ତାଙ୍କୁ କଚେରୀକୁ ନେବା ଆଣିବା କରୁଥିବାର ଦେଖିଛି । ଜଙ୍ଗଲ ବିଭାଗ ପରିଚାଳନା ପାଇଁ ଜଣେ ଡ଼ି.ଏଫ୍. ଓ ନିଯୁକ୍ତ ହୋଇଥିଲେ ।

ଆଜି ଗଡ଼ରେ ଯେଉଁ ବିରାଟ କଚେରୀ ଘର ଦେଖାଯାଏ, ତାହା ବଳଭଦ୍ର ନାରାୟଣଙ୍କ ସମୟରୁ ନିର୍ମିତ ହୋଇଥିଲା । ଏ ବିରାଟ କଚେରୀ ଘର ଛାତରେ ସୂର୍ଯ୍ୟାଲୋକ ପାଇଁ ସ୍ଥାନେ ସ୍ଥାନେ ମୋଟା କାଚମାନ ଖଞ୍ଜା ଯାଇଥିଲା । କଚେରୀ ଘରେ ଥିଲା ପ୍ରଶସ୍ତ ଦରବାର କକ୍ଷ । ଏ ଦରବାର କକ୍ଷରେ ମୁଁ ଏକାଧିକବାର ଦରବାର ହେବାର ଲକ୍ଷ୍ୟ କରିଛି, ଏବଂ ଦରବାର ଦିନ କେନ୍ଦୁଝରର ଗଡ଼ନାୟକ ଓ ସର୍ଦ୍ଦାରମାନେ ଭେଟି ସହ ଉପସ୍ଥିତ ହେବାର ଦେଖିଛି । କଚେରୀର ପଶ୍ଚିମକୁ ରାଜକାର୍ଯ୍ୟ ପରିଚାଳନା ନିମିତ୍ତ ରାଜାଙ୍କର ଅଫିସ୍ (Office of the ruling chief) । ସେତେବେଳେ ଯେଉଁ ସର୍କିଟ୍ ହାଉସ୍ ତିଆରି ହୋଇଥିଲା, ସେଥିରେ ଛୋଟରାୟ ସାହେବ ରହୁଥିଲେ ।

ଗଡ଼ର ପଶ୍ଚିମରେ ଇନ୍ଦ୍ରଛତ୍ର ପର୍ବତ ଏବଂ ପର୍ବତର ପାଦଦେଶରେ ପୁରୁଣା ଉଆସ । ଉଆସ ତିନି ପାଖରେ ପ୍ରକାଣ୍ଡ ପାଚେରୀ ଏବଂ ଗଡ଼ଖାଇ । ଦକ୍ଷିଣକୁ ବିରାଟ ଚନ୍ଦନ-ପୋଖରୀ । ଦକ୍ଷିଣ-ପଶ୍ଚିମ ଭାଗରେ ବହୁପୂର୍ବରୁ ପ୍ରତିଷ୍ଠିତା ଦଣ୍ଡଦେବୀଙ୍କ ମନ୍ଦିର (୧), ଦଶହରା ସମୟରେ ଯାହାଙ୍କ ନିକଟରେ ବଳି ପଡ଼େ । ଏଇ ପୁରୁଣା ଉଆସରେ ସେତେବେଳେ କେତେକ ଆନୁଷ୍ଠାନିକ ଉତ୍ସବ ଓ ପର୍ବ ଅନୁଷ୍ଠିତ ହେଉଥାଏ ।

କେନ୍ଦୁଝର ଗଡ଼ର ଅଧିଷ୍ଠାତ୍ରୀ ଦେବତା ହେଉଛନ୍ତି ବଳଦେବ ଜୀଉ । ମନ୍ଦିର ଉଚ୍ଚତା ଓ କାରୁକାର୍ଯ୍ୟରେ ଆକର୍ଷଣୀୟ । ପୁରୀ ଜଗନ୍ନାଥ ମନ୍ଦିର ଆଦର୍ଶରେ ଭୋଗ ଓ ସେବାରେ ନାନା ବିଧି ଏଠାରେ ପ୍ରଚଳିତ । ମନ୍ଦିରଠାରୁ ବଡ଼ଦାଣ୍ଡ ପଶ୍ଚିମକୁ ପ୍ରାୟ ଅଧ ମାଇଲ୍ ଲମ୍ବ; ଦାଣ୍ଡ ମଧ ଓସାରିଆ । ମନ୍ଦିର ପାଖରେ ପୁରୀ ଆଦର୍ଶରେ ରଥ (ଚାରିଚକ ବିଶିଷ୍ଟ) ନିର୍ମିତ ହୁଏ ଏବଂ ଆଡ଼ମ୍ବରର ସହ ରଥଯାତ୍ରା ଅନୁଷ୍ଠିତ ହୁଏ ।

ବଡ଼ଦାଣ୍ଡର ଦକ୍ଷିଣକୁ ଏକ ବ୍ରାହ୍ମଣଶାସନ (ବଡ଼ଶାସନ) । ଉତ୍ତର ପାଖ ସାହାଲାରେ ସାଧାରଣ ଲୋକଙ୍କର ଘର ଏବଂ ମଝିରେ ରାଜାଙ୍କ ଅମଳରୁ ସଂସ୍କୃତ ଟୋଲ ଅବସ୍ଥିତ । ବଡ଼ଦାଣ୍ଡର ପଶ୍ଚିମ ପାଖ ମୁଣ୍ଡରେ ଗୁଣ୍ଡିଚାମନ୍ଦିର ଏବଂ ଦକ୍ଷିଣକୁ ଏକ ତୋଟାରେ ବସେ ରବିବାର ହାଟ । ହାଟରେ କୋହ୍ଲ, କନ୍ଧ, ଭୂୟାଁ, ଜୁଆଙ୍ଗ, ସାନ୍ତାଳ ପ୍ରଭୃତି ଆଦିବାସୀ ସଂପ୍ରଦାୟର ବହୁଲୋକ ଏକତ୍ରିତ ହୁଅନ୍ତି । ଆଦିବାସୀଙ୍କର କୁକୁଡ଼ା ଲଢ଼େଇ ବେଶ ଏକ କୌତୁକପ୍ରଦ ଦୃଶ୍ୟ ।

ଇନ୍ଦ୍ରଛତ୍ର ପର୍ବତର ପାଦଦେଶରେ ବନଦୁର୍ଗା ମନ୍ଦିର ଓ ସିଦ୍ଧମଠ । ପୁରୁଣା ଉଆସ

ନିକଟବର୍ତ୍ତୀ ପର୍ବତର ପାଦଦେଶରେ 'ଲକ୍ଷ୍ମୀପାଦ' (ପଥରରେ ପାଦଚିହ୍ନ) ଏବେବି ଲୋକଙ୍କ ଦ୍ୱାରା ପୂଜିତ ।

ଗଡ଼ରେ ସେତେବେଳେ ପାୱାର୍ ହାଉସ୍ ପ୍ରତିଷ୍ଠିତ ହୋଇଥିଲା, ଯା'ଫଳରେ ରାଜାଙ୍କ ଉଆସ, କଚେରୀ, ରାସ୍ତା, କେତେକ ବଡ଼ ବଡ଼ ଅଫିସରଙ୍କ କ୍ୱାଟର୍‌ରେ ବିଜୁଳି ଆଲୁଅର ବ୍ୟବସ୍ଥା ହୋଇଥିଲା ।

ଗଡ଼ରେ ରାଜାଙ୍କ ଦ୍ୱାରା କେତୋଟି ବ୍ରାହ୍ମଣଶାସନ ପ୍ରତିଷ୍ଠିତ ହୋଇଥିଲା, ସେଗୁଡ଼ିକ ମଧ୍ୟରେ ଢେଙ୍କାପୁର ଶାସନ, ବଡ଼ଶାସନ (ଲକ୍ଷ୍ମୀନାରାୟଣପୁର ଶାସନ), ସାନ୍ତରାପୁର ଶାସନ ଉଲ୍ଲେଖ ଯୋଗ୍ୟ । ଗଡ଼ର ପଶ୍ଚିମକୁ ପର୍ବତ ଉପରେ ବଣେଇ ପର୍ଯ୍ୟନ୍ତ ରାସ୍ତା ଯାଇଛି; ପର୍ବତର ପାଦଦେଶରେ China clay factory ଏବେ ପ୍ରସିଦ୍ଧି ଲାଭ କରିଛି । ସେଠାରୁ କିଛିବାଟ ପର୍ବତ ଉପରେ ଗଲେ ଡାହାଣପାଖକୁ ମାଛକାନ୍ଦଣା ନଦୀରେ ପଡ଼େ ସାନଘାଗରା ଜଳପ୍ରପାତ ସମ୍ଭବତଃ ଘର୍ଘର ଶବ୍ଦରୁ ଘାଗରା ଶବ୍ଦ ହୋଇଛି, କିଛି ଉପରକୁ ପଡ଼େ ବଡ଼ ଘାଗରା ଜଳପ୍ରପାତ । ଆମ ଛାତ୍ରାବସ୍ଥାରେ ଏଗୁଡ଼ିକ ଘନଜଂଗଲ ପୂର୍ଣ୍ଣ ଥିଲା, ଫଳରେ ସାନ ଘାଗରା ଯିବା ଥିଲା କଷ୍ଟକର । କିନ୍ତୁ ଆମେ ସେତେବେଳେ ବଡ଼ଘାଗରା ବୁଲି ଦେଖିଥିଲୁ ଏବଂ ନଈ ସ୍ରୋତର ଧାରେ ଧାରେ ସାନ ଘାଗରା ଆଡ଼କୁ ଅଗ୍ରସର ହୋଇ ତାର ରୁଦ୍ରକାନ୍ତ ଦୃଶ୍ୟ ଉପଭୋଗ କରିଥିଲୁଁ ।

କଚେରୀର ପୂର୍ବକୁ ମୋଚିବନ୍ଧା ନାମକ ସ୍ଥାନରେ ରାଜାଙ୍କର ନୂଆ ଉଆସ କିଛି ବର୍ଷ ପୂର୍ବରୁ ନିର୍ମିତ ହୋଇଥିଲା । ଏବେ ନୂଆ ଉଆସ ସରକାରଙ୍କ ଦ୍ୱାରା କ୍ରୀତ ହୋଇ ସେଠି ମାଇନିଂ ସ୍କୁଲ୍ ପ୍ରତିଷ୍ଠିତ । ରାଜା ବଳଭଦ୍ର ନାରାୟଣ ବଡ଼ ଉଦାର ଓ ଧର୍ମପରାୟଣ ରାଜା ଥିଲେ । ସେ ପ୍ରତ୍ୟହ ସ୍ନାନ ସାରି ବଳଦେବ ଜୀଉଙ୍କ ଦର୍ଶନ କରୁଥିଲେ; ତା'ପରେ ପ୍ରାତଃ ରାଶ ଓ ଅନ୍ୟାନ୍ୟ କାର୍ଯ୍ୟ ସଂପାଦନ କରୁଥିଲେ । ଥରେ ରାଜା ପୁରୁଣା ଉଆସରୁ ନୂଆ ଉଆସ ଆଡ଼କୁ ଆସୁଥିବା ସମୟରେ ଆଟୋପର ନିକଟବର୍ତ୍ତୀ କଂସାରୀ ସାଇରେ ନିଆଁ ଲାଗିଯାଇଥିଲା । ରାଜା ଗାଡ଼ିରୁ ଓହ୍ଲାଇ ନିଆଁ ଲାଗିଥିବା ସ୍ଥାନକୁ ଯାଇ ଅଗ୍ନିନିର୍ବାପନର ତତ୍ତ୍ୱ ବୁଝାବୁଝି କରି କ୍ଷତିଗ୍ରସ୍ତ ପରିବାରଗୁଡ଼ିକ ପ୍ରତି ସହାନୁଭୂତି ଓ ସମବେଦନା ଜଣାଇଥିଲେ ଏବଂ ଲୋକମାନଙ୍କୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ ।

ଆଜି ଯେପରି କେନ୍ଦୁଝର ଗଡ଼ର ବିକାଶ ଘଟିଛି, ସେତେବେଳେ ତାହା ସ୍ୱପ୍ନର ବିଷୟ ଥିଲା, ଏପରିକି ମୋ ପଢ଼ିବା ସମୟରେ କେନ୍ଦୁଝର ଗଡ଼ରେ ହୋଟେଲ୍ ଗୋଟିଏ ନଥିଲା । କିନ୍ତୁ ଗଡ଼ରେ ଅନେକ ପୁଷ୍କରିଣୀ ଥିଲା (ପ୍ରାୟ ୨୦ଟି) । ବଡ଼ଶାସନ ପୋଖରୀ, ମୋଚିବନ୍ଧା ପାଖ ପୋଖରୀ ଏବଂ ପୁରୁଣା ଉଆସ ପାଖ ପୋଖରୀଗୁଡ଼ିକ ବଡ଼ । ଆମେ ସେତେବେଳେ ସ୍କୁଲ୍‌ର ଉତ୍ତରକୁ ଥିବା ସାନ୍ତରାପୁର ଶାସନ ପୋଖରୀ ଏବଂ ବଡ଼ଶାସନ ପୋଖରୀରେ ଗାଧୋଉ ଥିଲୁଁ ।

କଥିତ ଅଛି : ରାଜା ଲକ୍ଷ୍ମୀନାରାୟଣ ଭଞ୍ଜଙ୍କ ଆନୁକୂଲ୍ୟରେ ସିଦ୍ଧମଠର ଦକ୍ଷିଣ-ପୂର୍ବ ଭାଗସ୍ଥ ବଡ଼ଗୋବରା ପାହାଡ଼ର ନିମ୍ନ ଭାଗରେ ଅବସ୍ଥିତ ମଧୁବନ ତୋଟା ଆଦର୍ଶରେ କେନ୍ଦୁଝର ରାଜ୍ୟସାରା ବିଶେଷତଃ ଆନନ୍ଦପୁର ଅଞ୍ଚଳରେ ବହୁ ଆମ୍ବତୋଟା ଦେଖାଯାଉଥିଲା । ଦେବତାଙ୍କ ବିଜେସ୍ଥଳୀ, ମଠ ଓ ମନ୍ଦିର ନିକଟରେ ରାଜା, ପ୍ରଜା ଓ ଧନିକ ଶ୍ରେଣୀର ଲୋକଙ୍କ ଦ୍ୱାରା ଆମ୍ବତୋଟା ପ୍ରସ୍ତୁତ ହେଉଥିଲା । ଏବେ ମଧ୍ୟ ମଧୁବନ ଆମ୍ବତୋଟା, ତାର ନିକଟବର୍ତ୍ତୀ କୁଞ୍ଜବନ ଓ ବାଙ୍କବନ ଆମ୍ବତୋଟାରୁ ପ୍ରତିବର୍ଷ ବଳଦେବ ଜୀଉଙ୍କର ମଧୁର ରସାଳ ଆମ୍ବ ଯାଏ ।

ଆଜି କେନ୍ଦୁଝର ଜିଲାରେ ହାଇସ୍କୁଲ୍ ସଂଖ୍ୟା ଗଣି ହେବନି । ଜିଲାରେ ଦୁଇଟି ସରକାରୀ କଲେଜ୍ ସହିତ ଆଉ ଆଠଟି ଘରୋଇ କଲେଜ୍, ଗୋଟିଏ ପ୍ରଶିକ୍ଷଣ (ବି.ଇ.ଡ଼ି) କଲେଜ୍, ଏବଂ ଗୋଟିଏ ଆଇନ୍ କଲେଜ୍ ଗଢ଼ି ଉଠିଛି; କିନ୍ତୁ ସେତେବେଳେ ସମଗ୍ର ଜିଲାରେ କେବଳ ଗଡ଼ରେ ଗୋଟିଏ ହାଇସ୍କୁଲ୍ ସ୍ଥାପିତ ହୋଇଥିଲା । ଆନନ୍ଦପୁରରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ଏବଂ ଦେଓଗାଁ ଓ ଚମ୍ପୁଆରେ ଗୋଟିଏ ଗୋଟିଏ ମଧ୍ୟ-ଭର୍ଣ୍ଣାକ୍ୟୁଲର ସ୍କୁଲ୍ ଏହାଛଡ଼ା ଗୁଡ଼ିଏ ନିମ୍ନ ପ୍ରାଥମିକ ବିଦ୍ୟାଳୟ ଓ କେତୋଟି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଯେଉଁମାନେ ଭର୍ଣ୍ଣାକୁଲାର୍ ପାଶ୍ କରି ଆସୁଥିଲେ, ସେମାନେ ସିଧା ଅଷ୍ଟମ ଶ୍ରେଣୀରେ ନାମ ଲେଖାଇ ପାରୁନଥିଲେ । ସପ୍ତମ ଶ୍ରେଣୀରେ ସେମାନଙ୍କୁ ବର୍ଷେ ପଢ଼ିବାକୁ ହେଉଥିଲା । ଇଂରାଜୀରେ କୃତିତ୍ୱ ପ୍ରଦର୍ଶନ କରୁଥିଲେ ଅଷ୍ଟମ ଶ୍ରେଣୀକୁ ଉଠାଇ ଦିଆଯାଉଥିଲା । ଆଜି ଇଂରାଜୀ ମାଧ୍ୟମ ସ୍କୁଲ୍ ସଂଖ୍ୟା ବଢ଼ି ଚାଲିଛି କିନ୍ତୁ ଆମ ପୂର୍ବରୁ ହାଇସ୍କୁଲ୍‌ରେ (ମାଇନର କ୍ଲାସକୁ ଛାଡ଼ି) ବିଭିନ୍ନ ବିଷୟ (ସଂସ୍କୃତ ବ୍ୟତୀତ) ଇଂରାଜୀ ମାଧ୍ୟମରେ ଶିକ୍ଷା ଦିଆଯାଉଥିଲା ।

ଆମେ ହାଇସ୍କୁଲ୍‌ରେ ନାମ ଲେଖାଇଲା ବେଳକୁ ସହକାରୀ ପ୍ରଧାନ ଶିକ୍ଷକ ଥିଲେ ଜଗବନ୍ଧୁ ତ୍ରିପାଠୀ । କାମପାଳ ପରିଡ଼ା, ରମେଶ ଚନ୍ଦ୍ର ପଟ୍ଟନାୟକ ଥିଲେ ଜଣାଶୁଣା ଗଣିତ ଶିକ୍ଷକ । ସଂସ୍କୃତ ଶିକ୍ଷକ ଥିଲେ ପଣ୍ଡିତ ଗଙ୍ଗାଧର ମିଶ୍ର, ଯାହାଙ୍କର ଘର ଆନନ୍ଦପୁରରେ । ଏମାନଙ୍କ ବ୍ୟତୀତ ଲୋକନାଥ ମିଶ୍ର, ନାରାୟଣ ଚନ୍ଦ୍ର ଷଡ଼ଙ୍ଗୀ, ଅନନ୍ତ ଚରଣ ମହାନ୍ତି, ବୃନ୍ଦାବନ ମିଶ୍ର, କରୁଣାକର ଦୀକ୍ଷିତ, ନଟବର ନାୟକ ଓ ପଦ୍ମନାଭ ଶତପଥୀ ପ୍ରଭୃତି ବହୁ ଶିକ୍ଷକ ଥିଲେ ଯେଉଁମାନେ ସେମାନଙ୍କର ବ୍ୟବହାର ଓ ବ୍ୟକ୍ତିତ୍ୱ ବଳରେ ଆମ୍ଭମାନଙ୍କ ହୃଦୟରେ ସ୍ଥାୟୀ ଆସନ ଅଧିକାର କରିଥିଲେ । ଆର୍ଟିଷ୍ଟ ଭଗବାନ ଦାସ ଥିଲେ ଡ୍ରଇଂ ଶିକ୍ଷକ, ବୃନ୍ଦାବନ ମିଶ୍ର ଥିଲେ ଡ୍ରିଲ୍ ଶିକ୍ଷକ ଏବଂ ଟକ୍କର କରୁଣାକର ବେହେରା ଥିଲେ ଟକ୍କର ଟିଚର୍, ଯେ ପରବର୍ତ୍ତୀ ସମୟରେ ସି.ଡ଼ି.ଏମ୍.ଓ ପଦରୁ ଅବସର ଗ୍ରହଣ କଲେ । ଜଣେ ସିଲେଇ ଶିକ୍ଷକ ଥିବାର ମଧ୍ୟ ଲକ୍ଷ୍ୟ କରିଛି ।

ନାମ ଲେଖା ପରେ ମୁଁ ନୂଆ ହଷ୍ଟେଲର ଅନ୍ତେବାସୀ ହୋଇ ରହିଲି । ହଷ୍ଟେଲରେ ଆନନ୍ଦପୁର, କେନ୍ଦୁଝର ସଦର ଓ ଚମ୍ପୁଆ ପ୍ରଭୃତି ବିଭିନ୍ନ ଅଞ୍ଚଳର ଛାତ୍ରମାନେ ରହୁଥାନ୍ତି ।

ମୋର ସହପାଠୀମାନଙ୍କ ମଧ୍ୟରେ ଗଙ୍ଗାଧର ଖଟୁଆ, ରବୀନ୍ଦ୍ର କୁମାର ପଟ୍ଟନାୟକ (ବର୍ତ୍ତମାନ ବଡ଼ବିଲ୍‌ର ଖଣିମାଲିକ), ମଦନ ମୋହନ ମିଶ୍ର (ବର୍ତ୍ତମାନ ମିଳନୀ ସାହିତ୍ୟ ସଂସଦର ସଭାପତି), ଦୋଳ ଗୋବିନ୍ଦ ମିଶ୍ର, ଗଙ୍ଗାଧର କରଶର୍ମା, ଚକ୍ରଧର ମହାନ୍ତ (ପରେ ଆଡ଼ଭୋକେଟ, ବର୍ତ୍ତମାନ ସ୍ୱର୍ଗୀୟ), ନରୋତ୍ତମ ପ୍ରଧାନ, ଭୂପତି ଭୂଷଣ ଓ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକଙ୍କ ନାମ ଉଲ୍ଲେଖଯୋଗ୍ୟ । ପୂର୍ବରୁ ଯେଉଁ ଛାତ୍ରମାନେ ଗିବ୍‌ସନ ହାଇସ୍କୁଲ୍‌ରୁ ଜିଲାରେ ପ୍ରଥମ ହୋଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ ସେମାନେ ଥିଲେ ଆମ୍ଭମାନଙ୍କର ଆଦର୍ଶ; ସେମାନେ ହେଲେ ଦୁର୍ଯ୍ୟୋଧନ ରାଉତ (ପରେ ଅ.ପ୍ରା. ଡ଼ି.ଡ଼ି.ପି.ଆଇ.), ଶିବଚରଣ ପାଣିଗ୍ରାହୀ (ଅ.ପ୍ରା. ପ୍ରଶାସନିକ ଅଧିକାରୀ), ବିପିନ ବିହାରୀ ନାଥ (ପରେ ରାଜ୍ୟ ସଂଗ୍ରହାଳୟରେ କ୍ୟୁରେଟର), ବିଦ୍ୟାଧର ପାଢ଼ୀ (ପରେ ଉତ୍କଳ ବି.ବି.ର ଉଦ୍ଭିଦ ବିଜ୍ଞାନ ବିଭାଗର ପ୍ରଫେସର), ବଂଶୀଧର ପୃଷ୍ଟି (ପରେ ରାଜ୍ୟ ଖଣିବିଭାଗର ନିର୍ଦ୍ଦେଶକ) । ଆର୍ତ୍ତିଷ୍ଟ ନାରାୟଣ ପାଢ଼ୀ, କବି ବେଣୁଧର ରାଉତ, ଦୁର୍ଲଭ ଚରଣ ମହାନ୍ତ, ଭାଗିରଥୀ ମହାନ୍ତ ପ୍ରଭୃତି ଆଦର୍ଶ ଛାତ୍ର ଭାବରେ ଶିକ୍ଷକ ଓ ସହପାଠୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ମୋର ପରବର୍ତ୍ତୀ ଶ୍ରେଣୀର ଆଦର୍ଶ ଛାତ୍ର ହେଉଛି ବିଭୂତିଭୂଷଣ ଦେଓ (ପରେ ଉତ୍କଳ ବି.ବି.ର ପଦାର୍ଥ ବିଜ୍ଞାନ ବିଭାଗର ପ୍ରଫେସର ଓ ବ୍ରହ୍ମପୁର ବି.ବି.ର କୁଳପତି) ।

ଅଷ୍ଟମ ଶ୍ରେଣୀରେ ପଢ଼ା ଆରମ୍ଭରୁ ମୁଁ ଶ୍ରେଣୀ ଶିକ୍ଷକ ରମେଶ ଚନ୍ଦ୍ର ପଟ୍ଟନାୟକଙ୍କର ଦୃଷ୍ଟି ଆକର୍ଷଣ କରିଥିଲି । ରମେଶ ବାବୁ ଗଣିତ ଓ ଇଂରାଜୀରେ ଥିଲେ ପ୍ରବୀଣ । ଯେଉଁ ଛାତ୍ର ଭଲ ଇଂରାଜୀ କହିପାରୁଥିଲା, ଭଲ phrase ଲଗାଇ ବାକ୍ୟଗଠନ କରିପାରୁଥିଲା ରମେଶ ବାବୁ ତା'ର ପ୍ରଶଂସା କରୁଥିଲେ । ଇଂରାଜୀ phrase ସଂପର୍କରେ ଆମ ଜ୍ଞାନ ପରୀକ୍ଷା କରିବା ପାଇଁ ରମେଶ ବାବୁ ପ୍ରତ୍ୟେକ ପିଲାକୁ ପ୍ରଶ୍ନ କଲେ; ଅଧିକାଂଶ କହିପାରିଲେ ନାହିଁ । ମୁଁ 'consists of' ଏହି phrase ଲଗାଇ ଗୋଟିଏ ବାକ୍ୟଗଠନ କରିବା ପାଇଁ ପଚାରିବା ମାତ୍ରେ କହିଦେବାରୁ ରମେଶ ବାବୁଙ୍କ ପାଟିରୁ ହଠାତ୍ ପ୍ରଶଂସା ସୂଚକ ବାକ୍ୟ ବାହାରି ପଡ଼ିଲା-

That's like a good boy
That's like a good boy

ମୁଣ୍ଡ ହଲାଇ ପ୍ରସନ୍ନ ଦୃଷ୍ଟିରେ ଦୁଇବାର ଏ ପ୍ରଶଂସାସୂଚକ ବାକ୍ୟ କହିବାରୁ ମୁଁ ମନେମନେ ଆତ୍ମସନ୍ତୋଷ ଲାଭ କଲି ଏବଂ ସହପାଠୀଙ୍କର ଦୃଷ୍ଟି ଆକର୍ଷଣ କଲି । ସେତେବେଳେ ସ୍କୁଲ୍‌ରେ ବାଳିକା ଖୁବ୍ କମ ପଢୁଥିଲେ । ଆମ ଶ୍ରେଣୀରେ ସୁହାସିନୀ ଦାସ ବୋଲି ଗୋଟିଏ ଖ୍ରୀଷ୍ଟିୟାନ ବାଳିକା ପଢୁଥିଲା ।

ଅଳ୍ପଦିନ ମଧ୍ୟରେ ମୋର ଅଧ୍ୟୟନ ଓ ବ୍ୟବହାରରେ ମୁଁ ଅନ୍ୟ ଶିକ୍ଷକ ଏବଂ ସର୍ବୋପରି ହେଡ଼ମାଷ୍ଟରଙ୍କ ଦୃଷ୍ଟି ଆକର୍ଷଣ କଲି । ପଣ୍ଡିତ ଗଙ୍ଗାଧର ମିଶ୍ର ସାହିତ୍ୟରେ ମୋର ଆଗ୍ରହ

ଲକ୍ଷ୍ୟ କରି ମୋତେ ଭାରୀ ଶ୍ରଦ୍ଧା କଲେ । ଭାଗବତ-ବୃତ୍ତରେ ପଦ୍ୟରଚନା କରି ପଣ୍ଡିତଙ୍କୁ ଦେଖାଏଁ; ପଣ୍ଡିତେ ମୋ ରଚନାର ପ୍ରଶଂସା କରନ୍ତି । ତ୍ରୈମାସିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିବାରୁ ମୁଁ ସହପାଠୀ ଅନ୍ୟ ଛାତ୍ର ଓ ଶିକ୍ଷକମାନଙ୍କର ଦୃଷ୍ଟି ଆକର୍ଷଣ କରେ । ହେଡ୍‌ମାଷ୍ଟେ ମୋ ଉପରେ ସନ୍ତୁଷ୍ଟ ହୋଇ ରାଜସରକାରଙ୍କୁ ମାସିକ ସାହାଯ୍ୟ ପାଇଁ ମୋ ବିଷୟ ସୁପାରିଶ କରନ୍ତି, ଫଳରେ ମୁଁ ମାସକୁ ତିନିଟଙ୍କା ଲେଖାଏଁ ବୃତ୍ତିପାଏ ଏବଂ ମୋର ସ୍କୁଲ୍ ଦରମା ଛାଡ଼ କରାଯାଏ ।

ସ୍କୁଲ୍ ପରିସରଟିକୁ ପରିଷ୍କାର ପରିଚ୍ଛନ୍ନ ରଖାଯାଉଥିଲା । ସ୍କୁଲ୍‌ର ଗୁଣାତ୍ମକ ସମୃଦ୍ଧି ସହ ଶ୍ରେଣୀ, ଶ୍ରେଣୀ ବାହାରେ ଓ ଛାତ୍ରାବାସ ଦୁଇଟିରେ ଶୃଙ୍ଖଳା ରକ୍ଷାପ୍ରତି ବିଶେଷ ଦୃଷ୍ଟି ଦିଆଯାଉଥିଲା । ହେଡ୍‌ମାଷ୍ଟରଙ୍କ ବ୍ୟକ୍ତିତ୍ୱ ପ୍ରତି କି ଶିକ୍ଷକ, କି ଛାତ୍ର ସମସ୍ତଙ୍କର ଥିଲା ସମ୍ଭ୍ରମ ଓ ଭକ୍ତି । ସେ ଏତେ ଶୃଙ୍ଖଳା ପ୍ରିୟ ଥିଲେ ଯେ ସାମାନ୍ୟ ବ୍ୟତିକ୍ରମ ଘଟୁଥିଲେ ନିଜର ପ୍ରତିକ୍ରିୟା ପ୍ରକାଶ କରୁଥିଲେ । ଥରେ ସରସ୍ୱତୀ ପୂଜାରେ ଖଣ୍ଡିଏ ସାଦାପାନ ଚୋବାଉଥାଏଁ, ହଠାତ୍ ହେଡ୍‌ମାଷ୍ଟରଙ୍କ ଦୃଷ୍ଟିରେ ପଡ଼ିଗଲା । ସେ ମୋର ଏ ବ୍ୟତିକ୍ରମ ଲକ୍ଷ୍ୟ କରି ଇଂରାଜୀରେ କହି ଉଠିଲେ-

'You are chewing betel !'

ବାସ୍ ସେତିକି । ସେଇଦିନଠାରୁ ପୂଜାପାର୍ବଣରେ ଖୁସିରେ ପାନ ଚୋବାଇବା ଆଉ ହୋଇନାହିଁ (ଅବଶ୍ୟ କଲେଜ ଜୀବନରେ ତା'ର ବ୍ୟତିକ୍ରମ ହୋଇଯାଇଛି) । ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ନବମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୁଏ । ନବମ ଶ୍ରେଣୀରେ ଅଧ୍ୟୟନ କାଳରେ ମାମା (ଆଈ) ପରଲୋକ ଗମନ କରେ । ସ୍ନେହ ଓ ସେବା ଦେଇ ମୋତେ ଯେ ବଢ଼ାଇଥିଲା ଶେଷ ବେଳକୁ ତାକୁ ଦେଖିପାରିଲି ନାହିଁ- ନୀରବରେ ଅଶ୍ରୁମୋଚନ କରେ ।

ସେତେବେଳେ ଅଷ୍ଟମ ଓ ନବମ ଶ୍ରେଣୀରେ ସଂସ୍କୃତ ପଢ଼ାଯାଉଥାଏ । ସଂସ୍କୃତ ପ୍ରତି ମୋର ସହଜାତ ଶ୍ରଦ୍ଧା ହେତୁ ମୁଁ ନବମ ଶ୍ରେଣୀବେଳକୁ ଶବ୍ଦରୂପ ଓ ଧାତୁରୂପ ସହିତ ସମଗ୍ର ବ୍ୟାକରଣ ସଂଗ୍ରହ ଆୟତ୍ତ କରିପାରିଥିଲି । ପଣ୍ଡିତ ମହାଶୟ କେବଳ ଯେ ପାଠ୍ୟର ସୀମା ଭିତରେ ଆବଦ୍ଧ ରହୁଥିଲେ, ତା' ନୁହେଁ, ଦିନେ ଦିନେ ସଂସ୍କୃତ ସାହିତ୍ୟରୁ ଗୋଟିଏ ଗୋଟିଏ ବଛାବଛା ଶ୍ଳୋକ ବ୍ଲାକବୋର୍ଡ଼ରେ ଲେଖି ଦେଉଥିଲେ । ମୁଁ ଆଗ୍ରହର ସହ ଖାତାରେ ଟିପି ନେଉଥିଲି । ଚାରି-ପାଞ୍ଚଥର ଆବୃତ୍ତି କଲା ପରେ ତାହା ମୋର ମନେ ରହିଯାଉଥିଲା । ପଣ୍ଡିତ ମହାଶୟ ଶ୍ରୀହର୍ଷଙ୍କ ନୈଷଧଚରିତଂ ମହାକାବ୍ୟର ଭୂୟସୀ ପ୍ରଶଂସା କରୁଥିଲେ । ମନେ ଅଛି : ନୈଷଧରୁ ଗୋଟିଏ ଶ୍ଳୋକ ବ୍ଲାକ୍‌ବୋର୍ଡ଼ରେ ଲେଖିଥିଲେ-

ମଦେକ ପୁତ୍ରା ଜନନୀ ଜରାତୁରା,
ନବ ପ୍ରସୂତିର୍ବରଟା ତପସ୍ୱିନୀ ।

ଗତି ସ୍ତୟୋରେଷ ଜନସ୍ତମର୍ଦ୍ଧୟନ୍
ଅହୋ ବିଧେ ! ତ୍ୱାଂ କରୁଣାରଣଦ୍ଧିନ । (ନୈଷଧ, ୧/୩୫)

ମୋ ଜନନୀର ମୁଁ ଏକମାତ୍ର ପୁତ୍ର ଏବଂ ସେ ବାର୍ଦ୍ଧକ୍ୟ ପୀଡ଼ିତା, ତା ପରେ ମୋର ସ୍ତ୍ରୀ ନୂତନ ପ୍ରସବ କରିଛି, ବିଶେଷତଃ ସେ ପତିବ୍ରତା । ସୁତରାଂ ଏଇ ବ୍ୟକ୍ତି (ନିଜେ) ସେମାନଙ୍କର ଏକମାତ୍ର ଉପାୟ । ହା ବିଧାତା : ଆପଣ ସେଇ ମୋତେ ବିନାଶ କରୁଛନ୍ତି, ଆପଣଙ୍କର ଅନୁକଂପା ଆପଣଙ୍କୁ ବାଧା ଦେଉନାହିଁ ?

ଏହା ଥିଲା ନଳରାଜାଙ୍କ ଦ୍ୱାରା ଧୃତ ହଂସର ନଳଙ୍କ ପ୍ରତି ଉକ୍ତି । ନୈଷଧର ଏପରି ଉଚ୍ଛ୍ୱସିତ ପ୍ରଶଂସା କରୁଥିଲେ ଯେ ଥରେ ସେ କହିବାର ମୋର ମନେ ଅଛି : 'ମୋର ଶେଷ ନିଶ୍ୱାସ ବେଳକୁ ଏଇ ନୈଷଧ ମହାକାବ୍ୟ ଖଣ୍ଡିକ ମୋ ଛାତିରେ ରଖିଦେବ, ଏତିକି ମୁଁ ଚାହେଁ ।' ସଂସ୍କୃତ ପ୍ରତି ମୋର ସହଜାତ ଶ୍ରଦ୍ଧା ଓ କବିତା ରଚନା ହେତୁ ମୁଁ ପଣ୍ଡିତଙ୍କ ଶ୍ରଦ୍ଧାଭାଜନ ହୋଇପାରିଥିଲି । ମୁଁ ଦଶମ ଶ୍ରେଣୀ ବେଳକୁ ଇଚ୍ଛାଧୀନ ବିଷୟ ଗଣିତ ନେଇଥଲେ ମଧ ସଂସ୍କୃତ ପ୍ରତି ମୋର ଶ୍ରଦ୍ଧା ଆଜି ଅବଧି ଅତୁଟ । ଅଧିକନ୍ତୁ ପଣ୍ଡିତେ ଥିଲେ ନୂତନ ଛାତ୍ରାବାସର ତତ୍ତ୍ୱାବଧାରକ । ବଡ଼ି ଭୋରୁ ତାଙ୍କର ହଷ୍ଟେଲ ଆସିବା ଓ ପିଲାଙ୍କୁ ନିଦରୁ ଉଠାଇବା ଥିଲା ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟ । ତାଙ୍କର ଶ୍ଳେଷ ଓ ବ୍ୟଙ୍ଗପୂର୍ଣ୍ଣ ବାକ୍ୟ କାନରେ ବାଜିଲା ମାତ୍ରେ ଅଳସୁଆ ବା ଡ଼େରିରେ ଉଠୁଥିବା ପିଲାମାନେ ଧଡ଼ପଡ଼ ହୋଇ ବିଛଣାରୁ ଉଠୁଥିଲେ । ଦୁଇ ହଷ୍ଟେଲ ପାଇଁ ପାଇଖାନାର ବ୍ୟବସ୍ଥା ଥିଲେ ମଧ ଆମ୍ଭେମାନେ ବିଲଆଡ଼େ ବହିର୍ଦ୍ଦେଶ ଗମନରେ ବାହାରି ଯାଉଥିଲୁଁ । ସକାଳ ଓ ସଂଧ୍ୟାରେ ପ୍ରାର୍ଥନା, ନିୟମିତ ଅଧ୍ୟୟନ ଏବଂ ଚାରିଟାରେ ସ୍କୁଲ୍ ପଡ଼ିଆରେ ଖେଳ : ଏଇଥିଲା ଆମର ଦୈନନ୍ଦିନ ରୁଟିନ୍ ।

ମୋର ଅଧ୍ୟୟନ କାଳରେ ରେସିଡ଼େଣ୍ଟ, ପଲିଟିକାଲ୍ ଏଜେଣ୍ଟ ଓ ଡ଼ି.ପି.ଆଇ- ସ୍କୁଲ୍ ପରିଦର୍ଶନ କରିଥିଲେ । ସ୍କୁଲ୍‌ରେ ଗଣେଶ ପୂଜା ଓ ସରସ୍ୱତୀ ପୂଜା ବେଶ ଆଡ଼ମ୍ବରରେ ହେଉଥିଲା । ସେ ସମୟରେ ସ୍କୁଲ୍‌କୁ ଇଲେକ୍‌ଟ୍ରିକ୍ ଲାଇଟ୍ ଆଣିବା ପାଇଁ ରାଜା ସାହେବ ଅନୁମତି ଦେଉଥିଲେ ।

ବିଭିନ୍ନ ଶ୍ରେଣୀ ମଧରେ ନାନା ବିଷୟରେ ପ୍ରତିଯୋଗିତା କରାଇ ହେଡ଼ମାଷ୍ଟେ ଟ୍ରଫି ଦେବାର ବ୍ୟବସ୍ଥା କରାଇଥିଲେ । ଆମ ଶ୍ରେଣୀପିଲା ଥରେ ଗୋଟିଏ ପ୍ରହସନ ଅଭିନୟ କରି ସମସ୍ତଙ୍କୁ ଆମୋଦ ଦେବା ସହ ଟ୍ରଫି ହାସଲ କରିଥିଲୁଁ ।

ସ୍କୁଲ୍ ପରିସରରେ (Quadrangle) ଗୋଟିଏ ସୁନ୍ଦର ପୁଷ୍ପବାଟିକା ଥାଏ । ବିଭିନ୍ନ ସମୟରେ ନାନା ପ୍ରକାର ଫୁଲରେ ବଗିଚାଟି ସୁନ୍ଦର ଦେଖାଯାଏ । ବଗିଚା ମଧରେ ଏ ପାଖରୁ ସେ ପାଖକୁ ଯିବାପାଇଁ ସିମେଣ୍ଟ ରାସ୍ତା ତିଆରି ହୋଇଥାଏ । ଆମ ସମୟରେ ଯୁବରାଜ ନୃସିଂହ ନାରାୟଣ ଭଂଜ (ବର୍ତ୍ତମାନ ସ୍ୱର୍ଗତଃ) ସାଧାରଣ ପିଲାଙ୍କ ସହ ଷଷ୍ଠ ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ତାଙ୍କର ଗୃହଶିକ୍ଷକ ଥିଲେ ଗୋକୁଳଚନ୍ଦ୍ର ଶତପଥୀ ।

ସେତେବେଳେ ପ୍ରାୟ ପ୍ରତିବର୍ଷ ପୁରସ୍କାର ବିତରଣ ହେଉଥିଲା । ମୁଁ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିବାରୁ ଏବଂ ସ୍କୁଲ୍‌ରେ ଜଣେ ନିୟମିତ ଶୃଙ୍ଖଳାପ୍ରିୟ ଛାତ୍ର ଥିବାରୁ ବହୁ ପୁରସ୍କାର ପାଉଥିଲି । ଶିକ୍ଷକମାନେ ମୋର ଅଧ୍ୟୟନର ସୁବିଧା ଦୃଷ୍ଟିରୁ ଭଲଭଲ ବହି ପୁରସ୍କାର ରୂପେ ମୋ ପାଇଁ ନିର୍ବାଚନ କରୁଥିଲେ । ସେତେବେଳେ ଦ୍ୱିତୀୟ ପୃଥିବୀ ମହାସମର ଚାଲିଥିବାରୁ ଯୁଦ୍ଧ ସଂପର୍କରେ ନାନା ସମ୍ବାଦ ଆମକୁ ଜଣାଇ ଦିଆଯାଉଥାଏ ଏବଂ ନାନା ପୋଷ୍ଟର ଶ୍ରେଣୀ କାନ୍ଥରେ ମରାଯାଉଥାଏ । A.R.P. (Air Red Pre-caution) ସଂପର୍କରେ ଆମକୁ ବୁଝାଇବାକୁ ଯାଇ ଯୁଦ୍ଧ ସମୟରେ ବୋମା ପଡ଼ିଲେ ଟ୍ରେଞ୍ଚରେ କିପରି ଆତ୍ମରକ୍ଷା କରିବାକୁ ହେବ, ଆମର ଶିକ୍ଷକ ନାରାୟଣ ଚନ୍ଦ୍ର ଷଡ଼ଙ୍ଗୀ ଆମକୁ ଦେଖାଇ ଦେଉଥିଲେ ।

ସେତେବେଳେ ଗଡ଼ରେ ଏକ ପ୍ରକାଣ୍ଡ ଟାଉନହଲ୍ ନିର୍ମିତ ହୋଇଥିଲା । ସେଠାରେ ଏକ ସ୍ଥାୟୀ ପେଣ୍ଡାଲ୍ ଓ ନେପଥ୍ୟ ଗୃହ (Green room) ଥିଲା । ଏକ ପୁସ୍ତକାଗାର ଓ ବହୁ ବାଦ୍ୟଯନ୍ତ୍ର ଥିବାର ମୁଁ ଲକ୍ଷ୍ୟ କରିଛି । କେତେକ ସଭାସମିତି ଓ ନାଟକାଭିନୟ ମୁଁ ସେଠାରେ ଦେଖିଛି । ଆମେ ଛାତ୍ରମାନେ ସେଠାରେ ଥରେ ରାମଚନ୍ଦ୍ର ମହାପାତ୍ରଙ୍କ ଲିଖିତ ସୁଦାମା ନାଟକ ଅଭିନୟ କରିଥିଲୁଁ । ମୋତେ ସେଥିରେ ଏକ ଗୌଣ ଭୂମିକା ଦିଆଯାଉଥିଲା । ଆମ ତଳଶ୍ରେଣୀର ପିଲାମାନେ ବ୍ୟାସକବି ଫକୀର ମୋହନଙ୍କ 'ମାମୁଁ' ଉପନ୍ୟାସକୁ ନାଟ୍ୟରୂପ ଦେଇ ଚମତ୍କାର ଅଭିନୟ କରିଥିଲେ । ଅଭିନୟର ପ୍ରଚାର ପାଇଁ ଆମ ଆର୍ଟିଷ୍ଟ ଟିଚର ଭଗବାନ ଦାସ ବ୍ଲାକ୍‌ବୋର୍ଡ଼ରେ ନାଟକର ଏକ ଚରିତ୍ର ରାଘବ ମହାନ୍ତିର କଟକ ଆଗମନ ଏବଂ ତା'ର ସବୁ ଜିନିଷ ଛିନ୍‌ଛତ୍ର ହୋଇ ପଡ଼ିବାର ଏକ ବ୍ୟଙ୍ଗଚିତ୍ର ଆଙ୍କିଥିବା ମୋର ମନେ ଅଛି ।

ଉଚ୍ଚଶ୍ରେଣୀର ଛାତ୍ର ହିସାବରେ ତଳଶ୍ରେଣୀରେ (ନବମ) ଶିକ୍ଷାଦାନର ସୁଯୋଗ ହେଡ୍‌ମାଷ୍ଟେ ମୋତେ ଦେବା ମୋ ପକ୍ଷରେ ଆନନ୍ଦ ଓ ଉତ୍ସାହର ବିଷୟ ହୋଇଥାଏ । ଥରେ ଆମ ଇତିହାସ ଶିକ୍ଷକ ନଟବର ନାୟକଙ୍କ ତତ୍ତ୍ୱାବଧାନରେ ଆମେ ବାର୍‌ହାଟିପରାର ଜାଗର ଯାତ୍ରା ଦେଖିବାକୁ ଯାଇଥିଲୁଁ । ଆମେ ପିଲାମାନେ ଶୃଙ୍ଖଳିତ ଭାବରେ କେନ୍ଦୁଝର ଗଡ଼ରୁ ପଦଯାତ୍ରା କରି ଢ଼େଙ୍କିକୋଟ ବଙ୍ଗଳାରେ ରାତିରେ ଭୋଜନ ସାରି ବିଶ୍ରାମ ନେଲୁ ଏବଂ ସକାଳୁ ନିତ୍ୟକର୍ମ ସାରି ବାର୍‌ହାଟିପରା ଗଲୁଁ । ଆମ ସାଙ୍ଗରେ ଆମ ଗାଁ ନିକଟବର୍ତ୍ତୀ ନାଉକଣାର ଜଣେ ବ୍ରାହ୍ମଣ ପୂଜାରୀ କାମ କରୁଥାଏ । ବାର୍‌ହାଟିପରାରେ ହୋଇଥିବା ଏକ ଛାମୁଡ଼ିଆରେ ବିଶ୍ରାମ ନେଉଥିବା ବେଳେ ସେ ଢ଼ଙ୍କି ଖଣ୍ଡେ ଧରି ବିଚିତ୍ର ଅଭିନୟ ଓ ନୃତ୍ୟ କରି ସମସ୍ତଙ୍କୁ ହସାଉଥାଏ । ପାହାଡ଼ ଉପରେ ଶିବ ମନ୍ଦିର । ଦର୍ଶନ ସାରି ପାହାଡ଼ ତଳ ଗୁମ୍ଫା ଚାରିପଟେ ବୁଲିଲୁଁ । ବୁଲିଲା ବେଳର ଏକ ମଜାଦୃଶ୍ୟ ମୋର ମନେ ଅଛି । ଜଣେ ବାବାଜୀ ଆଖିବୁଜି ତୁଣ୍ଡରେ କ'ଣ ଗୁଣୁଗୁଣୁ କରୁଥାଏ; ବେଳେବେଳେ ଆଖି ଖୋଲି ପୁଣି ବୁଜି ଦେଉଥାଏ । ଯାତ୍ରାରେ ବୁଲି ରାତିରେ ଗଡ଼କୁ ପ୍ରସ୍ଥାନ କଲୁଁ ।

ଆଉ ବର୍ଷେ ବସନ୍ତ କାଳରେ ଇନ୍ଦ୍ରଛତ୍ର ପର୍ବତ ଉପରେ ପଶ୍ଚିମମୁଖା ହୋଇ ଶିକ୍ଷକ ଅନନ୍ତଚରଣ ମହାନ୍ତିଙ୍କ ତତ୍ତ୍ୱାବଧାନରେ ବୈତରଣୀର ଉତ୍ପତ୍ତିସ୍ଥଳ ଗୋନାସିକା ଦର୍ଶନ କରିବାକୁ ବାହାରିଲୁଁ । ପର୍ବତ ଉପରେ ପାର୍ବତ୍ୟ-ରାସ୍ତାରେ ଯାତ୍ରା ବେଶ ଆନନ୍ଦଦାୟକ ହୋଇଥାଏ । ବାସନ୍ତୀ ଅରଣ୍ୟର ବୈଚିତ୍ର୍ୟମୟୀ ଶୋଭା ଆମ କିଶୋରଙ୍କ ମନକୁ ବେଶ ଆକର୍ଷଣ କରୁଥାଏ । ବାଟରେ ମହୂଲ ଫୁଲର ମହକରେ ନାକ ଫାଟି ପଡୁଥାଏ । କେତେ ବନ୍ଧୁର କଙ୍କରିଳ ପଥ ଅତିକ୍ରମ କରି ଆମେ ଗୋନାସିକାରେ ସଂଧ୍ୟାବେଳକୁ ପହଞ୍ଚିଲୁଁ ଏବଂ ସରକାରୀ ଡାକବଙ୍ଗଳାରେ ବିଶ୍ରାମ ନେଲୁଁ । ତହିଁଆର ଦିନ ସକାଳୁ ନିତ୍ୟକର୍ମ ଓ ସ୍ନାନ ସାରି ମନ୍ଦିରରେ ବ୍ରହ୍ମେଶ୍ୱର ମହାଶଙ୍କରଙ୍କୁ ଦର୍ଶନ କଲୁଁ । ମନ୍ଦିର ପାର୍ଶ୍ୱରେ ଏକ କୁଣ୍ଡରେ ବୈତରଣୀର ସ୍ରୋତ ଦେଖିବାକୁ ମିଳେ । ସେଠାରୁ ଉପରକୁ ଏକମାଇଲ୍ ଯାଏ ବୈତରଣୀ ଧାର ଲୁପ୍ତ (ଗୁପ୍ତ ଗଙ୍ଗା) । ଗୋନାସିକା ପର୍ବତର ପାଦ ଦେଶରେ ଏକ ଜୁଆଙ୍ଗ ପଲ୍ଲୀ । ଗୋନାସିକା ଗାଁ ଡ଼େଇଁ ପର୍ବତ ଉପରକୁ ଚଢ଼ିଲୁଁ । ପର୍ବତର ଯେଉଁ ଉପତ୍ୟକାରେ ଯାଉଥାଉଁ, କ୍ଷୀଣଧାରରେ କୁଳୁକୁଳୁ ନାଦ କରି ବୈତରଣୀ ସ୍ରୋତ ବହି ଆସୁଥାଏ । ପର୍ବତ ଆରୋହଣ କରି ସେ ଧାର ଯେଉଁଠୁ ବାହାରିଛି ସେଠାକୁ ଗଲୁଁ । ଗୋଟିଏ ପ୍ରକାଣ୍ଡ ଆମ୍ବଗଛ ମୂଳରୁ ସ୍ରୋତ ବାହାରିଥିବାର ଲକ୍ଷ୍ୟ କଲୁଁ । ସେଠାରେ କିଛି ସମୟ ପର୍ବତର ଆରଣ୍ୟ ସୁଷମା ଉପଭୋଗ କରି କେତେବେଳକରେ ଗୋନାସିକା ଗ୍ରାମକୁ ପ୍ରତ୍ୟାବର୍ତ୍ତନ କଲୁଁ । ପର୍ବତ ପାଦଦେଶର ଜୁଆଙ୍ଗ ପଲ୍ଲୀର ଧାଙ୍ଗଡ଼ା ଘରେ ବସି ସେମାନଙ୍କର ଚାଙ୍ଗୁ ବଜାଇଲୁଁ । ତା'ପରେ ଡାକବଙ୍ଗଳାକୁ ଫେରି ଆସି ବିଶ୍ରାମ ନେଲୁଁ । ଗୋନାସିକାରେ ଆମ୍ବଗଛ ସହ ପଣସ ଗଛ ଦେଖି ଆମେ ଆଶ୍ଚର୍ଯ୍ୟ ହେଲୁଁ । ଗଛର ମୂଳରୁ ଡାଳଯାଏ ସବୁଆଡ଼େ ପଣସ । ରାତିରେ ସେଠାରେ ଯାତ୍ରା ନାଟ ଦେଖି ତହିଁ ଆରଦିନ ସକାଳେ ଗଡ଼ ପ୍ରତ୍ୟାବର୍ତ୍ତନ କଲୁଁ ।

କେନ୍ଦୁଝର ଗଡ଼ରେ ଇନ୍ଦ ଓ ଦଶହରା ପର୍ବ ବେଶ ଉପଭୋଗ୍ୟ । ଇନ୍ଦ ପର୍ବରେ ରାଜା ଏକ ପ୍ରାନ୍ତର ଅଭିମୁଖରେ ଯାତ୍ରା କରନ୍ତି, ଯେଉଁଠି ଇନ୍ଦଛତ୍ର ଉତ୍ତୋଳନ କରାଯାଏ । ନାନା ବାଦ୍ୟରେ ଯାତ୍ରାସ୍ଥଳ କଂପି ଉଠେ । ଛତ୍ର ଉଠିବା ବେଳକୁ ତୋପଧ୍ୱନି କରାଯାଏ । ଦଶହରା ସମୟରେ ଦେବୀଙ୍କ ନିକଟରେ ବହୁ ବୋଦା ବଳି ପଡ଼ିବାରୁ ଗଡ଼ରେ ମାଂସ ଶସ୍ତା ହୋଇଯାଏ ।

ଦଶମ ଶ୍ରେଣୀରେ ଅଧ୍ୟୟନ କାଳରେ ମୁଁ ଚନ୍ଦ୍ରଶେଖର ମହାପାତ୍ରଙ୍କ 'ସାମନ୍ତ ଚନ୍ଦ୍ରଶେଖର' (ପଠାଣି ସାମନ୍ତ) ଓ 'ଛାତ୍ର ସହଚର' ନାମକ ଦୁଇଖଣ୍ଡ ବହି ପଢ଼ିବାର ସୁଯୋଗ ପାଇଥିଲି । ଛାତ୍ର ସହଚର ମୋ ଜୀବନରେ ଗଭୀର ପ୍ରଭାବ ବିସ୍ତାର କରିଥିଲା । ସେଥିରୁ ମୋତେ ଯେଉଁ ନୈତିକ ଓ ଆଧାତ୍ମିକ ପ୍ରେରଣା ମିଳିଥିଲା ତାଦ୍ୱାରା ମୋ ଜୀବନ ବହୁ ପରିମାଣରେ ନିୟନ୍ତ୍ରିତ ହୋଇଥିଲା । ସେଥିରେ ଛାତ୍ରର କର୍ତ୍ତବ୍ୟ ସଂପର୍କରେ ଯେଉଁ ବ୍ୟାବହାରିକ ନିର୍ଦ୍ଦେଶ ଦିଆଯାଇଥିଲା ସେଗୁଡ଼ିକୁ ଟିପାଖାତାରେ ଟିପି ରଖି ଜୀବନର ବିଭିନ୍ନ

କ୍ଷେତ୍ର ଓ ଘଟଣାରେ ପ୍ରୟୋଗ କରିବାକୁ ଲାଗିଲି । ଏ ପୁସ୍ତକ ପାଠର ସୁଫଳ ମୁଁ ଜୀବନର ବିଭିନ୍ନ କ୍ଷେତ୍ରରେ ଉପଲବ୍ଧି କରିଛି ।

ଏ ପୁସ୍ତକ ପାଠପରେ ମୋର ଏ ଅନୁଭବ ହେଲା : ମନରେ ସତ୍‌ଚିନ୍ତା ରହିଲେ ରାଗ, ଦ୍ୱେଷ କେଉଁଆଡ଼େ ଚାଲିଯାଏ; ଅଯଥା ଅହମିକା, ଗର୍ବ ଛାଏଁ ଛାଏଁ ଦୂର ହୋଇଯାଏ । ଅନ୍ୟକୁ ଆପଣାର କରିବାକୁ ହେଲେ ଅନ୍ୟ ସଂପର୍କରେ ଆଗ୍ରହୀ ହେବା ଏବଂ ନିଜର କ୍ଷୁଦ୍ର କ୍ଷୁଦ୍ର ସ୍ୱାର୍ଥଚିନ୍ତା ତ୍ୟାଗ କରିବା ଉଚିତ । ଦୋଷ, ଅଭିମାନ ଓ ସ୍ୱାର୍ଥଚିନ୍ତା ଥାଇ ଅନ୍ୟକୁ କେବେ ଆପଣାର କରିହୁଏ ନାହିଁ । ପ୍ରତାରଣା ବା ପ୍ରବଞ୍ଚନା ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ବଡ଼ ବିପଜ୍ଜନକ । ସାମନ୍ତ ଚନ୍ଦ୍ରଶେଖରଙ୍କର ସାଧନା ଓ ସଂସ୍କୃତ ପ୍ରୀତି ମୋ ଚିତ୍ତରେ ଏକ ଗଭୀର ସଂସ୍କାରର ବୀଜ ପ୍ରୋଥିତ କଲା ।

ଛାତ୍ର ସହଚର ପୁସ୍ତକ ମୋର ମନରେ ଆଧ୍ୟାତ୍ମିକ ଚେତନା ଆଣିଦେବା ସଙ୍ଗେ ବିକ୍ଷିପ୍ତ ଚିତ୍ତକୁ ନିର୍ଦ୍ଦିଷ୍ଟ ଲକ୍ଷ୍ୟାନୁଗ କରିଥିଲା । ଜୀବନରେ ସେତେବେଳେ ଉଚ୍ଚ ଅନୁଭୂତିଭିତ୍ତିକ ଦାର୍ଶନିକ ଭାବ ନ ଆସିଥିଲେ ମଧ୍ୟ ସେହି ଦିଗରେ ଚିତ୍ତରେ ଏକ ପ୍ରବଣତା ସ୍ୱତଃସ୍ଫୂର୍ତ୍ତ ଭାବରେ ଉପଲବ୍ଧି କରିଥିଲି । ହସିଖେଳି ସଂସାରରେ ଜୀବନ କଟାଇବା ଅପେକ୍ଷା ଜୀବନରେ କିପରି ଏକ ମହତ୍ତର ଲକ୍ଷ୍ୟ ରହିବା ଉଚିତ ବୋଲି ଚିନ୍ତା ଛାଏଁ ଛାଏଁ ମନକୁ ଆସୁଥିଲା । ଆଧ୍ୟାତ୍ମିକ ଚିନ୍ତନ ଓ ଚେତନାର ସ୍ପର୍ଶରେ ମନୁଷ୍ୟ, ପଶୁପକ୍ଷୀ, ଧରିତ୍ରୀ, ଆକାଶ, ନକ୍ଷତ୍ର, ଦୂରପର୍ବତ, ବୃକ୍ଷଲତା ଓ ପ୍ରାନ୍ତରର ସବୁଜିମା ମୋତେ ଖୁବ୍ ଆପଣାର ମନେ ହେଉଥିଲା । ମନେ ହେଉଥିଲା : ଏଥିରେ ସତେ ଯେପରି ମୁଁ ବ୍ୟାପ୍ତ ହୋଇଯାଇଛି ଏବଂ ନିସର୍ଗ ଜଗତର ପ୍ରତ୍ୟେକ ବସ୍ତୁ ମୋର ଅନ୍ତରରେ ନିବିଡ଼ ମମତାରେ ଆସନ ପାଡିଛନ୍ତି ।

ପ୍ରତ୍ୟୁଷରୁ ଉଠିବା ମୋର ଅଭ୍ୟାସ ହୋଇଗଲା । ସହପାଠୀମାନେ ସୁସୁପ୍ତ ଥିଲାବେଳେ ମୁଁ ଏକୁଟିଆ ଭଗବତ୍ ନାମ ଉଚ୍ଚାରଣ କରି ରାଜରାସ୍ତାରେ ବହୁଦୂର ଚାଲିଯାଉଥିଲି । ନିଶାନ୍ତକାଳୀନ ଶୋଭା, ପୂର୍ବଦିଗର ପାହାନ୍ତି ତାରା ଏବଂ ଅସ୍ତୋନ୍ମୁଖୀ ଚନ୍ଦ୍ର ମୋ ହୃଦୟରେ ପ୍ରଶାନ୍ତ ଭାବନା ଜାତ କରିବା ସଙ୍ଗେ ସଙ୍ଗେ ଭୟ କେଉଁଆଡ଼େ ଦୂରୀଭୂତ ହୋଇଯାଉଥିଲା । ପ୍ରତ୍ୟୁଷ ଭ୍ରମଣ କାଳରେ ଦିନକ ପାଇଁ ମନରେ ଶ୍ୱାପଦ ଭୟ ଜାତ ହୋଇ ନଥିଲା କି ମୁଁ କୌଣସି ଶ୍ୱାପଦରେ ସମ୍ମୁଖୀନ ହୋଇନଥିଲି । ସାଧାରଣ ଘଟଣାଟିଏ, ଏବେବି ମନେ ଅଛି: ବୁଢ଼ୀଟିଏ ହଷ୍ଟେଲକୁ ଭିକ ମାଗି ଆସେ; ତା' ତୁଣ୍ଡରୁ ଭାଗବତ ଏକାଦଶ ସ୍କନ୍ଧର ନବାକ୍ଷରୀ ପଦ ଶୁଣି ମୁଁ ମୁଗ୍ଧ ହୋଇଯାଏଁ ।

ନିକଟବର୍ତ୍ତୀ ବୋଦାପଲସା ଗ୍ରାମରେ ପ୍ରତିଷ୍ଠିତ ଶିବମନ୍ଦିର ସହପାଠୀଙ୍କ ସହ ଦର୍ଶନ କରିଛି । ବଳଦେବଜୀଉ ମନ୍ଦିର ସମୀପରେ ଦକ୍ଷିଣୀ ଗୋଟିପୁଅ ନୃତ୍ୟ ଓ ସଙ୍ଗୀତରେ ମୁଗ୍ଧ ହୋଇଛି । ସାନ୍ତରାପୁର ଶାସନରେ ଗୋପଲୀଳା (puppet show) ଦେଖିବାର ସୁଯୋଗ ହୋଇଛି । ବଡ଼ଶାସନରେ ଅନୁଷ୍ଠିତ ପାଲା ଏବଂ ସ୍ନାନାର୍ଥୀ ନଟବର ମିଶ୍ରଙ୍କର (ସିରସ୍ତାଦାର)

ସତ୍ୟବାଦୀ ବନବିଦ୍ୟାଳୟର ଶ୍ଳୋକାନ୍ତ ପ୍ରତିଯୋଗିତା ସ୍ମୃତି ମୋ ମନରେ ପ୍ରଭାବ ପକାଇଛି । ସେ ସମୟରେ ଲୋକସେବା କରିବାର ପ୍ରେରଣା ଶିକ୍ଷକଙ୍କଠାରୁ ପାଉଁଥିଲୁ । ଜଣେ ସରକାରୀ କର୍ମଚାରୀ ନିଃସଙ୍ଗ ଓ ଦାୟାଦହୀନ ଭାବରେ ଆଟୋପରେ ରହୁଥିବା ଏକ କୋଠରୀରେ ମୃତ୍ୟୁବରଣ କରିଥିଲେ । ଆମ୍ଭେମାନେ ସକାଳେ ଏ ସମ୍ବାଦ ପାଇ ଦେଖିଲୁଁ : ରାତିରେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । ତାଙ୍କ ପାଟି ଓ ନାକରେ ପିମ୍ପୁଡ଼ି ଧାଡ଼ିବାନ୍ଧି ଚାଲୁଥାନ୍ତି । ଆମେ କେତେକ ସହପାଠୀ ଶବଟିକୁ ନେଇ ନିକଟବର୍ତ୍ତୀ ଏକ ତୋଟାରେ ଗଭୀର ଗାତ କରି ପୋତି ଦେଇ ସତ୍କାର କରିଥିଲୁଁ ।

ସେତେବେଳେ ଗଡ଼ ସଂସ୍କୃତ ଟୋଲରେ ହେଡ୍‌ପଣ୍ଡିତ ଥାଆନ୍ତି ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ । ସେ କେନ୍ଦୁଝରର ପୂର୍ବତନ ରାଜା ପ୍ରତାପ ବଳଭଦ୍ର ନାରାୟଣ ଭଂଜଙ୍କ ନାମରେ ଭଣିତ ଅମ୍ବିକାବିଳାସ (ପ୍ରକୃତ କାବ୍ୟକର୍ତ୍ତା : ବ୍ରଜନାଥ ବଡ଼ଜେନା) ଓ ଅନ୍ୟ କେତୋଟି ଗ୍ରନ୍ଥ ସଂପାଦନା କରି 'କେନ୍ଦୁଝର ଗ୍ରନ୍ଥମାଳା' ଶିରୋନାମାରେ ବଳଦେବ ସାହିତ୍ୟ ମନ୍ଦିର ଆନୁକୂଲ୍ୟରେ ପ୍ରକାଶ କରିଥାନ୍ତି । ସେତେବେଳେ 'ବନବୀଣା' ନାମକ ସାହିତ୍ୟ ପତ୍ରିକା (ପୂର୍ବରୁ ସୂଚିତ) କେନ୍ଦୁଝର ଗଡ଼ରୁ ପ୍ରକାଶ ପାଉଥାଏ । ମୁଖ୍ୟ ସଂପାଦକ ଥାଆନ୍ତି ଆମ ହେଡ୍‌ମାଷ୍ଟେ; ସଂପାଦକ ମଣ୍ଡଳୀରେ ଥାଆନ୍ତି ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ପ୍ରାଣବଲ୍ଲଭ ପଟ୍ଟନାୟକ ଓ ବଂଶୀଧର ମହାନ୍ତି । ସେତେବେଳେ ଏହା କେନ୍ଦୁଝର ଷ୍ଟେଟ୍ ପ୍ରେସ୍‌ରୁ ନିୟମିତ ଭାବରେ ପ୍ରକାଶ ପାଉଥିଲା । କେନ୍ଦୁଝର ଓ କେନ୍ଦୁଝର ବାହାରର ଲେଖକ ଓ କବିମାନେ ବନବୀଣାକୁ ଲେଖା ଦେଉଥିଲେ । ମୋର ମନେ ଅଛି : କେନ୍ଦୁଝର ସଦର କଚେରୀର କର୍ମଚାରୀ ବଂଶୀଧର ମହାନ୍ତିଙ୍କର 'ପ୍ରୁବ' କାବ୍ୟ ବନବୀଣାରେ ଧାରାବାହିକ ଭାବରେ ପ୍ରକାଶ ପାଉଥିଲା । ପ୍ରାଣବଲ୍ଲଭ ପଟ୍ଟନାୟକଙ୍କର ଗୀତା ସଂପର୍କୀୟ ଆ୍ଲୋଚନା, ବାବାଜୀ ପାଢ଼ୀଙ୍କର (ସ୍ୱର୍ଗୀୟ) କବିତା ପ୍ରକାଶ ପାଉଥିଲା । ସେତେବେଳେ ଷ୍ଟେଟ୍ ପ୍ରେସ୍‌ରେ କେତେକ ପୁରୁଣା ଛପାକଳ, ହସ୍ତଚାଳିତ ଟ୍ରେଡଲ ଓ ପ୍ଲାଟ୍‌ବେଡ଼ ମେସିନ୍ ଥିଲା । ପରେ ଷ୍ଟେଟ୍ ପ୍ରେସ୍‌ର ମେସିନ ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସ୍‌କୁ ଚାଲିଆସିଛି ।

ମୋର ସହପାଠୀ ରବିର ବାପା ବଂଶୀଧର ପଟ୍ଟନାୟକଙ୍କର (ପରେ ଖଣିମାଲିକ) ସେତେବେଳେ ପ୍ରକାଣ୍ଡ ଘର ବାଡ଼ି ଓ ପୋଖରୀ ଥିଲା । ଡାକ୍ତର ଗୌରାଙ୍ଗ ଚରଣ ପଟ୍ଟନାୟକ, ମଧୁସୂଦନ ପଟ୍ଟନାୟକ, ରାଜବଂଶୀୟ ଜନାର୍ଦ୍ଦନ ଭଂଜ (ବଡ଼ବାବୁ)ଙ୍କ କୋଠା ଓ ହତା, ବିକ୍ଷିପ୍ତ ଭାବରେ ନିର୍ମିତ କେତେକ ସରକାରୀ କ୍ୱାର୍ଟରସ୍ ଛାଡ଼ିଦେଲେ ଗଡ଼ରେ ସେତେବେଳେ ଭଲ ଘର ନଥିଲା ।

କେନ୍ଦୁଝର ଜେଲ୍ ସେ ସମୟରେ ଏକ ବଡ଼ ଜେଲ୍ ଥିଲା; କଟକ ଜେଲ୍ ପରି ତା'ର ପାଚେରୀ କାନ୍ଥ ଅତି ଉଚ୍ଚ ଓ ମୋଟା; ତା'ର ବଗିଚା ମଧ ପ୍ରକାଣ୍ଡ । ଜେଲ୍ ଭିତରେ ଫାଶୀଖୁଣ୍ଟ ମଧ ଥିଲା । ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କ ଅନୁମତି ନେଇ ଜେଲ ଭିତର ଦେଖିବାର ସୁଯୋଗ ହୋଇଥିଲା ।

ଆଜି ପିଲାଙ୍କର ଟିଉସନ ଛଡ଼ା ଗତି ନାହିଁ । ସେତେବେଳେ ଶ୍ରେଣୀରେ ଶିକ୍ଷାଦାନ ପ୍ରତି ଯେପରି ବିଶେଷ ଧ୍ୟାନ ଦିଆଯାଉଥିଲା, ଲେଖାର ଅଭ୍ୟାସ କରାଯାଉଥିଲା, ଛାତ୍ରମାନଙ୍କ ଠାରୁ ରୀତିମତ ପାଠ ଆଦାୟ କରାଯାଉଥିଲା, ତାହା ବର୍ତ୍ତମାନ ସ୍ୱପ୍ନର ବିଷୟ । ସ୍କୁଲ୍‌ରେ ଶିକ୍ଷାଦାନ ଆଜି ଏକ ପ୍ରହସନରେ ପରିଣତ ହୋଇଛି । ପୂର୍ବରୁ ସ୍ୱତଃସ୍ଫୂର୍ତ୍ତ ଭାବରେ ପିଲାଙ୍କର ଅଭାବ ଅସୁବିଧା ଦୂର ପାଇଁ ଯେଉଁ ପ୍ରଚେଷ୍ଟା ଥିଲା, ତାହା ଆଜି ସ୍ୱପ୍ନର ବିଷୟ; ବିଦ୍ୟା ହୋଇଛି ଏକ ପଣ୍ୟଦ୍ରବ୍ୟ । କେତୋଟି ଭଲ ପିଲାଙ୍କୁ ଛାଡ଼ିଦେଲେ ଯେଉଁଘରେ ବାପ ମା' ପିଲାଙ୍କର ପଢ଼ାର ନିୟମିତ ଯତ୍ନ ନେଇପାରୁ ନାହାନ୍ତି, ସେମାନେ ଆଜି ଶିକ୍ଷାଦିଗରେ ଏକ ପ୍ରକାର ନିଃସହାୟ କହିଲେ ଚଳେ । ବ୍ୟବସାୟ ଓ ଅର୍ଥ ନିକଟରେ ଶିକ୍ଷା ତା'ର ଅତୀତର ପବିତ୍ରତା ଓ ମୂଲ୍ୟ ହରାଇଛି; ଶିକ୍ଷକ ମଧ୍ୟ ପୂର୍ବର ମର୍ଯ୍ୟାଦା ହରାଇଛି । ଯେ କୌଣସି ଉପାୟରେ ଅର୍ଥ ଅର୍ଜନ ପାଇଁ ଆଜି ସମସ୍ତେ ବଦ୍ଧ ପାଗଳ ! ଆଜି କର୍ତ୍ତବ୍ୟରେ ଅବହେଳା କଲେ କେହି ଦେଖିବାକୁ ନାହିଁ କି, କେହି ଗୁରୁତ୍ୱ ଦିଅନ୍ତି ନାହିଁ- କେବଳ ଗୋଟାଏ ଉପର ଠାଉରିଆ ଆନ୍ତରିକତା ଶୂନ୍ୟ ଶାସନ ଶୃଙ୍ଖଳା । କର୍ତ୍ତବ୍ୟବୋଧ ସ୍ଥାନରେ ଆଜି ଦେଖାଦେଇଛି ଦାବୀ ସଚେତନତା । ଯେ ରାଜନୀତି କରିପାରିଲା, ନେତୃତ୍ୱ ନେଇ ପାଟି କରିପାରିଲା, ତା ମୁଣ୍ଡରେ ପାଗ ବନ୍ଧାଯାଉଛି, ସେ ଆଦର୍ଶ ଶିକ୍ଷକ ହେଉଛି, ରାଜ୍ୟ ପୁରସ୍କାର ଓ ରାଷ୍ଟ୍ରପତି ପୁରସ୍କାର ପାଉଛି । କେତେ କର୍ତ୍ତବ୍ୟ ପରାୟଣ ଦାୟିତ୍ୱ ସଂପନ୍ନ ଶିକ୍ଷକ ଅପୂଜା ହୋଇ ଗାଁ ଗହଳରେ ସଢ଼ୁଛନ୍ତି, ତା'ର ଖବର କିଏ ରଖୁଛି ? ସେତେବେଳେ ଶିକ୍ଷକଙ୍କ ପକ୍ଷରେ ଟିଉସନ-ବ୍ୟବସାୟ କରିବା ସତେ ଯେପରି ଅବାଞ୍ଛନୀୟ କାର୍ଯ୍ୟ ଥିଲା । ନିହାତି ଜଣେ ଦୁଇଜଣ ଧନୀ ପିଲା ଶିକ୍ଷକଙ୍କ ନିକଟକୁ ପଢ଼ିବାକୁ ଆସୁଥିବାର ଲକ୍ଷ୍ୟ କରିଥିଲି । କାହାରି କାହାରି ଘରେ କେବଳ ଗରିବ ପିଲା ଜଣେ ଅଧେ ଟିଉସନ କରୁଥିଲେ । ଏହା ଛାଡ଼ିଦେଲେ ଟିଉସନ ଥିଲା ସେତେବେଳେ ଏକ ସ୍ୱପ୍ନର ବିଷୟ । ଶିକ୍ଷକମାନେ ସେତେବେଳେ ପିଲାଙ୍କୁ ସାହାଯ୍ୟ କରିବାକୁ ଗୌରବଜନକ ମନେ କରୁଥିଲେ । ପିଲା ଅଭାବ ଅସୁବିଧା ନେଇ ପାଖରେ ପହଞ୍ଚୁଥିଲେ ଶିକ୍ଷକଙ୍କ ସ୍ନେହାଦରରୁ କେବେ ବଞ୍ଚିତ ହେଉନଥିଲା ।

ଆମର ଏକାଦଶ ଶ୍ରେଣୀ ବର୍ଷ ଶୀତଦିନେ ଅଜାଙ୍କର ପରଲୋକ ହୋଇଗଲା । ମୁଁ ସମ୍ବାଦପାଇ ଗାଁକୁ ଗଲି । ଗାଁରେ ପହଞ୍ଚିଲା ବେଳକୁ ଅଜାଙ୍କୁ ଟୁଙ୍ଗୁଣା ନିକଟବର୍ତ୍ତୀ ବୈତରଣୀ ନଦୀ ବାଲିରେ ସଂସ୍କାର କରାସରିଥିଲା । ମା' ଓ ଭାଇ ଓସ୍ତପାଳରୁ ସେଦିନ ପହଞ୍ଚିଲେ । ମା କାନ୍ଦି କାନ୍ଦି ନଦୀକୁ ଚାଲିଯାଇଥିଲା- ଚିତାଗ୍ନି ଦେଖି ଫେରିଲା । ମୁଁ ପରଦିନ ପହଞ୍ଚିଲି । (ଅଜାଙ୍କର ଚିତାଗ୍ନି ଦେଖି ପାରିଲି ନାହିଁ) । ନିର୍ଜନରେ ଏକୁଟିଆ ବସିଥାଏ- ଆଖିରୁ ଦରଦର ଧାରାରେ ଅଶ୍ରୁ ଗଡ଼ିଯାଉଥାଏ । ମା'ର ସ୍ନେହ ଦେଇ ଯେଉଁ ଅଜା, ଆଈ ମୋତେ ଗଣ୍ଠିଧନ କରିଥିଲେ, ଏ ମା' ଛେଉଣ୍ଡକୁ ଅତି ଶୈଶବରୁ ଲାଳନପାଳନ କରି ବଢ଼େଇ ଥିଲେ ସେମାନଙ୍କର ଅନ୍ତିମ ଯାତ୍ରାବେଳେ କାହାରିକୁ ଦେଖିପାରିଲି ନାହିଁ । ଆଜି ଜୀବନର ସାୟାହ୍ନରେ ଧ୍ୟାନସ୍ଥ

ହୋଇ ପଛକଥା ଭାବିଲେ ଅତୀତର ସମସ୍ତ ଘଟଣା ଚଳଚ୍ଚିତ୍ର ପରି ଚିତ୍ତପଟରେ ଉଦ୍‌ଭାସିତ ହୋଇଯାଏ । ମୋର ଜୀବନ ଧାରଣ, ଅଧ୍ୟୟନ ଓ ବ୍ୟକ୍ତିତ୍ୱର ବିକାଶ ମୂଳରେ ଯେ ଅଜା, ଆଈଙ୍କର ସ୍ନେହ, ବ୍ୟକ୍ତିତ୍ୱ ଓ ସଂସ୍କାର କାମ କରୁଥିଲା ଏବଂ କରୁଛି, ଏହା ମର୍ମେ ମର୍ମେ ଉପଲବ୍ଧି କରେଁ । ଯଦି ଶିକ୍ଷାରେ ଉଚ୍ଚ ସୋପାନକୁ ଉନ୍ନୀତ ହୋଇ ସମ୍ମାନଜନକ ପଦବୀରେ ଅବସ୍ଥାପିତ ହୋଇଥାଏ, ଏହା ସେଇ ଅଜା ଆଈଙ୍କର ସ୍ନେହ ଓ ପୁଣ୍ୟର ଫଳ । ସାହିତ୍ୟର ଅଧ୍ୟାପନା ଓ ସାହିତ୍ୟ ସାଧନା ଆଜି କେବଳ ମୋ ଜୀବନରେ ବୃତ୍ତି ନୁହେଁ ବ୍ରତ । ସଂସ୍କୃତ ଓ ଓଡ଼ିଆ ସାହିତ୍ୟ, ଭାରତୀୟ ସଂସ୍କୃତି ଓ ଅତୀତର ଉଚ୍ଚ ମୂଲ୍ୟବୋଧ ପ୍ରତି ମୋର ସହଜାତ ଶ୍ରଦ୍ଧା ମୂଳରେ ରହିଛି ଅଜାଙ୍କର ସଂସ୍କାର । ବ୍ରାହ୍ମମୁହୂର୍ତ୍ତରେ ଅଜାଙ୍କ ତୁଣ୍ଡରେ ସଂସ୍କୃତ ସ୍ତୋତ୍ର, ଓଡ଼ିଆ ଜଣାଣ ଓ ଭଜନର ଆବୃତ୍ତି ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ପ୍ରତି ମୋର ଅନ୍ତରରେ ଜାତ କରିଥିଲା ସହଜାତ ଶ୍ରଦ୍ଧା । ପିତୃ ପିତାମହ, ମାତା ମାତାମହ ଏମାନଙ୍କର ଋଣ ସୁଝି ହୁଏନାହିଁ । ସ୍ୱର୍ଲୋକ ବିହାରୀ ଅଜା ଆଈଙ୍କ ପ୍ରତି ଅନ୍ତରରେ କୃତଜ୍ଞତା, ପ୍ରଣତି-ଅର୍ଘ୍ୟ ନିବେଦନ ଛଡ଼ା ମୋ'ଠାରେ ବା କ'ଣ ସମ୍ବଳ ଅଛି ?

'ମେଟ୍ରିକ୍ ପରୀକ୍ଷାରେ ବୃତ୍ତି ପାଇଲେ କଲେଜ୍‌ରେ ପଢ଼ିବୁ'- ଦାଦାଙ୍କର (ମାମୁଁ) ଏଇ କଥା ପଦକ ମନ ଭିତରେ ରେଖାପାତ କରେ । ମନରେ ଏକପ୍ରକାର ସଂକଳ୍ପ : ଶେଷ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମସ୍ଥାନ ଅଧିକାର କରିବାକୁ ହେବ, ବୃତ୍ତି ପାଇବାକୁ ହେବ । ପୂର୍ବରୁ ନିୟମିତ ପଢୁଥିଲି; ପରୀକ୍ଷା ପର୍ଯ୍ୟନ୍ତ କଠୋର ପରିଶ୍ରମ କରିଥିଲି । ଟେଷ୍ଟ ପରୀକ୍ଷାରେ ମୋର ସାହିତ୍ୟପତ୍ରର ଉତ୍ତରରେ ଶିକ୍ଷକ ଲୋକନାଥ ଦାଶ ମୋ ସଂପର୍କରେ ଆଶାୟୀ ହୋଇଉଠି ମୋର ଲେଖାର ପ୍ରଶଂସା କରୁଥାନ୍ତି ।

ହେଡ୍‌ମାଷ୍ଟେ ଓ ଅନ୍ୟଶିକ୍ଷକଙ୍କ ସ୍ନେହ ଓ ଶୁଭଦୃଷ୍ଟି ହେତୁ ଶିକ୍ଷକଙ୍କର ଇଂରାଜୀ ହାଣ୍ଡବୁକ୍‌ମାନ ଅଧ୍ୟୟନ କରିବାର ସୁଯୋଗ ପାଇଥିଲି । ଓଡ଼ିଆ ମାଧ୍ୟମରେ ମେଟ୍ରିକ୍ ପରୀକ୍ଷା ଦେବାକୁ ହେଉଥିଲେ ମଧ୍ୟ ଇତିହାସ, ଭୂଗୋଳ ଓ ଗଣିତଶାସ୍ତ୍ରର ବିଭିନ୍ନ ଇଂରାଜୀ ପୁସ୍ତକ ଅଧ୍ୟୟନ କରୁଥିଲି । ମେଟ୍ରିକ୍ ସାଢ଼େ ତିନିବର୍ଷ ପଢ଼ିଥିଲୁଁ, ଦଶମ ଶ୍ରେଣୀରେ କେବଳ ଛ' ମାସ । ନବଗଠିତ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଆମକୁ ପରୀକ୍ଷା ଦେବାକୁ ହେବ । ଓଡ଼ିଆରେ ସେତେବେଳେ ଯଦିଓ ଗଣିତ ପୁସ୍ତକ ପ୍ରକାଶ ପାଇଲାଣି, ମୁଁ କିନ୍ତୁ ଇଂରାଜୀରେ Hall and Knights, K.P. Basu J.C. Chakravarty ଙ୍କର ମୂଳ ଇଂରାଜୀ ଗ୍ରନ୍ଥ ପଢ଼ି ଅଙ୍କ କଷୁଥିଲି । ଭୂଗୋଳରେ Dudly stamp ଙ୍କର ପ୍ରସିଦ୍ଧ Physical Geography ପଢୁଥିଲି ।

ମାର୍ଚ୍ଚ ମାସରେ ଆମର ମେଟ୍ରିକ୍ ପରୀକ୍ଷା ହେଲା । ପରୀକ୍ଷା କେନ୍ଦ୍ରର ତତ୍ତ୍ୱାବଧାରକ ହୋଇ ଆସିଥାନ୍ତି ସେତେବେଳେ କଟକ ଟ୍ରେନିଂ କଲେଜ୍‌ରେ ଅଧ୍ୟକ୍ଷ ମହେଶ ଚନ୍ଦ୍ର ପ୍ରଧାନ । ପୂର୍ବ ବର୍ଷ ପରି ଆମ ପରୀକ୍ଷା ସମୟରେ ରାଜା ସାହେବ ପରୀକ୍ଷା କେନ୍ଦ୍ରକୁ ଆସି ଆଗ୍ରହର

ସହ ପରୀକ୍ଷାର୍ଥୀଙ୍କ ମେଳରେ ବସନ୍ତି । ଶ୍ରେଣୀର ଭଲ ପିଲାଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ଆଦର । ଏଇ ପିଲାଙ୍କୁ ବୃତ୍ତିଦାନ କରି ଉଚ୍ଚ ଶିକ୍ଷିତ କରିବା ଦିଗରେ ତାଙ୍କର ବିଶେଷ ଆଗ୍ରହ । କେନ୍ଦୁଝରରେ ଶିକ୍ଷାର ପ୍ରସାର ଓ ବିକାଶମୂଳକ ଯୋଜନା କାର୍ଯ୍ୟକାରୀ କରିବା ଥିଲା ତାଙ୍କର ଲକ୍ଷ୍ୟ ।

ସୁରୁଖୁରୁରେ ପରୀକ୍ଷା ଶେଷ ହେଲା, ଭଲ କରିଥାଏଁ ବୋଲି ମନରେ ଆତ୍ମବିଶ୍ୱାସ ଓ ଆନନ୍ଦ । ଶେଷ ଦିନ ହଷ୍ଟେଲ୍‌ରେ ପରୀକ୍ଷାର୍ଥୀମାନେ ଖୋଲା ମନରେ ଆନନ୍ଦ ଉତ୍ସାହରେ ମାତିଗଲୁଁ । ଦିନକ ପରେ ଅନ୍ୟ ଛାତ୍ରବନ୍ଧୁ ଓ ଶିକ୍ଷକମାନଙ୍କଠାରୁ ବିଦାୟ ନେଇ ଗାଁ ଉଦ୍ଦେଶ୍ୟରେ ଯାତ୍ରା କଲୁଁ ।

ବହୁ ଆକାଂକ୍ଷିତ ପରୀକ୍ଷାଫଳ ପ୍ରକାଶ ପାଇଲା । ସେତେବେଳେ ସମାଜ ପୃଷ୍ଠାରେ ସମଗ୍ର ଓଡ଼ିଶାର ହାଇସ୍କୁଲ୍ ପରୀକ୍ଷା ଫଳ ପ୍ରକାଶ ପାଉଥାଏ । ଗାଁକୁ ଖବର ଆସିଲା : ମୁଁ କେନ୍ଦୁଝର ଷ୍ଟେଟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଛି, ଚକ୍ରଧର ମହାନ୍ତ (ପରେ ଚମ୍ପୁଆର ଆଡ଼ଭୋକେଟ) ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ମୋର ମନର ସଂକଳ୍ପ ପୂର୍ଣ୍ଣ ହୋଇଥିବାରୁ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣତି ବାଢ଼େଁ । ଗାଁର ସମସ୍ତଙ୍କର ମୋ ସଂପର୍କରେ ଆଦର ଓ ପ୍ରଶଂସା । ଗାଁରେ ଏ ପର୍ଯ୍ୟନ୍ତ କେହି ମେଟ୍ରିକ୍ ପାଶ୍ କରି ନଥିଲେ । ମୁଁ ପ୍ରଥମ କରି କୃତିତ୍ୱର ସହ ପାଶ୍ କରିଥିବାରୁ କେବଳ ଗାଁରେ ନୁହେଁ, ସେ ଅଞ୍ଚଳରେ ମୁଁ ହେଲି ଆଗୁଆ, ପଥ ପ୍ରଦର୍ଶକ । କଲେଜରେ ପଢ଼ିବା ଦିଗରେ ଆଉ କିଛି ପ୍ରତିବନ୍ଧକ ରହିଲା ନାହିଁ, ସେଥିପାଇଁ ମୋର ଉତ୍ସାହ ଓ ଉଦ୍ଦୀପନା ଅସୀମ । ସାନ ଭାଇ ବାବୁ (ବୈକୁଣ୍ଠ) ପ୍ରତିଜ୍ଞା କରେଇ ଥିଲା : ପ୍ରଥମ ଶ୍ରେଣୀରେ ପ୍ରଥମ ହେଲେ ନଡ଼ିଆ ପିଟାଯିବ । ନଡ଼ିଆ ପିଟା ହେଲା- ତା' ମନ ଖୁସି ।

ଡକ୍ଟର ବିଦ୍ୟାଧର ପାଢ଼ୀ ଓ ନାରାୟଣ ଚନ୍ଦ୍ର ଦାଶଙ୍କ (ଶାଳପଡ଼ା) ପରାମର୍ଶ କ୍ରମେ ରେଭେନ୍ସା କଲେଜ୍‌ରେ ଆଇ.ଏସ୍.ସି. ପଢ଼ିବା ପାଇଁ ଫର୍ମପୂରଣ କରି ପଠାଇ ଦେଲି । ଯଥା ସମୟରେ ଅନୁମତି ପତ୍ର ପାଇ କଟକ ଯାତ୍ରା ଅପେକ୍ଷାରେ ରହିଲି ।



## ।। ତୃତୀୟ ଅଧ୍ୟାୟ ।।

### ରେଭେନ୍ସା କଲେଜ୍‌ରେ ଅଧ୍ୟୟନ :

କଟକ କାହିଁକି ଯେ କୌଣସି ସହରକୁ ଯାତ୍ରା କରିବା ଆଜିକାଲି ଯେପରି ମୁଁ ସୁବିଧାଜନକ ହୋଇଛି, ମୋର କଲେଜ୍ ପଢ଼ା ଆରମ୍ଭ ସମୟରେ ସେ ପ୍ରକାର ନଥିଲା । ଆଜିକାଲି ଯେ କୌଣସି ସମୟରେ ବସ୍ କିମ୍ବା ଟ୍ରେକ୍‌ର ମିଳିବା କଷ୍ଟକର ବା ସମୟ ସାପେକ୍ଷ ନୁହେଁ । ସରକାରୀ ଏକ୍ସପ୍ରେସ୍ ବସ୍ କଥା ଛାଡ଼ିଦେଲେ ଯେ କୌଣସି ଦ୍ରୁତଗାମୀ ଘରୋଇ ବସ୍‌ରେ ଗୋଟିଏ ଦିନରେ ନିଜର ଯୋଜନା ମୁତାବକ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାତ୍ରା କରି କାମ ସାରି ଠିକ୍ ସମୟରେ ଫେରି ଆସିବାକୁ କୌଣସି ଅସୁବିଧା ନାହିଁ; କିନ୍ତୁ ସେତେବେଳେ କଟକ କିମ୍ବା ଅନ୍ୟ ଦୂରଜାଗାକୁ ଯିବାକୁ ହେଲେ ରୀତିମତ ଗୋଟାଏ ପ୍ରସ୍ତୁତି ବହୁଳ ଚିନ୍ତାକୁଳ ବ୍ୟସ୍ତତା ଖେଳିଯାଏ ।

ସେତେବେଳେ କେନ୍ଦୁଝର ଗଡ଼ରୁ ଯାଜପୁର ରୋଡ଼କୁ ଅଳ୍ପ କେତୋଟି ବସ୍ ଚାଲୁଥିଲା, ପୁଣି ସେଗୁଡ଼ାକର ଅବସ୍ଥା ଭଲ ନଥିଲା, ସେଥିରେ ପୁଣି ବସ୍ ଫେଲ ହେବାର ଯନ୍ତ୍ରଣା । ଗାଡ଼ି ମଟରର ଅବସ୍ଥା ଏଇପରି ଥିଲାବେଳେ ୧୯୪୫ ମସିହା, ଜୁନ୍ ଶେଷରେ ରେଭେନ୍ସା କଲେଜ୍‌ରେ ନାଁ ଲେଖାଇବା ପାଇଁ ବାହାରିଲି । ପେଣ୍ଟ, ସାର୍ଟ, ଯୋତା, ମୋଜାର ଆଡ଼ମ୍ବର କିଛି ନାହିଁ, ଧୋତି, ହାଫ୍ ସାର୍ଟ ଓ ଚପଲ ଯଥେଷ୍ଟ । ଥାଳି, ଲୋଟା, ଗିଲାସ ସାମାନ୍ୟ ବିଛଣା, ଚଦର ଖଣ୍ଡିଏ : ଏସବୁ ସଜଡ଼ା ଯାଇ ଟ୍ରଙ୍କ ଗୋଟିକରେ ଭର୍ତ୍ତି କରାଗଲା ।

ଲୁଗାପଟା ପିନ୍ଧି ଘରର ପ୍ରତିଷ୍ଠିତ ଦେବତା ଭାଗବତ ଗୋସେଇଁ ଓ ଗୁରୁଜନମାନଙ୍କୁ ପ୍ରଣାମ କରି ସଂଧ୍ୟା ସମୟରେ ବସ୍ ଧରିବା ପାଇଁ ବାହାରିଲି ବେଲବାହାଳି, ସାଙ୍ଗରେ ଦାଦା ଓ ଆଉ ଦୁଇ ତିନିଜଣ ଲୋକ । ବସ୍ ପହଞ୍ଚିଲା ମାତ୍ରେ ଶାଳପଡ଼ାର ନାରାୟଣ ଚନ୍ଦ୍ର ଦାସଙ୍କ ସହ ଯାଜପୁର ରୋଡ଼ ଯାତ୍ରା କଲି ।

ଯାଜପୁର ରୋଡ଼ରେ ପହଞ୍ଚି ଦେଖିଲୁଁ ପାସେଞ୍ଜର୍ ଟ୍ରେନ୍‌ରେ ଯିବାପାଇଁ ପ୍ଲାଟଫର୍ମ ଲୋକାରଣ୍ୟ । ଦୀର୍ଘକାଳର ପ୍ରତୀକ୍ଷା ପରେ ଗାଡ଼ିର ଆବିର୍ଭାବ । ସେତେବେଳେ ଗାଡ଼ି ଚଢ଼ିବା ରୀତିମତ ଏକ କସରତ । ଗାଡ଼ିରେ ତ ଯାତ୍ରୀ ଭିଡ଼, ତା' ସହ ଗାଡ଼ିକୁ ଉଠିବା କାଠିକର ପାଠ । ଭିତରେ ଦରଜା ଦେଇ ଲୋକେ ନିଶ୍ଚିନ୍ତ । ବହୁ ଧକ୍କା ପରେ ଗୋଟିଏ କଂପାର୍ଟମେଣ୍ଟର ଦ୍ୱାର ଖୋଲିଲା । ଏକ ସମୟରେ ବହୁ ଯାତ୍ରୀଙ୍କର ଗାଡ଼ିକୁ ଉଠିବାର

ଦୁର୍ଦ୍ଦାନ୍ତ ପ୍ରଚେଷ୍ଟା- ଧକ୍କା, ପେଲା, ପୂରାପୂରି ଗଳଦ୍‌ଘର୍ମ । ବହୁ କଷ୍ଟରେ ଟ୍ରଂକଗୁଡ଼ିକୁ ଗାଡ଼ିକୁ ଉଠାଇ ଡ଼ବା ଭିତରେ ଆମର ପ୍ରବେଶ ।

କେତେବେଳକରେ ଲମ୍ବା ସିଟିଦେଇ ଗାଡ଼ିର ଧୀର ମନ୍ଥର ଯାତ୍ରା । ଝରକାର ପବନ ସ୍ପର୍ଶମାତ୍ରେ ଟିକିଏ ଆଶ୍ୱସ୍ତି । ବ୍ରାହ୍ମଣୀ ପୋଲ ପାରି ହୋଇ ଗାଡ଼ି ଜେନାପୁର ଷ୍ଟେସନରେ; ଜେନାପୁର ଓ୍ୱାଟରିଂ ଷ୍ଟେସନ । ଇଞ୍ଜିନ୍‌ରେ ପାଣି ଭର୍ତ୍ତି ହେବା ସରିଲା, କିନ୍ତୁ ଗାଡ଼ି ଅଟକିଛି କାହିଁକି ? ଅଳ୍ପ ସମୟ ନୁହେଁ;ଦୀର୍ଘ ସମୟ । ଆଜି ଏସବୁ ଅସହ୍ୟ । ଆଜିପରି ସେତେବେଳେ ତ ଦୋହରା ରେଲ୍‌ଲାଇନ୍ ବସା ହୋଇ ନଥିଲା । ଗୋଟିଏ ଗାଡ଼ି ପୂର୍ବରୁ ଷ୍ଟେସନ ଛାଡ଼ି ଦେଇଥିଲେ ଅନ୍ୟ ଗାଡ଼ିକୁ ଅନ୍ୟ ଷ୍ଟେସନରେ ଅଟକିବାକୁ ହେଉଥିଲା । ତା'ଛଡ଼ା ମେଲ୍, ଏକ୍ସପ୍ରେସ୍ ହେଲେ ଷ୍ଟେସନରେ ସେଇମିତି ପଡ଼ିଥାଅ । ଗାଡ଼ି ଆସି ଅନ୍ୟ ଷ୍ଟେସନରେ ନ ପହଞ୍ଚିବା ପର୍ଯ୍ୟନ୍ତ ଯାତ୍ରୀଙ୍କର ଗତି ନାହିଁ, ସେଇଠି ପଡ଼ି ରହିଥାଅ । ଗାଡ଼ିରେ ଅଟକି ବିରକ୍ତି ଲାଗିଲେ ମଧ ଯାତ୍ରୀ ନିରୁପାୟ । କେତେବେଳକରେ ସିଟି ବାଜିବ, କୁଝେଇ କରି ଗାଡ଼ିଟି ଷ୍ଟାଟ୍ ନେବ । ଏଇ ରୀତିରେ ଯାଜପୁର ରୋଡ଼ଠାରୁ କଟକ ୪୫ ମାଇଲ୍ ବାଟକୁ ପାଞ୍ଚଘଣ୍ଟା । ରାତି ୩ ଟାରେ ପହଞ୍ଚୁ କଟକରେ ।

ରେଭେନ୍ସା କଲେଜ୍‌ର ପଶ୍ଚିମ ଛାତ୍ରାବାସରେ ହୁଏ ଆମର ରହଣି ନାରାୟଣ ଦାଶଙ୍କର ଅତିଥି ହୋଇ । ଆମ ସାଙ୍ଗରେ ଶାଳପଡ଼ାର କୃପାସିନ୍ଧୁ ଦାଶ ଆସିଥାଏ । ହଷ୍ଟେଲ୍‌ରେ ଗେଷ୍ଟ ମିଲ୍ ପଡୁଥାଏ । ସେତେବେଳେ ପଶ୍ଚିମ ଛାତ୍ରାବାସ, ପୂର୍ବ ଛାତ୍ରାବାସ, ପି.ଜି. ଛାତ୍ରାବାସ (ମୟୂରଭଂଜ କୋଠି) ଏବଂ ଭଡ଼ାରେ ନିଆଯାଇଥିବା ତାଳଦଣ୍ଡା କେନାଲ କୂଳର ଛାତ୍ରୀନିବାସକୁ ଛାଡ଼ିଦେଲେ ଅନ୍ୟ ହଷ୍ଟେଲ ନଥାଏ । ବର୍ତ୍ତମାନ ପ୍ରକାଣ୍ଡ ଛାତ୍ରୀନିବାସ ସହ ନୂତନ ପି.ଜି. ହଷ୍ଟେଲ୍, ଆଦିବାସୀ ହଷ୍ଟେଲ୍ ଓ ଜଗନ୍ନାଥ ଛାତ୍ରାବାସ ପ୍ରଭୃତି ଛାତ୍ରାବାସମାନ ଗଢ଼ି ଉଠିଛି ।

ରେଭେନ୍ସା କଲେଜର ବିଶାଳତା, ବିସ୍ତୃତ ପରିସର ତା'ର ପ୍ରଶସ୍ତ କ୍ରୀଡ଼ା ପ୍ରାଙ୍ଗଣ ମନରେ ବିସ୍ମୟଜାତ କରୁଥାଏ । ଯଥା ସମୟରେ ଆମର ନାମ ଲେଖା ହୋଇଗଲା । ମୁଁ କେନ୍ଦୁଝରରୁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାସ୍ କରିଥିବାରୁ ଆଇ.ଏସ୍.ସି.ରେ ପ୍ରଥମ ଚାନ୍‌ସରେ ମୋର ନିର୍ବାଚନ ହୋଇଯାଇଥାଏ; ହଷ୍ଟେଲ୍ ଆଡ଼ମିଶନ୍ ହୋଇନଥାଏ ।

ନାମଲେଖା ପରେ କୃପାସିନ୍ଧୁ ଓ ମୁଁ ବଜାର ଆଡ଼େ ଟିକିଏ ବୁଲି ବାହାରିଲୁଁ । ଆଜିର କଟକ ଷାଠିଏ ବର୍ଷତଳର କଟକ ମଧରେ ଆକାଶପାତାଳ ପ୍ରଭେଦ । ଆଜି ଯେଉଁ ସ୍ଥାନରେ ଜନ-ଗହଳି-ପୂର୍ଣ୍ଣ ରାସ୍ତା ଫିଟିଯାଇଛି, ସେତେବେଳେ ତା'ର କଳ୍ପନା ନଥିଲା । ପୁରାତନ କୋଠାମାନ ଛାଡ଼ିଦେଲେ ବର୍ତ୍ତମାନର ଆଧୁନିକ ଇଞ୍ଜିନିୟରିଂ କୌଶଳପୂର୍ଣ୍ଣ ସୌଧମାନ କଳ୍ପନାତୀତ ଥିଲା । ରେଳଷ୍ଟେସନଠାରୁ ସହରର ହୃତ୍‌ପିଣ୍ଡ ଦେଇଯାଇଥିବା ରାସ୍ତା ଥିଲା ସଂକୀର୍ଣ୍ଣ । ଏତେ ଘରଦ୍ୱାର ହୋଇନଥିଲା । ତାଳଦଣ୍ଡା-କେନାଲ ପୋଲ ମଧ ଥିଲା ସଂକୀର୍ଣ୍ଣ ।

ଆଜି ମଟର ସାଇକେଲ୍, ଅଟୋ ରିକ୍ସା, ସ୍କୁଟର, କାର୍, ଜିପ୍, ଟ୍ରକ୍, ସାଇକେଲ୍ ଓ ସାଇକେଲ୍ ରିକ୍‌ସାର ସଂଖ୍ୟା ଅଗଣିତ । ଏଗୁଡ଼ାକର ଦୌରାତ୍ମ୍ୟରେ ନିରାପଦରେ କଟକ ରାସ୍ତାରେ ଚାଲିବା ବର୍ତ୍ତମାନ କଷ୍ଟକର ହୋଇ ଉଠିଲାଣି । ଜନସଂଖ୍ୟା (ସ୍ଥାୟୀ ଓ ଅସ୍ଥାୟୀ) ଆଶାତୀତ ଭାବରେ ବଢ଼ିଗଲାଣି, ବେଳେବେଳେ କୋଲକାତା ଭଳି ଟ୍ରାଫିକ୍ ଜାମ୍ ମଧ୍ୟ ହେବାର ଦେଖାଯାଉଛି । ସେତେବେଳେ ଏସବୁ ଥିଲା ସ୍ୱପ୍ନର ବିଷୟ । ହାତଟଣା ରିକ୍ସା, ବଳଦଗାଡ଼ି ଓ ଘୋଡ଼ାଗାଡ଼ିକୁ ଛାଡ଼ିଦେଲେ କେବଳ ଅବସ୍ଥାପନ୍ନ ବ୍ୟକ୍ତି ଓ ଉଚ୍ଚପଦସ୍ଥ କର୍ମଚାରୀଙ୍କର କେତୋଟି କାର୍ ରାସ୍ତା ଘାଟରେ ଦେଖାଯାଉଥିଲା । ପ୍ରଧାନ ରାସ୍ତାରେ ଇଲେକ୍‌ଟ୍ରିକ୍ ଆଲୋକର ଅବଶ୍ୟ ବ୍ୟବସ୍ଥା ଥିଲା, କିନ୍ତୁ ଗଳି ଓ ବସ୍ତିମାନଙ୍କରେ କେବଳ ମ୍ୟୁନିସିପାଲଟି ପକ୍ଷରୁ କିରାସିନି ଲାଇଟ୍ ପୋଷ୍ଟମାନର ବ୍ୟବସ୍ଥା ଥିଲା । ମେନ୍‌ରୋଡ଼କୁ ଛାଡ଼ିଦେଲେ ଅନ୍ୟ ରାସ୍ତାଗୁଡ଼ିକ ଯଥା ରାଣୀହାଟ- ଦୋଳମୁଣ୍ଡେଇ, ଛତ୍ରବଜାର-ଦୋଳମୁଣ୍ଡେଇ, ପିଠାପୁର ରାସ୍ତା ଏକପ୍ରକାର ନିର୍ଜନ ଥିଲା । ତୁଳସୀପୁର, ଦେଉଳସାହି ରାସ୍ତା ଥିଲା ଅତି ନିର୍ଜନ- ରାତି ଆଠଟା ପରେ ସେ ରାସ୍ତାରେ ଯିବା ଥିଲା ବିପଜ୍ଜନକ । ସେ ତ ଦୂରର କଥା, ରାଣୀହାଟ-ଦୋଳମୁଣ୍ଡେଇ ଏବଂ ଛତ୍ରବଜାର-ଦୋଳମୁଣ୍ଡେଇ ରାସ୍ତା ମଧ୍ୟ ରାତିରେ ଥିଲା ବିପଦପୂର୍ଣ୍ଣ । ଛତ୍ରବଜାର ରାସ୍ତା ଏବଂ ବକ୍ସବାଟି ପାଖରେ ଡକାୟତି ହେବାର ଆମେ ଶୁଣିବାକୁ ପାଉଁ ।

ପ୍ରଭାତ ସିନେମା ପାଖରୁ ବକ୍ସବାଟି ଓ ବକ୍ସବାଟିଠାରୁ ଛତ୍ରବଜାର ପର୍ଯ୍ୟନ୍ତ ଯେଉଁ ଆବର୍ଜନା ନାଳ ଯାଇଛି, ତା'ର ଦୁଇପାଖ ବର୍ତ୍ତମାନ ପଥର ବନ୍ଧାଯାଇ ଉଭୟ ପାଖରେ ପକ୍କା ପିଚ୍‌ରାସ୍ତା କରାଯାଇଛି । ଆଜି ସାଆନ୍ତ ସାଇ ଓ ରାୟ ସାହେବ ନାରାୟଣ ମିଶ୍ର କଲୋନୀର ସୌଧମାଳା ଦେଖିଲେ ବିସ୍ମିତ ହେବାକୁ ହୁଏ । ଯେଉଁଠି ଥିଲା ବିସ୍ତୃତ ଖାଲ ଜମି, ପୋଖରୀ, ସେ ଜାଗାରେ ଏପରି କଲୋନୀ ଗଢ଼ି ଉଠିବାର କଳ୍ପନା କରାଯାଇ ନଥିଲା । ଯେଉଁ ଶଙ୍କରପୁର ଥିଲା କଟକର ପନିପରିବା ଉତ୍ପାଦନ-କ୍ଷେତ୍ର, ତା' ମଧ୍ୟରେ ଯେ ଲିଙ୍କ୍‌ରୋଡ୍ ଯିବ, ଏହାଥିଲା କଳ୍ପନାତୀତ । ଆଜି ଯେଉଁ ମୟୂରଭଞ୍ଜ କୋଠି ପରିସର ମଧ୍ୟରେ ଜାତୀୟ ରାଜପଥ ଯାଇଛି ତାହା ମଧ୍ୟ ଥିଲା ସ୍ୱପ୍ନର ବିଷୟ । ମନେ ଅଛି : ଏମ୍.ଏ. ଶ୍ରେଣୀର ଛାତ୍ର ଥିଲାବେଳେ ସହପାଠୀଙ୍କ ସହ ସାଙ୍ଗ ହୋଇ କେତେଥର ତାଳଦଣ୍ଡା ପୋଲ ପାରିହୋଇ, ବର୍ତ୍ତମାନର ଖପୁରିଆ ବା ଇଣ୍ଡଷ୍ଟ୍ରିୟାଲ୍ ଇଷ୍ଟେଟ୍ ପାରିହୋଇ କାଠଯୋଡ଼ୀ ରେଳ ପୋଲଯାଏ କଚା ରାସ୍ତାରେ ଯାଇଛୁଁ । କିନ୍ତୁ ଆଜି ଖପୁରିଆ ତ ବ୍ୟବସାୟ କେନ୍ଦ୍ରସ୍ଥଳୀ; ପୁଣି ଲିଙ୍କ୍‌ରୋଡ୍‌ର ଦୁଇ ପାଖରେ ଘର, ଫ୍ଲାଟ, ହୋଟେଲ ଓ ଦୋକାନ ବଜାର ଗଢ଼ିଉଠିବା; କଲ୍ୟାଣୀନଗର, ଅପର୍ଣ୍ଣାନଗର, ଅରବିନ୍ଦନଗର, ମହାନଦୀ ବିହାର, ନୀଳାଦ୍ରି ବିହାର ଓ ନୂଆବଜାର ପ୍ରଭୃତି ଗଢ଼ିଉଠିବା, ଜଗତପୁରରେ ଇଣ୍ଡଷ୍ଟ୍ରିଆଲ୍ ଇଷ୍ଟେଟ୍ ଗଢ଼ିଉଠିବା ହେଉଛି ସାଂପ୍ରତିକ ପ୍ରଗତିମୁଖୀ କାଳର ପରିବର୍ତ୍ତିତ ତଥା ସ୍ୱର୍ବିତ ରୂପ । ଏବେ ପୁଣି କଲିକତା, ମୋମ୍ବାଇ, ଦିଲ୍ଲୀ ଓ ଚେନ୍ନାଇ ଅନୁକରଣରେ ବହୁତଳ ପ୍ରାସାଦମାନ ତିଆରି ଚାଲିଛି ।

କଟକରେ ପୂର୍ବରୁ ଯେଉଁ ଜାଗାମାନ ଥିଲା ପଡ଼ିଆ, ଖାଲ, ନାଳ ଆଦି ସେ ସ୍ଥାନ ମାନ ପୋତାଯାଇ ସୌଧମାନ ମୁଣ୍ଡଟେକି ଉଠୁଛି ।

ମୋର କଲେଜ୍ ପଢ଼ା ଆରମ୍ଭରେ କଟକରେ ଥିଲା ଦୁଇଟି ସିନେମା ଘର- ପ୍ରଭାତ ସିନେମା ଓ କ୍ୟାପିଟାଲ ସିନେମା (ଚାଳଘର) । ସେତେବେଳେ ଚାରିଅଣା, ଆଠ ଅଣାରେ ବହୁବାର ସିନେମା ଯାଇଛି । ଆଜି କିନ୍ତୁ କଟକରେ ଶୀତତାପ ନିୟନ୍ତ୍ରିତ ବ୍ୟବସ୍ଥା ଥାଇ ସିନେମା ଘର ସଂଖ୍ୟା ଏଗାର । ସେତେବେଳେ ନିୟମିତ ଭାବରେ ଅନ୍ନପୂର୍ଣ୍ଣା ଥିଏଟର୍ ଓ ଓଡ଼ିଶା ଥିଏଟର୍ସ ଚାଲିଥିଲା- ଓଡ଼ିଶା ଥିଏଟର୍ସ ଜାଗାରେ ପରେ ହେଲା ଜନତା ଥିଏଟର୍ସ । କିନ୍ତୁ ଏ ସିନେମା ଓ ଟେଲିଭିଜନ ପ୍ରଧାନ ଯୁଗରେ ଥିଏଟର ପଡ଼ିଯାଇଛି । କେବଳ କଳାବିକାଶ କେନ୍ଦ୍ରରେ ଆଧୁନିକ ଯୁଗର ରଙ୍ଗମଞ୍ଚ ନିର୍ମିତ ହୋଇଥିବାରୁ ନୂତନ ଧରଣର ନାଟକ (ବିଶେଷତଃ) ଉଦ୍ଭଟ ନାଟକ ସେଠି ଅଭିନୀତ ହେଉଛି ।

ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ୍ କଲେଜ୍ ତ କଲେଜ୍ ନଥିଲା, ଥିଲା ମେଡ଼ିକାଲ୍ ସ୍କୁଲ୍ । ତା'ର ପରିସର ମଧ୍ୟରେ ବିସ୍ତୃତ ପ୍ରାନ୍ତର ଖାଲିଥିଲା । ବର୍ତ୍ତମାନ ଆଧୁନିକ ଚିକିତ୍ସାର ବିଭିନ୍ନ ବିଭାଗର ସୁଯୋଗମାନ ଥାଇ ଏସ୍.ସି.ବି. ମେଡ଼ିକାଲ କଲେଜ୍ ଠିଆ ହୋଇଛି ସେଇ ନିର୍ଜନ ପ୍ରାନ୍ତର ମଧ୍ୟରେ ।

ରେଭେନ୍ସା କଲେଜ ସହ ରାଧାନାଥ ଟ୍ରେନିଂ କଲେଜ, ଶୈଳବାଳା ମହିଳା କଲେଜ୍ ଓ ଖ୍ରୀଷ୍ଟ କଲେଜକୁ ଛାଡ଼ିଦେଲେ ଆଉ କିଛି କଲେଜ୍ ନଥିଲା, ବର୍ତ୍ତମାନ ଗୁଡ଼ିଏ ଘରୋଇ କଲେଜ୍ ମୁଣ୍ଡଟେକି ଉଠିଛି । ସେତେବେଳେ ସିନେମା ଓ ଥିଏଟରର ପ୍ରଚାର ପାଇଁ ବଳଦଗାଡ଼ି ଓ ଘୋଡ଼ାଗାଡ଼ିର ସାହାଯ୍ୟ ନିଆଯାଉଥିଲା । ବଳଦଗାଡ଼ିରେ ପୋଷ୍ଟର ମରାଯାଇ ବ୍ୟାଣ୍ଡବାଜା ବଜାଯାଇ ପ୍ରଚାର କରାଯାଉଥିଲା । ଆଜି ଅବଶ୍ୟ ସେ ପ୍ରକାର ପ୍ରଚାରର ଆବଶ୍ୟକତା ନାହିଁ । ଖବରକାଗଜମାନଙ୍କରେ ପ୍ରଚାର କରାଯାଉଛି । ଲୋକରୁଚି ଏପରି ସିନେମା ଅଭିମୁଖୀ ହୋଇପଡ଼ିଛି ଯେ ଲୋକେ ଆଡ଼ଭାନ୍ସବୁକିଂ କରି ନେଉଛନ୍ତି, ପୁଣି ଲମ୍ବା କ୍ୟୁରେ ଅପେକ୍ଷା କରି ବହୁ କଷ୍ଟରେ ଟିକେଟ୍ ସଂଗ୍ରହ କରୁଛନ୍ତି; ନ ପାଇଲେ କଳାବଜାରୀଙ୍କଠାରୁ ଟିକେଟ୍ କିଣି ନେବାକୁ କୁଣ୍ଠାପ୍ରକାଶ କରୁନାହାନ୍ତି । ଏବେ ସାଟେଲାଇଟ୍, ଟି.ଭି., ଟେପ୍‌ରେକର୍ଡ଼ର୍, ଭି.ସି.ଆର୍, କମ୍ପ୍ୟୁଟର ଆଦି ଆଧୁନିକ ଇନ୍‌ଫରମେଶନ ଟେକ୍ନୋଲୋଜିର ବିସ୍ତାର ହେତୁ ଘରେ ଘରେ ଘଣ୍ଟା ଘଣ୍ଟା ଧରି ସିନେମା ଦେଖାଚାଲିଛି, ବହୁ ସିନେମା ଘର ପଡ଼ିଗଲାଣି; ଅଧିକାଂଶଙ୍କ ଛାତି ପକେଟ୍‌ରେ ମୋବାଇଲ୍ ଫୋନ ।

ସେତେବେଳେ ଚାଉଳିଆଗଞ୍ଜର ଗିରିଧାରୀ ସାହୁ କଲୋନୀଠାରୁ ବିଦ୍ୟାଧରପୁର ଯାଏଁ ଘରଦ୍ୱାର ନଥିଲା । ଶିଖରପୁର ଓ ମହାନଦୀ କୂଳର କାଳିଆବୋଦାକୁ ଛାଡ଼ି ଦେଲେ ବର୍ତ୍ତମାନର ମହାନଦୀ ବିହାର ଗହୀର ଶସ୍ୟକ୍ଷେତ୍ର । ଆଜି କଟକର ରାସ୍ତାଘାଟ ପ୍ରଶସ୍ତ ହେବା ସଙ୍ଗେସଙ୍ଗେ ଧୀରେଧୀରେ ଉନ୍ନତ ହେଉଛି, ତଥାପି ସହରର ନାନା ସମସ୍ୟା ରହିଛି, ଯେଉଁଗୁଡ଼ିକ ଅସମାହିତ ।

ଜୁଲାଇ, ୧୫ ଆଡ଼କୁ କ୍ଲାସ ଆରମ୍ଭ ହେଉଥିବାରୁ ଗାଁରେ କେଇଦିନ କଟେଇ କଟକ ଫେରିଲି । ପଶ୍ଚିମ ଛାତ୍ରାବାସର ଗୋଟିଏ ପାଞ୍ଚଜଣିଆ ରୁମରେ ମୋର ସିଟ୍ ଆଲଟ୍‌ମେଣ୍ଟ ହୋଇଥାଏ । ମୋର ସତୀର୍ଥ ଅନ୍ୟ ଅନ୍ତେବାସୀଙ୍କ ମଧ୍ୟରେ ସତ୍ୟାନନ୍ଦ ଚମ୍ପତିରାୟଙ୍କ ନାମ ଉଲ୍ଲେଖଯୋଗ୍ୟ । ଏ କିଛିବର୍ଷ ପୂର୍ବେ 'ଝଙ୍କାର' ମାସିକ ସାହିତ୍ୟପତ୍ରର ପରିଚାଳନା ସଂପାଦକ, ଓଡ଼ିଶା ବିଧାନସଭାର ସଦସ୍ୟ ଓ ଉତ୍କଳ ପ୍ରସଙ୍ଗର ମୁଖ୍ୟ ସଂପାଦକ ଥିଲେ । ଚମ୍ପତିରାୟ ଭାରୀ ସ୍ନେହୀ । ସେତେବେଳକୁ ତାଙ୍କର କେତୋଟି କବିତା ପୁସ୍ତକ ଛପାଯାଇଥାଏ, ଯଥା- 'ଅଞ୍ଜନ', 'କାଞ୍ଜିଆଗଡ଼ର ସେ କାଳର କଥା' । ପରେ ପ୍ରକାଶିତ ହେଲା ତାଙ୍କର 'ତାଜମହଲ ଓ ଯମୁନା', 'କାଳିଦାସଙ୍କର ରତି ବିଳାପର ପଦ୍ୟାନୁବାଦ ଓ ଗୀତାନୁବାଦ' । ପରବର୍ତ୍ତୀ ଜୀବନରେ ନାନା କାରଣରୁ ତାଙ୍କ ଲେଖନୀ ଶିଥିଳ ହୋଇଯାଇଛି ।

ଆଇ.ଏସ୍.ସି.ରେ ମୋର ବିଷୟ ଥିଲା : Physics, Chemistry, Mathematics ଏବଂ ଚତୁର୍ଥ ଇଚ୍ଛାଧୀନ ବିଷୟ ଥିଲା Bio-logy । ନିର୍ଦ୍ଦିଷ୍ଟ ଦିନରେ ଆମର କ୍ଲାସ ଆରମ୍ଭ ହୁଏ । ନୂଆ ପିଲାଙ୍କର ଲକ୍ଷଣ : ଗୋଟିଏ ଲେକ୍‌ଚର ଥିଏଟରରୁ ଆଉ ଗୋଟିକରେ କ୍ଲାସ ଥିଲେ ଆଗେ ବସିବା ପାଇଁ ଦୌଡ଼ିବା । ଅବଶ୍ୟ ଏ ଅଭ୍ୟାସ କିଛିଦିନ ପରେ ଚାଲିଗଲା; କିନ୍ତୁ ପହିଲୁ ପହିଲୁ ଦୌଡ଼ିବାକୁ ପଡୁଥାଏ, ତାହା ଏକପ୍ରକାର ମଜା ଲାଗୁଥାଏ ।

ଆମର କେମିଷ୍ଟ୍ରି କ୍ଲାସ୍ ନେଉଥାନ୍ତି ପ୍ରଫେସର ଗୁରୁଚରଣ ମହାନ୍ତି । ଡିମୋନ୍‌ଷ୍ଟ୍ରେଟର୍ ଆଗେ ଆସି ରୋଲ୍‌କଲ୍ କରି ଚାଲିଯାଆନ୍ତି, ତା'ପରେ ସାର୍ ଆସନ୍ତି ତାଙ୍କର ବିଭିନ୍ନ ଉପକରଣ (aparatus) ଧରି । କେମିଷ୍ଟ୍ରି ପ୍ରତି ଆମ୍ଭମାନଙ୍କର ମନ ଆକୃଷ୍ଟ କରିବାପାଇଁ ସେ କେତୋଟି ମଜାମଜା ପରୀକ୍ଷା (experiment) ଏବଂ ତାଙ୍କର ବକ୍ତୃତା ପ୍ରଦାନକାଳୀନ ଭଂଗୀ ଆମ ମନରେ ବିଶେଷ ରେଖାପାତ କରୁଥାଏ । ପରେ ଯେତେବେଳେ ସାଙ୍ଗ ମେଳରେ ଗପସପ ହେଉଁ, ବିଭିନ୍ନ ଅଧ୍ୟାପକଙ୍କ ବକ୍ତୃତା ଭଂଗୀର ଚମତ୍କାର ନକଲ କରି (mimicry) ବେଶ୍ ଆନନ୍ଦ ପାଉଁ ।

ପରବର୍ତ୍ତୀ କାଳରେ ଓଡ଼ିଶାର ଶିକ୍ଷାବିଭାଗରେ ଉଚ୍ଚାସନ ଅଧିକାର କରିଥିବା ବହୁ ଲୋକ ଆମର ଅଧ୍ୟାପକ ଥିଲେ । ବିଜ୍ଞାନର ଅନ୍ୟ ଅଧ୍ୟାପକଙ୍କ ନାମ ହେଉଛି ଡଃ ବଂଶୀଧର ସାମନ୍ତରାୟ (ବଟାନି), ଦୟାନିଧି ପଟ୍ଟନାୟକ (କେମିଷ୍ଟ୍ରି), ରାଧାଶ୍ୟାମ ଦାସ (ପଦାର୍ଥ ବିଜ୍ଞାନ), ରାୟସାହେବ ନାରାୟଣ ମିଶ୍ର (ପଦାର୍ଥ ବିଜ୍ଞାନ), ସାଧୁଚରଣ ଦାଶ (ଗଣିତ), ଜୟନାରାୟଣ ପଣ୍ଡା (ଗଣିତ), ଡଃ ରମାନାଥ ମହାନ୍ତି (ଗଣିତ), ରାମମୂର୍ତ୍ତି (ଗଣିତ), ପ୍ରଫେସର ବାମାଚରଣ ଦାସ (ଗଣିତ), ପ୍ରଫେସର ପି.ଏସ୍. ସୁନ୍ଦରମ (ଇଂରାଜୀ), ଭି.ଭି. ଜନ୍ (ଇଂରାଜୀ), ବିଧୁଭୂଷଣ ଦାସ, ପ୍ରଫୁଲ୍ଲ ପତି (ଇଂରାଜୀ), ଭୈରବନାଥ ରୋହାଟ୍‌ଗୀ (ଅର୍ଥନୀତି), ଡଃ ସଦାଶିବ ମିଶ୍ର (ଅର୍ଥନୀତି), ଡଃ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର (ଅର୍ଥନୀତି), ଡଃ ଶ୍ରୀରାମଚନ୍ଦ୍ର ଦାଶ (ଅର୍ଥନୀତି, ରାଜନୀତି ବିଜ୍ଞାନ) । ଅଧ୍ୟକ୍ଷ ଥାଆନ୍ତି ସଚ୍ଚି ରାୟ । ସେତେବେଳେ ଏମ୍.ଆଇ.ଏଲ୍. ନଥାଏ । ଇଚ୍ଛାଧୀନ ଓଡ଼ିଆ ପଢ଼ାଉଥାନ୍ତି ରାୟବାହାଦୁର

ଆର୍ତ୍ତବଲ୍ଲଭ ମହାନ୍ତି, ଡଃ କରୁଣାକର କର, ରାମଚନ୍ଦ୍ର ମହାପାତ୍ର, ଲିଙ୍ଗରାଜ ମିଶ୍ର, ଜୟକୃଷ୍ଣ ମିଶ୍ର, ଡଃ କୁଞ୍ଜବିହାରୀ ତ୍ରିପାଠୀ । ସେତେବେଳେ ପ୍ରଫେସର ପାହିଆ ପାଉଥାନ୍ତି ଡଃ ବଳଭଦ୍ର ପ୍ରସାଦ (ରସାୟନ), ପି.ଏସ୍. ସୁନ୍ଦରମ୍, ନାରାୟଣ ମିଶ୍ର । ଦର୍ଶନଶାସ୍ତ୍ରର ଅଧ୍ୟାପକ ଥାଆନ୍ତି ବିପିନ ବିହାରୀ ରାୟ, ରତ୍ନାକର ପତି । ସେତେବେଳେ ଡ଼ି.ଏସ୍.ସି. ଉପାଧି ଲାଭ କରିଥିବା ବଳଭଦ୍ର ପ୍ରସାଦଙ୍କୁ ଛାଡ଼ିଦେଲେ ଆଉ କୌଣସି ଅଧ୍ୟାପକ ପି.ଏଚ୍.ଡ଼ି., ଡ଼ି.ଲିଟ୍ ବା ଡ଼ି.ଏସ୍.ସି. ଉପାଧି ଲାଭ କରିନଥିଲେ । ବହୁ ପରେ ପୂର୍ବୋକ୍ତ ଅଧ୍ୟାପକମାନଙ୍କ ମଧ୍ୟରୁ କେତେକ ପି.ଏଚ୍.ଡ଼ି. ଉପାଧି ଲାଭ କରିଥିଲେ ।

ଆଜିର ଶିକ୍ଷାକ୍ଷେତ୍ରର ବାତାବରଣ ଓ ସେ ସମୟର ବାତାବରଣ ମଧ୍ୟରେ ଆକାଶ-ପାତାଳ ପ୍ରଭେଦ । ଅଧ୍ୟାପକମାନେ ଥିଲେ ଛାତ୍ରଙ୍କର ଆଦର୍ଶ । ଯେ ଯେଉଁମାନର ଅଧ୍ୟାପକ ହୋଇଥାନ୍ତୁ ନା କାହିଁକି, ଆମ୍ଭମାନଙ୍କର ସେମାନଙ୍କ ପ୍ରତି ଥିଲା ଉଚ୍ଚ ସମ୍ମାନବୋଧ ଓ ସଂଭ୍ରମ । ଆମ ଦୃଷ୍ଟିରେ ସେମାନେ ଥିଲେ ଜଣେ ଜଣେ ପ୍ରକୃତ ବିଦ୍ୱାନ ବ୍ୟକ୍ତି । ଅଧ୍ୟାପକମାନେ ଉତ୍ତମ ରୂପେ ପ୍ରସ୍ତୁତ ହୋଇ କ୍ଲାସକୁ ଆସୁଥିଲେ । କୌଣସିମତେ କ୍ଲାସ୍ ପରୀକ୍ଷା କିମ୍ବା ଅନ୍ୟ କାରଣରୁ ସାଧାରଣତଃ ବନ୍ଦ ହୋଇଯିବା ସେତେବେଳେ ସ୍ୱପ୍ନର ବିଷୟ ଥିଲା । ଅଧ୍ୟାପକଙ୍କର ଅଧ୍ୟାପନା ଯେପରି ଥିଲା ଏକ ସାତ୍ତ୍ୱିକଧର୍ମ; ସେମାନଙ୍କର ଭାଷଣ ଶୁଣିବା ଛାତ୍ରଙ୍କ ପକ୍ଷରେ ଥିଲା ଗୌରବ ଓ ଆନନ୍ଦର ବିଷୟ । କୌଣସି କାରଣରୁ ଗୋଟିଏ ଅଧେ କ୍ଲାସରେ ଯୋଗଦେଇ ନ ପାରିଲେ ମନରେ ଅବଶୋଷ ରହିଯାଏ । ଶ୍ରେଣୀ ଓ ଶ୍ରେଣୀ ବାହାରେ ଯେପରି ଥିଲା ଶୃଙ୍ଖଳା, ସେହିପରି ଥିଲା ଗାମ୍ଭୀର୍ଯ୍ୟ ଓ ସମ୍ଭ୍ରମର ବାତାବରଣ ।

ଯେଉଁମାନେ ଛାତ୍ର ନେତା ହେଉଥିଲେ ସେମାନେ ଥିଲେ ଉତ୍ତମ ଓ ଆଦର୍ଶ ଛାତ୍ର । ଅବଶ୍ୟ କଲେଜ୍ ୟୁନିୟନ୍ ନିର୍ବାଚନ ହେଉଥିଲା, ପୂର୍ବରୁ ଯଥାବିଧି ମନୋନୟନ ପତ୍ର ଦାଖଲ କରାଯାଉଥିଲା, ପ୍ରତ୍ୟାହାର ମଧ୍ୟ ହେଉଥିଲା, କିନ୍ତୁ ଆଜିର ଅର୍ଥସର୍ବସ୍ୱ ପ୍ରଚାର ବୀଭତ୍ସତା ସେତେବେଳେ ନଥିଲା । ବ୍ୟକ୍ତିଗତ ଭାବରେ ପ୍ରାର୍ଥୀମାନେ ହଷ୍ଟେଲ ଓ କ୍ଲାସରେ (ଶିକ୍ଷକ ନ ଥିବାବେଳେ) ଛାତ୍ରମାନଙ୍କ ନିକଟରେ ନିଜ ନିଜର ପାର୍ଥିତ୍ୱ ସଂପର୍କରେ ନିବେଦନ କରୁଥିଲେ । ଯଦିଓ ଛାତ୍ର କଂଗ୍ରେସ ଓ ଛାତ୍ର ଫେଡ଼େରେସନ୍ ଥିଲା, କିନ୍ତୁ ଦଳଗତ ପ୍ରଚାରର ଉତ୍କଟତା, ସେଥିପାଇଁ ବିପୁଳ ଅର୍ଥ ବ୍ୟୟ, ରାଜନୈତିକ ଦଳ ସହ ସଂପର୍କ, ସେଠାରୁ ଆର୍ଥିକ ସାହାଯ୍ୟ ଏବଂ ଶ୍ରେଣୀ ଓ କଲେଜ୍‌ର କାନ୍ଥବାଡ଼ ବିକୃତ ହେବାର ଦେଖାନଥିଲା । ବର୍ତ୍ତମାନର ନିର୍ବାଚନ ଯେପରି ଭାବରେ ସକ୍ରିୟ ରାଜନୀତି ଦ୍ୱାରା ପ୍ରଭାବିତ, ସେତେବେଳେ ସେପରି ନଥିଲା । ଶାନ୍ତି ଓ ଶୃଙ୍ଖଳାର ବାତାବରଣ ମଧ୍ୟରେ ନିର୍ବାଚନ ହେଉଥିଲା, ଫଳାଫଳ ସେହି ଦିନ ଘୋଷଣା କରାଯାଉଥିଲା । ପ୍ରାର୍ଥିତ୍ୱ ପାଇଁ ପାରସ୍ପରିକ ବିଦ୍ୱେଷ, କଥା କଟାକଟି ଏପରିକି ମୁହାଁମୁହିଁ ସଂଘର୍ଷ, ମୁଥମରା, ଛୁରାଭୂଷା କଳ୍ପନାତୀତ ଥିଲା । ଆଜି ପ୍ରଚାର, ଛୁରାମରା, ହୋ-ହଲ୍ଲା, ଟ୍ରେଡ଼ ୟୁନିୟନ ମନୋଭାବ ଏତେ ପ୍ରବଳ ଯେ ଶାନ୍ତିପୂର୍ଣ୍ଣ ବାତାବରଣ ମଧ୍ୟରେ କଲେଜ୍ ୟୁନିୟନ୍ ନିର୍ବାଚନଟିଏ ହୋଇପାରିବା ଅଧ୍ୟକ୍ଷ ଓ ଅଧ୍ୟାପକଙ୍କ ପକ୍ଷରେ

ଘୋର ଚିନ୍ତାର ବିଷୟ । ନିର୍ବାଚନକୁ କେନ୍ଦ୍ର କରି କଲେଜମାନଙ୍କରେ ରାଜନୈତିକ ଦଳାଦଳି ଯେପରି ଦିନକୁଦିନ ଉତ୍କଟ ହୋଇପଡୁଛି, ସେଥିରେ ପାଠପଢ଼ା ଗୌଣ ହୋଇପଡୁଛି । ପ୍ରତ୍ୟେକ ଛୋଟ ଛୋଟ କଥାରେ କର୍ତ୍ତୃପକ୍ଷଙ୍କୁ ଧମକ, ଏଣେ ଧର୍ମଘଟ, ଅନଶନ କିଛି ନହେଲେ ଅଯୌକ୍ତିକ ଭାବରେ ଆକ୍ରମଣ ଚାଲିଛି । ଓଡ଼ିଶାର କେତୋଟି କଲେଜ୍ ଓ ଗୋଟିଏ ବିଶ୍ୱବିଦ୍ୟାଳୟର ନାମ ଶୁଣେ : ଯେଉଁଠି ଧମକଚମକ ଦିଆଯାଇ ଶିକ୍ଷକଙ୍କଠାରୁ ନମ୍ବର ଆଦାୟ କରାଯାଏ, ଧମକଚମକ ଦିଆଯାଇ ଅଧ୍ୟାପକ ଓ ରିଡ଼ର ନିଯୁକ୍ତି କରାଯାଏ । ଶ୍ରେଣୀରେ ଅଧ୍ୟାପକ ଓ ଅଧ୍ୟାପିକାଙ୍କ ପ୍ରତି ଅସମ୍ମାନଜନକ ବ୍ୟବହାର ଏକପ୍ରକାର ଚରମ ଅବସ୍ଥାକୁ ଆସିଯାଇଛି । ସେମାନଙ୍କର ମର୍ଜିର ବ୍ୟତିକ୍ରମ ଘଟିଲେ ସଶସ୍ତ୍ର ଦଳବଦ୍ଧ ହୋଇ ଆକ୍ରମଣ କରିବାପାଇଁ ସେମାନେ କୁଣ୍ଠାପ୍ରକାଶ କରନ୍ତି ନାହିଁ ।

ରେଭେନ୍ସା କଲେଜରେ ସେତେବେଳେ କେତେକ ଅଧ୍ୟାପକଙ୍କର ଖ୍ୟାତି ଆମକୁ ଛାଏଁ ଛାଏଁ ସେମାନଙ୍କ ପ୍ରତି ଆକୃଷ୍ଟ କରିଥିଲା । ସେମାନେ ହେଲେ- ବିପିନ ବିହାରୀ ରାୟ (ଦର୍ଶନ), ରତ୍ନାକର ପତି (ଦର୍ଶନ), ଆର୍ତ୍ତବଲ୍ଲଭ ମହାନ୍ତି (ସଂସ୍କୃତ ଓ ଓଡ଼ିଆ), ଡଃ ଶ୍ରୀ ରାମଚନ୍ଦ୍ର ଦାସ, ଡଃ ପ୍ରଫୁଲ୍ଲ ପତି, ବିଧୁଭୂଷଣ ଦାସ, ଡଃ ବଳଭଦ୍ର ପ୍ରସାଦ (ରସାୟନ), ଡଃ ସଦାଶିବ ମିଶ୍ର । ଏ କଲେଜର ପୂର୍ବତନ ନାମକରା ଅଧ୍ୟାପକମାନଙ୍କ ମଧ୍ୟରେ ଯୋଗେଶ ଚନ୍ଦ୍ର ରାୟ, ଲକ୍ଷ୍ମୀକାନ୍ତ ଚୌଧୁରୀ, କୃତ୍ତିବାସ ସାମନ୍ତରାୟ ପ୍ରଭୃତିଙ୍କ ନାମ ଶୁଣିବାକୁ ପାଉଁ ।

ଆଜି କଲେଜ୍ ଓ ଛାତ୍ରାବାସ ମଧ୍ୟରେ ମୁଖ୍ୟତଃ ବାର୍ଷିକ ଉତ୍ସବକାଳୀନ ଯେଉଁ ପ୍ରତିଯୋଗିତାମାନ ହୁଏ ତା'ର ମୁଖ୍ୟ ଉଦ୍ଦେଶ୍ୟ ପୁରସ୍କାର ପ୍ରାପ୍ତି । କିନ୍ତୁ ପୁରସ୍କାର ପ୍ରାପ୍ତି ଲକ୍ଷ୍ୟ ରହିଲେ ମଧ୍ୟ ସେତେବେଳେ କି ସଙ୍ଗୀତ କି ବକ୍ତୃତା ପ୍ରତିଯୋଗିତା କି କ୍ରୀଡ଼ା ତା'ର ଯେପରି ନିୟମିତ ଅଭ୍ୟାସ କରାଯାଉଥିଲା ବର୍ତ୍ତମାନ (କ୍ରୀଡ଼ାକୁ ଛାଡ଼ିଦେଲେ) ତାହା ଦେଖାଯାଏନା । ଗାଁ-ଗଣ୍ଡାର ଅପାଣିଆ ଦେବାଦେବୀଙ୍କର (ତାରିଣୀ, ମଙ୍ଗଳା, ବାସୁଳୀ ପ୍ରଭୃତି) ଆହ୍ୱାନମାନ ସମୟ ବିଶେଷରେ ଢୋଲ, ମହୁରୀ ବାଦ୍ୟରେ ଚମକି ଉଠିଲା ପରି ଏମାନଙ୍କ ପ୍ରତିଯୋଗିତା ସମୟ ବିଶେଷରେ ଜୋରରେ ଚାଲେ । କିନ୍ତୁ ସେତେବେଳେ ତର୍କ ପ୍ରତିଯୋଗିତା ଓ ସଂଗୀତ ପ୍ରତିଯୋଗିତାର ନିୟମିତ ଅଭ୍ୟାସ ଚାଲୁଥିଲା । ବେଳେବେଳେ ଉଚ୍ଚକୋଟୀର ଡ଼ିବେଟିଂ, ସାହିତ୍ୟ ଓ ସାଂସ୍କୃତିକ ସଭା, କୃତ୍ରିମ ବିଧାନସଭା ତଥା ଲୋକସଭା (Mock assembly, mock parliament) ବିଶେଷ ଶିକ୍ଷଣୀୟ ତଥା ଉପଭୋଗ୍ୟ ହେଉଥିଲା । ବେଳେବେଳେ କଲେଜ୍ ପକ୍ଷରୁ ଫାକଲ୍ଟି ନିର୍ବିଶେଷରେ ସାଧାରଣ ବୋଧଗମ୍ୟ ବିଭିନ୍ନ ବିଷୟରେ ସୁଦକ୍ଷ ଅଧ୍ୟାପକ ଓ ବକ୍ତାଙ୍କ ଦ୍ୱାରା (extramural lecture) ର ବ୍ୟବସ୍ଥା ହୋଇଥାଏ । ଏସବୁ ଶୁଣିବାପାଇଁ ବହୁ ଛାତ୍ରଙ୍କର ସମାଗମ ହୁଏ ।

ହଷ୍ଟେଲ୍ ପକ୍ଷରୁ ମଧ୍ୟ ବିଭିନ୍ନ ସମୟରେ ବିଶିଷ୍ଟ ବ୍ୟକ୍ତିଙ୍କ ଦ୍ୱାରା ବକ୍ତୃତାର ଆୟୋଜନ କରାଯାଉଥାଏ । ବିଭିନ୍ନ ଛାତ୍ରାବାସର ବାର୍ଷିକୋତ୍ସବ ଓ ଅନ୍ୟାନ୍ୟ ଉତ୍ସବମାନଙ୍କରେ

ଅନ୍ତେବାସୀମାନେ ସଂଗୀତ ପରିବେଷଣଠାରୁ ଆରମ୍ଭ କରି, ଏକାଙ୍କିକା ଓ ନାଟକ ଅଭିନୟ, ହାସ୍ୟ ଓ ବ୍ୟଙ୍ଗାତ୍ମକ ଅଭିନୟରେ ନିଜର ପ୍ରତିଭା ଓ ଆଗ୍ରହର ପରିଚୟ ଦିଅନ୍ତି, ବିଶେଷ ଭାବରେ ଜଣେ ଜଣେ ଅଧ୍ୟାପକଙ୍କର ଚାଲି, କଥନଭଂଗୀ ଓ ଚାହାଣିର ଚମତ୍କାର ଅନୁକରଣ ବେଶ ଆମୋଦ ସୃଷ୍ଟି କରେ । ସଂପୃକ୍ତ ଅଧ୍ୟାପକ ଉପସ୍ଥିତ ଥିଲେ ମଧ୍ୟ ଅନ୍ୟମାନଙ୍କ ସହ ସେ ବିଶେଷ ଆନନ୍ଦ ଉପଲବ୍ଧି କରନ୍ତି ।

ଅଧ୍ୟାପନା ସମୟରେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କ କଣ୍ଠସ୍ୱର ବହୁଦୂରକୁ ଏପରିକି କଲେଜ୍ ପାଖ ପ୍ରଧାନ ରାସ୍ତାକୁ ମଧ୍ୟ ଶୁଣାଯାଉଥିଲା । ଅଧ୍ୟାପକ ଜୟକୃଷ୍ଣ ମିଶ୍ର (ସଂସ୍କୃତ ଓ ଓଡ଼ିଆ) ଭାରୀ ସ୍ନେହୀ ଓ ଛାତ୍ରବତ୍ସଳ ଥିଲେ । ତାଙ୍କର ବକ୍ତୃତା ଛାତ୍ରମାନେ ମନ୍ତ୍ରମୁଗ୍ଧ ହୋଇ ଶୁଣନ୍ତି । ବେଳେବେଳେ ବିଦଗ୍ଧ ଚିନ୍ତାମଣି କିମ୍ବା ଭଂଜଙ୍କର ଲାବଣ୍ୟବତୀରୁ ତାଙ୍କର ଛାନ୍ଦଗାନ ଆନନ୍ଦର ବାତାବରଣ ସୃଷ୍ଟିକରେ । ଶ୍ରେଣୀରେ ଛାତ୍ରଙ୍କର ବିଶୃଙ୍ଖଳ ମନୋଭାବ ଆଜିକାଲି ପରି କ୍ୱଚିତ୍ ପରିଲକ୍ଷିତ ହେଉଥିଲା ଏବଂ ଅଧ୍ୟାପକଙ୍କର ରସବୋଧ ଶ୍ରେଣୀର ବାତାବରଣକୁ ବେଶ ଉପଭୋଗ୍ୟ କରିଥିଲା । ଅଧ୍ୟାପନା ସମୟରେ ବେଳେବେଳେ ଆଗ୍ରହୀ ଛାତ୍ର ଅଧ୍ୟାପକଙ୍କୁ ବୌଦ୍ଧିକ ପ୍ରଶ୍ନ କରୁଥିଲେ; ତା'ଦ୍ୱାରା ଅଧ୍ୟାପନାର ସ୍ରୋତ ସାମାନ୍ୟ ବ୍ୟାହତ ହେଉଥିଲେ ମଧ୍ୟ ଅଧ୍ୟାପକ କ୍ଷୁବ୍ଧ ହେବା ଦୂରେ ଥାଉ ବରଂ ଆନନ୍ଦ ପ୍ରକାଶ କରୁଥିଲେ ।

ସେତେବେଳେ କଲେଜ୍‌ରେ ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ଡକ୍ଟରେଟ୍ ଉପାଧିଧାରୀ ଅଧ୍ୟାପକ କେହି ନଥିଲେ; ହେଲେ ମଧ୍ୟ ଶିକ୍ଷା ଓ ଜ୍ଞାନାର୍ଜନ ପ୍ରତି ଛାତ୍ରମାନଙ୍କର ଯେପରି ଶ୍ରଦ୍ଧା ଥିଲା, ଅଧ୍ୟାପକମାନେ ଯେପରି ଏକାନ୍ତ କର୍ତ୍ତବ୍ୟନିଷ୍ଠ ଥିଲେ ଏବଂ ଅଧ୍ୟାପନା ପ୍ରସ୍ତୁତି, ଜ୍ଞାନାର୍ଜନରେ ସେମାନଙ୍କର ଗଭୀର ଶ୍ରଦ୍ଧା ଓ ଆଚରଣରେ ଉଚ୍ଚାଦର୍ଶ ଲକ୍ଷିତ ହେଉଥିଲା, ବର୍ତ୍ତମାନ ତାହା କ୍ୱଚିତ୍ ପରିଲକ୍ଷିତ ହୁଏ ।

ପନ୍ଦର ଦିନ ଧରି ସାଇନ୍‌ସ କ୍ଲାସରେ ଯୋଗଦେବା ପରେ ବିଜ୍ଞାନ ପ୍ରତି ଆଗ୍ରହ ପ୍ରକାଶ ପାଇଲା ନାହିଁ । ବେଙ୍ଗ (Toad), ଡିସେକ୍‌ସନ, ସୋଲାମଞ୍ଜି ପରିଚିତି ଓ କାଚନଳୀ ବକ୍ରୀକରଣ (Glass bending) ସଂପର୍କରେ ଦୁଇ ତିନୋଟି ପ୍ରାକ୍‌ଟିକାଲ୍ କ୍ଲାସରେ ଯୋଗ ଦେଇ ଏବଂ ଫିଜିକ୍‌ସ ପ୍ରାକଟିକାଲ୍‌ରେ ଅଧ୍ୟାପକ ରାଧାଶ୍ୟାମ ଦାସଙ୍କଠାରୁ ଗାଳିଖାଇ ଶେଷରେ ବିଜ୍ଞାନ ଛାଡ଼ି କଳାବିଭାଗରେ ଅଧ୍ୟୟନ ପାଇଁ ଦରଖାସ୍ତ କଲି । କଳାବିଭାଗରେ ମୋର ମନୋମତ ବିଷୟ ନପାଇ ଅର୍ଥନୀତି, ଗଣିତ ଓ ଶିକ୍ଷା ବିଷୟ ନେଲି । ସଂସ୍କୃତ ଓ ମନସ୍ତତ୍ତ୍ୱରେ ସେତେବେଳକୁ ସ୍ଥାନ ଖାଲି ନଥିଲା । ବିଷୟ ନିର୍ବାଚନରେ ମୂଳରୁ ମୋର ଅସନ୍ତୋଷ ରହିଗଲା । ଗଣିତ ଅନୁଶୀଳନରେ ନିୟମିତ ନ ହେବାରୁ Stastics, Dynamics, Calculus, Trigonometry ଅପେକ୍ଷାକୃତ ଭଲ ଲାଗୁଥିଲେ ମଧ୍ୟ Algebra ପ୍ରଭୃତି କେତୋଟି ବିଷୟ ମୋତେ କଷ୍ଟକର ବୋଧ ହେଲା । ଫଳରେ ଗଣିତରେ ଆଶାନୁରୂପ ନମ୍ବର ରଖିପାରିଲି ନାହିଁ ।

ସେ ସମୟରେ ଛାତ୍ରନେତାଙ୍କ ମଧ୍ୟରେ ମନମୋହନ ମିଶ୍ର, ଗଂଗାଧର ରଥ, ବୈଦ୍ୟନାଥ ମିଶ୍ର, ବାମନମୂର୍ତ୍ତି ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ନାମ ଉଲ୍ଲେଖଯୋଗ୍ୟ । ବୀରେନ୍ ମିତ୍ର ସେତେବେଳେ ଛାତ୍ରନେତାଙ୍କ ସହ ସଂପର୍କ ରଖିଥାନ୍ତି । ଛାତ୍ର ମହଲରେ ନେତୃତ୍ୱ ପାଇଁ କେହି କେହି ଦୁଇ ବର୍ଷରୁ ଅଧିକ କାଳ ମଧୁସୂଦନ ଲ' କଲେଜର ଛାତ୍ର ହୋଇ ରହିଥାନ୍ତି । ମନମୋହନ ମିଶ୍ର କମ୍ୟୁନିଷ୍ଟ ଛାତ୍ରନେତା ଥିଲେ । ସେ ଥିଲେ ଜଣେ ବାଗ୍ମୀ । ଦୀର୍ଘକାଳ ଧରି ତାଙ୍କ ବକ୍ତୃତାରେ ଶ୍ରୋତାମାନଙ୍କୁ ମୁଗ୍ଧ କରିପାରୁଥିଲେ ।

ପରବର୍ତ୍ତୀ କାଳରେ ଦୀର୍ଘକାଳ ଧରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିବା ଜାନକୀବଲ୍ଲଭ ପଟ୍ଟନାୟକ ସେତେବେଳେ ଥିଲେ ଅନ୍ୟତମ ଛାତ୍ରନେତା । ଆମେ ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କରୁଥାଉଁ । ବାର୍ଷିକ ପରୀକ୍ଷା ନିକଟବର୍ତ୍ତୀ । ଦେଶ ସ୍ୱାଧୀନ ହୋଇନଥାଏ । ଏହି ସମୟରେ ଖେଳପଡ଼ିଆରେ ବ୍ରିଟିଶ୍ ୟୁନିୟନ ଜାକ ଫ୍ଲାଗକୁ (Union Jack Flag) କେନ୍ଦ୍ର କରି ଭୟଙ୍କର ଛାତ୍ର ଆନ୍ଦୋଳନ ଦେଖାଯାଇଥିଲା । ଯେଉଁଠି ୟୁନିୟନ ଜାକ୍ ପତାକା ଉଡୁଥିଲା, କେତେକ ଛାତ୍ର ତାହା କାଢ଼ି ଫ୍ଲାଗ୍ ପୋଷ୍ଟରେ ଜାତୀୟ ପତାକା (National Flag) ଉଡ଼ାଇଥିଲେ । ବ୍ରିଟିଶ ସରକାର ଅମଳ ହୋଇଥିବାରୁ ଏଇ ଘଟଣାକୁ କେନ୍ଦ୍ର କରି ଭୟଙ୍କର ଛାତ୍ର ଅଶାନ୍ତି ଘଟିଲା ଏବଂ ପଶ୍ଚିମ ଛାତ୍ରାବାସ ଥିଲା ଛାତ୍ର-ଧର୍ମଘଟର କେନ୍ଦ୍ରସ୍ଥଳ । ହଷ୍ଟେଲ ଛାଡ଼ି ଚାଲିଯିବା ପାଇଁ ବୋର୍ଡ଼ରମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲେ ମଧ୍ୟ କୌଣସି ବୋର୍ଡ଼ର ଯାଇନଥିଲେ, ବରଂ ଛାତ୍ରଙ୍କ ପକ୍ଷରୁ ପଶ୍ଚିମ ଛାତ୍ରାବାସ ହୋଇଥିଲା West Hostel Sovereign Republic ଏବଂ ଏହି ନାମରେ ହଷ୍ଟେଲ ସମ୍ମୁଖରେ ଏକ ବ୍ୟାନର ଲଗାଯାଇଥିଲା । ଏଇ ଆନ୍ଦୋଳନରେ ଚତୁର୍ଥ ବାର୍ଷିକ ଶ୍ରେଣୀ ଛାତ୍ର ଜାନକୀବଲ୍ଲଭ ପଟ୍ଟନାୟକ ନେତୃତ୍ୱ ନେଇଥିଲେ । ଜାନକୀବାବୁ ସେତେବେଳେ ଥିଲେ ଜଣେ ଭଲ ଛାତ୍ର । ବି.ଏ.ରେ ତାଙ୍କର ସଂସ୍କୃତ ଅନର୍ସ ଓ ଇତିହାସ ପାଶ୍ ଥିଲା । ସେଥିଲେ ଭାରୀ ଶାନ୍ତ, ଗମ୍ଭୀର ଓ ସ୍ନେହୀ ସ୍ୱଭାବର ଛାତ୍ର । ବର୍ତ୍ତମାନର ଛାତ୍ରନେତାଙ୍କ ପରି ସେ କେବେ ବାକ୍‌ଚାତୁର୍ଯ୍ୟ ଓ ପ୍ରଗଳ୍‌ଭତା ପ୍ରକାଶ କରୁନଥିଲେ । ଛାତ୍ର ଆନ୍ଦୋଳନ ଅତି ଗୁରୁତର ଆକାର ଧାରଣ କରିଥିଲା । ଆନ୍ଦୋଳନକାରୀଙ୍କର ଏକ ଶୋଭାଯାତ୍ରା କଲେକ୍ଟରେଟ୍ ପର୍ଯ୍ୟନ୍ତ ଯାତ୍ରା କରିଥିଲା । ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ଡକ୍ଟର ହରେକୃଷ୍ଣ ମହତାବଙ୍କ ବିଚକ୍ଷଣ ବିଚାରଶୀଳତା ହେତୁ ଛାତ୍ର ଆନ୍ଦୋଳନର ଅବସାନ ଘଟେ । ଶ୍ରୀ ପଟ୍ଟନାୟକ ଏଲାହାବାଦ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଏମ୍.ଏ. ପାଶ୍ କରି ମହତାବଙ୍କ ଅନୁରୋଧରେ ପ୍ରଜାତନ୍ତ୍ରର ସଂପାଦକ ଭାବରେ ଯୋଗଦାନ କରନ୍ତି ।

ଆମର ଆଇ-ଏ. ଶ୍ରେଣୀରେ ଅଧ୍ୟୟନ କାଳରେ ମ୍ୟୁନିସିପାଲିଟି ନିର୍ବାଚନ (?) ଚାଲିଥାଏ । କଲେକ୍ଟରେଟ୍ ପାଖରେ ପୋଲିଂ ଷ୍ଟେସନ ହୋଇଥାଏ । ପ୍ରଚାର ପାଇଁ ନାନା କୌତୁକପୂର୍ଣ୍ଣ ଉପାୟ ଅବଲମ୍ବନ କରାଯାଇଥାଏ । ମନେଅଛି : ଜଣେ କେନ୍ଦରାବାଲା ମଜା ଗୀତଗାଇ ଉଦ୍ଦିଷ୍ଟ ପ୍ରାର୍ଥୀ ସଂପର୍କରେ ପ୍ରଚାର କରୁଥାଏ ।

ଓଡ଼ିଶା ପାଇଁ ସ୍ୱତନ୍ତ୍ର ଆସେମ୍ବ୍ଲି ହଲ୍ ଓ ସେକ୍ରେଟେରିଏଟ୍ ହୋଇନଥାଏ । ସେତେବେଳେ ରେଭେନ୍ସା କଲେଜର ପ୍ରକାଣ୍ଡ ହଲ୍‌ରେ ବିଧାନସଭା କାର୍ଯ୍ୟ ଚାଲିଥାଏ । ଆସେମ୍ବ୍ଲି ହଲର ବାଲ୍‌କନିରେ କେତେବାର ଆସେମ୍ବ୍ଲିର କାର୍ଯ୍ୟକଳାପ ଲକ୍ଷ୍ୟ କରିଛୁଁ । ସେଇ ହଲ୍‌ରେ ଭୁବନେଶ୍ୱରକୁ ରାଜଧାନୀ କରିବା ବିଲ୍ ଉପସ୍ଥାପିତ ହୁଏ ଏବଂ ଅନ୍ୟମାନଙ୍କର ବିରୋଧ ଓ ଡଃ ମହତାବଙ୍କର ବଳିଷ୍ଠ ବ୍ୟକ୍ତିତ୍ୱପୂର୍ଣ୍ଣ ଯୁକ୍ତି ହେତୁ ଭୁବନେଶ୍ୱରରେ ରାଜଧାନୀ ହେବା ସ୍ଥିରୀକୃତ ହୁଏ । ସେତେବେଳେ ଯେଉଁମାନେ ମନ୍ତ୍ରୀଥିଲେ ସେମାନଙ୍କର ନାମ- ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ରାଧାକୃଷ୍ଣ ବିଶ୍ୱାସରାୟ, ଗୋଦାବରୀଶ ମିଶ୍ର, ନୀଳମଣି ରାଉତରାୟ (ଉପମନ୍ତ୍ରୀ) ।

ସେଇ ଆସେମ୍ବ୍ଲି ହଲ୍‌ରେ ଓଡ଼ିଶାର କେତେ ଐତିହାସିକ ଘଟଣା ଘଟିଯାଇଛି । ସ୍ୱାଧୀନତା ପରେ ଜିଲାଗୁଡ଼ିକ ସହ ଗଡ଼ଜାତର ମିଶ୍ରଣ ସଂପର୍କରେ ସେଠାରେ ଭୂମିକା ପ୍ରସ୍ତୁତ ହୋଇଯାଇଛି । ଭାରତର ପ୍ରତିରକ୍ଷାମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଡଃ ମହତାବଙ୍କ ଆମନ୍ତ୍ରଣ କ୍ରମେ କଟକ ଆସିଥାନ୍ତି । ଲୌହମାନବ ସର୍ଦ୍ଦାର ପଟେଲଙ୍କର ବ୍ୟକ୍ତିତ୍ୱ ନିକଟରେ ରାଜାମାନଙ୍କର ପିତ୍ତ କେତେ ? ଆଖିରେ ଦେଖିଛି : ଡଃ ମହତାବ ଆସେମ୍ବ୍ଲି ହଲ୍‌ରେ ମିଶ୍ରଣ ସପକ୍ଷରେ ସ୍ୱୀକୃତି ଦେବାପାଇଁ ରାଜାମାନଙ୍କୁ ବୁଝାଉଥାନ୍ତି । ବହୁ ରାଜା ପରିସ୍ଥିତିର ଗୁରୁତ୍ୱ ଉପଲବ୍ଧି କରି ସମ୍ମତି ଦେବା ସତ୍ତ୍ୱେ ଜଣେ ଦୁଇଜଣ ରାଜା ସମ୍ମତି ଦେବାରେ କୁଣ୍ଠାପ୍ରକାଶ କରୁଥାନ୍ତି । ଶେଷରେ ଧମକ ଖାଇ ସମ୍ମତି ପ୍ରକାଶ କରନ୍ତି ଏବଂ ମୟୂରଭଞ୍ଜ ରାଜା ବର୍ଷକ ପରେ ମୟୂରଭଞ୍ଜକୁ ଓଡ଼ିଶା ସହ ମିଶ୍ରଣ ସଂପର୍କରେ ସମ୍ମତି ପ୍ରଦାନ କରନ୍ତି ।

ଲର୍ଡ଼ ମାଉଣ୍ଟବାଟେନ୍‌ଙ୍କ ପରେ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ୍ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ମହତାବଙ୍କ ନିମନ୍ତ୍ରଣ କ୍ରମେ କଟକ ଆସିଥିଲେ ଏବଂ ପ୍ରଧାନମନ୍ତ୍ରୀ ଜବାହରଲାଲ ମଧ୍ୟ ଆସିଥିଲେ । କିଲ୍ଲାମଇଦାନରେ ମୁଁ ନେହେରୁଙ୍କର ବକ୍ତୃତା ଶୁଣିବାର ସୁଯୋଗ ପାଇଛି ।

ପ୍ରଥମ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କାଳରେ ମହାତ୍ମାଗାନ୍ଧୀ ବ୍ରହ୍ମପୁର ଆସୁଥାନ୍ତି । କଟକ ଷ୍ଟେସନ ଦେଇ ଯାତ୍ରାକଲାବେଳେ ରାତି ଅଧରେ ତାଙ୍କର ଦର୍ଶନ ପାଇଁ କଟକ ଷ୍ଟେସନକୁ ବହୁ ନେତା, ଛାତ୍ର ଓ ଜନସାଧାରଣ ଯାଇଥାନ୍ତି । ମୁଁ ଅବଶ୍ୟ ଦେଖିବାର ସୁଯୋଗ ପାଇପାରିଲି ନାହିଁ । ଗାଡ଼ି ପହଞ୍ଚିଲାମାତ୍ରେ କୌଣସି ନେତା 'ବାପୁଜୀ କାହାଁଚି, ବାପୁଜୀ କାହାନ୍ତି' ବୋଲି ପାଟିକରି ଡ଼ବାରେ ଉଠୁଥିବାବେଳେ ମହାତ୍ମା କ୍ଷୁବ୍ଧ ହୋଇ କୁଆଡ଼େ କହିଥିଲେ- 'ଯିତ୍‌ନା ବଡ଼ା ନେତା ହୋନେସେ ଉଁହାସେ ନିକାଲ୍‌ଯାଓ' । ବାର୍ଦ୍ଧକ୍ୟରେ ମଧ୍ୟ ସମଗ୍ର ଦେଶର ସେବା କରୁଛନ୍ତି, ରାତିରେ ବିଶ୍ରାମ ନେଇ ଆସୁଥିବାବେଳେ ତାଙ୍କର ସ୍ୱାଭାବିକ ନିଦ୍ରା ଭଂଗ ହେବାରୁ ସ୍ୱାସ୍ଥ୍ୟ ଦୃଷ୍ଟିରୁ ସେ କ୍ଷୋଭ ପ୍ରକାଶ କରିଥିଲେ । ବହୁଲୋକ ମହାତ୍ମାଙ୍କର ପୂର୍ଣ୍ଣ ଦର୍ଶନ ଓ ବକ୍ତୃତା ଶୁଣିବାପାଇଁ ଆଗରୁ ବ୍ରହ୍ମପୁର ଯାତ୍ରା କରିଥିଲେ ।

ପଶ୍ଚିମ ଛାତ୍ରାବାସକୁ ଲାଗି ରେଭେନ୍ସା-ସୌଧର ଦକ୍ଷିଣପାଖ ଉପର ମହଲାରେ ୩୭ ନଂ ରୁମରେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ୍ ହେଉଥାଏ । ପଣ୍ଡିତ ଗୋଦାବରୀଶ ମିଶ୍ର ଥାଆନ୍ତି ଶିକ୍ଷାମନ୍ତ୍ରୀ । ତାଙ୍କରି ଚେଷ୍ଟାରେ ଓଡ଼ିଶାରେ ପ୍ରଥମ କରି ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୁଏ । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ରେଜିଷ୍ଟ୍ରାର ଥିଲେ ଭି.ଭି. ଜନ୍ (ରେଭେନ୍ସାର ଅନ୍ୟତମ ଇଂରାଜୀ ଅଧ୍ୟାପକ) । କିଛିକାଳ ପରେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ୍ ବର୍ତ୍ତମାନ କୋଠିକୁ ସ୍ଥାନାନ୍ତରିତ ହୁଏ, ଯେଉଁଠି ବର୍ତ୍ତମାନ ମଧୁସୂଦନ ଲ' କଲେଜ୍ ପ୍ରତିଷ୍ଠିତ ହୋଇଛି । ୧୯୪୬ ମସିହାରେ ଆସେମ୍ବ୍ଲି ହଲ୍‌ରେ ଉତ୍କଳ ବିଶ୍ୱବିଦ୍ୟାଳୟର କନ୍‌ଭୋକେସନ୍ ଅନୁଷ୍ଠିତ ହେବାର ଦେଖିଛି । ଆମର ଇଂରାଜୀ ଅଧ୍ୟାପକ ଶ୍ରୀମତ ସାହୁ ସେତେବେଳେ ଏମ୍.ଏ. ଡିଗ୍ରୀ ଆଣିବାର ଲକ୍ଷ୍ୟ କରିଛି । ସେତେବେଳେ ଚାନ୍‌ସେଲର (କୁଳାଧିପତି) ଥାଆନ୍ତି ଗଭର୍ଣ୍ଣର ଚାନ୍ଦୁଲାଲ ତ୍ରିବେଦୀ । କଲେଜ୍‌ରେ ସେତେବେଳେ A.R.P. (Air Red Precaution) ଓ N.C.C. (National Cadet Corps) ଆରମ୍ଭ ହେଉଥାଏ । ସ୍ୱେଚ୍ଛାକୃତ ଭାବରେ ଛାତ୍ରମାନେ ସେଥିରେ ଯୋଗ ଦେଉଥିଲେ ।

କଲେଜ୍ ନାଟ୍ୟସଂସଦ (Dramatic Society) ପକ୍ଷରୁ ବାର୍ଷିକ ନାଟ୍ୟାଭିନୟ ଗୋଟାଏ ସମସ୍ୟା ନଥିଲା । ଶୃଙ୍ଖଳାର ସହ ଆସେମ୍ବ୍ଲି ହଲ୍‌ରେ ନାଟକ ଅଭିନୀତ ହୁଏ । ଛାତ୍ର ଓ ଅଧ୍ୟାପକମାନେ ବିଭିନ୍ନ ଭୂମିକାରେ ଅଭିନୟ କରନ୍ତି ପୁଣି ପୁରୁଷ ପିଲାମାନେ ସ୍ତ୍ରୀ ଭୂମିକାରେ  ଅବତୀର୍ଣ୍ଣ ହୁଅନ୍ତି । ଥରେ କାଳୀଚରଣ ପଟ୍ଟନାୟକଙ୍କର ଅଭିଯାନ ନାଟକ ଅଭିନୀତ ହୋଇଥିଲା ଯେଉଁଥିରେ ଆମ ଅଧ୍ୟାପକ ରାଜକିଶୋର ରାୟ 'ପୁରୁଷୋତ୍ତମଦେବ' ଭୂମିକାରେ, ଦ୍ୱାରିକାନାଥ ସାମନ୍ତରାୟ (ଆମର ସହପାଠୀ) ପଦ୍ମାବତୀ ଭୂମିକାରେ ଅଭିନୟ କରିଥିଲେ । ଛାତ୍ରମାନେ ଆନନ୍ଦର ସହ ଅଭିନୟ ଉପଭୋଗ କରନ୍ତି । ରଂଗମଞ୍ଚରୁ ଅଧ୍ୟାପକ ଓ ଛାତ୍ରଙ୍କ ପକ୍ଷରୁ ବିଭିନ୍ନ ଅଭିନେତାଙ୍କ ପାଇଁ ମେଡ଼ାଲ ଘୋଷଣା କରାଯାଏ । କେହି କେହି ପ୍ରେକ୍ଷାଳୟରୁ ଥଟ୍ଟା କରି କହନ୍ତି- 'ମେଡ଼ାଲ୍ ଦେଖାନ୍ତୁ' । ଏଥିରେ ହଲ୍‌ସାରା ହାସ୍ୟରୋଳ ଖେଳିଯାଏ ।

ମେଟ୍ରିକ୍ ଅଧ୍ୟୟନ କାଳରେ 'ଛାତ୍ର ସହଚର' ପୁସ୍ତକ ମନରେ ଯେଉଁ ନୈତିକ ଓ ଆଧ୍ୟାତ୍ମିକ ଚେତନା ସଞ୍ଚାର କରିଥିଲା ତା'ର ବିକାଶ ଲକ୍ଷିତ ହୋଇଥିଲା ଆଇ.ଏ. ଅଧ୍ୟୟନ କାଳରେ । ଅଧ୍ୟୟନ କାଳରେ ମୁଁ ତିନିଜଣ ସହପାଠୀ ପାଇଥିଲି ଯେଉଁମାନେ ଥିଲେ ସମଧର୍ମା, ଅଧ୍ୟାତ୍ମ-ଲିପ୍ସୁ । ସେମାନେ ହେଲେ ଆମ ଓସ୍ତପାଳର କୈଳାସଚନ୍ଦ୍ର ରାଉତ, ପଶ୍ଚିମ ଓଡ଼ିଶାର (ବଲାଙ୍ଗିରର) ଦେବେନ୍ଦ୍ର କୁମାର ମୁଣ୍ଡ ଏବଂ ମୟୂରଭଞ୍ଜର କୁଆମରା ନିକଟବର୍ତ୍ତୀ ଆଗଡ଼ା ଗ୍ରାମର ନରେନ୍ଦ୍ର ମୋହନ ବେହେରା । ନରେନ୍ଦ୍ର ବେହେରା (ମୋର ପ୍ରିୟ ଡାକ 'ନରିଭାଇନା') ଥିଲେ ଅଲେଖ ଦୀକ୍ଷାଧାରୀ । ବିଭିନ୍ନ ମହାପୁରୁଷଙ୍କ ଜୀବନୀ ଓ ସାଧୁସନ୍ଥଙ୍କ ଗ୍ରନ୍ଥ ଅଧ୍ୟୟନରେ ତାଙ୍କର ଆନ୍ତରିକ ଶ୍ରଦ୍ଧା ମୋତେ ତାଙ୍କ ଆଡ଼କୁ ବେଶି ଆକର୍ଷଣ କରିଥିଲା । ନରିଭାଇନା

ଅଲେଖ ଧର୍ମରେ ଦୀକ୍ଷିତ ହୋଇଥିବାରୁ ମୁଁ, କୈଳାସ ଓ ଦେବେନ୍ଦ୍ର ଋଷିକେଶର (ମୁନିକିରେତି) ବିଶ୍ୱ ପ୍ରସିଦ୍ଧ ସନ୍ନ୍ୟାସୀ ମଣ୍ଡଳେଶ୍ୱର ସ୍ୱାମୀ ଶିବାନନ୍ଦଙ୍କର ଶିଷ୍ୟ ହୋଇଥିଲୁଁ । ତାଙ୍କ ସହ ପତ୍ରାଳାପ ଫଳରେ ତାଙ୍କଠାରୁ ଯୋଗାସନ ପୁସ୍ତକ (Essence of Yoga) ଓ ତୁଳସୀମାଳା ପାଇଥିଲୁଁ । ହଷ୍ଟେଲ୍‌ରେ ଥିବାବେଳେ ସମୟେ ସମୟେ ମହାପୁରୁଷଙ୍କ (ବିଶେଷତଃ ସ୍ୱାମୀ ଶିବାନନ୍ଦ, ନିଗମାନନ୍ଦ, ବିବେକାନନ୍ଦ) ଗ୍ରନ୍ଥ ଅଧ୍ୟୟନ ସହ ଆଧ୍ୟାତ୍ମିକ ଚର୍ଚ୍ଚା କରୁଁ । ଏ ଚର୍ଚ୍ଚା ପ୍ରାଣବନ୍ତ ହୁଏ ଯେତେବେଳେ ଆମେ ସାଢ଼େ ଚାରି ବା ପାଞ୍ଚଟାବେଳେ କଟକର ବିଭିନ୍ନ ମଠ ଓ ମନ୍ଦିର ଦର୍ଶନ କରୁଁ । ସ୍ୱାମୀ ଶିବାନନ୍ଦଙ୍କ ପୁସ୍ତକ ମଧ୍ୟରେ Practice of Brahmacharya (ବ୍ରହ୍ମଚର୍ଯ୍ୟ ସାଧନା), Vedanta in Daily life (ଦୈନନ୍ଦିନ ଜୀବନରେ ବେଦାନ୍ତ), Lives of Saints (ସନ୍ଥ ଜୀବନୀ), Kundalini Yoga (କୁଣ୍ଡଳିନୀ ଯୋଗ) ମୋର ଅତ୍ୟନ୍ତ ପ୍ରିୟଥିଲା । ଶିବାନନ୍ଦଙ୍କର ସରଳ ଓ ଶକ୍ତିଶାଳୀ ବାକ୍ୟ ଆମର ଯୁବ ଚିତ୍ତକୁ ସଂକ୍ରମିତ କରିଯାଏ । ତାଙ୍କର ସେଇ ଶକ୍ତିଶାଳୀ ଲେଖା ପ୍ରଭାବରେ ମୋର ମନେ ହେଉଥିଲା : ସନ୍ନ୍ୟାସୀ ଜୀବନ ହିଁ ପ୍ରକୃତ ଜୀବନ । ଏ ଅନୁଭବକୁ ମୁଁ ଆଦିଶଙ୍କରଙ୍କର 'କୌପୀନବନ୍ତଃ ଖଳୁଭାଗ୍ୟବନ୍ତଃ' ବାକ୍ୟ ସହ ମିଳାଇ ମୁଗ୍ଧ ହୋଇଛି । ମୁହୂର୍ତ୍ତେ ମାତ୍ର ଭଗବଦ୍ ନାମ ଉଚ୍ଚାରଣ ଓ ସ୍ମରଣକୁ ଭୁଲିଯିବା ମଣିଷ ପକ୍ଷରେ ବଡ଼ ଦୁର୍ଭାଗ୍ୟ । ସେଇ ମହାତ୍ମାଙ୍କର ଦିବ୍ୟ ପ୍ରେରଣାରେ ପ୍ରଚୋଦିତ ହୋଇ ପ୍ରତ୍ୟହ ପ୍ରତ୍ୟୁଷ ଓ ସଂଧ୍ୟାକାଳୀନ ପ୍ରକୃତି, ଆକାଶର ବର୍ଣ୍ଣିଳ ବିଚିତ୍ର ମେଘଖଣ୍ଡ ଏବଂ ଦୂର ଓ ନିକଟସ୍ଥ ବୃକ୍ଷବଲ୍ଲୀରେ ଭଗବାନଙ୍କର ବିଚିତ୍ର ଲୀଳାର ମାଧୁର୍ଯ୍ୟ ଆସ୍ୱାଦନ କରେଁ ।

କଟକରେ ବିଭିନ୍ନ ସମୟରେ ଯେତେ ଧର୍ମ ସଂପର୍କୀୟ ଅନୁଷ୍ଠାନ ହୁଏ, ସେଗୁଡ଼ିକର ଯୋଗଦାନ କରି ଅପୂର୍ବ ଆନନ୍ଦ ଅନୁଭବ କରୁଁ । ମୋର ମନେ ଅଛି : ଯୋବ୍ରାରେ ନିଗମାନନ୍ଦଙ୍କର ଭକ୍ତମେଳା ଅନୁଷ୍ଠିତ ହେଉଥିଲା । ସେଠାରେ ଯୋଗଦେଇ ନିଗମାନନ୍ଦଙ୍କର ଜ୍ଞାନୀଗୁରୁ, ଯୋଗୀଗୁରୁ, ତାନ୍ତ୍ରିକଗୁରୁ, ପ୍ରେମିକଗୁରୁ ଓ ଅନ୍ୟାନ୍ୟ ବହି କିଣି ଏକ ନିଃଶ୍ୱାସକେ ପଢ଼ିଯାଉଁ । ନିଗମାନନ୍ଦଙ୍କର ଭକ୍ତ ଶିଷ୍ୟଙ୍କ ମଧ୍ୟରେ 'ଗୁରୁଭାଇ' ସମ୍ବୋଧନ ମନରେ ଭାରୀ ଆନନ୍ଦ ଆଣେ । ମହାପୁରୁଷଙ୍କ ପ୍ରଭାବ ଫଳରେ ଛାଏଁ ଛାଏଁ ଆମିଷ ଭୋଜନ ତ୍ୟାଗ କରେଁ । ନରିଭାଇନା ଆଇ.ଏ.ରେ ସଂସ୍କୃତ, ତର୍କଶାସ୍ତ୍ର (Logic) ଓ ଶିକ୍ଷା ବିଷୟ ନେଇଥିଲେ । ସେ ସଂସ୍କୃତ ନେଇଥିବାରୁ ମୁଁ ତାଙ୍କୁ ବେଳେବେଳେ ଭାଗ୍ୟବାନ ମନେ କରେଁ ।

ନରିଭାଇନା ବଡ଼ ସରଳ ଓ ଅମାୟିକ ପ୍ରକୃତିର । ବେଳେବେଳେ ଅଲେଖ ଦୀକ୍ଷା ଗ୍ରହଣ କରିଥିବା ତାଙ୍କର ଜଣେ ଦାଦାଙ୍କ (କକା) କଥା କହି ହସାନ୍ତି । ନରିଭାଇନା ଯେତେବେଳେ ଛୁଟିରେ ଗାଁକୁ ଯାଆନ୍ତି, ତାଙ୍କର ଦାଦା କୌତୂହଳୀ ହୋଇ ତାଙ୍କ ପଢ଼ା ବିଷୟରେ ପଚାରନ୍ତି । ପଢ଼ା ବିଷୟ କହୁଁ କହୁଁ ଧର୍ମକଥା ମଧ୍ୟ କହିଯା'ନ୍ତି । ଧର୍ମକଥା କହିଲା ବେଳେ ତାଙ୍କର ଦାଦା କହନ୍ତି- ଏଗୁଡ଼ା ସବୁ ଜଣା, ଆଉ କ'ଣ ଜାଣିଛୁ, କହ ।

ମନେଅଛି : ନରିଭାଇନା ଓ ମୁଁ ଦୁହେଁ ଥରେ ପୁରୀ ଯାଇଥିଲୁଁ । ସମୁଦ୍ରରେ ସ୍ନାନ

ସାରି ପୁରୀ କଲେଜ୍ ହଷ୍ଟେଲ୍‌ର ମଧୁର ଜଳରେ ସ୍ନାନ କଲୁଁ ଏବଂ ଜଗନ୍ନାଥ ମନ୍ଦିର ଆଡ଼େ ବୁଲିଗଲୁଁ । ମୁଁ ହାଫ୍‌ପେଣ୍ଟ ପିନ୍ଧିଥାଏ; ନରିଭାଇନା ଧୋତି, ସାର୍ଟ ପିନ୍ଧିଥାନ୍ତି । ଦୁହେଁ ମନ୍ଦିର ବେଢ଼ା ପ୍ରଦକ୍ଷିଣ କଲାବେଳେ ପଣ୍ଡାଙ୍କର ଦୌରାତ୍ମ୍ୟରେ ବିରକ୍ତ ହୋଇଉଠୁଁ । ଜଣେ ପଣ୍ଡା ଆମଠାରୁ କିଛି ନ ପାଇ କିରସ୍ତାନ ବୋଲି କହି ପୁରୀର ପ୍ରଚଳିତ ଭାଷାରେ ଗାଳି ଦିଏ । ମନ୍ଦିର ଭଲ ଭାବରେ ପ୍ରଦକ୍ଷିଣ କରି ସମୁଦ୍ରତୀର ଓ ଅନ୍ୟାନ୍ୟ ସ୍ଥାନ ବୁଲି ସାକ୍ଷୀଗୋପାଳ ଆସିଲୁଁ । ସାକ୍ଷୀଗୋପାଳ ଦର୍ଶନ ସାରି ବକୁଳବନର ଉଚ୍ଚବିଦ୍ୟାଳୟକୁ ଗଲୁଁ । ସେଠାରେ ଆମର ପରିଚୟ ପାଇ ପିଲାମାନେ ବେଶ ଆଦର ଅଭ୍ୟର୍ଥନା କଲେ । ରାତିରେ ହଷ୍ଟେଲରେ ରହି ସକାଳେ କଟକ ଫେରିଆସିଲୁଁ ।

ନରିଭାଇନା ବାରିପଦା ଏମ୍.ପି.ସି. କଲେଜରୁ ଅବସର ଗ୍ରହଣ କଲେଣି । ଶାନ୍ତିନିକେତନରୁ ଓଡ଼ିଆରେ ଏମ୍.ଏ. ପାଶ କରିବା ପରେ ବି.ଇଡ଼ି. ପାଶ୍ କଲେ । ହାଇସ୍କୁଲ୍ ଶିକ୍ଷକତା ଓ ପରେ ମୟୂରଭଞ୍ଜରେ ସ୍କୁଲ୍ ସବ୍‌ଇନ୍‌ସ୍‌ପେକ୍ଟର ଭାବରେ ନିଯୁକ୍ତି ପାଇଥିଲେ । ମୋର ଅନୁରୋଧ ରକ୍ଷାକରି ଭଦ୍ରକ କଲେଜ୍‌ର ସେକ୍ରେଟାରୀ ଆଡ୍‌ଭୋକେଟ ନରେନ୍ଦ୍ର ପ୍ରସାଦ ଦାସ (ନରୁବାବୁ) ନରିଭାଇଙ୍କୁ କଲେଜ୍‌ର ଓଡ଼ିଆ ଅଧ୍ୟାପକ ଭାବରେ ନିଯୁକ୍ତି ପ୍ରଦାନ କଲେ । ମୋର ସମଧର୍ମା ଅନ୍ତରଂଗ ବନ୍ଧୁଭାବରେ ତାଙ୍କୁ ଅନୁସଂଧାନ ଦିଗରେ ସାହାଯ୍ୟ କରି ପାରିଥିବାରୁ ମନରେ ଭାରୀ ଆନନ୍ଦ ଅନୁଭବ କରେଁ ।

ମୋର କଲେଜ୍‌ର ପ୍ରଥମ ବର୍ଷ (୧୯୪୫) କାଠଯୋଡ଼ୀ ନଦୀରେ ଭୟଙ୍କର ବନ୍ୟା ହେବାରୁ ଖାନନଗର ପାଖ ନଦୀ ବନ୍ଧରେ ଘଳିଆ ପଡ଼ିଥାଏ । ମନେଅଛି : ଆମ ଛାତ୍ରାବାସ ଓ ପୂର୍ବ ଛାତ୍ରାବାସର ଅନ୍ତେବାସୀମାନେ କାଠଯୋଡ଼ୀ ବନ୍ଧରେ ବାଲିବସ୍ତା ପକାଇ ଘଳିଆ ବନ୍ଦ କରିଥିଲୁଁ ।

କଟକରେ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ (ଷ୍ଟେସନ ପାଖ, ମ୍ୟୁନିସିପାଲଟି ହତା, ଯୋବ୍ରା, ଦୋଳମୁଣ୍ଡେଇ, ରାଣୀହାଟ, ମଙ୍ଗଳାବାଗ, ଚୌଧୁରୀ ବଜାର, ନୟା ସଡ଼କ) ଦୋଳ, ଝୁଲଣ, ବାଦୀପାଲା, ଗୋଟିପୁଅନାଚ, ଦଶହରା ଉତ୍ସବ, କାଳୀପୂଜା ଓ ବାଲିଯାତ୍ରା ବିଶେଷ ଉପଭୋଗ୍ୟ ହୋଇଥାଏ । ଦଶହରା ଓ ବାଲିଯାତ୍ରା ସମୟରେ କଟକ ସହରରେ ଗହଳି ବଢ଼ିଯାଏ । କଟକରେ ଦୁର୍ଗା, ହରପାର୍ବତୀ, କାର୍ତ୍ତିକେଶ୍ୱର, କାଳୀ, ଲକ୍ଷ୍ମୀ, ସରସ୍ୱତୀ ପ୍ରଭୃତିଙ୍କର ଗଢ଼ଣ ଅତି ସୁନ୍ଦର; ତା' ସାଂଗକୁ ବାରୁଆଳି ମୂର୍ତ୍ତିଗୁଡ଼ିକ ମଧ୍ୟ କମ ଶୋଭନୀୟ ନୁହେଁ ।

ସେତେବେଳେ ଅନ୍ନପୂର୍ଣ୍ଣା ଥିଏଟର (ବି) ଓ ଓଡ଼ିଶା ଥିଏଟର୍ସରେ କାଳୀଚରଣ ପଟ୍ଟନାୟକଙ୍କର ଅଧିକାଂଶ ନାଟକ ଅଭିନୀତ ହେଉଥିଲା । ତା'ଛଡ଼ା ନାଟ୍ୟକାର ରାମଚନ୍ଦ୍ର ମିଶ୍ର, ଅଦ୍ୱୈତ ପ୍ରସାଦ ମହାନ୍ତି, ମନୋରଞ୍ଜନ ଦାସ, ଭଞ୍ଜକିଶୋର ପଟ୍ଟନାୟକ, ଅଶ୍ୱିନୀ କୁମାର ଘୋଷ ଓ ଗୋପାଳ ଛୋଟରାୟଙ୍କର ନାଟକମାନ ଅଭିନୀତ ହେଉଥାଏ ।

ସେତେବେଳକାର ଅଭିନୟ ମଧ୍ୟ ଉଚ୍ଚକୋଟୀର ଥିଲା । ରଂଗମଞ୍ଚରେ ହାସ୍ୟରସ ସୃଷ୍ଟି କରିବାରେ ବେଶ୍ ଜନପ୍ରିୟ ହୋଇଥିଲେ ଟିମା (ଦୀନବନ୍ଧୁ ଦାସ) ଓ ପାଣ୍ଡେ ପ୍ରଭୃତି । ସମୟ ସମୟରେ ସହରର ଗୋଟିଏ ଦିଓଟି ଅନୁଷ୍ଠାନ ପକ୍ଷରୁ ନାଟକ ଅଭିନୀତ ହେଉଥିଲା (ଯଥା ସୃଜନୀ) ।

ପ୍ରଭାତ ଓ କ୍ୟାପିଟାଲ ସିନେମା ହଲ୍‌କୁ ଯେଉଁ ଚଳଚ୍ଚିତ୍ର (film) ଆସୁଥିଲା ସେଗୁଡ଼ିକ ଆଜିକାଲି ପରି ନଗ୍ନ, ଅଶ୍ଳୀଳ ନଥିଲା । ପୌରାଣିକ ଚିତ୍ରଗୁଡ଼ିକ ହେଲା ସହଜେ ଆଦର୍ଶଧର୍ମୀ । ସାମାଜିକ ଚିତ୍ରଗୁଡ଼ିକ ମଧ୍ୟ ସମାଜ ଓ ରାଷ୍ଟ୍ରର ବିଭିନ୍ନ ସମସ୍ୟାକୁ ନେଇ (ଜମିଦାର ଓ ପ୍ରଜା, ଶ୍ରମିକ ଓ ଶିଳ୍ପପତି, ପରାଧୀନତା, ଅସ୍ପୃଶ୍ୟତା, ବିଧବା ଓ ବିଦ୍ୱରାବିବାହ, ଯୌତୁକ, ବନ୍ୟା, ମରୁଡ଼ି, ଆଦି) ବଳିଷ୍ଠ ଭାବରେ ନିର୍ମିତ ହେଉଥିଲା ଏବଂ ଚିତ୍ରନିର୍ମାତାମାନେ ଓ ସେନ୍‌ସର ବୋର୍ଡ଼ ଲୋକଶିକ୍ଷା, ସମାଜ ଗଠନ ଓ ଲୋକ ଚିତ୍ତରେ ଉନ୍ନତ ରୁଚିର ସଂକ୍ରମଣ ପ୍ରତି ବିଶେଷ ଧ୍ୟାନ ଦେଉଥିବାର ମନେ ହେଉଥିଲା । ପୌରାଣିକ ଚରିତ୍ର ଭୂମିକାରେ ଅଭିନୟ କରିବାରେ ସେତେବେଳେ ପୃଥ୍ୱୀରାଜ କପୁର, ଦୁର୍ଗା ଖୋଟେ, କାନନ ଦେବୀ, ନିରୂପା ରାୟ ପ୍ରଭୃତି ଏବଂ ସାମାଜିକ ଓ ଅନ୍ୟାନ୍ୟ ଚିତ୍ରରେ କାମିନୀ କୌଶଲ, ସୁରେୟା, ନର୍ଗିସ, ନଳିନୀ ଜୟନ୍ତ, ମଧୁବାଳା, ମୀନାକୁମାରୀ, ରାଜ କପୁର, ଅଶୋକ କୁମାର, ଦିଲୀପ କୁମାର, କିଶୋର କୁମାର, ଦେବାନନ୍ଦ ପ୍ରଭୃତି ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ଚମତ୍କାର ହାସ୍ୟାଭିନେତା ଭାବରେ ଦୀକ୍ଷିତ, ଗୋପ ଓ ଜନିଓ୍ୱାକର ପ୍ରଭୃତି ଦର୍ଶକମାନଙ୍କର ଆଦର ଲାଭ କରିଥିଲେ । ସୀତାବିବାହ ପରଠାରୁ ଓଡ଼ିଆ ଚିତ୍ର ଆଉ ନିର୍ମିତ ହୋଇନଥିଲା; ଓଡ଼ିଶାରେ କେବଳ ହିନ୍ଦୀ ଚଳଚ୍ଚିତ୍ର ପ୍ରଦର୍ଶିତ ହେଉଥିଲା । ବହୁଦିନ ପରେ 'ରୂପଭାରତୀ' ଗଠିତ ହୋଇ ଶ୍ରୀଜଗନ୍ନାଥ, ଶ୍ରୀଲୋକନାଥ ଓ ଲଳିତା ପ୍ରଭୃତି କେତୋଟି ଚିତ୍ରର ନିର୍ମାଣ ପରେ ତାହା ଭାଙ୍ଗି ଯାଇଥିଲା ।

କଟକରେ ଆକାଶବାଣୀ କାର୍ଯ୍ୟକ୍ରମ ସେତେବେଳକୁ ମଧୁପୁର କୋଠିରୁ ପ୍ରଚାରିତ ହେଉଥାଏ । ବେଶୀ ଦୂରକୁ ପ୍ରୋଗ୍ରାମ୍ ଶୁଣାଯାଉ ନଥାଏ । ରେଡ଼ିଓର ସଂଖ୍ୟା ମଧ୍ୟ ସୀମିତ । କେବଳ ମୁଖ୍ୟରାସ୍ତାକୁ ଛାଡ଼ିଦେଲେ କଟକର ରାସ୍ତାଘାଟ ଓ ଗଳି ଅତି ନିର୍ଜନ ଥିଲା । ସାଇକେଲ୍ ରିକ୍ସାର ଚଳନ ହୋଇ ନଥାଏ । ହେଲେ ମଧ୍ୟ କି ସ୍ତ୍ରୀ, କି ପୁରୁଷ ଯେ କୌଣସି ସମୟରେ କଟକ ରାସ୍ତାରେ ନିରାପଦରେ ଚଲାବୁଲା କରିପାରୁଥିଲେ । ଅପରାଧର ସଂଖ୍ୟା ଖୁବ୍ କମ୍ ଥିଲା । କାଁ ଭାଁ କେଉଁଠି ଚୋରି ବା ହତ୍ୟାକାଣ୍ଡ ଘଟୁଥିଲା । ଧର୍ଷଣ, ପକେଟ୍‌ମାର୍, ଠକେଇ, ଦିବାଲୋକରେ ଛୁରୀଭୂଷା, ଦାଦାଗିରି ଓ ଚାନ୍ଦାର ଜୁଲମ୍ ସ୍ୱପ୍ନର ବିଷୟ ଥିଲା ।

ସେତେବେଳେ 'ଶିକ୍ଷା' ବିଷୟର ଅଧ୍ୟାପକ ଥିଲେ ଜ୍ଞାନେନ୍ଦ୍ର କୁମାର ମହାନ୍ତି, ଦୀନବନ୍ଧୁ ପାଣିଗ୍ରାହୀ ଓ ଗୌରୀଶଙ୍କର ମହାନ୍ତି । ରାଣୀହାଟ ହାଇସ୍କୁଲ୍‌ରେ ସେତେବେଳେ ଆମକୁ ଆଦର୍ଶ ଶିକ୍ଷାଦାନ (Model teaching) କରିବାକୁ ହେଉଥିଲା । ଶ୍ରେଣୀରେ ମୋର ଶିକ୍ଷାଦାନ ପଦ୍ଧତି ହେତୁ ମୁଁ ଛାତ୍ର ଓ ଅଧ୍ୟାପକଙ୍କର ଦୃଷ୍ଟି ଆକର୍ଷଣ କରିଥିଲି ।

ପରେ ନାଗପୁର ବିଶ୍ୱବିଦ୍ୟାଳୟର ଗଣିତ ପ୍ରଫେସର୍ ହୋଇଥିବା ଡଃ ତ୍ରିବିକ୍ରମ ପତି (ଦର୍ଶନ ପ୍ରଫେସର ରତ୍ନାକର ପତିଙ୍କ ବଡ଼ପୁଅ) ଆମର ଉଚ୍ଚଶ୍ରେଣୀରେ ପଢୁଥାନ୍ତି; ତାଙ୍କର ବିଷୟ ଥିଲା : ଗଣିତ, ସଂସ୍କୃତ ଓ ତର୍କଶାସ୍ତ୍ର । ତାଙ୍କ ପରି ମେଧାବୀ ଛାତ୍ରଙ୍କୁ ଦେଖି ତାଙ୍କ ସହ ଆଲୋଚନା କରି ବିଶେଷ ଆନନ୍ଦ ପାଉଥିଲି ।

ଅଷ୍ଟମ ଶ୍ରେଣୀରୁ ନିଜ ଚେଷ୍ଟାରେ ବଙ୍ଗଳା ବହି ପଢ଼ି ବୁଝିପାରୁଥିବାରୁ ମୁଁ ମହାପୁରୁଷ ମାନଙ୍କର ବିଶେଷତଃ ନିଗମାନନ୍ଦ ସରସ୍ୱତୀଙ୍କର ବଂଗଳା ଗ୍ରନ୍ଥମାନ (ଜ୍ଞାନୀଗୁରୁ, ଯୋଗୀଗୁରୁ ଆଦି) ଅଧ୍ୟୟନ କରୁଥାଏଁ ।

କନିକା ଲାଇବ୍ରେରୀର ବିପୁଳ ପୁସ୍ତକ, ପୋଥି ଓ ପତ୍ରପତ୍ରିକାର ସମାରୋହ ଦେଖିଲେ ସେତେବେଳେ ଯେତିକି ବିସ୍ମିତ ହୁଏ, ତତୋଽଧିକ ଆନନ୍ଦ ଅନୁଭବ କରେଁ । ଲାଇବ୍ରେରୀ ହଲ୍‌ର ପ୍ରଶସ୍ତ ପରିସରରେ ମଧ୍ୟରେ ବହୁ ଛାତ୍ରଛାତ୍ରୀ ପ୍ରବେଶ କରି ଅଧ୍ୟୟନ କରୁଥିଲେ ମଧ୍ୟ ପୂର୍ଣ୍ଣ ନୀରବତା ଓ ଶୃଙ୍ଖଳା ମନରେ ପ୍ରଶାନ୍ତଭାବ ଆଣେ । ଲାଇବ୍ରେରୀୟାନ୍ ବୃଦ୍ଧ ଦାମୋଦର ମିଶ୍ର କେବଳ ଜଣେ ସାଧାରଣ ଗ୍ରନ୍ଥାଗାରିକ ନଥିଲେ, କେବଳ ଗଙ୍ଗାତୀରବାସୀ ନଥିଲେ, ଥିଲେ ଗଙ୍ଗାର ଅବଗାହୀ, ଯେ ଯେଉଁ ବହି ଖୋଜୁ, ତୁଣ୍ଡରୁ ବାହାରିଲା ମାତ୍ରେ ସଙ୍ଗେସଙ୍ଗେ ବହି ଆସିଯିବ, ପୁଣି ବହିର କେଉଁ କେଉଁ ଛତ୍ର ପଢ଼ିବାକୁ ହେବ ତା'ର ସୂଚନା ଦେବାରେ ତାଙ୍କର ଶ୍ରଦ୍ଧା ଓ ଆଗ୍ରହ କି ନିବିଡ଼ ! ବର୍ତ୍ତମାନ ସେଇ ଲାଇବ୍ରେରୀ ଅଛି, ଆଗ ଅପେକ୍ଷା ବହି ସଂଖ୍ୟା ବହୁତ ବଢ଼ିଯାଇଛି, କିନ୍ତୁ ସେ ପ୍ରକାର ଜ୍ଞାନଗର୍ଭ ବିଦ୍ୟାନୁରାଗୀ ଗ୍ରନ୍ଥାଗାରିକ କାହାନ୍ତି ? ବହି ସଂପର୍କରେ ସୂଚନା ଦେବା ତ ଦୂରର କଥା ବହିଟି ଖୋଜି ଛାତ୍ରଙ୍କ ହାତରେ ଦେବା ଲାଗି କାହାର ସମୟ ନଥାଏ ।

## ଗାଁରେ ବିକାଶମୂଳକ କାର୍ଯ୍ୟକ୍ରମ :

### ନାଟ୍ୟାଭିନୟ

ପ୍ରଥମ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କାଳରେ ଦଶହରା, ବଡ଼ଦିନ ଓ ଗ୍ରୀଷ୍ମଛୁଟିରେ ଗାଁକୁ ଯିବାପାଇଁ ଗୋଡ଼ଟେକି ବସିଥାଉଁ । ଗାଁରୁ ନୂଆ କଲେଜ ପଢୁଆ ହୋଇଥିବାରୁ ଗାଁରେ କିଛି ନୂଆକଥା କରିବାର ଝୁଙ୍କ୍ ଉଠେ । ସାଙ୍ଗମେଳରେ ଠିକ୍ ହୁଏ ନାଟକ ଅଭିନୟ କରିବା ଅଥଚ ଗାଁରେ ଅଭିନୟ ପାଇଁ ସିନ୍ ଠାରୁ ଆରମ୍ଭ କରି କୌଣସି ଉପକରଣ ନାହିଁ । ବିଭିନ୍ନ ଭୂମିକା ପାଇଁ ନିର୍ବାଚିତ ହୋଇଥିବା ସାଙ୍ଗମାନେ ଚାନ୍ଦା ଆଦାୟଠାରୁ ଆରମ୍ଭ କରି ସଂଗଠନର ସବୁ ଦାୟିତ୍ୱ କାନ୍ଧରେ ବହି ରାମଚନ୍ଦ୍ର ମହାପାତ୍ରଙ୍କ 'ସୁଦାମା' ନାଟକ ଅଭିନୟର ଆୟୋଜନ କଲୁଁ । ନିଜେ ସୁଦାମା ଭୂମିକା ଗ୍ରହଣ କରି ରିହଲସାଲ ଆରମ୍ଭ କଲି ମୁଁ, ସୁମତି ଭୂମିକାରେ ମିଟଭାଇ (ଇନ୍ଦ୍ରମଣି ବଳ), କୁଷ୍ଠରୋଗୀ ଭୂମିକାରେ ଗଙ୍ଗାଧର ନାୟକ, ଗୋପାଳ ବାଳକ ଭୂମିକାରେ ପୁରୁଷୋତ୍ତମ, ଶ୍ରୀକୃଷ୍ଣ ଭୂମିକାରେ ମାଗୁଣି ଚରଣ ଓ ଆଉ କେତେଜଣ

ଉତ୍ସାହର ସହ ଲାଗିଗଲେ । ଆଠ ଦଶଦିନର ରିହଲସାଲ ପରେ ଆମ ସାଇ ମଝିରେ ଷ୍ଟେଜ୍ ବନ୍ଧାଯାଇ ଅଭିନୟ ଆରମ୍ଭ ହେଲା । ନରି ରାଉତଙ୍କ ଘର ଚାଳି ହେଲା ଆମର ଗ୍ରୀନ୍ ରୁମ । ବେଶ ପୋଷାକ ବେଳେ ଅଭିନେତାଙ୍କ ସହ ଯା'ର ଦରକାର ନଥାଏ ସେ ବି ମୁହଁରେ ଟିକିଏ ପାଉଡ଼ର ମାରି ଦେଉଥାଏ ।

ବେଶ୍ ଆନନ୍ଦ ଉତ୍ସାହରେ ଅଭିନୟ ଚାଲିଲା । ଦୁଇସାଇର ଲୋକ ପୂର୍ଣ୍ଣପ୍ରାଣରେ ଅଭିନୟ ଉପଭୋଗରେ ଲାଗିଗଲେ, ଏପରିକି ପାଖ ବେଲବାହାଳିରୁ ଲୋକେ ଶୁଣାଶୁଣିରେ ଆସି ଜମା ହୋଇଗଲେ । ଆମର ଅଭିନୟ ଶେଷରେ ବେଲବାହାଳିର ଖଣ୍ଡୁଆ ବଂଶର ଦାଦା ପୁତୁରା ହୋଇ କେତୋଟି ପିଲା ଗୋଟାଏ ପୁରୁଣାକାଳିଆ ଫାର୍ଶ (ପ୍ରହସନ) କରି ପକାଇ ହସେଇ ହସେଇ ପେଟବଥା କରିଦେଲେ ।

## ସାକ୍ଷରତାର ବିକାଶ ଓ ପାଠାଗାର ସ୍ଥାପନ

ଗାଁରେ ସାକ୍ଷରତାର ବିକାଶ ପାଇଁ ମୁଁ ଧ୍ୟାନ ଦିଏଁ ଏବଂ ପୌଢ଼ ନିରକ୍ଷରମାନଙ୍କୁ ସଂଧ୍ୟାବେଳେ ପ୍ରାଥମିକ ଶିକ୍ଷା ଦେବାର ବ୍ୟବସ୍ଥା କରେଁ । ଗାଁରେ ଝିଅବୋହୂଙ୍କଠାରୁ ଆରମ୍ଭ କରି ବୟସ୍କ, ପ୍ରୌଢ଼ ପ୍ରୌଢ଼ାଙ୍କ ଶିକ୍ଷା ଓ ମାନସିକ ରୁଚିର ବିକାଶ ପାଇଁ ଏକ ସଭାରେ ଗୋଟିଏ ପାଠାଗାର ସ୍ଥାପନର ପ୍ରସ୍ତାବ ଦିଏଁ । ଏଥିରେ ସମସ୍ତେ ଆଗ୍ରହ ପ୍ରକାଶ କରନ୍ତି । ମୋର ପୁରାତନ ସହପାଠୀ ପୂର୍ଣ୍ଣ, ମିଟଭାଇ ଓ ଅନ୍ୟମାନେ ମୋ ସହିତ ଲାଗିଯାନ୍ତି ପୁସ୍ତକ ସଂଗ୍ରହ ଓ ଚାନ୍ଦା ଆଦାୟରେ । ଗାଁ ରାଧାକୃଷ୍ଣଙ୍କ କୋଠଘରେ ପାଠାଗାର ସ୍ଥାପିତ ହୁଏ ଏବଂ ଅର୍ଜୁନ ଚରଣ ନାୟକ ଆଗ୍ରହୀ ହୋଇ କାଠର ବଡ଼ ଆଲ୍‌ମିରାଟିଏ ଦିଅନ୍ତି । ତାଙ୍କୁ ଲାଇବ୍ରେରୀ ବହି ଦାୟିତ୍ୱରେ ରଖାଯାଏ (ଲାଇବ୍ରେରିୟାନ୍) । ଖାତା ପ୍ରସ୍ତୁତ କରାଯାଇ କାଟାଲଗ୍ ତିଆରି ହୋଇଯାଏ ଏବଂ ଗୋଟିଏ ଇସ୍ୟୁ ରେଜିଷ୍ଟର ରଖାଯାଏ । ଗାଁରୁ ପାଠ୍ୟପୁସ୍ତକ ଠାରୁ ଆରମ୍ଭ କରି ପୁରାଣ, ଉପନ୍ୟାସ, କାବ୍ୟ, ଧର୍ମପୁସ୍ତକ ଆଦି ସଂଗୃହୀତ ହୋଇଯାଏ । ପଦ୍ମନ ବଳ ନାମକ ଜଣେ କଲିକତା ପ୍ରବାସୀ ଲୋକ ତାଙ୍କଠାରେ ଥିବା ବନ୍ଧେଇ ହୋଇଥିବା ବହୁ ପୁରାଣ ଆଗ୍ରହର ସହ ଦେଇଦିଅନ୍ତି । ପାଠାଗାରଟିର ନାମ ରଖାଯାଏ 'ପ୍ରଣବ ପାଠାଗାର' । ଛୁଟି ପରେ କଟକ ଆସି ପାଠାଗାର ନାଁର ଗୋଟିଏ ରବରଷ୍ଟାମ୍ପ୍ ପ୍ରସ୍ତୁତ କରାଇ ପଠାଇ ଦିଏ । ସଂଗ୍ରହ ହୋଇଥିବା ଚାନ୍ଦାରେ ମୁଁ କଟକରୁ ନାନା ଶ୍ରେଣୀର ଅନେକ ପୁସ୍ତକ କିଣି ଗାଁକୁ ପଠାଇ ଦିଏଁ । ପାଠାଗାରଟି ଯୋଗୁଁ ଗାଁରେ ସବୁ ଶ୍ରେଣୀ ଲୋକଙ୍କର ପଠନ-ଆଗ୍ରହ ବଢ଼େ । ପାଠାଗାରଟି ଉତ୍ସାହର ସହ ବହୁଦିନ ଚାଲେ ।

ମୁଁ ଗାଁରେ ବିଭିନ୍ନ ସମୟରେ ସଭାସମିତି କରି ପୁରୁଷ ଓ ସ୍ତ୍ରୀଙ୍କର ସାଧାରଣ ଜ୍ଞାନର ବିକାଶ ପାଇଁ ବକ୍ତୃତା ଦିଏଁ । ସ୍ତ୍ରୀ ଲୋକମାନେ ବହୁ ସଂଖ୍ୟାରେ ଆଗ୍ରହୀ ହୋଇ ସାଂଧ୍ୟସଭାରେ ଯୋଗଦାନ କରନ୍ତି । ପାରିବାରିକ ଓ ଗ୍ରାମ୍ୟ ଜୀବନରେ ସଂହତି, ଶୃଙ୍ଖଳାପୂର୍ଣ୍ଣ ଜୀବନ ଯାପନ କରିବାପାଇଁ ନାନା କଥା କହିବା ସଙ୍ଗେ ସଙ୍ଗେ ସାଧାରଣ ସ୍ୱାସ୍ଥ୍ୟରକ୍ଷା ଓ କୁସଂସ୍କାର

ସଂପର୍କରେ ନାନା କଥା କହେଁ । ପୁରାଣ ଓ ଇତିହାସରୁ ନାନା ଦୃଷ୍ଟାନ୍ତ ଦେବା ସଙ୍ଗେ ସଙ୍ଗେ ଦେଶ ବିଦେଶର ହାଲଚାଲ ସଂପର୍କରେ ସୂଚନା ଦିଏଁ । ଗାଁର ମର୍ଯ୍ୟାଦା ବୃଦ୍ଧିପାଇଁ ଆଗନ୍ତୁକମାନଙ୍କ ପ୍ରତି ଶିଷ୍ଟାଚାର ପ୍ରଦର୍ଶନ ସଂପର୍କରେ ଗୁରୁତ୍ୱ ଦିଏଁ । ମୋର ବକ୍ତୃତା ସଂପର୍କରେ ଗାଁର ମାଣିକ ନାମ୍ନୀ ଜଣେ ବୃଦ୍ଧା ତା'ର ବେ-ଦାନ୍ତୀ ମୁଖରେ ତୃପ୍ତିର ହାସ ଫୁଟାଇ କହେ- 'କେତେ କଥା ମନେ ରଖି କହୁଛନ୍ତି' । ଗାଁରେ କା'ର ଦେହ ଅସୁସ୍ଥ ହେଲେ ହୋମିଓପାଥିକ୍ ଓ ଡାକ୍ତରୀ ଔଷଧ ଅଣାଇବାର ବ୍ୟବସ୍ଥା କରି ରୋଗୀ ସେବାର ମହତ୍ତ୍ୱ ସଂପର୍କରେ ଲୋକଙ୍କୁ ବୁଝାଏ । ଏଥିରେ ମୋ ପ୍ରତି ଲୋକଙ୍କର ସ୍ନେହ ଶ୍ରଦ୍ଧା ବୃଦ୍ଧି ପାଏ । ଗାଁରେ କିଛି ନ୍ୟାୟ ନିଶାପ ହେଲେ ମୋତେ ନ ବସାଇଲେ କିଛି ସମାଧାନ ହୁଏ ନାହିଁ । ଆଖପାଖ ଗାଁରେ ପାଲା ପ୍ରଭୃତି ଅନୁଷ୍ଠାନ ହେଲେ ମୋର ଉପସ୍ଥିତିକୁ ଗାଁର ମୁଖିଆ ଆଗ୍ରହର ସହ ଚାହିଁ ରହିଥାନ୍ତି ।

ଗାଁରେ ବୟସ୍କ ବ୍ୟକ୍ତି ଓ ଯୁବକମାନଙ୍କ ଉଦ୍ୟମରେ ଆଉ କେତୋଟି ଅନୁଷ୍ଠାନ ଗଢ଼ି ଉଠିଛି, ଯଥା- ଯୁବ ଜ୍ୟୋତି ଉଚ୍ଚ ଇଂରାଜୀ ବିଦ୍ୟାଳୟ, ଅରବିନ୍ଦ ପାଠଚକ୍ର ଓ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ଲକ୍ଷ୍ମୀପୂଜା, କାର୍ତ୍ତିକେଶ୍ୱର ପୂଜା, ବନଦୁର୍ଗା ପୂଜା, ଗଣେଶ ମନ୍ଦିର । ମହିଳା ଶିକ୍ଷାପାଇଁ ଗ୍ରାମ ନିକଟରେ ଦୁଇଟି କଲେଜ୍ ପ୍ରତିଷ୍ଠିତ । ଯଥା- କନକମଞ୍ଜରୀ ମହିଳା ମହାବିଦ୍ୟାଳୟ ଓ ବେଲବାହାଳି କଲେଜ୍ ।

ଆମ ଛାତ୍ରାବାସର ବାର୍ଷିକ ପ୍ରତିଯୋଗିତାରେ ବିଶେଷତଃ ପ୍ରବନ୍ଧ ଓ ସଂଗୀତ ପ୍ରତିଯୋଗିତାରେ ମୁଁ ଭାଗ ନିଏଁ । ହାରମୋନିୟମ୍ ବଜାଇ ଗୀତ ଗାଇବାର ଅଭ୍ୟାସ କରିଥିବାରୁ ଅଡ଼ିସନ୍ ଟେଷ୍ଟ ପାଇଁ ଥରେ ମୋର ଜଣେ ସହପାଠୀ ସହ ଅଲ୍‌ଇଣ୍ଡିଆ ରେଡ଼ିଓକୁ ଯାଇଥିଲି । ଜୟପାଳ ସିଂହ ନାମକ ଜଣେ ଚତୁର୍ଥ ବାର୍ଷିକ ଛାତ୍ରଙ୍କର ପ୍ରତ୍ୟହ ସଂଧ୍ୟାରେ ତାନପୁରା ସାହାଯ୍ୟରେ ସ୍ୱରସାଧନା ଏବେବି ମନେ ପଡ଼ିଯାଏ ।

ହଷ୍ଟେଲ ବଗିଚାରେ ବାର୍ଷିକୋତ୍ସବ ଆମ ଅନ୍ତେବାସୀଙ୍କର ଆନନ୍ଦ-ଉତ୍ସବର ଦିନ । ଥରେ ଡଃ ମାୟାଧର ମାନସିଂହ ମୁଖ୍ୟଅତିଥି ଭାବରେ ନିମନ୍ତ୍ରିତ ହୋଇ ଆସିଥାନ୍ତି ଏବଂ ବିପିନ ନାମରେ ଜଣେ ସହପାଠୀ ସଂଗୀତ ପ୍ରେମୀ ଛାତ୍ର ତାଙ୍କର 'ଏଇ ସହକାର ତଳେ, ଯେଦିନ ପ୍ରିୟାର କରକଙ୍କଣ ଭିଡ଼ିଥିଲା ମୋର ଗଳେ' ଶୀର୍ଷକ କବିତାଟି ସୁଲଳିତ କଣ୍ଠରେ ଗାନ କରି ସମସ୍ତଙ୍କ ମନରେ ଆନନ୍ଦର ତରଙ୍ଗ ଖେଳାଇ ଦେଇଥାଏ ।

## ବି.ଏ. ଶ୍ରେଣୀରେ :

ଆଇ.ଏ. ପାଶ୍ କରି ଅର୍ଥନୀତି ଅନର୍ସ ଓ ଓଡ଼ିଆ ପାଶ୍ ନେଇ ରେଭେନ୍ସାରେ ୧୯୪୭ରେ ବି.ଏ. ଶ୍ରେଣୀରେ ଅଧ୍ୟୟନ କରେ ଏବଂ ସେଇ ପଶ୍ଚିମ ଛାତ୍ରାବାସର ଅନ୍ତେବାସୀ ହୁଏ । ଅର୍ଥନୀତି ବିଭାଗର ପ୍ରଫେସର ଥିଲେ ଡଃ ଏ.କେ. ଦାଶଗୁପ୍ତ । ସଦାଶିବ ମିଶ୍ର,

ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ଯଥାକ୍ରମେ ଲଣ୍ଡନ ଓ ଆମେରିକା ଯୁକ୍ତରାଷ୍ଟ୍ର ଯାଇଥାନ୍ତି ଡକ୍ଟରେଟ୍ କରିବା ପାଇଁ । ଡଃ ମୈତ୍ର ନାମରେ ଜଣେ ପୁରୁଖା ଅର୍ଥନୀତି ଅଧ୍ୟାପକ ଯୋଗଦାନ କରିଥାନ୍ତି । ବିଭାଗର ଅନ୍ୟ ଅଧ୍ୟାପକଙ୍କର ନାମ ଜୟକୃଷ୍ଣ ମିଶ୍ର, ମୃତ୍ୟୁଞ୍ଜୟ ପଣ୍ଡା ଓ ସଚ୍ଚିଦାନନ୍ଦ ମିଶ୍ର । ଅର୍ଥନୀତି ଅନର୍ସରେ ସେତେବେଳେ ନଳିନୀକାନ୍ତ ପଣ୍ଡା (ପରେ ଆଇ.ଏ.ଏସ୍), ଉଦୟଚାନ୍ଦ ଅଗ୍ରୱାଲା (ପରେ ଆଇ.ଏ.ଏସ୍) ଓ ଗୋପବନ୍ଧୁ ମିଶ୍ର ପ୍ରଭୃତି ସହପାଠୀ ଥାଆନ୍ତି । ଓଡ଼ିଆ ପ୍ରତି ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ଥିଲେ ମଧ୍ୟ ଆଇ.ଏ.ରେ ଓଡ଼ିଆ ବିଷୟ ନଥିବାରୁ ସେଥିରେ ଅନର୍ସ ନେବାର ସୁଯୋଗ ପାଇପାରେ ନାହିଁ । ଓଡ଼ିଆ ଶ୍ରେଣୀରେ ଅଧ୍ୟାପନା କରୁଥାନ୍ତି କୁଞ୍ଜବିହାରୀ ତ୍ରିପାଠୀ, ରାଜକିଶୋର ରାୟ, ଜୟକୃଷ୍ଣ ମିଶ୍ର, ରାମଚନ୍ଦ୍ର ମହାପାତ୍ର, ଲିଙ୍ଗରାଜ ମିଶ୍ର, ଆଶାଲତା ବେହେରା ଓ ଜାନକୀ ବଲ୍ଲଭ ମହାନ୍ତି (କ) ପ୍ରଭୃତି । ଇଂରାଜୀ ଅଧ୍ୟାପକ ଥିଲେ ଡଃ ଓ.ପି. ଓବ୍ରେନ୍, ଡଃ ଡାଭେ, ପ୍ରଫେସର ପି.ଏସ୍. ସୁନ୍ଦରମ, ବିଧୁଭୂଷଣ ଦାସ, ସର୍ବେଶ୍ୱର ଦାଶ ଓ ନନ୍ଦକିଶୋର ମିଶ୍ର ପ୍ରଭୃତି ।

୧୯୪୭, ଅଗଷ୍ଟ ୧୫ ରେ ଆମ୍ଭମାନଙ୍କର ଦୀର୍ଘକାଳର ସଂଘର୍ଷ ବହୁ ଦେଶ ସେବକଙ୍କର ତ୍ୟାଗ ଓ ଶହିଦଙ୍କର ଜୀବନ ବଦଳରେ ଆମେ ଲାଭ କରୁଁ ସ୍ୱାଧୀନତା । ସମଗ୍ର ଭାରତରେ ଆନନ୍ଦ ଉତ୍ସବ ଲାଗିଯାଇଥାଏ । ଅଗଷ୍ଟ ୧୪ରେ ମଧ୍ୟରାତ୍ର ପରେ ସ୍ୱାଧୀନତା ଲାଭର ସମ୍ବାଦ ବିପୁଳ ଉତ୍ସାହର ସହ ଘୋଷଣା କରାଗଲା । ଜବାହରଲାଲ ନେହେରୁ ଆକାଶବାଣୀରେ ଆନନ୍ଦର ସହ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଲେ । ଇଂରେଜମାନେ ଭାରତୀୟଙ୍କ ହାତରେ ଭାରତର ଶାସନ ଦାୟିତ୍ୱ ଦେଲେ ମଧ୍ୟ ମହମ୍ମଦ ଅଲ୍ଲୀ ଜିନ୍ନାକୁ ପରୋକ୍ଷରେ ଉସ୍‌କାଇ ଭାରତକୁ ଭାଗ ଭାଗ କରିଦେଇ ହିନ୍ଦୁ ମୁସଲମାନ ଏକତାକୁ ନଷ୍ଟଭ୍ରଷ୍ଟ କରି ଦେଇଗଲେ । ସେମାନେ ଯେଉଁ ସାଂପ୍ରଦାୟିକ ବିଷମଞ୍ଜି ବୁଣି ଦେଇଗଲେ ସେ ମଞ୍ଜି ଗଛ ହୋଇ ଶାଖା ପ୍ରଶାଖା ମେଲାଇ ବିସ୍ତୃତ ହେବାରେ ଲାଗିଛି । ସ୍ୱାଧୀନତାର କିଞ୍ଚିତ୍ ପୂର୍ବରୁ ଓ ପରେ ପଞ୍ଜାବ, ଦିଲ୍ଲୀ, ପାଟନା, କଲିକତା ଓ ନୂଆଖାଲିରେ ସାଂପ୍ରଦାୟିକ ଦଙ୍ଗା ଫଳରେ କେତେ ଲୋକ ମଲେ । କେତେ ହିନ୍ଦୁ ଘରଦ୍ୱାର ହରାଇ ଭାରତର ଶରଣାର୍ଥୀ ହେଲେ ତା'ର ଇୟତ୍ତା ନାହିଁ । କାଶ୍ମୀର ସମସ୍ୟା ଏ ପର୍ଯ୍ୟନ୍ତ ଅସମାହିତ । ଭାରତ ପ୍ରତି ପାକିସ୍ତାନର ଶତ୍ରୁତା ଦୀର୍ଘକାଳ ଧରି ଲାଗିରହିଛି । ଉଗ୍ରବାଦୀଙ୍କର (militant) ସହାୟତାରେ ପାକିସ୍ତାନ ଭାରତ ସହ କାର୍‌ଗିଲ୍‌ର ଅଘୋଷିତ ଯୁଦ୍ଧ ଲଗାଇ ଦେଲା- ପାକିସ୍ତାନ ବିଭିନ୍ନ ଇସ୍‌ଲାମ୍ ଉଗ୍ରବାଦୀଙ୍କୁ ଲଗାଇ କାଶ୍ମୀରରେ ବିଭିନ୍ନ ସମୟରେ ହିଂସାକାଣ୍ଡ ଭିଆଇବା ସଙ୍ଗେ ଭାରତର ଆଭ୍ୟନ୍ତରୀଣ ଅଞ୍ଚଳରେ ବିଭିନ୍ନ ଗୋଷ୍ଠୀର ଉଗ୍ରବାଦୀଙ୍କୁ ସହାୟତା ଦେଇ ସର୍ବଦା ଏକ ଅଶାନ୍ତ ବାତାବରଣ ସୃଷ୍ଟି କରିଚାଲିଛି ।

୧୯୪୮ ମସିହା, ମାର୍ଚ୍ଚ ମାସରେ ଆମେ ଅର୍ଥନୀତି ବିଭାଗର ଛାତ୍ରମାନେ ଅର୍ଥନୀତି ଅଧ୍ୟାପକ ଡଃ ବି.ଏନ୍. ରୋହାତ୍‌ଗୀଙ୍କ ତତ୍ତ୍ୱାବଧାନରେ କଲିକତା ଯାଇଥିଲୁଁ ଏକ ଶିକ୍ଷାମୂଳକ ଭ୍ରମଣରେ । ଏ ଭ୍ରମଣ ପାଇଁ ସରକାରଙ୍କ ତରଫରୁ କିଛି ଅର୍ଥ ମିଳିଥିଲା । ଆମ ପାଇଁ

ଟ୍ରେନ୍‌ର ଏକ ବଗି ରିଜର୍ଭେସନ୍ କରାଯାଇଥିଲା । ହାବଡ଼ାରେ ପହଞ୍ଚିଲା ପରେ ଏକ ଠେଲା ଗାଡ଼ିରେ ଆମ ଜିନିଷ ଶ୍ୟାମ ବଜାରରେ ଥିବା ଉତ୍କଳ-ଛାତ୍ରାବାସକୁ ନିଆଯାଏ । ଏଡ଼େନ୍ ଗାର୍ଡ଼ନରେ ସେତେବେଳେ ନିଖିଳଭାରତ ଶିଳ୍ପ ପ୍ରଦର୍ଶନୀ ଚାଲିଥାଏ । ସଂଧ୍ୟାବେଳେ ବିରାଟ ପ୍ରଦର୍ଶନୀର କିଛି ଅଂଶ ଦେଖିଲୁ ଏବଂ ମୁଁ ଡାରଉଇନ୍ ଓ କାର୍ଲମାର୍କ୍ସ ଶୀର୍ଷକ ଦୁଇଟି ବଙ୍ଗଳା ପୁସ୍ତକ କ୍ରୟ କରେ । ପ୍ରଦର୍ଶନୀରୁ ଫେରିଲା ବେଳକୁ ପ୍ରବଳ ବର୍ଷା ହୁଏ । ପ୍ରଫେସରଙ୍କ ଦେଖା ନପାଇ ଆମେ ଏସ୍‌ପ୍ଲାନେଡ୍ ପର୍ଯ୍ୟନ୍ତ ଚାଲିଗଲୁଁ ଏବଂ ସେଠାରୁ ରାସ୍ତା ବାରି ବାରି ଆଣ୍ଠୁଏ ପାଣିରେ ଯାଇ ରହୁଥିବା ସ୍ଥାନରେ ପହଞ୍ଚିଗଲୁଁ । ଦ୍ୱିତୀୟ ଦିନ ୟୁନାଇଟେଡ୍ କମର୍ସିଆଲ ବ୍ୟାଙ୍କ୍ ବୁଲି ମ୍ୟୁଜିୟମ, ଚିଡ଼ିଆଖାନା ଓ ଭିକ୍ଟୋରିୟା ମେମୋରିୟାଲ୍ ହଲ୍ ଦେଖିବା ପାଇଁ ଗଲୁଁ । ତୃତୀୟ ଦିନ ଇଣ୍ଡିଆନ୍ ଇଲେକ୍‌ଟ୍ରିକାଲ୍ ଓ୍ୱାର୍କ୍ସ, କେଶୋରାମ କଟନ୍ ମିଲସ୍, ଦକ୍ଷିଣେଶ୍ୱର କାଳୀମନ୍ଦିର ଓ ସଲଟଲେକ୍ ଏରିଆ ହୋଇ ଫେରିଲୁ । ଚତୁର୍ଥ ଦିନ କଲିକତାର ମିଣ୍ଟହାଉସ୍, ପରେଶନାଥ ମନ୍ଦିର ଓ ବହୁ ବଜାର ବୁଲି ସେଦିନ ରାତିରେ ହଗ୍‌ମାର୍କେଟ ପାଖରେ ଏକ ସିନେମା ଦେଖିଲୁଁ । ଶେଷଦିନ ଭାଗୀରଥି ଗଙ୍ଗାରେ ଲଞ୍ଚରେ ଶିବପୁରରେ ଅବସ୍ଥିତ ବଟାନିକାଲ ଗାର୍ଡ଼ନ ବୁଲି ବାହାରିଲୁଁ । କିଛି କିଣାକିଣି କରି ସେଦିନ ରାତିରେ କଟକ ଫେରିଲୁଁ ।

ପୂର୍ବରୁ କଲିକତାରେ ଘଟିଥିବା ହିନ୍ଦୁ ମୁସଲମାନ ଦଙ୍ଗାର ଚିହ୍ନମାନ ଆମେ ପ୍ରତ୍ୟକ୍ଷରେ ଲକ୍ଷ୍ୟ କଲୁଁ । ଦଙ୍ଗା ଚାଲିଥିବା ବେଳର ଲୋମହର୍ଷଣକାରୀ ସମ୍ବାଦମାନ ପ୍ରତିଦିନ ଖବରକାଗଜ ଓ ଆକାଶବାଣୀରେ ଘୋଷିତ ହେଉଥାଏ । ଦିଲ୍ଲୀ, ସିନ୍ଧୁ ପ୍ରଦେଶ, ପଞ୍ଜାବ, ପାଟନା ଓ କଲିକତା ସହରରେ ହିନ୍ଦୁ ମୁସଲମାନ ରକ୍ତର ବନ୍ୟା ଛୁଟିଥାଏ । କଲିକତାରୁ ପ୍ରବାସୀ ଓଡ଼ିଆମାନେ କୌଣସି ପ୍ରକାରେ ଜୀବନ ବଞ୍ଚାଇ ଚାଲିଆସନ୍ତି । କଳକାରଖାନା ବନ୍ଦ ହୋଇଯାଏ । ବିଚ୍ ରାସ୍ତାରେ ଦଳଦଳ ଲୋକ ଯେପରି ଭାବରେ ନରମେଧ ଯଜ୍ଞ ଘଟାଉଥାନ୍ତି, ସେ କାହାଣୀ ଶୁଣିଲେ ଲୋମ ଟାଙ୍କୁରି ଉଠୁଥାଏ । ମରିବା ଓ ମାରିବା ଯେପରି ପୂର୍ବୋକ୍ତ ସହରବାସୀଙ୍କର ଏକ ସାଧାରଣ ଘଟଣା ହୋଇପଡ଼େ ।

ଦେଶର ଏପ୍ରକାର ଭୟଙ୍କର ପରିସ୍ଥିତିରେ ଜାତିର ଜନକ ମହାତ୍ମାଗାନ୍ଧୀ ଯେପରି ଉଭୟ ସଂପ୍ରଦାୟ ମଧ୍ୟରେ ସଦ୍‌ଭାବ ଫେରାଇ ଆଣିବାପାଇଁ ଦଙ୍ଗାଗ୍ରସ୍ତ ଅଞ୍ଚଳମାନଙ୍କରେ ଭ୍ରମଣ କଲେ, ତାହା ଭାରତ ଇତିହାସରେ ଅନନ୍ୟ । ବ୍ରିଟିଶର ଓ ପାକିସ୍ଥାନୀମାନେ ଆମ ପ୍ରତି ଚରମ ଶତ୍ରୁତା ପ୍ରକାଶ କରୁଥିଲେ ମଧ୍ୟ ସେମାନଙ୍କଠାରୁ ମହାତ୍ମାଗାନ୍ଧୀଙ୍କ ଜୀବନ ଉପରେ କୌଣସି ଆଶଙ୍କା ପ୍ରକାଶ ପାଇନଥିଲା । କିନ୍ତୁ ଦେଶପାଇଁ ଜୀବନ ଉତ୍ସର୍ଗ କରିଥିବା ଜାତିର ଜନକ ପୂଜ୍ୟ ବାପୁଜୀ ଶେଷରେ ଏଇ ଦେଶର ଘାତକର ଗୁଳିରେ ଜୀବନ ଦେଲେ । ମହାତ୍ମାଙ୍କର ହତ୍ୟା ସମଗ୍ର ପୃଥିବୀରେ ଶୋକର ତରଙ୍ଗ ଖେଳାଇ ଦେଲା । ତାଙ୍କର ହତ୍ୟା ମାନବିକତାର ହତ୍ୟା ବୋଲି ସମଗ୍ର ବିଶ୍ୱ କୋଟି କଣ୍ଠରେ ଅଶ୍ରୁଳ ନେତ୍ରରେ ଘୋଷଣା କରି ଚାଲିଲା । ସେଇ ଦୁର୍ଦ୍ଦିନ ହେଉଛି ୧୯୪୮ ମସିହା, ଜାନୁୟାରୀ ୩୦ ତାରିଖ । ଦିଲ୍ଲୀର ବିରଳାଭବନରୁ ପ୍ରାର୍ଥନା ସଭାକୁ ଯାତ୍ରା କାଳରେ ନାଥୁରାମ ଗଡ୍‌ସେର ଲାଗ ଲାଗ ତିନୋଟି

ଗୁଳିରେ ବାପୁଜୀ ହା ରାମ ! ହା ରାମ ! ଉଚ୍ଚାରି ଟଳି ପଡ଼ିଲେ । ବାଷ୍ପରୁଦ୍ଧ କଣ୍ଠରେ ଶୋକ ଜର୍ଜରିତ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କର ବେତାର ଭାଷଣ ଆଜି ମନେ ପଡ଼ିଲେ ଅନ୍ତର ବାଷ୍ପାକୁଳ ହୋଇପଡ଼େ । ଦୀର୍ଘ ସାତଦିନ ଧରି ସମଗ୍ର ଦେଶରେ ଜାତୀୟ ଶୋକ ପାଳିତ ହେଲା; ଦେଶସାରା ଜାତୀୟ ପତାକା ଅର୍ଦ୍ଧନମିତ କରାଗଲା । ବେତାର କେନ୍ଦ୍ରମାନଙ୍କରୁ କେବଳ ଶୋକ ଧ୍ୱନି ଭାସି ଆସୁଥାଏ ।

ବାର୍ଷିକ ପରୀକ୍ଷା ପରେ ଗ୍ରୀଷ୍ମଛୁଟିରେ ଗାଁକୁ ଯାଇଥାଏଁ । କେବଳ ନିଦାଘ କାହିଁକି ଯେ କୌଣସି ଋତୁରେ ଗାଁର ଶୋଭା ମୋ ପକ୍ଷରେ ଅନିର୍ବଚନୀୟ । ନିଦାଘର ଉଷା ଓ ପ୍ରଦୋଷ, ଏହାର ଶ୍ୟାମ ବକୁଳ ଓ ପାଟଳ ଆମ୍ର କିଶଳୟ; ଚିଙ୍ଗୁଡ଼ିଦଳ ପରିପୂର୍ଣ୍ଣ ପୁଷ୍କରିଣୀ, ମଧ୍ୟାହ୍ନର ପ୍ରଚଣ୍ଡ ସୂର୍ଯ୍ୟକିରଣ; ପୁଷ୍କରିଣୀ ତଟସ୍ଥ ନାରିକେଳ, ରମ୍ଭା, ଜାମ୍ବୁ ଓ ଗୁବାକ ବୃକ୍ଷଶୋଭିତ ମଠ, ତାରିଣୀଶାଳ, ଚକ୍ରବାଳ ବିସ୍ତୃତ ଶସ୍ୟକ୍ଷେତ୍ର, କ୍ଷେତ୍ରରେ କୃଷକ ତୁଣ୍ଡରେ ରାମାୟଣ ଗୀତଲହରୀ; ଇକ୍ଷୁ କ୍ଷେତ୍ର ସଂଲଗ୍ନ ଆମ୍ରକୁଞ୍ଜସ୍ଥ ଡେଣ୍ଡା ଓ ସଂକୀର୍ଣ୍ଣ ନାଳିରେ ଜଳପ୍ରବାହ, ଆମ୍ରକୁଞ୍ଜରେ ଗ୍ରାମ୍ୟ ଶିଶୁଙ୍କର ମଧ୍ୟାହ୍ନକାଳୀନ ବିହାର ଓ କ୍ରୀଡ଼ା; ବୃକ୍ଷ ଛାୟାରେ ନିଦାଘକ୍ଳାନ୍ତ ଗୋ ମହିଷଙ୍କର ବିଶ୍ରାମ ଓ ରୋମନ୍ଥନ, ପୁଣି ଅପରାହ୍ନରେ ଉତ୍ତର ଆକାଶରେ ଘନକୃଷ୍ଣ ମେଘମାଳା : ଏସବୁ ମୋର କଳ୍ପଲୋକରେ ଯାଦୁ ସୃଷ୍ଟି କରନ୍ତି ।

ସେହିପରି ମୋର ପ୍ରିୟ ପଲ୍ଲୀ ଆକାଶରେ ପ୍ରାବୃଟରେ ବର୍ଷୁକ ମେଘମାଳ, ମେଘ ଦେହରେ ଚପଳାର ସ୍ଫୁରଣ; ଶ୍ରାବଣରେ ଅବାରିତ ବୃଷ୍ଟିଧାରା, ଡାହୁକ, ଭେକ ଓ କୁମ୍ଭାଟୁଆଙ୍କ କଣ୍ଠଧ୍ୱନି, ଶ୍ରାବଣୀ ରଜନୀର ଘନତମିସ୍ରା, ଅସଂଖ୍ୟା କୀଟପତଙ୍ଗଙ୍କର ବିଚିତ୍ର ନିନାଦ, ଶରତରେ ନିର୍ମଳ ନୀଳାକାଶ, ଶସ୍ୟଭରା କ୍ଷେତ୍ର, ବିଭିନ୍ନ ଓଷା ପର୍ବରେ ଶାରଦୀୟ ଜ୍ୟୋତ୍ସ୍ନାରେ କୁମାରୀ କଣ୍ଠର ମଧୁ-ଗୀତ, ହେମନ୍ତରେ ଦିଗନ୍ତ-ବିସ୍ତୃତ ସ୍ୱର୍ଣ୍ଣଶସ୍ୟ କ୍ଷେତ୍ର, ବସନ୍ତରେ ମଧୁ ଜ୍ୟୋତ୍ସ୍ନା, ମଳୟର ପ୍ରବାହ ଓ କୋକିଳର କୁହୁ, ପଳାଶ ଓ ଶାଳ୍ମଳୀର ରକ୍ତଦୁକୂଳ, ବକୁଳ ଭରା ଆମ୍ରକୁଞ୍ଜ, ବିମାନରେ ରାଧାକୃଷ୍ଣଙ୍କର ମେଳନଯାତ୍ରା, ହୋରିଖେଳ, ଖୋଳ କରତାଳର ପୁଲକଭରା ଧ୍ୱନି ସବୁକିଛି ମୋ ନିକଟରେ ଅପୂର୍ବ । ସନ୍ଧ୍ୟା ସମୟରେ ସମଧର୍ମା ଓ ସମବୟସ୍କ ଯୁବକଙ୍କ ନାନା ଚର୍ଚ୍ଚା, ମୁରଲି ପତିଙ୍କର ବୈଦେହୀଶ ବିଳାସ ଛାନ୍ଦଗାନ, ସାମୟିକ ସଂଗୀତ ଆସର ମୋ ପକ୍ଷରେ ଅଭୁଲାସ୍ମୃତି ।

ଛୁଟି ସରି ଆସୁଥାଏ । ଅପ୍ରତ୍ୟାଶିତ ଭାବରେ ଯାଜପୁରରୋଡ୍ ନିକଟସ୍ଥ ଯୋକଡ଼ିଆଁ ଶ୍ରୀମନ୍ତପୁର ଗ୍ରାମର ଜଣେ ଦୀର୍ଘ ଗୌର ବର୍ଣ୍ଣ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ଗାଁରେ । ଉଦ୍ଦେଶ୍ୟ ତାଙ୍କର ପିତୃବ୍ୟଙ୍କର ଜ୍ୟେଷ୍ଠାକନ୍ୟା ପାଇଁ ଉପଯୁକ୍ତ ପାତ୍ରର ସନ୍ଧାନ । ମୋ ପକ୍ଷରେ ସେତେବେଳେ ବିବାହର କୌଣସି ପ୍ରୟୋଜନ ବା ତାଗିଦା ନଥିଲେ ମଧ୍ୟ ଦାଦାଙ୍କଠାରୁ ଆରମ୍ଭ କରି ସମସ୍ତେ ତତ୍‌ପର ହୋଇଉଠନ୍ତି । ମୋର ଅଜଣାରେ ଚାରିଜଣ କନ୍ୟା ଦେଖିବା ପାଇଁ ଚାଲିଯାନ୍ତି ଏବଂ ଫେରିଆସି ପ୍ରସ୍ତାବ ପକ୍କା କରିବା ପାଇଁ ଜୋର ଦିଅନ୍ତି । ମୋର ଅନିଚ୍ଛା ସତ୍ତ୍ୱେ ସେଇ ଅଜ୍ଞାତ, ଅପରିଚିତ ପରିବାର ସହ ବନ୍ଧୁତ୍ୱ ପାଇଁ କଥା ପକ୍କା ହୋଇଯାଏ ।

ଆଷାଢ଼ର ଶେଷଲଗ୍ନରେ ହୁଏ ବିଭାଘର, ସମସ୍ତ ଗାଁ ସତେ ଯେପରି ଉତ୍ସବମୁଖର । ଅଦୃଷ୍ଟ ପୂର୍ବାକନ୍ୟାର ରୂପ ଓ ଗୁଣ ମୋର ମନୋମତ ନ ହୋଇଥିଲେ ଅବସ୍ଥା ଅବଶ୍ୟ ଭିନ୍ନ ପ୍ରକାର ହୋଇଥାନ୍ତା । କିନ୍ତୁ ଭିନ୍ନ ପ୍ରକାର ହେଲା ଅଜ୍ଞାତ ନାମଧେୟ ପରିବାର ସହ ବନ୍ଧୁତ୍ୱ ହେତୁ ଲୋକେ ସାତପୁରୁଷକୁ ବନ୍ଧୁ ବାନ୍ଧନ୍ତି, କିନ୍ତୁ ଗୋଟିଏ ପୁରୁଷ ତ ଦୂରର କଥା, ବିଭା ଦିନରୁ ସେମାନଙ୍କର ମୋ ସହିତ ଅପ୍ରୀତିକର ସଂପର୍କ । ଲୋକେ କହିଲେ- କନ୍ୟାର ବାପା ଥିଲେ ଅବସ୍ଥା ଭିନ୍ନ ପ୍ରକାର ହୋଇଥାନ୍ତା । ବଥ ନ ବଥାଇ କ'ଣ ଆବୁ ବଥେଇବ ?

ଆଜି ଜୀବନର ଶେଷପର୍ଯ୍ୟାୟରେ ପହଞ୍ଚିଛି । ସବୁକିଛି ଓଲଟପାଲଟ ହୋଇଯାଇଛି । ଅବହେଳା ଓ ଦୁଃଖ ଯନ୍ତ୍ରଣାରେ ଛଟପଟ ହୋଇ ଶାଶୁ, ଶଳା ସମସ୍ତେ ସଂସାରରୁ ବିଦାୟ ନେଇ ଚାଲିଗଲେଣି । ସେ ପରିବାରର ନଭଶ୍ଚୁମ୍ବୀ ଅହମିକା ବର୍ତ୍ତମାନ ଖରସ୍ରୋତାର ସିକତାରେ ହଜିଯାଇଛି । ଲୋଭ, ଅନ୍ୟାୟ, ଅବିଚାର ଓ ଅଶିକ୍ଷାରେ ପରିବାରର ଶ୍ରୀ ତୁଟିଯାଇଛି ।

ବି.ଏ. ପରୀକ୍ଷା ହୁଏ ଏପ୍ରିଲ୍‌ରେ । ଜୁନ ଶେଷ ସୁଦ୍ଧା ଫଳ ପ୍ରକାଶ ପାଏ । ୧୯୪୯ ଜୁଲାଇରେ ରେଭେନ୍ସାରେ ଏମ୍.ଏ. (ଓଡ଼ିଆ) ଶ୍ରେଣୀରେ ନାଁ ଲେଖାଏଁ । ସେତେବେଳକାର ବ୍ୟବସ୍ଥା ଅନୁଯାୟୀ ଏମ୍.ଏ. ସହିତ ଆଇନ୍‌ର ପ୍ରଥମବର୍ଷରେ ମଧ ନାଁ ଲେଖାଇ ଦିଏଁ । ଉଭୟ ପଢ଼ା ଏକସଂଗରେ ଚାଲେ । ପ୍ରଫେସର ଡଃ କରୁଣାକର କର ଆମକୁ ସଂସ୍କୃତ (କୁମାରସମ୍ଭବ, ରଘୁବଂଶ), ଭାଷାତତ୍ତ୍ୱ ଓ ବିଶେଷ ପତ୍ର ଓଡ଼ିଶୀ ବୈଷ୍ଣବଧର୍ମ ପଢ଼ାଉଥାନ୍ତି, ଜୟକୃଷ୍ଣ ମିଶ୍ର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ବିଦଗ୍ଧ ଚିନ୍ତାମଣି, ଗୌରୀ କୁମାର ବ୍ରହ୍ମା ମହାଯାତ୍ରା ରାଜକିଶୋର ରାୟ ପ୍ରବନ୍ଧ ଏବଂ ଜାନକୀବଲ୍ଲଭ ମହାନ୍ତି (କ) ଓଡ଼ିଆ ସାହିତ୍ୟର ଇତିହାସ ପଢ଼ାଉଥାନ୍ତି ।

ଆମ ପି.ଜି. ହଷ୍ଟେଲ ଥାଏ ମୟୂରଭଞ୍ଜ କୋଠିରେ; ଆଜି ସେ କୋଠି ରହିଛି, କିନ୍ତୁ ବର୍ତ୍ତମାନ ତା'ର ପୂର୍ବର ସେ ଆରଣ୍ୟ-ବିସ୍ତୃତି ବା ନୀରବତା ନାହିଁ; ଜାତୀୟ ରାଜପଥ ତା' ମଧ୍ୟରେ ଯାଇ ତା'ର ସୌନ୍ଦର୍ଯ୍ୟ ନଷ୍ଟ କରି ଦେଇଛି ।

ପ୍ରଥମବର୍ଷ ଉପର ମହଲାର ଗୋଟିଏ ବଡ଼ ହଲ୍‌ରେ ଥିଲି, ପାଖକୁ ସହପାଠୀ ଅର୍ଥନୀତି ଛାତ୍ର ମୁରାରି ପ୍ରହରାଜ । ଦ୍ୱିତୀୟ ବର୍ଷରେ ରହେଁ ତଳମହଲାର ଗୋଟିଏ ଟିଣ ଆଚ୍ଛାଦିତ ରୁମରେ । ସହପାଠୀ ମଧୁବାବୁ (ମଧୁସୂଦନ ମିଶ୍ର) ରହିଥାନ୍ତି ଗୋଟିଏ ବାରଣ୍ଡା ରୁମରେ ।

ପଢ଼ାପଢ଼ିରେ ବ୍ୟାଘାତ ଘଟିବାରୁ ଶେଷ କେଇମାସ ହଷ୍ଟେଲ୍‌ରୁ ବିଦାୟ ନେଇ ବନ୍ଧୁ ଚକ୍ରଧର ସାମଲଙ୍କ ('ଝଙ୍କାର' ପତ୍ରିକାର ପରିଚାଳନା ସଂପାଦକ) ସହ ରହେଁ ଟ୍ରେନିଂ ସ୍କୁଲ୍ ହଷ୍ଟେଲ୍‌ରେ । ହୋଟେଲ ଖାଦ୍ୟ ଦେହରେ ନ ଯିବାରୁ ମୋର ଖାଇବାର ବ୍ୟବସ୍ଥା ହୁଏ ସାହେବଜାଦା ବଜାରର ଅମଲ କୃଷ୍ଣ ରାୟଙ୍କ ଘରେ । ଅମଲଙ୍କର ବାପା ଓ ମା' ଭାରୀ ସରଳ ଓ ସ୍ନେହୀ ଲୋକ । ୧୯୫୧ ଜୁନ୍‌ରେ ଏମ୍.ଏ. ପରୀକ୍ଷା ଦେଇ ଗାଁକୁ ଚାଲିଯାଏଁ ।

●

## ॥ ଚତୁର୍ଥ ଅଧ୍ୟାୟ ॥

### ବୃତ୍ତି ଓ ବ୍ରତ (ଅଧ୍ୟାପକ ଜୀବନ) :

୧୯୫୧ ମସିହା, ଅଗଷ୍ଟ ମାସରେ ଆମର ଏମ.ଏ. ପରୀକ୍ଷା ଫଳ ପ୍ରକାଶ ପାଏ । ଜୁନ ମାସରେ ପରୀକ୍ଷା ସରିଥିଲା । ଆଜିକାଲି ପରି ଏମ୍.ଏ. ପରୀକ୍ଷା ଫଳ ବାହାରିବାକୁ ଅଯଥା ଗୋଟାଏ ବର୍ଷ ନଷ୍ଟ ହୋଇନାହିଁ । ଆମ ବ୍ୟାଚ୍‌ରେ ୩୧ ଜଣ ପରୀକ୍ଷାର୍ଥୀ ଥିଲୁଁ, ସେଥିମଧ୍ୟରୁ ଦ୍ୱିତୀୟ ଶ୍ରେଣୀରେ ପାଶ୍ କଲୁଁ ସାତଜଣ, ଅବଶିଷ୍ଟ ତୃତୀୟ ଶ୍ରେଣୀ । ଆଜିକାଲି ପରି ପ୍ରଥମ ଶ୍ରେଣୀ ପାଇବା ସହଜ ନଥିଲା । ଯେଉଁମାନେ ଖାତା ଦେଖୁଥିଲେ ସେମାନେ ଥିଲେ ଓଡ଼ିଶାର ପ୍ରଖ୍ୟାତ ଜ୍ଞାନୀ ଓ ପଣ୍ଡିତ ବ୍ୟକ୍ତି ।

ସେତେବେଳେ ପରୀକ୍ଷାରେ ଉତ୍ତମ ଶ୍ରେଣୀ ପାଇବା ଥିଲା ଯେପରି କଷ୍ଟକର, ଚାକିରି ଖଣ୍ଡିଏ ପାଇବା ମଧ୍ୟ ଥିଲା ସେହିପରି କଷ୍ଟକର । ଫଳ ବାହାରିବା ପରେ ଚାକିରିର ଚିନ୍ତା ଆସିଲା । ଚାକିରି ସନ୍ଧାନରେ କିଛିଦିନ ରହିଲି ଯୋବ୍ରାର ଗୋଟିଏ ମେସ୍‌ରେ ଜଣକର ଗେଷ୍ଟ ହୋଇ ।

ରେଭେନ୍ସା କଲେଜରେ ସେତେବେଳେ (ସେପ୍ଟେମ୍ବର କି ଅକ୍ଟୋବର) ଛାତ୍ରଧର୍ମଘଟ ଚାଲିଥାଏ; ମୁଖ୍ୟମନ୍ତ୍ରୀ ଥାଆନ୍ତି ସେତେବେଳେ ନବକୃଷ୍ଣ ଚୌଧୁରୀ । କଲେଜ୍ ଦରମା କମାଇବା ଓ ଆଉ କେତେକ ଦାବୀ ନେଇ ଛାତ୍ରଙ୍କର ଏ ଆନ୍ଦୋଳନ । ସେତେବେଳେ ନନ୍ଦିନୀ ଶତପଥୀ (ପରବର୍ତ୍ତୀ ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ) ଥାଆନ୍ତି ଷଷ୍ଠ ବାର୍ଷିକ ଶ୍ରେଣୀର ଛାତ୍ରୀ, ପୁଣି ସେ ଷ୍ଟୁଡେଣ୍ଟସ୍ ଫେଡେରସନ୍‌ରେ ନେତ୍ରୀ । ରେଭେନ୍ସା କଲେଜ୍ ବାହାର ରାସ୍ତାରେ ଲାଠିଚାର୍ଜ ହୋଇଥିଲା, ନିଜେ ନନ୍ଦିନୀ ସେଥିରେ ଆହତ ହୋଇଥିଲେ । ସେତେବେଳେ ଗ୍ରାମମଙ୍ଗଳ ଓ ଲୋକ ସଂପର୍କ ବିଭାଗର ସେକ୍ରେଟାରୀ ଥିବା ସାହିତ୍ୟିକ ଚିନ୍ତାମଣି ମିଶ୍ରଙ୍କ କାର୍‌ରେ ଛାତ୍ରମାନେ ନିଆଁ ଲଗେଇ ଦେଇଥିଲେ ।

ଯୋବ୍ରା ଛାଡ଼ି ଆମର ପୂର୍ବାଶ୍ରମ ପି.ଜି. ହଷ୍ଟେଲରେ ବିନାନୁମତିରେ ଖଟଟିଏ ମାଡ଼ି ତଳମହଲାରେ ରହିଲି । ସେତେବେଳେ ଅଧ୍ୟାପକ ଜୟକୃଷ୍ଣ ମିଶ୍ର ଥିଲେ ସୁପରିନ୍‌ଟେଣ୍ଡେଣ୍ଟ । ସେ ଯେପରି ଅମାୟିକ, ସେହିପରି ସ୍ନେହୀ ଓ ଉଦାର । ହଷ୍ଟେଲ୍‌ର ନାନା ଅଭିଯୋଗ ନେଇ ଅନ୍ତେବାସୀମାନେ ତାଙ୍କ ପାଖକୁ ଗଲେ ତାଙ୍କର ହସହସ ମୁହଁ ଓ ମିଠାକଥାରେ ଅଭିଯୋଗ

କୁଆଡ଼େ ପାଣିଫାଟି ଯାଏ । ହଷ୍ଟେଲ୍‌ଟା ଥିଲା ଗୋଟାଏ କସ୍‌ମୋପଲିଟାନ୍ ମେସ୍ । ହଷ୍ଟେଲ ସମସ୍ୟାକୁ ନେଇ ଅନ୍ତେବାସୀଙ୍କର ଦାବୀ, ହରତାଳ, ଅନଶନ କେବଳ ଥିଲା କଥାର କଥାମାତ୍ର ।

ସେଇ ହଷ୍ଟେଲରେ ଥାଇ ଚାକିରି ପାଇଁ ବିଭିନ୍ନ ବ୍ୟକ୍ତିଙ୍କ ସହ ଯୋଗସୂତ୍ର ରଖିଥାଏଁ । ରେଭେନ୍ସା ପଶ୍ଚିମ ଛାତ୍ରାବାସର ସହକାରୀ ତତ୍ତ୍ୱାବଧାରକ ଥିବା ଆମ ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି (କ)ଙ୍କ ପରାମର୍ଶ ଲୋଡ଼ିବାରୁ ସେ କହନ୍ତି ଭଦ୍ରକ କଲେଜରେ ଓଡ଼ିଆ ବିଭାଗର ଗୋଟିଏ ପୋଷ୍ଟ ଖାଲି ଅଛି । ଏ ସଂପର୍କରେ ଯୋଗାଯୋଗ କରିବାପାଇଁ ସେ ସେଠାକାର ଓଡ଼ିଆ ଅଧ୍ୟାପକ ଗଗନ ବିହାରୀ ମହାନ୍ତିଙ୍କୁ ମୋ ହାତରେ ଖଣ୍ଡିଏ ପତ୍ର ଦିଅନ୍ତି । ଭଦ୍ରକ କଲେଜ୍‌ର ସେକ୍ରେଟେରୀ ଥାଆନ୍ତି ଆଡ୍‌ଭୋକେଟ୍ ନରେନ୍ଦ୍ର ପ୍ରସାଦ ଦାସ (ନରୁବାବୁ ନାମରେ ସୁପରିଚିତ) ।

**ଭଦ୍ରକ ଯାତ୍ରା :**

ମୁଁ ଜାନକୀ ବାବୁଙ୍କ ପତ୍ର ଧରି ରାତି ପାସେଞ୍ଜର୍ ଟ୍ରେନ୍‌ରେ ଭଦ୍ରକ ଯାତ୍ରା କଲି । ସେ କାଳର ପାସେଞ୍ଜର୍ ଟ୍ରେନ୍‌ର ଗତି ସମସ୍ତଙ୍କୁ ଜଣା । ଏଇ କେତେବର୍ଷ ହେଲା ସିନା ଡ଼ବଲ ଲାଇନ୍ ହୋଇଯାଇଛି (ମହାନଦୀ, କାଠଯୋଡ଼ି ଓ ବିରୂପା ପ୍ରଭୃତି କେତୋଟି ନଦୀକୁ ଛାଡ଼ି; କିନ୍ତୁ ସେତେବେଳେ ହାବଡ଼ାଠାରୁ ମାଦ୍ରାଜ ଯାଏ ଓଡ଼ିଶା ଭିତରେ ଗୋଟିଏ ଲାଇନ୍ । ପାସେଞ୍ଜର୍ ଟ୍ରେନ୍‌ର ଗତି ମନ୍ଥର, ପ୍ରତି ଷ୍ଟେସନରେ ରହି ରହି ଯିବ, ପୁଣି ଗୋଟିଏ ଗୋଟିଏ ଷ୍ଟେସନରେ ଅଧଘଣ୍ଟାଏ, ଏପରିକି ଘଣ୍ଟାଏ ଧରି ପଡ଼ି ରହେ । କାରଣ ପାସେଞ୍ଜର୍ ଟ୍ରେନ୍‌କୁ ମେଲ୍, ଏକ୍ସପ୍ରେସ (ଡାଉନ୍, ଅପ) ଏସବୁକୁ ବାଟ ଛାଡ଼ି ଷ୍ଟେସନରେ ଅଟକିବାକୁ ହେବ । ଦ୍ରୁତଗାମୀ ଗାଡ଼ିଗୁଡ଼ିକ ଷ୍ଟେସନ ପାର ହୋଇ ଅନ୍ୟ ହଲ୍‌ଟିଂ ଷ୍ଟେସନରେ ନ ପହଞ୍ଚିବା ପର୍ଯ୍ୟନ୍ତ ପାସେଞ୍ଜର୍ ଟ୍ରେନ୍‌କୁ ଅପେକ୍ଷା କରିବାକୁ ହେବ । ଗୋଟିଏ ଗୋଟିଏ ଷ୍ଟେସନରେ ଦୀର୍ଘକାଳ ପଡ଼ିରହିବା କେତେ ବିରକ୍ତିକର ଭୁକ୍ତଭୋଗୀ କେବଳ ଜାଣନ୍ତି । ସେ ସମୟରେ ଆମଭଳି ପାସେଞ୍ଜର ଟ୍ରେନ୍‌ଗାମୀ ଯାତ୍ରୀଙ୍କର କାଳକ୍ରମେ ଏହା ଦେହସୁହା ହୋଇଯାଇଥାଏ । ଆଜିକାଲି ପରି ନଦୀ ଉପରେ ସେତେବେଳେ ସଡ଼କ-ପୋଲ ହୋଇନଥାଏ । ଫଳରେ ଟ୍ରେନ୍ ଛଡ଼ା ଗତି ନାହିଁ, ପୁଣି ଆମଭଳି ବେକାର ଯୁବକ ହାତରେ ପଇସା ନାହିଁ, ରାତିସାରା ବାଟଯାକ ପଡ଼ି ପଡ଼ି ଯାଜପୁର ରୋଡ୍ ପାଖରେ ସିନ୍ଦୂରା ଫାଟି ଆସିଲା । ବୈତରଣୀ ପୋଲ ଓ ଆଉ ଛୋଟ ଛୋଟ ପୋଲ ପାରହୋଇ ଗାଡ଼ି ସାଳନ୍ଦୀ ପୋଲ ପାର ହେଲା । ସେତେବେଳେ 'ମାତୃଭୂମି' ଖବରକାଗଜ ନୂଆ ବାହାରୁ ଥିବାରୁ ତା'ର ବିଜ୍ଞାପନ ଭଦ୍ରକ ଷ୍ଟେସନ ନିକଟବର୍ତ୍ତୀ ରାସ୍ତା କଡ଼ରେ ମରାଯାଇଥାଏ ।

ଭଦ୍ରକ ଷ୍ଟେସନରେ ଓହ୍ଲେଇ ରିକ୍‌ସାଟିଏ ଧରି ପଚାରି ପଚାରି ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ରଙ୍କ କୋଠିରେ ପହଞ୍ଚିଲି । କୋଠି ସାମ୍‌ନାରେ ବଡ଼ ଗେଟ୍ । ଭିତରେ ପକାକାଛ,

ଚାଳଘର, କୂଅ । ପୂର୍ବ ପଶ୍ଚିମ ହୋଇ ତିଣ ଘରଟିଏ । ସେଥିରେ ରହୁଥାନ୍ତି ଭୂୟାଁ ଭାସ୍କର କୋଠିର ମେନେଜର । ଚାଳ ଘରଟିରେ ମଝିରେ ପକ୍କା କାନ୍ଥ ଦିଆଯାଇ ଦୁଇଟି କ୍ୱାର୍ଟରସ୍ କରାଯାଇଥାଏ । ପୂର୍ବ ପାଖ ଖଞ୍ଜାରେ ଥାନ୍ତି ଓଡ଼ିଆ ଅଧ୍ୟାପକ ଗଗନବିହାରୀ ମହାନ୍ତି, ପଶ୍ଚିମପାଖ ଖଞ୍ଜାରେ ଥାନ୍ତି ଅର୍ଥନୀତି ଅଧ୍ୟାପକ ପ୍ରଭାତ କୁମାର ଘୋଷ ।

ଗଗନ ବାବୁ ମୋ ଡାକରା ପାଇ ଘରୁ ବାହାରି ଆସିଲେ । ମୁଁ ତାଙ୍କୁ ମୋ ପରିଚୟ ଦେଇ ଜାନକୀବାବୁଙ୍କ ଚିଠି ଦେଲି । ପ୍ରଭାତ ବାବୁ ଆସି ସେଠି ଜୁଟିଗଲେ । ମୋର ପରିଚୟ ପାଇ ସାମାନ୍ୟ ଜଳଯୋଗରେ ଆପ୍ୟାୟିତ କଲେ । ଗଗନ ବାବୁ କହିଲେ, ''ଆପଣ ବାଉଦପୁର ଚାଲିଯାନ୍ତୁ, ସେକ୍ରେଟାରୀ ନରୁବାବୁଙ୍କୁ ଭେଟି ଅଧ୍ୟାପକ ପୋଷ୍ଟ ସଂପର୍କରେ କଥାବାର୍ତ୍ତା କରିବେ । ମୋର ତ ସମର୍ଥନ ରହିଲା, କିନ୍ତୁ ସେ ଯେତେବେଳେ ନିଯୁକ୍ତିକାରୀ ତାଙ୍କ ସହ ଭେଟ ଓ ଆଳାପ ଏକାନ୍ତ ପ୍ରୟୋଜନ ।

ମୁଁ ଗଗନବାବୁଙ୍କ ପରାମର୍ଶ ଅନୁଯାୟୀ ବାଉଦପୁର ଆଡ଼କୁ ଚାଲିଲି । ଜଗନ୍ନାଥପୁର, କଲେଜ୍ ଛକ, ଜାନୁଗଞ୍ଜ ପାରହୋଇ ବାଉଦପୁର ଡଙ୍ଗାଘାଟରେ ପହଞ୍ଚିଲି । ବର୍ଷାଦିନ ହୋଇ ଥିବାରୁ ନଈରେ ହୁଲିଡଙ୍ଗା ପଡ଼ିଥାଏ । ଡଙ୍ଗାରେ ପାରହୋଇ ନରୁବାବୁଙ୍କ ଘରକୁ ଗଲି । ନଈକୂଳରେ ନରୁବାବୁଙ୍କ ଘର ଦକ୍ଷିଣମୁହାଁ । ପକ୍କା କାନ୍ଥ ଓ ଚାଳ ଘର । ଦକ୍ଷିଣ ଓ ପଶ୍ଚିମ ପାଖରେ ଓସାରିଆ ବାରଣ୍ଡା । ନରୁବାବୁ ବେଞ୍ଚରେ ନଈଆଡ଼କୁ ଚାହିଁ ବସିଥାନ୍ତି । ସାବନା ବର୍ଣ୍ଣର ସୁସ୍ଥକାୟ ବ୍ୟକ୍ତି ଜଣେ । ସ୍ଥାନୀୟ ଭଦ୍ରକ ବାର୍‌ର ଆଡ଼ଭୋକେଟ । ସାର୍ ଆଶୁତୋଷ ମୁଖର୍ଜୀଙ୍କ ପରି ନିଶ । ଧୋତି ପିନ୍ଧା । ବେକରେ ତୁଳସୀମାଳା । ଦେହ ଖାଲି ।

ନମସ୍କାର କରି ନିଜର ପରିଚୟ ଦେଲି । ପାଖରେ ବସାଇ ନାନାକଥା ପଚାରିଲେ । ମୋର ଉଦ୍ଦେଶ୍ୟ ସଂପର୍କରେ କହିବାରୁ କହିଲେ- ଓଡ଼ିଆ ଅଧ୍ୟାପକ ପୋଷ୍ଟଟିଏ ଖାଲି ଅଛି । ଆହୁରି ଦୁଇଜଣ ଦରଖାସ୍ତ କରିଛନ୍ତି- ଚିନ୍ତାମଣି ବେହେରା ଓ ମହାପାତ୍ର ନୀଳମଣି ସାହୁ । ଚିନ୍ତାମଣି ବେହେରା କଲିକତା ବିଶ୍ୱବିଦ୍ୟାଳୟର ପ୍ରଥମ ଶ୍ରେଣୀ ପ୍ରାର୍ଥୀ, ନୀଳମଣି ସାହୁ ହାସ୍ୟରସିକ ବୋଲି ଅନ୍ୟ କାହାଠାରୁ ଶୁଣିଥିଲେ । କହିଲେ- କିଛି ତ ସ୍ଥିର ହୋଇନାହିଁ । ଦରଖାସ୍ତ ଦେଇଥାନ୍ତୁ । କ'ଣ ହେଉଛି ପରେ ଜଣାଇବେ ।

କିଛି ନିଶ୍ଚିତ ଉତ୍ତର ନପାଇ ଗାଁକୁ ଫେରିଲି । ଗାଁରେ ଦୁଇ-ଚାରିଦିନ ରହି କଟକ ଗଲି ଏବଂ ଟ୍ରଙ୍କଟି ରଖିଦେଇ ପୁଣି ଗାଁକୁ ଲେଉଟିଲି । ଚାକିରି କିଛି ସ୍ଥିର ହୋଇନଥାଏ । ଗାଁରେ ବେକାର । ଦଶହରା ଛୁଟି ହୋଇଯାଇଥାଏ । କଟକର ଓଡ଼ିଶା ପବ୍ଲିକ୍ ସର୍ଭିସ କମିଶନ ଅଫିସ୍‌ରୁ ମୋର ଜଣେ ସହପାଠୀ କିରାଣି ଚିଠି ଦେଲେ : ଓ.ଏ.ଏସ୍. ପୋଷ୍ଟ ପାଇଁ ଦରଖାସ୍ତ ଫର୍ମ ପୂରଣ କରି ଫି-ସହ ପଠାଇ ଦିଅ । ପତ୍ର ପ୍ରେରକ ହେଉଛନ୍ତି ମୋର ସହପାଠୀ ଲକ୍ଷ୍ମୀଧର ତୁଙ୍ଗ । ଘର ତିଗିରିଆ । ଅତି ଗରିବ । ବଡ଼ କଷ୍ଟରେ ପଢ଼ାପଢ଼ି କରି ଶେଷକୁ ଓ.ପି.ଏସ୍.ସି. ଅଫିସରେ କିରାଣି ପୋଷ୍ଟଟିଏ ପାଇଥାନ୍ତି । ସେ ପୁଣି ପରେ ଓ.ଏ.ଏସ୍.

ପରୀକ୍ଷା ଦେଇ ଡ଼େପୁଟି ମାଜିଷ୍ଟ୍ରେଟ୍ ଭାବରେ ବଛାଯାଇ ଭିନ୍ନ ଭିନ୍ନ ସ୍ଥାନରେ ବିଡ଼ିଓ ଓ ଅନ୍ୟାନ୍ୟ ପୋଷ୍ଟରେ ରହି ଶେଷରେ ଜିଲ୍ଲା ମାଜିଷ୍ଟ୍ରେଟ୍ (ବାଲେଶ୍ୱର) ଓ ସେକ୍ରେଟେରୀ ହୋଇଥିଲେ ।

ମୁଁ କାଳବିଳମ୍ବ ନ କରି ଫି ଓ ଫର୍ମ ପୂରଣ କରି ତାଙ୍କ ଠିକଣାରେ ପଠାଇଦେଲି । ଓ.ଏ.ଏସ୍. ପରୀକ୍ଷା ପାଇଁ ବିଷୟ ନେଲି ଲ, ପଲିଟିକାଲ୍ ସାଇନ୍ସ ଓ ଓଡ଼ିଆ । ଏଲ୍.ଏଲ୍.ବି.ର ଦ୍ୱିତୀୟ ବର୍ଷରେ ନାଁ ଲେଖାଇ ଥାଏଁ । କିଛିଦିନ କ୍ଲାସରେ ଯୋଗଦେଇ ଓ.ଏସ୍.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଏଁ । ଅଧାପଚରିଆ ପ୍ରସ୍ତୁତିରେ ପରୀକ୍ଷା ଦେବାକୁ ଗଲି ନଭେମ୍ବର ମାସ । ଲିଖିତ ପରୀକ୍ଷା ସେତେ ଭଲ ହୋଇନଥାଏ । କିନ୍ତୁ ମୌଖିକ ପରୀକ୍ଷାରେ (Vivavoce test) ଯୋଗ ଦେବାପାଇଁ ଚିଠିପାଏଁ । ଡିସେମ୍ବର ମାସରେ ଇଣ୍ଟରଭ୍ୟୁ ହୋଇଥିଲା । ମୁଁ କଟକ ଆସି କଲେଜ୍ ଛକର ରାଜାରାମ ଦୋକାନ ପାଖରେ ଏକ ପୁରୁଣା ମେସ୍‌ରେ ସହପାଠୀଙ୍କ ମେଳରେ ରହିଲି । ପେଣ୍ଟ ଖଣ୍ଡିଏ ଥିଲା, କୋଟ୍ ନଥାଏ । ଇଣ୍ଟର୍‌ଭ୍ୟୁ ଦିନ କୋର୍ଟ ଟାଇ ବ୍ୟବସ୍ଥା ହୋଇଗଲା । ଜଣେ ବନ୍ଧୁ ତାଙ୍କ ଟାଇଟି ଗଳାରେ ଭିଡ଼ି ଦେଲା । ପୁରୁଣା ସେକ୍ରେଟେରିଏଟ୍ ହତାରେ ପି.ଏସ୍.ସି. ଅଫିସ୍ ଥାଏ । ସେତେବେଳେ ଚେୟାରମ୍ୟାନ ଥାଆନ୍ତି ସାମୁଏଲ ଦାସ; ଜଣେ ପୁରୁଣା ଆଇ.ସି.ଏସ୍. ଅଫିସ୍‌ର । ସେ ଜଣେ ଭଦ୍ର, ଉଦାର ଓ କୋମଳ ପ୍ରାଣବ୍ୟକ୍ତି । ଚେୟାର୍‌ମ୍ୟାନଙ୍କ ଇଙ୍ଗିତରେ ମୁଁ ଧନ୍ୟବାଦ ଦେଇ ବସିଲି ସମକାୟ ଓ ଶିରଗ୍ରୀବ ହୋଇ । ଟାଇଟା ତଣ୍ଟିକୁ ଅଡୁଆ ଲାଗୁଥାଏ । ଆମର ପୂର୍ବତନ ଇଂରାଜୀ ପ୍ରଫେସର୍ ପି.ଏସ୍. ସୁନ୍ଦରମ୍ ମଧ ଜଣେ ସଭ୍ୟ ଥାଆନ୍ତି । ଉଦୟନାଥ ଦାସ ସେତେବେଳେ ପି.ଏସ୍.ସି.ର ସେକ୍ରେଟେରୀ ।

ଚେୟାର୍‌ମ୍ୟାନ ଏପରି ଭାବରେ ପ୍ରଶ୍ନଗୁଡ଼ିକ କଲେ ମୋର ଜୀବନର ପ୍ରଥମ ଇଣ୍ଟରଭ୍ୟୁ ହେଲେ ମଧ ମୋର ମନେହେଲା : ମୁଁ ଇଣ୍ଟର୍‌ଭ୍ୟୁକୁ ଆସିନାହିଁ, କାହା ସହ ସହଜ ଭାବରେ କଥାବାର୍ତ୍ତା କରିବାକୁ ଆସିଛି । ମୋତେ ଏତେ ଘରୁଆ (homely) ଲାଗିଲା, ଫଳରେ ତାଙ୍କ ପ୍ରଶ୍ନଗୁଡ଼ିକର ସନ୍ତୋଷଜନକ ଉତ୍ତର ଇଂରାଜୀରେ ଦେଲି । ମୁଁ ସେତେବେଳେ ସ୍ୱାମୀ ଶିବାନନ୍ଦଙ୍କର Lives of Saints (ସନ୍ଥ ଜୀବନୀ) ଓଡ଼ିଆରେ ଅନୁବାଦ କରିଥିଲି । ସେଥିରୁ କେତୋଟି ଜୀବନୀ ରବିବାର 'ପ୍ରଜାତନ୍ତ୍ର' ରେ ବାହାରିଥିଲା । ତା'ଛଡ଼ା କେତୋଟି ଆଲୋଚନାମୂଳ ପ୍ରବନ୍ଧ ଝଙ୍କାର ଓ ସହକାର ପ୍ରଭୃତି ମାସିକ ପତ୍ରିକାରେ ପ୍ରକାଶ ପାଇଥିଲା । ପ୍ରଫେସର୍ ସୁନ୍ଦରମ୍ ମହାପୁରୁଷମାନଙ୍କ ମଧ୍ୟରେ ଆଦି ଶଙ୍କରାଚାର୍ଯ୍ୟଙ୍କର ପରିଚୟ ଓ ତାଙ୍କର ଦର୍ଶନ ସଂପର୍କରେ ପଚାରିଲେ । ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଇଥିବାରୁ ତାଙ୍କ ସହିତ ଅନ୍ୟ ସଭ୍ୟମାନେ ସନ୍ତୁଷ୍ଟ ହେଲାଭଳି ମନେ ହେଲା ।

ଇଣ୍ଟରଭ୍ୟୁ ଦେଇସାରି ଗାଁରେ ଆସି ରହିଲି । ବେକାର ଜୀବନ । ମୁହଁରେ କେହି କିଛି ନ କହୁଥିଲେ ମଧ ଚାକିରି ଧରି ଘରକୁ ସାହାଯ୍ୟ କରିବା ଜରୁରି ହୋଇ ପଡୁଥାଏ । ଘରର ଚାଷକାର୍ଯ୍ୟରେ ସାହାଯ୍ୟ କରୁଥାଏଁ । ଅଜା ବଞ୍ଚିଥିବା ଅବସ୍ଥାରେ ନଳିତା କଟା,

ଶୀତଦିନେ ମୁଗ ଉପୁଡ଼ା, ବେଙ୍ଗଳାରେ ବଳଦ ଅଡ଼ା, ଅମାରକୁ ଧାନ ବୁହା, ବିଲକୁ ମୂଲିଆଙ୍କ ପାଇଁ ପଣା ନେବା, ଦେଣ୍ଡା ବୁହା ଆଦି ବିଭିନ୍ନ କାମରେ ଆମକୁ ଟିକିଏ ଟିକିଏ ଅଭ୍ୟାସ କରାଇଥାନ୍ତି । ବେକାର ଅବସ୍ଥାରେ କିଛି କିଛି ଦୈହିକ ଶ୍ରମ କରିବାଟା ମୁଁ କେବେ ସମ୍ମାନ ହାନିକର ମନେ କରୁନଥିଲି । ପୁଣି ସେତେବେଳେ ଆମର ଧାନ ମହାଜନି ବ୍ୟବସ୍ଥା ଥିବାରୁ ମହାଜନି କାଗଜପତ୍ର ହିସାବ କରି ଧାନ ଶୁଝିଲାବେଳେ ଋଣ ଗ୍ରହୀତାମାନଙ୍କୁ ଶୁଣାଇ ଦେଉଥାଏଁ । ଆମ ଅଞ୍ଚଳରେ ଧାନ ଦେଣ ନେଣରେ 'ପ୍ରୁଡ଼ି' ମାପ ଥିଲା । ବେତରେ ପ୍ରୁଡ଼ି ଗୁଡ଼ିକ ବୁଣା ହୋଇଥାଏ । ଭରଣକ ଚାରି ଛେଲା, ଛେଲାକ ଚାଳିଶି ପ୍ରୁଡ଼ି । ପ୍ରୁଡ଼ିକ ଷୋଳ ବିଶ୍ୱା । ମୁଁ ବିଶ୍ୱା ହିସାବ କରି ଶୁଣାଇଲେ ଲୋକେ ଦାଦାଙ୍କ ପାଖରେ ଛାଡ଼ ପାଇଁ ଆପତ୍ତି କରନ୍ତି, ସେ ଉଦାର ମନରେ ବିଶ୍ୱା ହିସାବଟା ଛାଡ଼ି ଦେଉଥାନ୍ତି ।

ପୂର୍ବରୁ ଖବର ମିଳିଥିଲା ଯେ ଚିନ୍ତାମଣି ବେହେରା ଭଦ୍ରକ କଲେଜ୍‌ରେ ନିଯୁକ୍ତି ପାଇଯାଇଛନ୍ତି; କିନ୍ତୁ ଜାନୁୟାରୀ (୧୯୫୨) ପ୍ରଥମ ସପ୍ତାହରେ କଲେଜ୍ ସେକ୍ରେଟାରୀ ନରୁବାବୁଙ୍କ ଠାରୁ ଚିଠି ପାଇଲି ଭଦ୍ରକ କଲେଜ୍ ଓଡ଼ିଆ ଅଧାପକ ପୋଷ୍ଟରେ ଯୋଗ ଦେବାକୁ । ସେତେବେଳେ ଘରୋଇ କଲେଜ୍‌ରେ ଅଧାପକଙ୍କର ଦରମା ଥିଲା ୧୮୦ ଟଙ୍କା ଓ.ଡ଼ି.ଏ. ମିଶାଇ ୨୦୦ ଟଙ୍କା । ମୋତେ ଲେଖାଯାଇଥିଲା : ହଷ୍ଟେଲ୍ ସୁପରିନ୍‌ଟେଣ୍ଡଣ୍ଟ ଏଲାଉନ୍ସ ସହ ଅଧାପକ ଦରମା ଟ୨୦୦.୦୦/- । ଏ ସଂପର୍କରେ କଥାବାର୍ତ୍ତା କରିବା ପାଇଁ ସେ ମୋତେ ଡକାଇଥାନ୍ତି । ଯେଉଁଦିନ ଚିଠି ପାଇଲି ତହିଁ ଆରଦିନ ସକାଳେ ସ୍ନାନ ପ୍ରକାର ସାରି ଈଶ୍ୱରଙ୍କୁ ସ୍ମରଣ କରି ଆନନ୍ଦପୁର ବାଟେ ବସ୍‌ରେ ଭଦ୍ରକ ବାହାରିଲି ।

ବାଉଦପୁର ଡଙ୍ଗାଘାଟରେ ଦିନ ୧୦.୩୦ ରେ ବସ୍‌ରୁ ଓହ୍ଲେଇ ସିଧା ନରୁବାବୁଙ୍କ ଘରକୁ ଗଲି । ଶୀତଦିନ ହୋଇଥିବାରୁ ନଈରେ ବାଉଁଶପୋଲ ତିଆରି ହୋଇଯାଇଥାଏ । ନରୁବାବୁ ପୂର୍ବ ପରି ତାଙ୍କ ବାରଣ୍ଡା ଚେୟାର୍‌ରେ ବସିଥାନ୍ତି । ମୁଁ ତାଙ୍କୁ ନମସ୍କାର କରିବାରୁ ସେ ମୋତେ ଦେଖି ଭାରୀ ଖୁସି ହୋଇଗଲେ ଏବଂ ପାଖରେ ବସାଇ ସମସ୍ତ ବୃତ୍ତାନ୍ତ କହିଲେ । ସେ କହିଲେ ଯେ ଚିନ୍ତାମଣି ବେହେରା ଶାନ୍ତିନିକେତନର ବିଶ୍ୱଭାରତୀରେ ଓଡ଼ିଆ ଅଧାପକ ପଦ ପାଇ ହଠାତ୍ ଇସ୍ତଫା ଦେଇ ଚାଲିଗଲେ, ଦାୟିତ୍ୱମୁକ୍ତ ହେବା ପର୍ଯ୍ୟନ୍ତ ଅପେକ୍ଷା ବି କଲେ ନାହିଁ ।

ଅଧାପକ ପଦରେ ଯୋଗଦେବା ସଂପର୍କରେ ମୁଁ ମୋର ସମ୍ମତି ଜଣାଇଲି । କଲେଜ୍ ଗଭର୍ଣ୍ଣିଂବଡ଼ିର ସଭାପତି ଥାନ୍ତି ହେମେନ୍ଦ୍ର ନାଥ ଚାନ୍ଦ, ବାଉଦପୁରର ଅନ୍ୟଜଣେ ପୁରୁଖା ଆଡ଼ଭୋକେଟ୍ ତାଙ୍କର ପୁଅ ନବୀନ କୃଷ୍ଣ ଚାନ୍ଦ ଥିଲା ମୋର ସହପାଠୀ । ନରୁବାବୁ ହେମେନ୍ଦ୍ର ବାବୁଙ୍କୁ ମୋତେ ଚିହ୍ନେଇ ଦେଇ କହିଲେ-

ଉନି ଗଙ୍ଗାଧର ବଳ, ଆନନ୍ଦପୁର କାଛେ ପୁରୁଣିଆଁ ଗ୍ରାମେର ଅଧିବାସୀ । ଉନି ମ୍ୟାଟ୍ରିକ୍ ପ୍ରଥମ ଶ୍ରେଣୀତେ ପାଶ୍ କରେଛେନ୍, ଏମ୍.ଏ. ତେ ସେକେଣ୍ଡ କ୍ଲାସ ପେୟେଛେନ୍ । ଏକେ ଓଡ଼ିଆ ଅଧାପକ ପଦେ ନିଯୁକ୍ତି ଦିଛି । ହେମ ବାବୁ ହସି ହସି ନିଜର ସମ୍ମତି ପ୍ରକାଶ

କଲେ । ହେମ ବାବୁ ଚାଲିଗଲା ପରେ ହେଡ଼ମାଷ୍ଟର କିଶୋରୀ କିଙ୍କର ଦାସ ଓ ଅନ୍ୟ ଦୁଇଜଣ ଗ୍ରାମବାସୀ ସେଠାରେ ପହଞ୍ଚିଲେ । ନରୁବାବୁ ସେମାନଙ୍କ ସହ ମୋର ପରିଚୟ କରାଇଦେଲେ । ଜେନେରାଲ ଇଲେକ୍‌ସନ ପରେ କାର୍ଯ୍ୟରେ ଯୋଗ ଦେବାକୁ କହିବାରୁ ଚଞ୍ଚଳ ଯୋଗ ଦେବାପାଇଁ ସେ ଜୋର୍ ଦେଲେ । ତାଙ୍କର ସଶ୍ରଦ୍ଧ ଅନୁରୋଧକ୍ରମେ ତାଙ୍କ ସହ ଶାଗ ଭାତର ପ୍ରସାଦ ପାଇ (ସାତ ଆଠ ପ୍ରକାରର ଭୋଜ୍ୟ ସାମଗ୍ରୀ) ବିଦାୟ ନେଲି ।

ମୋର କଲେଜ୍‌ରେ ଅଧ୍ୟାପକ ଚାକିରି ହୋଇ ଯାଇଥିବାରୁ ଶୁଣି ଗାଁରେ ସମସ୍ତେ ଖୁସି ହୋଇଗଲେ । ଗାଁର ମୁଁ ପ୍ରଥମ ମାଟ୍ରିକୁଲେଟ୍, ପ୍ରଥମ ଗ୍ରାଜୁଏଟ୍ ପୁଣି ପ୍ରଥମ ଏମ.ଏ. । କେବଳ ଗାଁରେ ନୁହେଁ, ଆଖପାଖ ଗାଁ ଗଣ୍ଡା, ବନ୍ଧୁବାନ୍ଧବଙ୍କର ସବୁଠି ମୋର ପ୍ରଶଂସା ଓ ଆଦର ।

## ଭଦ୍ରକ କଲେଜ୍‌ରେ ପ୍ରଥମ ଅଧ୍ୟାପକ ଜୀବନ :

ତା୨୧/୧/୧୯୫୨ରେ ଇଲେକ୍‌ସନ । ମୁଁ ଆଉ ଇଲେକ୍‌ସନକୁ ଅପେକ୍ଷା ନ କରି ସୋମବାର ଦିନ (ତା୨୧/୧/୫୨) କଲେଜ୍‌ରେ କାର୍ଯ୍ୟରେ ଯୋଗ ଦେବାପାଇଁ ୨୦ ତାରିଖ ଦିନ ଭଦ୍ରକ ବାହାରିଲି । ଭଦ୍ରକର ପୁରୁଣା ସିନେମା ଛକରେ ବସ୍‌ରୁ ଓହ୍ଲେଇଲି । ଗୁଣମଣି ମହାପାତ୍ର ନାମରେ ଜଣେ ତୃତୀୟ ବାର୍ଷିକ ଶ୍ରେଣୀର ଛାତ୍ର (ବର୍ତ୍ତମାନ ପରଲୋକ ଗାମୀ) ଅନୁମାନ କରି ସେ ବସ୍ ପାଖରେ ଠିଆ ହୋଇଗଲେ ଏବଂ ବସ୍‌ରୁ ଓହ୍ଲେଇଲା ମାତ୍ରେ ନମସ୍କାର କଲେ । ମୁଁ କାର୍ଯ୍ୟରେ ଯୋଗ ଦେବି ବୋଲି ଆଗରୁ ଶୁଣିଥିଲେ । ସେ ଲୋକ ଲଗେଇ ଟ୍ରଙ୍କ୍‌ଟିକୁ ସାହାପୁର ହଷ୍ଟେଲ୍‌କୁ ପଠେଇ ଦେଲେ । ନରୁବାବୁଙ୍କୁ ଭେଟିବା ପାଇଁ ଆମେ ସାଇକେଲ୍‌ରେ ବାଉଦପୁର ଗଲୁଁ । ନରୁବାବୁ ଗୁଣମଣି ସହ ମୋତେ ଦେଖି ଭାରୀ ଖୁସି ହୋଇଗଲେ ଏବଂ କହିଲେ- ଭୋଟ୍ ଦେଲେ ନାହିଁ କି ? ମୁଁ କହିଲି- ଭୋଟ ଦେବାକୁ ଅପେକ୍ଷା ନ କରି ଚାଲିଆସିଲି । ମୋର ଜିନିଷପତ୍ର ସାହାପୁରକୁ ପଠାଯାଇ ଥିବାର ଶୁଣି ଖୁସି ହେଲେ । କିଛି ସମୟ କଥାବାର୍ତ୍ତା କଲୁଁ । ଲୋକମାନେ ସେଦିନ ବାଗୁରାଇ ପୋଲିଂ ବୁଥ୍‌ରେ ଭୋଟ ଦେଇ ନରୁବାବୁଙ୍କ ଘରବାଟେ ଫେରୁଥାନ୍ତି । ସେତେବେଳେ କଂଗ୍ରେସ ଥାଏ ଲିଡ଼ିଂ ପାର୍ଟି । ଡକ୍ଟର ମହତାବ ପାର୍ଟି ଲିଡ଼ର, ନିର୍ବାଚନରେ ଜିଣିବା ସ୍ୱାଭାବିକ ।

କିଛି ସମୟ ପରେ ତାଙ୍କଠାରୁ ବିଦାୟ ନେଇ ଦୁହେଁ ସାହାପୁର ହଷ୍ଟେଲକୁ ଗଲୁଁ । ବାଟରେ ଛାତ୍ରମାନେ ଦେଖା ହେଉଥିଲେ ନମସ୍କାର କରୁଥାନ୍ତି । ହଷ୍ଟେଲ୍‌ର ସମ୍ମୁଖଭାଗ ଗୋଟିଏ ବଡ଼ ରୁମରେ ମୋର ରହିବାର ବ୍ୟବସ୍ଥା କରି ଗୁଣମଣି ମେସ୍‌ରେ ମୋର ଭୋଜନର ବ୍ୟବସ୍ଥା କରି ବିଦାୟ ନେଲେ । ଗୁଣମଣି ବର୍ତ୍ତମାନ ରାଉର୍‌କେଲାରେ ଚାଟାର୍ଡ଼ ଏକାଉଣ୍ଟାଣ୍ଟ ଭାବରେ ସୁନାମ ଅର୍ଜନ କରିଛନ୍ତି ।

**ସାହାପୁର ରହଣି :**

ଆଜି ଭଦ୍ରକ କଲେଜ୍‌ର ଆଦ୍ୟ ହଷ୍ଟେଲ୍ ସାହାପୁର ହଷ୍ଟେଲ୍‌ର ଅସ୍ତିତ୍ୱ ନାହିଁ । ତା ଉପରେ ନ୍ୟାସନାଲ୍ ହାଇୱେ (ଜାତୀୟ ରାଜପଥ) ଯାଇଛି, କିଞ୍ଚିତ୍ ଆଗକୁ ନଈ ଉପରେ ପୋଲ ।

ହଷ୍ଟେଲ୍‌ର କିଛି ଅଂଶ ପକ୍କା, ଅବଶିଷ୍ଟ ଅଂଶର କାଚ୍ଚା ଇଟାରେ ତିଆରି । ଚଟାଣ ସିମେଣ୍ଟଡ୍ ହେଲେ ମଧ୍ୟ ଚାଳଛପର । ଉତ୍ତର ପଶ୍ଚିମ ପାଖକୁ ଅଲଗା ଚାଳଘରଟିଏ ଥାଏ; କିଛି ଅଂଶରେ ପିଲା ରହୁଥାନ୍ତି, ଅବଶିଷ୍ଟ ଅଂଶରେ ରୋଷେଇ ହେଉଥାଏ ।

ହଷ୍ଟେଲ୍‌ର ବୋର୍ଡ଼ରମାନେ ଆସି ନମସ୍କାର କଲେ । କଲେଜ୍‌ର କିରାଣି ନବକିଶୋର ଦାସଙ୍କ ଘର ସେଇ ସାହାପୁରରେ । ସେ ଆସି ଦୀର୍ଘ ସମୟ ଆଳାପ ଆଲୋଚନା କଲେ ।

ସେତେବେଳେ ହଷ୍ଟେଲ୍‌ଟିରେ ୪୦/୫୦ଜଣ ପିଲା ରହୁଥାନ୍ତି । ଅନ୍ୟ ପିଲାମାନେ ସାହାପୁର, କଚେରୀ ପାଖ ଜଗନ୍ନାଥପୁର, ଜାନୁଗଞ୍ଜ, ବାଗୁରାଇ, ଅସ୍ତଳ ଓ କୁଆଁସରେ ମେସ୍ କରି ରହୁଥାନ୍ତି । ହଷ୍ଟେଲ୍‌ର ଦକ୍ଷିଣ ପାଖରେ ବଡ଼ ବରଗଛଟିଏ । ଧୋବାସାଇର ଲୋକମାନେ ସେଇବାଟେ ନଈକୁ ଯିବାଆସିବା କରନ୍ତି । ହଷ୍ଟେଲ୍ ଉତ୍ତର ପୂର୍ବକୁ ମୁସଲମାନ ସାଇ । ନଈକୂଳରେ ଛୋଟ ତୋଟାଟିଏ ମଧ୍ୟ ଥିଲା । ମୁଁ ରହିବାର କିଛିଦିନ ପରେ ଇଂରାଜୀ ଅଧ୍ୟାପକ ମୁରଲିଧର ସରକାର ମଧ୍ୟ ସେଠାରେ ରହିଲେ । ଗେଲୁଟିଆ, ଚରମ୍ପା, ବରପଦା, ଗେଲପୁର, ନଳାଙ୍ଗ, ଇଚ୍ଛାପୁର, ରାନ୍ଧିଆରୁ ପିଲାମାନେ ଦୈନିକ ଯିବା ଆସିବା କରି କଲେଜ୍‌ରେ ପଢୁଥିଲେ, ଏପରିକି କିଛି ଦୂର ତିହିଡ଼ି, ଆରଣ୍ଡା ଓ ଦୋଳସାହିରୁ ପିଲାମାନେ ଦୈନିକ ଯିବା ଆସିବା କରୁଥିଲେ ।

**କଲେଜ :**

ମୁଁ ହଷ୍ଟେଲ୍ ସାମ୍‌ନାଭାଗ ବଡ଼ରୁମ୍‌ରେ ରହିଲି । ତହିଁ ଆରଦିନ ଉଠି ମୁସଲମାନ ସାଇ ବାଟେ ପଡ଼ିଥିବା ରାସ୍ତାରେ ଅସ୍ତଳ ପାଖରେ ନଈ ପାରହୋଇ କଲେଜକୁ ଗଲି କାର୍ଯ୍ୟରେ ଯୋଗ ଦେବାପାଇଁ । କଲେଜ୍‌ରେ ସେତେବେଳେ ଅଧ୍ୟକ୍ଷ ଥିଲେ ଧର୍ମାରାଓ । କଲେଜ୍ ବୋଲି ନଈକୂଳରେ ଦୁଇଟି ଉଇଙ୍ଗ୍ ଥିବା ଲମ୍ବା ଆଜ୍‌ବେଷ୍ଟସ୍ ଘରଟିଏ । ପ୍ରକାଣ୍ଡ ଆମ୍ବତୋଟା ଭିତରେ କଲେଜ୍ । ଶୀତଦିନ (ମାଘ) ହୋଇଥିବାରୁ ଆମ୍ବଗଛମାନଙ୍କରେ ବଉଳ ଭର୍ତ୍ତି ହୋଇଥାଏ । ବାସନାରେ ନାକ ଫାଟି ପଡୁଥାଏ । ତୋଟା ଭିତରେ ପଶ୍ଚିମପାଖ ନଈକୂଳକୁ ହେଡ୍ କିରାଣିଙ୍କର ଛୋଟ କ୍ୱାଟରଟିଏ । ଅଧ୍ୟକ୍ଷଙ୍କ କ୍ୱାର୍ଟର ତିଆରି ଚାଲିଥାଏ ।

କଲେଜ୍‌ରେ ଯୋଗଦାନ କରି ଅଧ୍ୟାପକମାନଙ୍କ ସହ ପରିଚିତ ହୁଏଁ । ସେତେବେଳେ ମୋଟେ ୨୦ଜଣ ପର୍ଯ୍ୟନ୍ତ ଅଧ୍ୟାପକ ଥାଆନ୍ତି । ଆଜବେଷ୍ଟସ୍ ଘରର ମଧ୍ୟଭାଗରେ ଉତ୍ତର ପାଖକୁ କଲେଜ୍ ଲାଇବ୍ରେରୀ । ଲାଇବ୍ରେରୀୟାନ୍ ଥାଆନ୍ତି ଶୁକଦେବ ରାଉତ, ତାଙ୍କର ସହାୟକ ଥାଏ କରୁଣାକର ରାଉତ, ଜଣେ ମାତ୍ର ଲାଇବ୍ରେରୀ ପିଅନ୍ । ମୋର କିଞ୍ଚିତ୍

ପୂର୍ବରୁ ଉର୍ଦ୍ଦୁ ବିଭାଗରେ ଯୋଗ ଦେଇଥାନ୍ତି ଖ୍ୱାଜା ବଦ୍ରୁ୍ୟଜମାନ୍ । ଗଣିତ ବିଭାଗରେ ଥାଆନ୍ତି ଦୁର୍ଗାଦାସ ମଲ୍ଲିକ, ଫିଲୋସଫି (ଲଜିକ୍) ଅଧ୍ୟାପକ ଥାଆନ୍ତି ଅଶ୍ୱିନୀ କୁମାର ନନ୍ଦୀ, ଇତିହାସ ବିଭାଗରେ ଥାଆନ୍ତି ସୁଧୀର କୁମାର ରାୟଚୌଧୁରୀ, ଇଂରାଜୀ ବିଭାଗରେ ଶୈଳେନ୍ଦ୍ର ନାଥ ପୋଦ୍ଦାର, ସଂସ୍କୃତ ବିଭାଗରେ ଫଣୀନ୍ଦ୍ର ନାଥ ବାନାର୍ଜୀ । ଅଳ୍ପ ପିଲା, ଅଳ୍ପ ଅଧ୍ୟାପକ ଥିବାରୁ ପରସ୍ପର ମଧ୍ୟରେ ସଂପର୍କ ଅତି ନିବିଡ଼- ଯେପରି ଏକ ପାରିବାରିକ ବାତାବରଣ । ଛାତ୍ରଙ୍କର ଅଧ୍ୟାପକଙ୍କ ପ୍ରତି ଯେପରି ଗଭୀର ସମ୍ମାନ, ଅଧ୍ୟାପକଙ୍କର ଛାତ୍ରଙ୍କ ପ୍ରତି ଗଭୀର ସ୍ନେହ ଓ ମମତା । ଛାତ୍ରଙ୍କର ପୋଷାକପତ୍ର, କଥାରେ ଯେପରି ସଂଯମ, ସରଳତା, ବ୍ୟବହାରରେ ଓ କଥାରେ ମଧ୍ୟ ସେହିପରି ଆନ୍ତରିକତା । ଆଜି ଯେପରି ଛାତ୍ର ଅଧ୍ୟାପକ; ଛାତ୍ର ଓ ଅଧ୍ୟକ୍ଷ ପରସ୍ପରଠାରୁ ଦୂରେଇ ଯାଇଛନ୍ତି, ଯେପରି ଗୋଟାଏ ଟ୍ରେଡ୍ ୟୁନିୟନ୍‌ର ବାତାବରଣ, ସେତେବେଳେ ଏହାଥିଲା ସ୍ୱପ୍ନର ବିଷୟ । କଲେଜ୍ ୟୁନିୟନ୍ ଥିଲେ ମଧ୍ୟ, ଛାତ୍ରନେତା ଥିଲେ ମଧ୍ୟ ସେମାନେ ସଂଯମ, ସମ୍ଭ୍ରମ ଓ ସମ୍ମାନବୋଧର ଶୃଙ୍ଖଳା ମଧ୍ୟରେ ଶିକ୍ଷାୟତନର ବାତାବରଣକୁ ପବିତ୍ର ଓ ଉପଭୋଗ୍ୟ ରଖିଥିଲେ ।

କଲେଜ୍‌ର ପୂର୍ବ ଓ ଉତ୍ତର ପାଖରେ କେତୋଟି ସାନ୍ତାଳ ସେମାନଙ୍କର କୁଡ଼ିଆଘର ନିର୍ମାଣ କରିଥିଲେ । ଏଇ ସାନ୍ତାଳମାନେ କେନ୍ଦୁଝର ଓ ମୟୂରଭଞ୍ଜର ଅଧିବାସୀ । ଗାଁ ଗଣ୍ଡାରେ ଜୀବନଧାରଣ କଷ୍ଟକର ହେବାରୁ ସହରରେ ଆଶ୍ରୟ ନେଇଛନ୍ତି । କଲେଜ୍‌ର ବିଭିନ୍ନ କୋଠାବାଡ଼ି କାମ ବିଭିନ୍ନ ସମୟରେ ଧାରାବାହିକ ଭାବରେ ଚାଲୁଥିବାରୁ ଏଇ ସାନ୍ତାଳମାନେ ସେଠି ସବୁଦିନିଆ ଶ୍ରମିକ ଭାବରେ କାମ କରିଚାଲିଥାନ୍ତି । କଲେଜ୍ ତୋଟା ପଶ୍ଚିମକୁ ଥିବା ହରିଜନ ସାଇର ସ୍ତ୍ରୀଲୋକମାନେ ମଧ୍ୟ ଚୂନକୁଟା କାମରେ ଲାଗିଯାଇଥାନ୍ତି । ପୁରୁଷମାନଙ୍କ ମଧ୍ୟରୁ କେହି କେହି କଲେଜ୍‌ରେ, କେହି କେହି ବାହାରେ ମୂଲିଆ କାମ ଓ ରିକ୍ସା ଟାଣୁଥାନ୍ତି । ମନେଅଛି ସାନ୍ତାଳମାନଙ୍କ ମଧ୍ୟରୁ ଶ୍ୟାମ ଓ ଲୁଣି କଲେଜ୍‌ରେ ସମସ୍ତଙ୍କର ଜଣାଶୁଣା ଥାନ୍ତି । ଲୁଣି ସାହାପୁର ହଷ୍ଟେଲ୍‌କୁ ଯିବାପାଇଁ ହୁଲିଡଙ୍ଗାରେ ନାଉରିଆ ଥାଏ; ତା'ର ସ୍ନେହ କୋମଳ ଆହ୍ୱାନ (ତୁ, ଆ) ମନରେ ଭାରି ଆନନ୍ଦ ଦିଏ ।

କଲେଜ୍‌ର ନିର୍ମାଣ କାମ ତଦାରଖ କରିବାପାଇଁ ସକାଳେ ଓ ଉପରବେଳା ଦୁଇଜଣ ବ୍ୟକ୍ତିଙ୍କୁ ଦେଖିବାକୁ ମିଳେ; ସେମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି କଲେଜ୍‌ର ସେକ୍ରେଟେରୀ ନରୁବାବୁ ଅନ୍ୟ ଜଣେ ହେଉଛନ୍ତି ଛକଡ଼ିବାବୁ (ଛକଡ଼ି ମହାନ୍ତି, ଅବସରପ୍ରାପ୍ତ ପି.ଡ଼ବ୍ଲ୍ୟୁଡ଼ି ଓଭରସିଅର୍) । ଛକଡ଼ିବାବୁ କଲେଜ୍ ଗଭର୍ଣ୍ଣିଂ ବଡ଼ିରେ କୌଣସି ସଭ୍ୟ ନଥାନ୍ତି, କିନ୍ତୁ କଲେଜ୍ କହିଲେ ଛକଡ଼ିବାବୁ, ଛକଡ଼ିବାବୁ କହିଲେ କଲେଜ୍ । କଲେଜ୍‌ର ପ୍ରତିଟି ଇଟା ଖଣ୍ଡ ସହ ଛକଡ଼ି ବାବୁଙ୍କର ସ୍ମୃତି ବିଜଡ଼ିତ । ସକାଳୁ ଆଣ୍ଠୁଲୁଚା ଲୁଗାଖଣ୍ଡେ ପିନ୍ଧି, କାନ୍ଧରେ ଗାମୁଛା ଖଣ୍ଡେ ପକାଇ (ଶୀତଦିନେ ଫତୁଆ ଖଣ୍ଡେ) ବାଡ଼ି ଖଣ୍ଡେ ଠୁକୁରୁ ଠୁକୁରୁ କରି ଛକଡ଼ିବାବୁ ପହଞ୍ଚିଯାନ୍ତି କଲେଜ୍ ତୋଟାରେ । ତାଙ୍କର 'ଗୌରାଙ୍ଗ' ଡାକରେ ନିର୍ଜନ ତୋଟା କଂପିଯାଏ । ଗୌରାଙ୍ଗ ହେଉଛି କଲେଜ୍‌ର ସମସ୍ତ କୋଠାବାଡ଼ିର ରାଜମିସ୍ତ୍ରୀ ।

ଭଦ୍ରକ କଲେଜ୍ ଯେତେବେଳେ ଆରମ୍ଭ ହେଲା, ଭଦ୍ରକ ହାଇସ୍କୁଲ୍‌ରେ କିଛିଦିନ ସକାଳୁଆ ଚାଲିଲା । କଲେଜ୍ କେଉଁଠି ହେବ ବୋଲି ଯେତେବେଳେ ସ୍ଥାନ ନିର୍ବାଚନ ଚାଲିଲା, ସେତେବେଳେ ଜଗନ୍ନାଥପୁର ପଶ୍ଚିମପାଖ ନଈକୂଳିଆ ଆମ୍ବତୋଟାକୁ ପସନ୍ଦ କରାଗଲା; କିନ୍ତୁ ସେତେବେଳେ ଜଗନ୍ନାଥପୁରିଆ ତା'ର ଘୋର ବିରୋଧ କରନ୍ତି- ତାଙ୍କ ଗୋରୁଗାଈ ଚରିବେ କେଉଁଠି ? ତାଙ୍କ ସ୍ତ୍ରୀଲୋକେ ମଇଦାନ ଯିବେ କୁଆଡ଼େ, ମଶାଣି ଯିବ କୁଆଡ଼େ ? ଏଇମିତି ବହୁ ଅଭିଯୋଗର ତମ୍ବିତୋଫାନ ଚାଲିଥିଲା ବେଳେ ଜଗନ୍ନାଥପୁରରୁ ଛକଡ଼ି ମହାନ୍ତି ବାହାରି ପଡ଼ି କହିଲେ : ସେ ତାଙ୍କର ତୋଟାଖଣ୍ଡ କଲେଜକୁ ଦାନ କରିବେ । ଛକଡ଼ି ମହାନ୍ତି ବାରିପଦା ରାଜସରକାରଙ୍କର ଥିଲେ ଓଭରସିଅର୍ । ନିଜର ପୁଅ ମରିଗଲେ । ଭାଇର ପୁଅଙ୍କୁ ବିଲାତ ପଠାଇଥିଲେ, ସେ ବି ମରିଗଲେ । ସଂସାର ପ୍ରତି ବୈରାଗ୍ୟ ଆସିଲା । ନିଜର ତୋଟା ଦାନ କରିବା ସଙ୍ଗେସଙ୍ଗେ ନିଜେ ରହୁଥିବା କୋଠାଭାଗ କଲେଜକୁ ଦାନ କରିଦେଲେ । ପରେ ତାଙ୍କର ଭାଇଆଳମାନେ କୋଠାଖଣ୍ଡକ କିଣି ନେଲେ । ସେଇ ଟଙ୍କାରେ କଲେଜ୍ ପାଖରେ ନିର୍ମିତ ହେଲା 'ଛକଡ଼ି ଭବନ' ।

ଛକଡ଼ି ବାବୁଙ୍କର ଘୋଷଣା ସତ୍ତ୍ୱେ ଜଗନ୍ନାଥପୁରୀଆଙ୍କର ଅଭିଯୋଗ ବନ୍ଦ ହେଲାନାହିଁ । ଡକ୍ଟର ହରେକୃଷ୍ଣ ମହତାବ ସେତେବେଳେ ଥାଆନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ଭଦ୍ରକ ହାଇସ୍କୁଲ୍‌ରେ ହୋଇଥିଲା ତାଙ୍କର ପାଠପଢ଼ା, ପୁଣି ମହତାବ କୋଠି ଭଦ୍ରକରେ; ତେଣୁ ଭଦ୍ରକ କଲେଜ୍ ପାଇଁ ଲାଗିବା ଓ ସହଯୋଗ ଦେବା ତାଙ୍କର ନୈତିକ ଦାୟିତ୍ୱ । ଶୁଣାଯାଏ : ତାଙ୍କର ଦୃଢ଼ତା ହେତୁ ଜଗନ୍ନାଥପୁର ପଶ୍ଚିମ ପାଖ ଆମ୍ବତୋଟାରେ କଲେଜ୍ ତିଆରି ହେବା ସ୍ଥିର ହେଲା । ଅଭିଯୋଗର ଗୁଞ୍ଜରଣ ଧୀରେଧୀରେ ମଉଳିଗଲା । ଯେଉଁମାନେ ସେତେବେଳେ କଲେଜ୍‌ର ଅବସ୍ଥିତି ଓ ନିର୍ମାଣ ସଂପର୍କରେ ଅଭିଯୋଗ କରୁଥିଲେ ସେଇମାନେ ଓ ସେମାନଙ୍କର ପିଲାମାନେ କଲେଜ୍ ଯୋଗୁଁ କିପରି ନାନାଭାବରେ ଉପକୃତ ହୋଇଛନ୍ତି, ବର୍ତ୍ତମାନ ସେମାନେ ଉପଲବ୍ଧି କରୁଛନ୍ତି ।

ମୁଁ କଲେଜ୍‌ରେ ଯୋଗଦେଲା ଦିନଠାରୁ ୧୯୫୯ରେ ବିଦାୟ ନେବା ପର୍ଯ୍ୟନ୍ତ ଏପରି ଗୋଟିଏ ଦିନ ଯାଇନାହିଁ; ଯେଉଁଦିନ କଲେଜ୍ ନିର୍ମାଣ କାମ ବନ୍ଦ ରହିଛି । କଲେଜ୍ ବଢ଼ିବାରେ ଲାଗିଥାଏ । ଭଦ୍ରକରୁ ଆନନ୍ଦପୁର, ଚାନ୍ଦବାଲି, ବାଲେଶ୍ୱର ଆଡ଼କୁ ଯେତେ ବସ୍ ଚାଲିଥାଏ, ପ୍ରତ୍ୟେକ ବସ୍ ମାଲିକଙ୍କଠାରୁ କିଛି କିଛି ଅର୍ଥ (ବିରି) ଆଦାୟ କରାଯାଉଥାଏ; ତା'ଛଡ଼ା ଭଦ୍ରକର ଚନ୍ଦନ ବଜାର, ପୁରୁଣା ବଜାର, ଚରମ୍ପା ପ୍ରଭୃତିର ବ୍ୟବସାୟୀମାନେ ଏବଂ ନୂଆବଜାର ଓ କଚେରୀ ପାଖର ଛୋଟ ବ୍ୟବସାୟୀମାନେ ସେମାନଙ୍କର ଶକ୍ତି ମୁତାବକ ଚାନ୍ଦା ଦେଇ କଲେଜ୍‌ଟିକୁ ଆଗେଇ ନେବାରେ ସାହାଯ୍ୟ କରୁଥାନ୍ତି । ଭଦ୍ରକ ସବ୍‌ଡିଭିଜନ୍‌ରେ (ବର୍ତ୍ତମାନ ଜିଲା) ଗୋଟିଏ ମାତ୍ର କଲେଜ୍ ମୁଣ୍ଡଟେକି ଉଠୁଥିବାରୁ, ସବ୍‌ଡିଭିଜନର ବିଭିନ୍ନ ଆଡୁ ଏପରିକି ବାଲେଶ୍ୱର ସଦର ମହକୁମାରୁ ମଧ ସମର୍ଥନ ମିଳୁଥାଏ ।

କଲେଜ୍‌ର ସେଇ ଆଜ୍‌ବେଷ୍ଟସ୍ ଘରକୁ ଛାଡ଼ିଦେଲେ ତା'ପରେ ଧୀରେଧୀରେ ମୁଣ୍ଡଟେକି ଉଠେ କଲେଜ୍ ଆଇ.ଏସ୍.ସି. ବିଲ୍‌ଡ଼ିଂ (ଖଣିମାଲିକ କେନ୍ଦୁଝରର ସିରାଜୁଦ୍ଦିନଙ୍କ ଦାନରେ), କନିକା ହଷ୍ଟେଲ୍ (କନିକା ରାଜାଙ୍କ ଦାନରେ), ଯୋଗେନ୍ଦ୍ର ଅତିଥିଭବନ, କଲେଜ୍‌ର ମେନ୍ ଆର୍ଟସ୍ ବିଲ୍‌ଡ଼ିଂ, ଓପନ ଏୟାର ଥିଏଟର୍, ନଈକୂଳରେ ପଶ୍ଚିମ ଓ ଉତ୍ତର ପାଖକୁ କେତୋଟି ଷ୍ଟାଫ୍ କ୍ୱାର୍ଟର୍ସ । ପରେ ପୁଣି ଅସ୍ଥାୟୀ ଭାବରେ କଲେଜ୍ ତୋଟା ପୂର୍ବକୁ ଇଞ୍ଜିନିୟରିଂ ସ୍କୁଲ୍ ମଧ୍ୟ ଆରମ୍ଭ ହୋଇଯାଇଥାଏ । ୧୯୫୯, ଜୁଲାଇରେ ଭଦ୍ରକ କଲେଜରୁ ବିଦାୟ ନେଇ ରେଭେନ୍ସା କଲେଜ୍‌କୁ ଗଲା ପରେ ପରେ ଏଠାରେ ବି.ଏସ୍.ସି. ବିଲ୍‌ଡ଼ିଂ, ଗାର୍ଲସ୍ ହଷ୍ଟେଲ୍, ସ୍ୱତନ୍ତ୍ର ଲାଇବ୍ରେରୀ ବିଲ୍‌ଡ଼ିଂ (ଦୁଇମହଲା), କେନ୍ଦ୍ର ଓ ପଶ୍ଚିମ ଛାତ୍ରାବାସ, ଟି.ଆର୍.ଡ଼ବ୍ଲ୍ୟୁ ହଷ୍ଟେଲ୍, ଛକଡ଼ିଭବନ ଓ ଆଉ କେତୋଟି ଷ୍ଟାଫ୍ କ୍ୱାର୍ଟରସ୍ ତିଆରି ହେଲା ।

**ଅଧ୍ୟାପନା**

ବି.ଏ. ଶ୍ରେଣୀରେ ଯେତେବେଳେ ଗୁଣମଣି ମହାପାତ୍ର, ବୃଷାସନ ନାୟକ, ଗୌରଚରଣ ମହାପାତ୍ର, ଅଭିମନ୍ୟୁ ଦ୍ୱିବେଦୀ ପ୍ରଭୃତି ମୋଠାରୁ ବୟସ୍କ ପିଲାମାନେ ଛାତ୍ର ଥାଆନ୍ତି । ଛାତ୍ରାବସ୍ଥାରେ ମୁଁ ବକ୍ତା ନଥିଲି । ସଭାସମିତିରେ କେବେ ବକ୍ତୃତା ଦେବାର ଅଭ୍ୟାସ କରିନଥିଲି । ଆଇ.ଏ. ରେ ଶିକ୍ଷାସମିତିର (Education Society) ସେକ୍ରେଟେରୀ ହୋଇଥିଲେ ମଧ୍ୟ ବକ୍ତୃତା ଦେବାର ସୁଯୋଗ କେବେ ହୋଇନଥିଲା । ମୋର ଶିକ୍ଷା (Education) ବିଷୟ ଥିବାରୁ ରାଣୀହାଟ ହାଇସ୍କୁଲ୍‌ରେ ମଡ଼େଲ୍ ଟିଚିଂ ଦେଉଥିଲି । ସେଥିରେ ପିଲାମାନେ ଭାରି ଖୁସି ହେଉଥିଲେ । କିନ୍ତୁ କଲେଜ୍ ଶ୍ରେଣୀରେ ପ୍ରଥମତଃ ଯେତେବେଳେ ଅଧ୍ୟାପନା ଆରମ୍ଭ କରେଁ, ସେତେବେଳେ ଯଦିଓ ମୋର ଭୟ ନଥିଲା, କିନ୍ତୁ ଠିକ୍ ଠିକ୍ ପ୍ରସ୍ତୁତିର ଅଭାବରୁ ବୟସ୍କ ଛାତ୍ରମାନେ ସନ୍ତୁଷ୍ଟ ହୋଇପାରୁ ନଥିଲେ । ମୁଁ ଅନୁଭବ କରୁଥିଲି : ସ୍ୱଳ୍ପ ବୟସ୍କ ଛାତ୍ରଙ୍କ ପକ୍ଷରେ ଯେ କୌଣସି ଅଧ୍ୟାପକଙ୍କୁ ଅଧିକ ବିଜ୍ଞ, ପୋଖତ ଓ ବାଗ୍ମୀ ମନେ କରିବା ସ୍ୱାଭାବିକ । କିନ୍ତୁ ନୂତନ ଅଧ୍ୟାପନା ଆରମ୍ଭ କରିଥିବାରୁ ସେ ପ୍ରକାର ବିଜ୍ଞତା, ବାଗ୍ମୀତା ଓ ପ୍ରବୀଣତା ଆଶା କରିବା ଛାତ୍ରମାନଙ୍କ ପକ୍ଷରେ ଟିକିଏ ଆଶାତିରିକ୍ତ ଥିଲା । ସେଥିପାଇଁ ମୋର ଅଧ୍ୟାପନା ସଂପର୍କରେ ଛାତ୍ର ଓ ସଂପାଦକ କିଛିଦିନ ଧରି ଉଚ୍ଚ ଧାରଣା ପୋଷଣ କରିପାରି ନଥିଲେ । ଥରେ ସଂପାଦକଙ୍କ ପରୋକ୍ଷ ସୂଚନା ମୋତେ ବଡ଼ କଷ୍ଟ ଦେଲା । ସେହଦିନଠାରୁ ବିଭିନ୍ନ ବିଷୟରେ ଗଭୀର ଅଧ୍ୟୟନରେ ଲାଗିଗଲି ଏବଂ ଶ୍ରେଣୀରେ ଯେପରି ଯଥାର୍ଥ ଭାବରେ ଛାତ୍ରଙ୍କ ସମକ୍ଷରେ ମୋର ପ୍ରସ୍ତୁତ ଓ ଆୟତ୍ତ ବସ୍ତୁ ଉପସ୍ଥାପନ କରିପାରିବି, ସେ ଦିଗ ପ୍ରତି ବିଶେଷ ଧ୍ୟାନ ଦେଲି । ଏ ଅଭ୍ୟାସ ଫଳରେ କାଳକ୍ରମେ ଲକ୍ଷ୍ୟ କଲି : ଛାତ୍ରମାନେ ଆଗ୍ରହର ସହ ଶ୍ରେଣୀରେ ବକ୍ତୃତା ଶୁଣୁଛନ୍ତି । ବାହାରେ ମଧ୍ୟ ଛାତ୍ର ଓ ଅଧ୍ୟାପକମାନଙ୍କ ମୁଖରୁ ଶୁଣିବାକୁ ପାଇଲି ମୋର ଅଧ୍ୟାପନାର ପ୍ରଶଂସା । ଦିନେ ପିତୃସ୍ଥାନୀୟ ନନ୍ଦୀବାବୁ ମୋତେ କହିଲେ, "The authorities have revised their opinion about

you." ଏଥିରେ ଅବଶ୍ୟ ମୁଁ ତୃପ୍ତିଲାଭ କଲି; କିନ୍ତୁ ବିଭିନ୍ନ ବିଷୟରେ ଉତ୍ତମ ଜ୍ଞାନାର୍ଜନ ଓ ଉତ୍ତମ ଅଧ୍ୟାପନାର ନିଶା ସେ ଦିନରୁ ଏପରି ବଳବତ୍ତର ହୋଇଗଲା ଯା'ଫଳରେ ଏଇ ଅଭ୍ୟାସଟିକୁ ମୋର ଅବସର ଗ୍ରହଣ ପରପର୍ଯ୍ୟନ୍ତ ଛାଡ଼ିପାରି ନଥିଲି । ଏହାଦ୍ୱାରା କାର୍ଯ୍ୟକ୍ଷେତ୍ରରେ ମୁଁ ସୁଫଳ ପାଇଛି, ପ୍ରଶଂସା ବି ପାଇଛି ।

ଶ୍ରେଣୀରେ ଅଧ୍ୟାପନା ପୁଣି ଶ୍ରେଣୀ ବାହାରେ ବଡ଼ ବଡ଼ ସଭାସମିତି ଓ ମୁକ୍ତ ରଂଗମଞ୍ଚରେ ବକ୍ତୃତା ପ୍ରଦାନ ଦୁଇଟା ଟିକିଏ ଅଲଗା ଜିନିଷ । ଅବଶ୍ୟ ବଡ଼ବଡ଼ ସଭାସମିତିରେ ବକ୍ତୃତା ପ୍ରଦାନର ଅୟଂଆରମ୍ଭ ହୋଇଥାଏ ଶ୍ରେଣୀ ଅଧ୍ୟାପନାରେ; କିନ୍ତୁ ବଡ଼ବଡ଼ ସଭାସମିତିରେ ମୁକ୍ତ ରଂଗମଞ୍ଚରେ ବିଭିନ୍ନ ଶ୍ରୋତାଙ୍କ ପ୍ରତି ଲକ୍ଷ୍ୟ ରଖି ମନଲାଖି ବକ୍ତୃତାଟିଏ ଦେବା ଯେ ସାଧନା ସାପେକ୍ଷ ଓ କଷ୍ଟକର, ଏ ଅନୁଭୂତି ମୋର ହେଲା । କଲେଜ୍‌ରେ ଶ୍ରେଣୀରେ ସଫଳ ଭାବରେ ଅଧ୍ୟାପନା କରୁଥିଲେ ମଧ୍ୟ ଶ୍ରେଣୀ ବାହାରେ ମୁକ୍ତ ରଂଗମଞ୍ଚରେ ବକ୍ତୃତା ଦେବାକୁ ମୋର ଯେପରି ପୂରା ସାହସ ହୋଇନଥାଏ । ଏ ଅଭାବ ଅନୁଭବ କଲି ସେତେବେଳେ ଯେତେବେଳେ କଲେଜ୍‌ର ସାଂସ୍କୃତିକ ସପ୍ତାହ ଉଦ୍ଦେଶ୍ୟରେ ବିଭିନ୍ନ ଦିବସରେ ବକ୍ତୃତାର ଆୟୋଜନ ହୋଇଥାଏ । ବାହାରୁ ବିଶିଷ୍ଟ ସାହିତ୍ୟିକ ଓ ଶିକ୍ଷାବିତ୍ ନିମନ୍ତ୍ରିତ ହୋଇ ବକ୍ତୃତା ଦେବାକୁ ଆସନ୍ତି । ସେମାନଙ୍କ ବକ୍ତୃତାରେ ମୁଁ ସେତେବେଳେ ମୁଗ୍ଧ ଓ ବିସ୍ମିତ ହୋଇଯାଉଥାଏ ! ସେ ପ୍ରକାର ବକ୍ତୃତା ଦେବାର ସାଧନା ଓ ଅଭ୍ୟାସ ହୋଇନଥାଏ ।

ଧୀରେଧୀରେ ସଂକୋଚ ଦୂର ହୋଇଗଲା । କଲେଜ୍ ବାହାରେ ଛୋଟ ଛୋଟ ସଭାମାନଙ୍କରେ ବକ୍ତୃତା ଦେବା ଆରମ୍ଭ କଲି । କଟକ ଶହିଦ ସ୍ମୃତିଭବନ ଓ ଅନ୍ୟ ବଡ଼ ସଭାମାନଙ୍କରେ ବକ୍ତୃତା ଦାନ ଫଳରେ ଏପରି ଆତ୍ମବିଶ୍ୱାସ ଆସିଗଲା, ଯା'ଫଳରେ ବଡ଼ବଡ଼ ସଭାମାନଙ୍କରେ ବକ୍ତୃତା ଦେବା ମୋର ଗୋଟାଏ ହବି ହୋଇଗଲା । ଯେ କୌଣସି ସଭା ପାଇଁ ପ୍ରସ୍ତୁତ ହୋଇ ଯାଉଥିଲି । ଶେଷପର୍ଯ୍ୟନ୍ତ ଶ୍ରୋତାମାନଙ୍କର ଆଗ୍ରହ ଯେପରି ଅକ୍ଷୁଣ୍ଣ ରହେ, ସେଥିପ୍ରତି ବିଶେଷ ଧ୍ୟାନ ଦେଉଥିଲି । କାଳକ୍ରମେ ଓଡ଼ିଶାର ବିଶିଷ୍ଟ ବକ୍ତାମାନଙ୍କର ନିକଟବର୍ତ୍ତୀ ହୋଇପାରିଥିବାରୁ ଆତ୍ମସନ୍ତୋଷ ଅନୁଭବ କଲି ।

## ଅଧ୍ୟାପକମାନଙ୍କୁ ପଦେ :

ଆଜିକାଲି କଲେଜ୍ ସଂଖ୍ୟା ବଢ଼ିଯିବାରୁ ଅଧ୍ୟାପକ ଓ ଅଧ୍ୟାପିକାଙ୍କର ସଂଖ୍ୟା ବିଶେଷ ବଢ଼ିଗଲାଣି । କୌଣସି ପ୍ରକାରେ ସରକାରୀ କିମ୍ବା ଘରୋଇ କଲେଜ୍‌ମାନଙ୍କରେ ଅଧ୍ୟାପକ ଚାକିରିଟିଏ ପାଇଗଲେ ତା'ପରେ ଅଧ୍ୟାପକମାନେ ଏକପ୍ରକାର ନିଶ୍ଚିତ ହୋଇ ବସିଯାଉଛନ୍ତି । କିନ୍ତୁ ଅଧ୍ୟାପକମାନଙ୍କର ଏ ତଥାକଥିତ ନିଶ୍ଚିତତା ହେଉଛି ସେମାନଙ୍କର ଭାବୀ-ବିକାଶର ଏକ ଦୁର୍ମୂଳ ପ୍ରତିବନ୍ଧକ । ଅଧ୍ୟାପନା ଯଦିଓ ଏକ ବୃତ୍ତି, କିନ୍ତୁ ଅଧ୍ୟାପକମାନେ ତାକୁ ଯଦି ବ୍ରତର ମର୍ଯ୍ୟାଦା ନ ଦେବେ, ତା'ହେଲେ ଛାତ୍ର ଓ ଶିକ୍ଷକ ସମାଜରେ ସେମାନେ ଜଣେ

ବୋଲି ଗୃହୀତ ହୋଇ ପାରିବେ ନାହିଁ । ଯେଉଁଦିନଠାରୁ ଅଧ୍ୟାପକ ଜୀବନ ଆରମ୍ଭ ହୁଏ, ଅଧ୍ୟୟନ ସେହି ଦିନଠାରୁ ଜରୁରି ହୋଇପଡ଼େ ।

ଛାତ୍ର ଭାବରେ ଅଧ୍ୟୟନ ଓ ଅଧ୍ୟାପକ ଜୀବନରେ ଅଧ୍ୟୟନ ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । ଛାତ୍ର ବହୁ ପ୍ରାସଙ୍ଗିକ ବିଷୟ ଅଧ୍ୟୟନ କରି ତା'ର ଜ୍ଞାନଭଣ୍ଡାର ବଢ଼ାଏ; କିନ୍ତୁ ଅଧ୍ୟାପକଙ୍କୁ ନିର୍ଦ୍ଦିଷ୍ଟ ବିଷୟ ବା ପ୍ରସଙ୍ଗରେ ବହୁ କିଛି ଅଧ୍ୟୟନ କରି ଜ୍ଞାନ ଆହରଣ କରିବାକୁ ହୁଏ । ଛାତ୍ରମାନଙ୍କର ଆବଶ୍ୟକତା ଓ ମାନସିକ ବିକାଶକୁ ଦୃଷ୍ଟିରେ ରଖି ସେହି ଅର୍ଜିତ ଜ୍ଞାନ କିପରି ସେମାନଙ୍କ ନିକଟରେ ଉପସ୍ଥାପନ କରିବାକୁ ହେବ, ସେ ସଂପର୍କରେ ପ୍ରତ୍ୟେକ ଅଧ୍ୟାପକଙ୍କର ସ୍ୱକୀୟ ପରିବେଷଣଭଙ୍ଗୀ ଆବଶ୍ୟକ । ଛାତ୍ରଛାତ୍ରୀଙ୍କର ଆବଶ୍ୟକତା ପ୍ରତି ଲକ୍ଷ୍ୟ ରଖି ସୁବୋଧ ଓ ପ୍ରାଞ୍ଜଳ ଭାବରେ ଯଦି ଉଦ୍ଦିଷ୍ଟ ବିଷୟ ପରିବେଷଣ କରାଯାଏ, ତା'ହେଲେ ଛାତ୍ରମାନେ ଅଧ୍ୟାପନା ପ୍ରତି ଆକୃଷ୍ଟ ହେବେ । ଏପରିକି ଗଭୀର ଜ୍ଞାନ ଗର୍ଭିତ ଅଥଚ ନୀରସ ପ୍ରସଙ୍ଗ କିପରି ଛାତ୍ରମାନଙ୍କ ସମକ୍ଷରେ ଚିତ୍ତାକର୍ଷକ ଭଂଗୀରେ ଉପସ୍ଥାପନ କରାଯାଇପାରେ, ତାହା ଅଧ୍ୟାପକଙ୍କ ଅଧ୍ୟୟନ, ଜ୍ଞାନର ମାତ୍ରା, ଅଧ୍ୟାପନାରେ ଆଗ୍ରହ ଓ ପରିବେଷଣ ଭଂଗୀ ଉପରେ ନିର୍ଭର କରେ । ବହୁ ଅଧ୍ୟାପକ ଏଥିପ୍ରତି ଧ୍ୟାନ ନ ଦେବା ଫଳରେ ଛାତ୍ରସମାଜର କିପରି ଅସନ୍ତୋଷର କାରଣ ହୋଇଥାନ୍ତି, ଏ ସଂପର୍କରେ ଆଜିକାଲି ଦୃଷ୍ଟାନ୍ତର ଅଭାବ ନାହିଁ ।

କେତେକ ଅଧ୍ୟାପକ ନିଜର ଅଧ୍ୟୟନ ଓ ଅଧ୍ୟାପନା ପ୍ରତି ଧ୍ୟାନ ନଦେଇ ଛାତ୍ରଙ୍କ ଭିତରେ କିପରି ଶସ୍ତା ଲୋକପ୍ରିୟତା ଅର୍ଜନ କରିବେ ସେଥିପାଇଁ ସେମାନଙ୍କର ଅପଚେଷ୍ଟା ଶିକ୍ଷାୟତନ ମଧ୍ୟରେ ବହୁ ବିଶୃଙ୍ଖଳା ସୃଷ୍ଟି କରେ । ନିଜର ଅଧ୍ୟୟନ, ଅଧ୍ୟାପନା, ଆଚରଣ ଓ ଆଦର୍ଶ ଚରିତ୍ରବତ୍ତା ଦ୍ୱାରା ଛାତ୍ରଙ୍କର ହୃଦୟ ଜୟ ନକରି ପରୀକ୍ଷା ସମୟରେ ଛାତ୍ରଙ୍କର ଦୁର୍ନୀତି ପୂର୍ଣ୍ଣ ଆଚରଣକୁ ପ୍ରଶ୍ରୟ ଦେବା, ମୂଲ୍ୟାୟନ ସମୟରେ ନମ୍ବର ବଢ଼େଇବାର ହୀନ କୌଶଳ ଅବଲମ୍ବନ କରିବା ଏବଂ ସେମାନଙ୍କୁ ବିଭିନ୍ନ ରାଜନୈତିକ ଦଳର ଶିକାର କରାଇ ସେମାନଙ୍କୁ କ୍ଷଣିକ ଶସ୍ତା ଉତ୍ତେଜନାର ବଶବର୍ତ୍ତୀ କରାଇ ସେମାନଙ୍କର ଭବିଷ୍ୟତ ଜୀବନ ନଷ୍ଟ କରିବା କେତେ ଜଣଙ୍କର କାର୍ଯ୍ୟ ହୋଇପଡ଼ିଛି । ଛାତ୍ରମାନେ କିଶୋର ଓ ଯୌବନରେ ପଦାର୍ପଣ କରିଥିବାରୁ ଅନେକ ସମୟରେ ସମକ୍ଷରେ ଉଚ୍ଚକୋଟୀର ଆଦର୍ଶ ଏବଂ ସଂଯମ ତଥା ନିୟନ୍ତ୍ରଣର ଯଥାଯଥ ବାତାବରଣ ନ ପାଇ ପଥଭ୍ରଷ୍ଟ ହୋଇପଡ଼ନ୍ତି ।

ଶିକ୍ଷାୟତନର ଶ୍ରେଣୀ ଓ ଛାତ୍ରାବାସ ମଧ୍ୟରେ ଅଧ୍ୟୟନ, ଆଚରଣ, ସହପାଠୀଙ୍କ ସହ ବ୍ୟବହାର ସଂପର୍କରେ (ଶୃଙ୍ଖଳା ଉପରେ) ବିଶେଷ ଧ୍ୟାନ ଦିଆଯିବାର ବ୍ୟବସ୍ଥା ରହିଛି । ଶ୍ରେଣୀ ଶିକ୍ଷା ବାହାରେ ଉଚ୍ଚକୋଟିର ସେମିନାର୍ ଓ ବକ୍ତୃତା ଶ୍ରବଣ ଦ୍ୱାରା କିପରି ଜ୍ଞାନର ପରିସର ବଢ଼େଇବାକୁ ହୁଏ, ସେଥିପାଇଁ ଶିକ୍ଷାୟତନରେ ସୁଯୋଗ ରହିଛି । ଶିକ୍ଷାୟତନ ମଧ୍ୟରେ ଛାତ୍ରଛାତ୍ରୀଙ୍କର ସବୁଠାରୁ ଆକର୍ଷଣୀୟ ବସ୍ତୁ ହେଲା ଲାଇବ୍ରେରୀ । ଆଜିକାଲି ଲାଇବ୍ରେରୀକୁ ବିଭିନ୍ନ ବିଭାଗର ବହୁ ଉପାଦେୟ ପୁସ୍ତକ ଅଣାଯାଉ ଥିବାରୁ ଛାତ୍ରଙ୍କ ପକ୍ଷରେ

ଏଗୁଡ଼ିକ ପରମ ସୁଯୋଗ । ଜ୍ଞାନର ବାତାୟନ ଚତୁର୍ଦ୍ଦିଗରେ ଖୋଲା ରହିଛି । ଛାତ୍ର ଶ୍ରଦ୍ଧାର ସହିତ ନିଜର ମନ ଓ ନେତ୍ରକୁ ସେ ଦିଗରେ ଉନ୍ମୁଖ କରାଇଲେ ସ୍ୱଳ୍ପ ସମୟ ମଧ୍ୟରେ ବହୁ ପ୍ରୟୋଜନୀୟ ବିଷୟ ସେ ଆୟତ୍ତ କରିପାରିବ ।

କିନ୍ତୁ ଆଜିକାଲି ଶିକ୍ଷାୟତନମାନଙ୍କରେ ଘୋର ବିଶୃଙ୍ଖଳା ଲକ୍ଷ୍ୟ କଲେ ହାହତୋସ୍ମି ହେବାକୁ ପଡ଼େ । ବିଭିନ୍ନ ରାଜନୈତିକ ଦଳ ଶିକ୍ଷାୟତନଗୁଡ଼ିକୁ ସେମାନଙ୍କର ଦଳଗତ କାର୍ଯ୍ୟକଳାପର କେନ୍ଦ୍ର ଭାବରେ ଧରିନେଇ ବର୍ଷ ବର୍ଷ ଧରି କେତେକ ନେତୃସ୍ଥାନୀୟ ଛାତ୍ରଙ୍କୁ କରଗତ କରି ଶିକ୍ଷାୟତନରେ ପ୍ରଭାବ ବିସ୍ତାର କରି ଆସିବା ସଙ୍ଗେସଙ୍ଗେ ବିଭିନ୍ନ ସମୟରେ ଛାତ୍ରଙ୍କ ମଧ୍ୟରେ ବିଭିନ୍ନ ବିଶୃଙ୍ଖଳ ପରିସ୍ଥିତି ସୃଷ୍ଟିର କାରଣ ହୋଇଥା'ନ୍ତି । ଏହାର ସୁଯୋଗ ନେଇ ଶିକ୍ଷାୟତନ ସହ ସଂପର୍କ ନଥିବା କେତେକ ବେକାର ଗୁଣ୍ଡାଶ୍ରେଣୀର ଛାତ୍ର ଶିକ୍ଷାୟତନରେ ବିଭିନ୍ନ ଅପରାଧମୂଳକ ଘଟଣାକୁ ପ୍ରଶ୍ରୟ ଦେଇଥାନ୍ତି । ପ୍ରକୃତ ଦେଖିବାକୁ ଗଲେ ଶତକଡ଼ା ୯୫ ଛାତ୍ରଙ୍କର ଯଦି ପଢ଼ିବାର ଆଗ୍ରହ ଥାଏ, ଅବଶିଷ୍ଟ ଶତକଡ଼ା ୫ ଛାତ୍ର ବିଭିନ୍ନ ରାଜନୈତିକ ଦଳପ୍ରତି ଆନୁଗତ୍ୟ ହେତୁ ଆନ୍ଦୋଳନ ନାମରେ ଶିକ୍ଷାୟତନର ବାତାବରଣକୁ ସଂଘର୍ଷ ଜଟିଳ କରି ଗୁଣ୍ଡାଶ୍ରେଣୀର ବାହାର ଲୋକଙ୍କୁ ଅପରାଧ ପାଇଁ ସୁଯୋଗ ଦେଇଥାନ୍ତି । ସେଥିପାଇଁ କେବଳ ଛାତ୍ରଙ୍କ ଉପରେ ଦୋଷ ଲଦି ଦେବା ଠିକ୍ ହେବନାହିଁ । ସମାଜର ନେତୃସ୍ଥାନୀୟ ବ୍ୟକ୍ତି, ବିଭିନ୍ନ ରାଜନୈତିକ ଦଳ, ଅଧ୍ୟାପକ, ଅଭିଭାବକ, ସମ୍ବାଦପତ୍ର, ଚଳଚ୍ଚିତ୍ର ଓ ଦୂରଦର୍ଶନ: ଏଗୁଡ଼ିକ ଶିକ୍ଷାୟତନରେ ନିର୍ଦ୍ଦିଷ୍ଟ ବାତାବରଣ ସୃଷ୍ଟି ପାଇଁ ନାନା ଭାବରେ ଦାୟୀ । ଛାତ୍ରଙ୍କ ସମକ୍ଷରେ ଉଚ୍ଚ ଆଦର୍ଶ ଓ ଆଚରଣ ନ ଥୋଇ ଆମେ ସମାଜର ବିଭିନ୍ନ କ୍ଷେତ୍ରରେ ନାନା ବିଶୃଙ୍ଖଳ ଆଚରଣ ଓ ଅପରାଧକୁ ପ୍ରଶ୍ରୟ ଦେଇ ଛାତ୍ରଙ୍କଠାରୁ ଶୃଙ୍ଖଳିତ ଆଚରଣ, ଉଚ୍ଚ ନୈତିକ ଆଦର୍ଶ ଆଶା କରିବା ବିଡ଼ମ୍ବନା ମାତ୍ର । ଶାସନ ଓ ସମାଜର ବିଭିନ୍ନ କ୍ଷେତ୍ରରେ ଶୃଙ୍ଖଳା, ଉଚ୍ଚ ନୈତିକ ଆଦର୍ଶ, ନୀତି ଓ ନ୍ୟାୟବୋଧର ବାତାବରଣ ରହିଲେ ଶିକ୍ଷାୟତନଗୁଡ଼ିକରେ ଆମେ ବହୁ ସୁଫଳ ଆଶା କରିପାରିବା; କିନ୍ତୁ ଆଜି ରାଜନୀତି, ଶାସନ ଓ ସମାଜର ବିଭିନ୍ନ କ୍ଷେତ୍ରରେ ଯେପରି ଦୁର୍ନୀତି ଓ ପ୍ରିୟାପ୍ରୀତି ତୋଷଣ ଜାତିଆଣ ଭାବ, ନୀଚ ସ୍ୱାର୍ଥପରତା ଓ ଅନ୍ୟାୟ ବୃଦ୍ଧି ପାଇବାର ଶହ ଶହ ଘଟଣା ସମ୍ବାଦପତ୍ରମାନଙ୍କରୁ ପଢ଼ିବାକୁ ପାଉଛୁଁ, ଏଥିରେ ଶିକ୍ଷାୟତନ, ଅଧକ୍ଷ, ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ସମକ୍ଷରେ କି ଆଦର୍ଶ ରହିବ ? ସମାଜ ଓ ରାଷ୍ଟ୍ରର ଚତୁର୍ଦ୍ଦିଗ ଯେତେବେଳେ କଳୁଷିତ ହୋଇପଡ଼ିଛି, ସେତେବେଳେ ଶିକ୍ଷକ ଓ ନେତାଙ୍କ ପକ୍ଷରେ ଛାତ୍ରମାନେ ଦେଶର ଭାବୀ-ନାଗରିକ, ଦେଶର ନିର୍ମାତା ବୋଲି ଶସ୍ତା ଆବେଗମୂଳକ ଧ୍ୱନି ଦେବା କେବଳ ଛଳନା ବ୍ୟତୀତ ଆଉ କ'ଣ ହୋଇପାରେ ?

କ୍ରମଶଃ ଭଦ୍ରକ କଲେଜ୍‌ର ବିଭିନ୍ନ ଛାତ୍ର, ଅଧ୍ୟାପକ ଓ ଭଦ୍ରକର ବିଶିଷ୍ଟ ବ୍ୟକ୍ତିମାନଙ୍କ ସହ ପରିଚୟ ହୋଇଯାଏ । ସେତେବେଳେ ଭଦ୍ରକ ହାଇସ୍କୁଲ୍‌ରେ ହେଡ୍‌ମାଷ୍ଟର ଗୋକୁଳାନନ୍ଦ ନାୟକ, ସଦାବ୍ରତମଠର ମହନ୍ତ ସଦାନନ୍ଦ ରାମାନୁଜ ଦାସ, ଚନ୍ଦବଜାରର ବ୍ୟବସାୟୀ

ରାମେଶ୍ୱର ଲାଲ ପ୍ରଭୃତି ଥାଆନ୍ତି ଭଦ୍ରକ କଲେଜ୍ ଗଭର୍ଣ୍ଣିଂ ବଡ଼ିର ମେମ୍ବର । ଶିକ୍ଷକ ଉପେନ୍ଦ୍ର ପ୍ରସାଦ ମହାନ୍ତି ଥିଲେ ପୁରୁଣାବଜାର ହାଇସ୍କୁଲ୍‌ର ହେଡ୍‌ମାଷ୍ଟର । ଉପେନ୍ଦ୍ର ବାବୁଙ୍କ ମାମୁଁ ସୋମନାଥ ମହାନ୍ତି ସେତେବେଳେ 'ସମାଜ'ର ଭଦ୍ରକ ପ୍ରତିନିଧି । ପରେପରେ ସାହାପୁରର ଉଦୟ ନାରାୟଣ ମହାନ୍ତି ହୁଅନ୍ତି 'ସମାଜ'ର ସ୍ଥାନୀୟ ପ୍ରତିନିଧି । ଆଡ୍‌ଭୋକେଟ୍ ଚିନ୍ତାମଣି ମହାନ୍ତି ସେତେବେଳେ ପୋପ ସିଂ ବାଳିକା ମାଇନର୍ ସ୍କୁଲ୍‌ର (ପରେ ସରକାରୀ ବାଳିକା ଉଚ୍ଚବିଦ୍ୟାଳୟ) ସେକ୍ରେଟେରୀ । ପୁରୁଣାବଜାର ହାଇସ୍କୁଲ୍‌ର ଶିକ୍ଷକ ଉଦୟ ନାରାୟଣ ମହାନ୍ତି ଥିଲେ ସେତେବେଳେ ଭଦ୍ରକର ଅନ୍ୟତମ ଜଣାଶୁଣା ବ୍ୟକ୍ତି । ଡାକ୍ତର ମୀନକେତନ ମହାନ୍ତି ଥିଲେ ପୁରୁଣାବଜାର ଡାକ୍ତରଖାନାର ଡାକ୍ତର । କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ସେତେବେଳେ ଜୀବିତ ଥାନ୍ତି । ଭଦ୍ରକ ଆସିବାର କିଛିବର୍ଷ ପୂର୍ବରୁ କବିଶେଖର ଚିନ୍ତାମଣି ମହାନ୍ତିଙ୍କର ପରଲୋକ ହୋଇଯାଇଥିଲା ।

ଭଦ୍ରକରେ ୧୯୪୮ ମସିହାରୁ କଲେଜ୍ ହୋଇଥିବାରୁ ସେତେବେଳେ ଭଦ୍ରକ ସ.ଡ଼ି., ଆନନ୍ଦପୁର ସ.ଡ଼ି., ଯାଜପୁର ସ.ଡ଼ି.ର ଛାତ୍ର ଓ ଲୋକଙ୍କର ଦୃଷ୍ଟି ଭଦ୍ରକ କଲେଜ୍ ପ୍ରତି ଥାଏ । ଯାଜପୁରର ନରସିଂହ ଚୌଧୁରୀ କଲେଜ୍ ଭଦ୍ରକ କଲେଜ୍ ପୂର୍ବରୁ ପ୍ରତିଷ୍ଠିତ ହୋଇଥିଲେ ମଧ ଭଦ୍ରକ କଲେଜ ପରି ସେପରି ନାମ କରିପାରି ନଥାଏ । ଆନନ୍ଦପୁର, ସୋରୋ, ଚାନ୍ଦବାଲି ପ୍ରଭୃତିରେ ସେତେବେଳେ କଲେଜ୍ ନଥିଲା । ବାଲେଶ୍ୱର ଫକୀର ମୋହନ କଲେଜ, ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ୍, କଟକର ରେଭେନ୍ସା କଲେଜ୍, ପୁରୀ କଲେଜ୍, ଗଙ୍ଗାଧର ମେହେର କଲେଜ୍, ଜୟପୁର ବିକ୍ରମଦେବ କଲେଜ୍‌କୁ ଛାଡ଼ିଦେଲେ ବେସରକାରୀ କଲେଜ୍ ସେତେବେଳେ ଅଳ୍ପ କେତୋଟି ମୁଣ୍ଡଟେକି ଉଠିଥାଏ, ଯଥା- ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଲେଜ୍ (ପାରଳାଖେମୁଣ୍ଡି), ଖଲିକୋଟ କଲେଜ୍, ଖ୍ରୀଷ୍ଟ କଲେଜ୍ (କଟକ), ଯାଜପୁର ନରସିଂହ ଚୌଧୁରୀ କଲେଜ୍ । ଭଦ୍ରକ କଲେଜ୍‌ରେ ପିଲା ହେବେକି ନାହିଁ, ସେତେବେଳେ ଆଶଙ୍କା ପ୍ରକାଶ କରାଯାଉଥିଲା । କଲେଜ୍‌ଟି ଦିନକୁ ଦିନ ଉନ୍ନତି କରୁଥିବାରୁ ଏବଂ ଓଡ଼ିଶା ଓ ବଙ୍ଗଦେଶର ବିଭିନ୍ନ ସ୍ଥାନରୁ ଯୋଗ୍ୟ ଅଧ୍ୟାପକ ନିଯୁକ୍ତି ଲାଭ କରିଥିବାରୁ ଅଧ୍ୟାପନାର ମାନ ସେତେବେଳେ ଉନ୍ନତ ହେବା ସ୍ୱାଭାବିକ । ଯାଜପୁର ସ.ଡ଼ି., ଆନନ୍ଦପୁର ସ.ଡ଼ି., ସୋରୋ, ଅନନ୍ତପୁର, ଖଇରା, ମୟୂରଭଞ୍ଜ ଏ ସମସ୍ତ ପାଖପାଖ ଅଞ୍ଚଳକୁ ଛାଡ଼ିଦେଲେ ଓଡ଼ିଶାର ଅନ୍ୟ ଜିଲାମାନଙ୍କରୁ ଛାତ୍ରମାନେ ଆସି ଏଠାରେ ନାମ ଲେଖାଉଥାନ୍ତି ।

ଓଡ଼ିଶାରେ ଉଭୟ ସରକାରୀ ଓ ବେସରକାରୀ କଲେଜ୍ ସଂଖ୍ୟା କମ ହୋଇଥିବାରୁ ଅଧ୍ୟାପକ ପଦବୀରେ ନିଯୁକ୍ତି ପାଇଁ ସେତେବେଳେ ଓଡ଼ିଶାରେ ଅଳ୍ପ ସଂଖ୍ୟକ ପୋଷ୍ଟ ଥାଏ । ଫଳରେ ଓଡ଼ିଶାର ବିଭିନ୍ନ ଅଞ୍ଚଳ, ବିଶେଷତଃ କଟକ, ସମ୍ବଲପୁର, ଗଞ୍ଜାମ ଏବଂ ପ୍ରତିବେଶୀ ବଙ୍ଗଦେଶ, ବିହାର ଓ ଆନ୍ଧ୍ରପ୍ରଦେଶରୁ ଅଧ୍ୟାପକମାନେ ନିଯୁକ୍ତି ପାଇଁ ଏଠାରେ ନିଜର କର୍ମଜୀବନ ଆରମ୍ଭ କରିଥିଲେ ।

ସାଳନ୍ଦୀ ତୀରସ୍ଥ ଏକ ମନୋଜ୍ଞ ନିବିଡ଼ ଆମ୍ରକୁଞ୍ଜ ମଧ୍ୟରେ କଲେଜଟି ପ୍ରତିଷ୍ଠିତ ହୋଇଥିବାରୁ ତାହାକୁ ଶାନ୍ତିନିକେତନର ବିଶ୍ୱଭାରତୀର ଏକ କ୍ଷୁଦ୍ର ପ୍ରତିରୂପ କୁହାଯାଉଥାଏ । ସ୍ୱଚ୍ଛନୀରା ସାଳନ୍ଦୀର ସର୍ପିଳ ଗତି, ନୀଳଜଳ ବେଣୀ, ବକୁଳଭରା ଆମ୍ରକୁଞ୍ଜ ଏବଂ କୋକିଳର କୁହୁତାନ ସେତେବେଳେ ଛାତ୍ର ଓ ଅଧ୍ୟାପକମାନଙ୍କ ମନରେ ଏକ ମନୋଜ୍ଞ ଗୁରୁକୁଳ ଆଶ୍ରମର ଭ୍ରାନ୍ତି ଜାତ କରୁଥାଏ । ଅଧ୍ୟାପକ, ଛାତ୍ର, ପଥିକ, ବିଦେଶୀ ଯେଉଁମାନେ ଭଦ୍ରକ କଲେଜକୁ ଆସୁଥିଲେ, ତା'ର ମନୋଜ୍ଞ ଅବସ୍ଥାନରେ ମୁଗ୍ଧ ହୋଇ ଯାଉଥିଲେ । ଶାନ୍ତିନିକେତନ ଓ ଶ୍ରୀନିକେତନ ଆଦର୍ଶରେ ଏଠାରେ ସାଧାରଣ ଶିକ୍ଷାଦାନ ସହ କର୍ମାଭିମୁଖୀ ଶିଳ୍ପ ଶିକ୍ଷା ପ୍ରଦାନର ମସୁଧା ସେତେବେଳେ ଆଦର୍ଶବାଦୀ ଅଧ୍ୟାପକ ଓ କଲେଜର କର୍ତ୍ତୃପକ୍ଷଙ୍କ ମନରେ ଉଙ୍କି ମାରୁଥାଏ । ସେଥିପାଇଁ ଏକ Rural University ବା ପଲ୍ଲୀ ବିଶ୍ୱବିଦ୍ୟାଳୟର ସ୍ୱପ୍ନ ସେତେବେଳେ ସମସ୍ତେ ଦେଖୁଥିଲେ । ଏହାର ମନୋଜ୍ଞ ପ୍ରାକୃତିକ ପରିବେଶ ଓ ଭାବୀ ଆଦର୍ଶସ୍ୱରୂପକୁ ଦୃଷ୍ଟିରେ ରଖି ଏହାର ମୁଖପତ୍ର ପ୍ରକାଶର ଯେତେବେଳେ କଳ୍ପନା କରାଗଲା, ସେତେବେଳେ ମୁଁ ତା'ର ନାମ ଦେଇଥିଲି 'ପଲ୍ଲୀ ଭାରତୀ' । ଏହି ନାମରେ କଲେଜର ମୁଖପତ୍ର ଦୀର୍ଘକାଳ ଧରି ପ୍ରକାଶ ପାଉଆସୁଛି । 'ପଲ୍ଲୀଭାରତୀ' ପ୍ରକାଶ ପୂର୍ବରୁ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଗଗନବିହାରୀ ମହାନ୍ତିଙ୍କ ପ୍ରଚେଷ୍ଟାରେ ଭଦ୍ରକ କଲେଜ୍ ଓଡ଼ିଆ ସାହିତ୍ୟ ସମାଜ ପକ୍ଷରୁ ଅର୍ଘ୍ୟ ନାମକ ଏକ ବାର୍ଷିକ ପତ୍ରିକା ପ୍ରକାଶିତ ହେଉଥିଲା ।

ଭଦ୍ରକ କଲେଜ୍ ସେତେବେଳେ ଓଡ଼ିଶାର ବିଭିନ୍ନ ପ୍ରାନ୍ତର ଦୃଷ୍ଟି ଆକର୍ଷଣ କରିଥିଲା କେତୋଟି କାରଣରୁ; ଗୋଟିଏ ହେଲା ତା'ର ମନୋଜ୍ଞ ପ୍ରାକୃତିକ ପରିବେଶ, ଦ୍ୱିତୀୟଟି ହେଲା ତା'ର ଆଦର୍ଶ ଅଧ୍ୟାପକ ଗୋଷ୍ଠୀ ଓ ଅଧ୍ୟାପନା, ତୃତୀୟଟି ହେଲା ସଂସ୍କୃତି-ସପ୍ତାହ । ଆଜି ସମଗ୍ର ଓଡ଼ିଶାରେ ଶିକ୍ଷାୟତନ ଓ ସାଧାରଣ ଅନୁଷ୍ଠାନମାନଙ୍କରେ ଯେଉଁ ସାଂସ୍କୃତିକ ଉତ୍ସବମାନ ଆଡ଼ମ୍ବର ସହ ପାଳିତ ହେଉଛି, ତା'ର ମୂଳରେ ରହିଛି ଭଦ୍ରକ କଲେଜର ସଂସ୍କୃତି-ସପ୍ତାହ ପାଳନର ଆଦର୍ଶ ।

## ସାଂସ୍କୃତିକ ସପ୍ତାହ :

ଶ୍ରେଣୀ ଶିକ୍ଷା ବାହାରେ ବର୍ଷର ନିର୍ଦ୍ଦିଷ୍ଟ ସମୟରେ ବିଶେଷତଃ ବିଶ୍ୱବିଦ୍ୟାଳୟ ପରୀକ୍ଷା ପୂର୍ବରୁ (ଜାନୁୟାରୀ-ଫେବୃୟାରୀ) କଲେଜର ବିଭିନ୍ନ ବିଭାଗର ବାର୍ଷିକ ଉତ୍ସବ ପରି ଏହି ସଂସ୍କୃତି ସପ୍ତାହ ପାଳିତ ହୁଏ । ଏହି ଉତ୍ସବରେ ଓଡ଼ିଶା ଓ ଓଡ଼ିଶା ବାହାରର ବିଶିଷ୍ଟ ସାହିତ୍ୟିକ,. ଶିକ୍ଷାବିତ୍, ଭାଷାତତ୍ତ୍ୱବିତ୍, ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରାଯାଇ ସୁସଜ୍ଜିତ ମଞ୍ଚରେ ବକ୍ତୃତା ପ୍ରଦାନର ଆୟୋଜନ କରାଯାଏ । ବକ୍ତୃତା ପରେ ଛାତ୍ରଛାତ୍ରୀଙ୍କ ପକ୍ଷରୁ ନାଟକ, ଏକାଙ୍କିକା, ନୃତ୍ୟ, ସଙ୍ଗୀତ, ଯନ୍ତ୍ର ସଂଗୀତ ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟକ୍ରମର ବ୍ୟବସ୍ଥା ରହେ । ଏଥିରେ ଛାତ୍ରଛାତ୍ରୀମାନେ ନିଜ ନିଜ ପ୍ରତିଭା ଓ ବ୍ୟକ୍ତିତ୍ୱ ବିକାଶର ଅନୁକୂଳ

ପରିବେଶ ପାଇଥାନ୍ତି । ପରେ କ୍ରମଶଃ କଲେଜ୍‌ର ପରିସର ଓ ଫାକଲ୍‌ଟି ଯେତେବେଳେ ବଢ଼ିଗଲା, ଛାତ୍ର ସଂଖ୍ୟା ବୃଦ୍ଧି ପାଇଲେ, ସେତେବେଳେ ବିଭିନ୍ନ ବିଭାଗ ପକ୍ଷରୁ ସେମିନାରର ଆୟୋଜନ ମଧ୍ୟ କରାଗଲା ଏବଂ ସର୍ବସାଧାରଣଙ୍କର ସାଧାରଣ ଜ୍ଞାନର ବିକାଶ ଏବଂ ବୈଜ୍ଞାନିକ ଓ ପାରଂପରିକ ଶିକ୍ଷାପ୍ରତି ଆଦର ବୃଦ୍ଧି ପାଇଁ ବିଭିନ୍ନ ବିଜ୍ଞାନଗାରରେ ବିଭିନ୍ନ ବୈଜ୍ଞାନିକ-କୌଶଳ ପ୍ରଦର୍ଶନର ବ୍ୟବସ୍ଥା କରାଯାଇଥିଲା ।

ମୁଁ ଯେଉଁ ବର୍ଷ କଲେଜ୍‌ରେ ଯୋଗଦାନ କଲି ସେଇବର୍ଷ ଫେବୃୟାରୀ ମାସରେ କଲେଜ୍ ପରିସରର ପୂର୍ବଭାଗରେ ମଞ୍ଚ ବନ୍ଧାଯାଇ ସାଂସ୍କୃତିକ ଉତ୍ସବର ଆୟୋଜନ କରାଯାଇ ଥିଲା । ଏ ଉତ୍ସବକୁ ଓଡ଼ିଶାର ବିଶିଷ୍ଟ ବକ୍ତାମାନେ ନିମନ୍ତ୍ରିତ ହୋଇଥିଲେ । ଭଦ୍ରକର ଗୌରବ କବିଶେଖର ଚିନ୍ତାମଣି ମହାନ୍ତି, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କୁ ସମ୍ମାନ ପ୍ରଦର୍ଶନ କରାଯାଇ ତୋରଣମାନ ନିର୍ମିତ ହୋଇଥିଲା । ସେଇ ବର୍ଷ କାନ୍ତକବିଙ୍କୁ ନିମନ୍ତ୍ରଣ କରାଯାଇ ସମ୍ମାନିତ କରାଯାଇଥିଲା । କାନ୍ତକବି ଗୌର ବପୁ । ସର୍ବାଙ୍ଗ କଳେବର ଶୁଭ୍ର ବସ୍ତ୍ରାବୃତ୍ତ । ପଙ୍ଗୁଥିବାରୁ ତାଙ୍କୁ ଟେକି ଟେକି ବକ୍ତୃତା ମଞ୍ଚକୁ ଅଣାଯାଇ ନିର୍ଦ୍ଦିଷ୍ଟ ଆସନରେ ବସାଯାଇଥିଲା; ପାଖରେ ଥାଆନ୍ତି ଛାତ୍ର ବିଭୂତିଭୂଷଣ । କାନ୍ତକବି ହାସ୍ୟରସ ବ୍ୟାଜରେ ନିଜ ଲେଖାର ଆଭିମୁଖ୍ୟ ଓ ଜୀବନ-ଦର୍ଶନ ସଂପର୍କରେ ଯେଉଁ କେତୋଟି କଥା କହିଥିଲେ, ତାହା ଅଦ୍ୟାବଧି ମୋ ସ୍ମୃତିରେ ଉଜ୍ଜୀବିତ । ଭାଷଣ ଆରମ୍ଭରେ ପରିହାସ ଛଳରେ କହିଥିଲେ- 'ମୋ ନାଁରେ ଯେପରି ତୋରଣ ରଚନା କରାଗଲାଣି, ଏ ଆରପାରିକି ଚଞ୍ଚଳ ପଠେଇ ଦେବାପାଇଁ ଏକ ଯୋଜନା ।' ହସରେ ସଭାସ୍ଥଳ କଂପିଯାଏ । କାନ୍ତକବିଙ୍କର ଭାଷଣର ଠିକ୍ ବର୍ଷକ ପରେ ଭଦ୍ରକ ବାସଭବନରେ ତାଙ୍କର ପରଲୋକ ହୋଇଯାଇଥିଲା ।

ସେତେବେଳେ ଭଦ୍ରକ ସହରରେ ଇଲେକ୍‌ଟ୍ରିକ୍‌ସିଟିର ବ୍ୟବସ୍ଥା ନଥିବାରୁ ଲଣ୍ଠନ, ପେଟ୍ରୋମାକ୍ସ : ଏଥିଲା ଅଧ୍ୟୟନ ଓ ଉତ୍ସବ ଆୟୋଜନର ଆୟୁଧ । ମଞ୍ଚରେ ପେଟ୍ରୋମାକ୍ସ ଲାଇଟ୍‌ର ବ୍ୟବସ୍ଥା କରାଯାଇଥିଲା । କେବଳ ସେଇବର୍ଷ କାହିଁକି, ବହୁବର୍ଷ ପର୍ଯ୍ୟନ୍ତ ଯେଉଁ ନାଟକ ଓ ଏକାଙ୍କିକା ଅଭିନୀତ ହେଉଥିଲା, ସେଥିରେ ନାରୀ ଭୂମିକାରେ ପୁରୁଷ ପିଲାମାନେ ଅଭିନୟ କରୁଥିଲେ । ପହିଲୁ ପହିଲୁ ନାଟକ ଏକାଙ୍କିକାମାନଙ୍କରେ ପ୍ରେମର ଦୃଶ୍ୟ ନୀତିବାଗୀଶ କେତେକ ଅଧ୍ୟାପକ ଓ କର୍ତ୍ତୃପକ୍ଷଙ୍କ ଦୃଷ୍ଟିରେ ଦୂଷଣୀୟ ଥିଲା ।

ପରେପରେ ଛାତ୍ର ଓ ଅଧ୍ୟାପକଙ୍କ ସଂଖ୍ୟା ବଢ଼ିଚାଲେ । କଲେଜ୍ ପରିସରରେ ISc. building, Arts building, କନିକା ହଷ୍ଟେଲ୍, ବାଳିକା ହଷ୍ଟେଲ୍ ଇତ୍ୟାଦି ତିଆରି ଚାଲେ । କେନ୍ଦ୍ର ସରକାରଙ୍କ ସହାୟତାରେ ଏକ ପ୍ରକାଣ୍ଡ ଗ୍ୟାଲେରୀ ଓ ବକ୍ତୃତାମଞ୍ଚ ନିର୍ମିତ ହୁଏ । ପରେପରେ ସାଂସ୍କୃତିକ ଉତ୍ସବ, ମକ୍ ଆସେମ୍ବ୍ଲି ଓ ମକ୍ ପାର୍ଲାମେଣ୍ଟମାନ ସେଇ ମୁକ୍ତ ରଂଗମଞ୍ଚରେ ଅନୁଷ୍ଠିତ ହୁଏ । ଯୋଗେନ୍ଦ୍ର ଅତିଥିଶାଳା, କନିକା ହଷ୍ଟେଲ୍, କଳାବିଭାଗ କୋଠାର ଉତ୍ତରଭାଗ ତିଆରି ଚାଲିଥାଏ । Arts building ର ଛାତ ଢ଼ଳେଇ ପୂର୍ବରୁ କାମଚଳା ପାଇଁ

ଟାଳଛପର ହୋଇଥାଏ । ବର୍ଷା କାଳରେ ଟାଳ ଭେଦି ଶ୍ରେଣୀରେ ପାଣି ପଡୁଥାଏ; ସେଥିରେ ଛାତ୍ର ଓ ଅଧ୍ୟାପକଙ୍କର କିଞ୍ଚିତ୍ ଅସୁବିଧା ହେଉଥିଲେ ମଧ୍ୟ ସେ ଅସୁବିଧାକୁ ଛାତ୍ରମାନେ ହସି ହସି ସହି ନେଉଥାନ୍ତି ।

## ବର୍ଷା ଋତୁରେ ଭଦ୍ରକ :

ବର୍ଷା କାଳରେ ଭଦ୍ରକ କଲେଜ୍ ପ୍ରାଙ୍ଗଣ ଏକ ବିଚିତ୍ର ରୂପ ଧାରଣ କରେ । ସାଳନ୍ଦୀ ବଢ଼ି କୂଳ ଲଂଘିଲେ ଭଦ୍ରକ କଲେଜ୍ ତୋଟାରେ କେଉଁଠି ଆଣ୍ଠୁଏ, କେଉଁଠି ବଳାଗଣ୍ଠି ପର୍ଯ୍ୟନ୍ତ ପାଣି ହୋଇଯାଇ ସୁଅ ଛୁଟେ । ଏହି ସମୟରେ ଯାବତ କୀଟପତଙ୍ଗ ତୋଟା ଭିତରେ ଆଶ୍ରୟ ନିଅନ୍ତି; ବିଷାକ୍ତ ସାପଗୁଡ଼ା ମଧ୍ୟ ଗଛରେ ଆଶ୍ରୟ ନିଅନ୍ତି । ରାତିରେ ଟର୍ଚ୍ଚ ବା ଲଣ୍ଠନ ଧରି ନ ଗଲେ ସର୍ପଦଂଶର ଭୟ ଥାଏ । ବିଭିନ୍ନ ପ୍ରକାର ବେଙ୍ଗ ଓ କୀଟପତଙ୍ଗର କର୍କଶ ଚିତ୍କାରରେ କଲେଜ୍ ତୋଟା ବଡ଼ ଭୟଙ୍କର ମୂର୍ତ୍ତି ଧାରଣ କରେ । ମଝିରେ ସାଳନ୍ଦୀ ନଦୀ ସେପାଖ ପାଳର ଅଦୂରରେ ରାତି ଟ୍ରେନ୍‌ର ତୂରୀ ଓ ଘଡ଼ଘଡ଼ ଶବ୍ଦ କଲେଜ୍‌ର ଉଆଁସିଆ ନୈଶବାତାବରଣକୁ ଆହୁରି ଗମ୍ଭୀର କରି ଦେଉଥାଏ । ପୁରୁଣା ସିନେମା ଛକଠାରୁ କଲେଜ୍ ବାରଣ୍ଡାକୁ ଉଠିବା ଯାଏ ପିଲାମାନେ ଆଣ୍ଠୁ ପର୍ଯ୍ୟନ୍ତ ଲୁଗା ଟେକି ଦଳଦଳ ହୋଇ ବର୍ଷାକାଳିଆ ରାସ୍ତାରେ ଚାଲି ଚାଲି ଆସନ୍ତି । ପୋପସିଂ ବାଳିକା ସ୍କୁଲ୍‌ଠାରୁ ଜଗନ୍ନାଥପୁର ଆରମ୍ଭ ସୀମାଯାଏ ରାସ୍ତାରେ ପାଣି ସୁଅ ଛୁଟେ । ଜଗନ୍ନାଥପୁର ଦକ୍ଷିଣ ମୁଣ୍ଡରୁ କଲେଜ୍ ହତାକୁ ପଶିଲାବେଳେ ଛାତ୍ର ଓ ଅଧ୍ୟାପକଙ୍କୁ ରୀତିମତ ଏକ ପ୍ରଖର ନାଳ ପାର ହେବାକୁ ହୁଏ । ବର୍ଷା କାଳରେ ସନ୍ତସତିଆ କଲେଜ୍ ପରିସର ପୁଣି ପାଣି ସୁଅ ଛୁଟା ରାସ୍ତା ସମସ୍ତଙ୍କ ପକ୍ଷରେ କେତେକ ପରିମାଣରେ ଅସୁବିଧାଜନକ ହେଲେ ମଧ୍ୟ ଦେହସହା ହୋଇଯାଇଥାଏ । ତାହା ବିରକ୍ତି ବଦଳରେ ଏକପ୍ରକାର ଆନନ୍ଦ ସୃଷ୍ଟି କରେ । ଶିମୁଳିପାଳ ପର୍ବତରୁ ବାହାରିଥିବା ସାଳନ୍ଦୀ ନଈର ଓସାର ଭଦ୍ରକରେ ଅଳ୍ପ । ସାଳନ୍ଦୀର ବନ୍ୟା ଆସିଲା ତ ଭଦ୍ରକସାରା ଯେଉଁଆଡ଼କୁ ଚାହିଁବ ପାଣି; କଚେରୀ ହତା, ନଈକୂଳିଆ ସରକାରୀ କ୍ୱାର୍ଟରସ, ଡାକ୍ତରଖାନା ହତା ସବୁ ପାଣିରେ ପୂରିଯାଏ । କଚେରୀ ପାଖ ଘୋସରାରେ ପାଣିସୁଅ ଛୁଟେ । ପ୍ରବଳ ବର୍ଷା ଓ ବନ୍ୟା ହେଲେ ଦୁଇ ତିନିଦିନ ଧରି କଲେଜ୍‌ରେ ରେନି ଡ଼େ (rainy day) ହୋଇଯାଏ । ଶ୍ରାବଣରେ ଜଗନ୍ନାଥପୁରରେ ଝୁଲଣ ଉତ୍ସବ ପୁଣି ଯାତ୍ରା ଛାତ୍ର ଓ ଗ୍ରାମବାସୀଙ୍କ ପକ୍ଷେ ବେଶ ଉପଭୋଗ୍ୟ ହୋଇଥାଏ । ରାତିସାରା ଅନିଦ୍ରା ରହି ଯାତ୍ରାଦେଖା ଚାଲେ ।

## ଅନ୍ୟାନ୍ୟ ଋତୁରେ ଭଦ୍ରକ :

ବର୍ଷାକାଳ ପରେ ଶରତ ପହଞ୍ଚିଲେ ନଈକୂଳ କାଶତଣ୍ଡୀ ଫୁଲରେ ଧବଳିତ ହୋଇଯାଏ । ତୋଟା ଫାଙ୍କରେ ଶାରଦୀୟ ଜୋସ୍ନା ବେଶ ଉପଭୋଗ୍ୟ ହୋଇଉଠେ ।

ନଦୀ-ମେଖଳିତ ଭଦ୍ରକ କାଶତଣ୍ଡୀ, ଶେଫାଳି, ଆମ୍ବ, ବାଉଁଶ ଓ ବିଭିନ୍ନ ବୃକ୍ଷ ଓ ଫୁଲଫଳରେ ମନୋଜ୍ଞ ଶୋଭା ଧାରଣ କରେ ।

ନଭେମ୍ବର ମାସରେ ଚରମ୍ପାରେ କାଳୀପୂଜା ସେତେବେଳେ ସମଗ୍ର ଉତ୍ତର ଓଡ଼ିଶାରେ ପ୍ରସିଦ୍ଧିଲାଭ କରିଥାଏ । ଚରମ୍ପା ଷ୍ଟେସନ ଅଞ୍ଚଳରେ ନିର୍ମିତ କାଳୀମେଢ଼ ଓ ବହୁ ଦୋକାନର ସାଜସଜ୍ଜା ଯୋଗୁଁ ଚରମ୍ପା ସେତେବେଳେ କଂପି ଉଠେ । ମେଦିନୀପୁର, ଟାଟା, ହାବଡ଼ା, କଲିକତା ଓ ଆଖପାଖ ଅଞ୍ଚଳର ବହୁ ଦୋକାନୀ ଚରମ୍ପା ରେଳରାସ୍ତା କଡ଼େ କଡ଼େ ଛୋଟ ଛୋଟ ଦୋକାନ ବସାଇଥାନ୍ତି । ଭଦ୍ରକ, ବାଲେଶ୍ୱର, ସୋରୋ, ଯାଜପୁର, ଆନନ୍ଦପୁର, କଟକ, ମୟୂରଭଞ୍ଜ ପ୍ରଭୃତି ବିଭିନ୍ନ ଅଞ୍ଚଳରୁ ବହୁଯାତ୍ରୀ କାଳୀପୂଜା ଦର୍ଶନକୁ ଆସନ୍ତି । ଟ୍ରେନ୍ ଓ ବସ୍ ସେତେବେଳେ କିଛିଦିନ ଧରି ବହୁ ଭିଡ଼ ହୋଇଯାଏ । ଏହି ପୂଜା ସମୟରେ କେତେଦିନ ଧରି ଓଡ଼ିଶାର ବିଭିନ୍ନ ଅଞ୍ଚଳର ପ୍ରସିଦ୍ଧ ଯାତ୍ରାଦଳ ଆସି ଯାତ୍ରା ପରିବେଷଣ କରନ୍ତି । ଭଦ୍ରକ ଓ ମଫସଲରୁ ଆସୁଥିବା ଯାତ୍ରୀମାନେ ରାତି ଉଜାଗର ରହି ଯାତ୍ରା ଦେଖି ପରଦିନ ଘରକୁ ବାହୁଡ଼ନ୍ତି ।

ଶୀତକାଳରେ ସାଳନ୍ଦୀର ସର୍ପିଳ ନୀଳଜଳଧାରା, ନଦୀ ତୀରବର୍ତ୍ତୀ ପାଳ ଓ ପଠାରେ ହଳଦିଆ ସୋରିଷଫୁଲ ଓ ଅନ୍ୟାନ୍ୟ ପନିପରିବା ଫସଲରେ ନଦୀତୀର ମନୋରମ ଶୋଭା ଧାରଣ କରେ ।

ପଉଷର ପତ୍ର-ଝରା, ମାଘର ବଉଳ ଭରା ଆମ୍ବଗଛ, ପତ୍ର ଗହଳିରେ କୋଇଲିର କୁହୁ : ପ୍ରତ୍ୟେକଟି ଦୃଶ୍ୟ ପ୍ରାଣରେ ଅପୂର୍ବ ପୁଲକ ସଞ୍ଚାର କରେ । ଫଗୁଣର ଶିମୁଳି ଓ ପଲାଶର ଲାଲ କୁସୁମ ଆସ୍ତରଣ, ଆମ୍ବକଷି, ଫଗୁବିନୋଦୀ ରାଧାକୃଷ୍ଣଙ୍କର ଖୋଳ କରତାଳ ବାଦ୍ୟ ସହ ଯାତ୍ରା ପୁଣି ନଦୀ ତୀରରେ ମେଳଣ : ଏଗୁଡ଼ିକ ଭଦ୍ରକର ଅଭୁଲା ଦୃଶ୍ୟ । କଲେଜ୍ ଆମ୍ରକୁଞ୍ଜ ଆମ୍ରଭାରରେ ଯେତେବେଳେ ନଇଁ ପଡ଼େ ଗୃହ ଓ ମେସ୍ ପ୍ରତ୍ୟାବର୍ତ୍ତନ ସମୟରେ ପିଲାଙ୍କର ଫୋପଡ଼ ସାହାଯ୍ୟରେ ଆମ୍ବ-ତୋଳା କମ୍ ଉପଭୋଗ୍ୟ ନୁହେଁ । ପାଚିଲା ପର୍ଯ୍ୟନ୍ତ ରହେ ନାହିଁ । କିନ୍ତୁ ସେତେବେଳେ ଆମ୍ବଗଛଗୁଡ଼ିକ ଯେପରି ଫଳ ଭାରରେ ନଇଁ ପଡୁଥିଲେ ସେ ଆମ୍ବ ଆଉ କାହିଁ ? କଲେଜ୍ ତୋତା ଆମ୍ବ ଓ ଭଦ୍ରକର ଶୁଖୁଆ : ଏ ଦୁଇଟି ଲାଳ-ସ୍ରାବୀ ବସ୍ତୁର ମୋହ ବା କିଏ ଛାଡ଼ିପାରେ ?

ମନେଅଛି କଳାଭବନ ଯେତେବେଳେ ତିଆରି ଚାଲିଥାଏ ଫେବୃୟାରୀ ଓ ମାର୍ଚ୍ଚରେ ରୁଦ୍ଧ ପ୍ରକୋଷ୍ଠ ମଧ୍ୟରେ କ୍ଲାସ କରାନଯାଇ ଆମ୍ବଗଛ ତଳେ ବେଞ୍ଚ, ଡେସ୍କ ଓ ଚେୟାର ପକାଯାଇ କ୍ଲାସ କରାଯାଉଥାଏ । ମୃଦୁମଳୟ ସହ କୋଇଲିର କୁହୁ ଏବଂ ଆମ୍ବଗଛର ଝରାପତ୍ର ଅଧ୍ୟୟନ ଓ ଅଧ୍ୟାପନାର ପରିବେଶକୁ ଆହୁରି ମନୋଜ୍ଞ କରି ଦେଉଥାଏ ।

ତପୋବନଂ ପ୍ରାଧ୍ୟୟନାଭିଭୂତଂ
ସମୁଚ୍ଚର ଚାରୁ ପତତ୍ରି-ଶିଞ୍ଜମ୍

ନଂନମ୍ୟମାନା ଫଳାଦିସ୍ତ ଏବ
ଚକାଶିରେ ତତ୍ର ଲତାବିଲୋନା । (ଭଟ୍ଟିକାବ୍ୟ)

ସୁନ୍ଦର ଆଶ୍ରମ ପରିବେଶ ଛାତ୍ର ଓ ଅଧାପକଙ୍କ ଚିତ୍ତରେ ଏପରି ପ୍ରଭାବ ବିସ୍ତାର କରୁଥାଏ ଫଳରେ ଶାନ୍ତିନିକେତନର ଅଧାପକ ଓ ଛାତ୍ରଙ୍କ ପରି ଭଦ୍ରକ କଲେଜ୍‌ର ଅଧାପକ ଓ ଛାତ୍ରମାନେ ମୁଖ୍ୟତଃ ଧୋତି, ପଞ୍ଜାବୀ ଓ କାମିଜ୍ ପିନ୍ଧି କଲେଜକୁ ଆସୁଥାନ୍ତି । ପେଣ୍ଟ ପିନ୍ଧାଙ୍କର ସଂଖ୍ୟା କମ । ବିନୋବାଜୀ ଯେତେବେଳେ ଓଡ଼ିଶାରେ ତାଙ୍କର ପ୍ରଥମ ପଦଯାତ୍ରା ଲକ୍ଷ୍ମଣନାଥଠାରୁ ଆରମ୍ଭ କଲେ, ସେ ସେତେବେଳେ ଗୋଟିଏ ଦିନ ଭଦ୍ରକ କଲେଜ୍‌ରେ ଅବସ୍ଥାନ କରିଥିଲେ । ବିନୋବାଙ୍କ ଭଦ୍ରକ ଆଗମନ ପୂର୍ବରୁ ତାଙ୍କର ପଟ୍ଟ ଶିଷ୍ୟ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ ବିନୋବାଙ୍କର ଭଦ୍ରକ ଆଗମନ ଓ ରହଣି ଉଦ୍ଦେଶ୍ୟରେ କଲେଜ୍‌ର ଏକ ସଭାରେ ତାଙ୍କର ଭୂଦାନ ଯଜ୍ଞ ଓ ଗାନ୍ଧିଜୀଙ୍କର ସର୍ବୋଦୟ ଦର୍ଶନ ସଂପର୍କରେ ଏକ ଭାଷଣ ଦେଇଥିଲେ । ଶ୍ରୀଯୁକ୍ତ ଚୌଧୁରୀ ଭଦ୍ରକ କଲେଜ୍‌ର ମନୋଜ୍ଞ ପ୍ରାକୃତିକ ପରିବେଶ ସହ ଛାତ୍ର ଓ ଅଧାପକଙ୍କର ନିରାଡ଼ମ୍ବର ବେଶ ପୋଷାକ ଓ ଶୃଙ୍ଖଳିତ ଆଚରଣରେ ମୁଗ୍ଧ ହୋଇ ଭଦ୍ରକ କଲେଜକୁ ଏକ ଗୁରୁକୁଳ ଆଶ୍ରମର ମର୍ଯ୍ୟାଦା ଦେଇଥିଲେ ।

## ଗଗନବିହାରୀ ମହାନ୍ତିଙ୍କ ପରଲୋକ :

ଆମ ଓଡ଼ିଆ ବିଭାଗର ମୁଖ୍ୟ ଅଧାପକ ଗଗନବିହାରୀ ମହାନ୍ତିଙ୍କର ପରଲୋକ ଘଟେ ୧୯୫୩ରେ । ତାଙ୍କର ଦାନ୍ତମୂଳ ଫୁଲି ପରେ ସେପ୍‌ଟିକ୍ ହୋଇଯାଇଥିଲା । ଭଦ୍ରକ ହସ୍‌ପିଟାଲ୍‌କୁ ନିଆଯାଇ ସେଲାଇନ୍ ଦିଆଯାଇ ଅନ୍ୟାନ୍ୟ ଚିକିତ୍ସା ଚାଲିଥିଲା । ବହୁ ସେବା ଯତ୍ନ ସତ୍ତ୍ୱେ ଶ୍ରୀଯୁକ୍ତ ମହାନ୍ତି ଏକମାତ୍ର ପୁତ୍ର ଓ କନ୍ୟାଙ୍କୁ ଛାଡ଼ି ଚିରଦିନ ପାଇଁ ଆଖି ବୁଜିଲେ । ସେ କରୁଣ ଦୃଶ୍ୟ, ତାଙ୍କର ଜ୍ୟେଷ୍ଠଭ୍ରାତା ବିନୋଦ ବିହାରୀଙ୍କର ବୁକୁଫଟା କ୍ରନ୍ଦନ ଏବେବି ମୋ ସ୍ମୃତିରେ ଉଜ୍ଜୀବିତ । ତାଙ୍କର ଶବ କଲେଜ୍ ହତାକୁ ନିଆଯାଇ ସାଳନ୍ଦୀ କୂଳରେ ସଂସ୍କାର କରାଯାଇଥିଲା । ଶବଯାତ୍ରା ଓ ସଂସ୍କାର ସମୟରେ ଛାତ୍ର, ଅଧାପକ ଓ ଭଦ୍ରକର ସାଧାରଣ ବ୍ୟକ୍ତିଙ୍କର ଚକ୍ଷୁ ଲୋତକଭରା । ଗଗନବିହାରୀ ସ୍ମୃତିକମିଟି ନାମରେ ଏକ ସ୍ମୃତିକମିଟି ଗଠିତ ହୋଇଥିଲା । ତାଙ୍କ ରଚିତ ଓ ପ୍ରକାଶିତ 'ପଥପୁଷ୍ପ' କବିତା ପୁସ୍ତକଟି ସେତେବେଳେ ବହୁ ଛାତ୍ର ଆଗ୍ରହର ସହ କିଣି ନେଇଥିଲେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଓଡ଼ିଆ ସାହିତ୍ୟ ସମାଜର ମୁଖପତ୍ର 'ଅର୍ଘ୍ୟ' ପତ୍ରିକା ସଂପାଦନା କରିବାକୁ ଯାଇ ମୁଁ ପ୍ରଚ୍ଛଦପଟରେ ଗମନବିହାରୀଙ୍କ ଆଲୋକଚିତ୍ର ସହ ତାଙ୍କର ସଂକ୍ଷିପ୍ତ ଜୀବନୀ ପ୍ରକାଶ କରିଥିଲି । ଗଗନବାବୁ ସେତେବେଳେ ଥିଲେ ଜଣେ ଉଦୀୟମାନ କବି ଓ ସମାଲୋଚକ । ଅଧାପକ ଭାବରେ ସେ ବିଶେଷ ଛାତ୍ର ପ୍ରିୟ ଥିଲେ । କେତେଦିନ ଧରି ରବିବାର ପ୍ରଜାତନ୍ତ୍ର ପୃଷ୍ଠାରେ ତାଙ୍କର ପ୍ରଣୟବଲ୍ଲରୀ ଓ ଅଭିଜ୍ଞାନ ଶାକୁନ୍ତଳମ୍‌ର ତୁଳନାତ୍ମକ ଅଧୟନର କେତୋଟି ଲେଖା ପ୍ରକାଶ ପାଇଥିଲା ।

ଗଗନବାବୁଙ୍କ ପରେ ମୁଁ ହେଲି ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ । ପରେପରେ ଓଡ଼ିଆ ବିଭାଗରେ ଅନ୍ୟ ସୁପ୍ରତିଷ୍ଠିତ ଲେଖକ ତଥା ଅଧ୍ୟାପକ ପଠାଣି ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ, କୃଷ୍ଣଚରଣ ବେହେରା ଓ ସୁଧାଂଶୁ ଶେଖର ରାୟ ଆସି ଯୋଗଦାନ କଲେ । ଅନ୍ୟ ବିଭାଗର ଯେଉଁ ନୂତନ ଅଧ୍ୟାପକମାନେ କ୍ରମେ ଆସି ଯୋଗଦେଲେ, ସେମାନେ ହେଲେ ମଧୁସୂଦନ ମିଶ୍ର (ଅର୍ଥନୀତି), ସନାତନ ମହାନ୍ତି (ଅର୍ଥନୀତି), ବଳରାମ ସାହୁ (ଦର୍ଶନ ଓ ତର୍କଶାସ୍ତ୍ର), ଶୈଳେନ୍ଦ୍ର ନାଥ ପୋଦ୍ଦାର (ଇଂରାଜୀ), ମୁରଲିଧର ସରକାର (ଇଂରାଜୀ), ସେକୁଲାର ରହମନ୍ (ଉର୍ଦ୍ଦୁ), ଗିରିଧାରୀ ପ୍ରସାଦ ଗୁରୁ (ଇଂରାଜୀ), ରଜତ କୁମାର କର (ଅର୍ଥନୀତି), ଶ୍ୟାମସୁନ୍ଦର ସାହୁ (ଇତିହାସ), ଦୟାନିଧି ପଣ୍ଡା (ଗଣିତ), ଦୟାନିଧି ନାୟକ (ଇଂରାଜୀ), ରଘୁରାଜ ସିଂହ (ହିନ୍ଦୀ), ପ୍ରଭାକର ମହାପାତ୍ର (ରସାୟନ) ହାସାନ (ରସାୟନ), ଜୟକିଶୋର ପଟ୍ଟନାୟକ (ପଦାର୍ଥ ବିଜ୍ଞାନ), ପ୍ରଫୁଲ୍ଲ କୁମାର ମିଶ୍ର (ପଦାର୍ଥ-ବିଜ୍ଞାନ), ରେଣୁବାଳା ଜେନା (ପ୍ରାଣୀବିଜ୍ଞାନ) ଇତ୍ୟାଦି ।

ଧର୍ମାରାଓଙ୍କ ପରେ ଅଶ୍ୱିନୀ କୁମାର ନନ୍ଦୀ କିଛିଦିନ ଅଧକ୍ଷ ଦାୟିତ୍ୱରେ ରହିଲେ । ତା'ପରେ ବିଜ୍ଞାନ ଶ୍ରେଣୀ ଖୋଲା ହେଲାବେଳକୁ ଅଧକ୍ଷ ହୋଇ ଆସିଲେ ଅବସରପ୍ରାପ୍ତ ଅଧ୍ୟାପକ ଶ୍ରୀ ଗୁରୁଚରଣ ମହାନ୍ତି । ଶ୍ରୀଯୁକ୍ତ ମହାନ୍ତିଙ୍କ ପରେ ଅଧକ୍ଷ ହେଲେ ଆନ୍ଧ୍ର ଶିକ୍ଷା ବିଭାଗର ଅବସର ପ୍ରାପ୍ତ ଇଂରାଜୀ ଅଧ୍ୟାପକ ଶ୍ରୀ ବିନୟ ରଂଜନ ରକ୍ଷିତ । ସେତେବେଳେ କଲେଜ୍‌ର କେଆର ଟେକର ଥାଜି ଜଗନ୍ନାଥପୁରର ନରେନ୍ଦ୍ର ମହାନ୍ତି, ଆଜି ପର୍ଯ୍ୟନ୍ତ ସେ ବି ଅଛନ୍ତି । ଛକଡ଼ିବାବୁ ଚାଲିଗଲେଣି, ତାଙ୍କର ଆବକ୍ଷ ମାର୍ବଲ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛି କଲେଜ୍ ପରିସର ମଧ୍ୟରେ । ଫେବୃୟାରୀ ୧୯୮୨ ମସିହାରେ ରବିବାର ପ୍ରଜାତନ୍ତ୍ରରେ ପ୍ରକାଶିତ ମୋର 'ମହାଦୀପ' ଶୀର୍ଷକ ଲେଖାରେ ରମ୍ୟରଚନା ଭଂଗୀରେ ଲେଖିଥିଲି ଛକଡ଼ିବାବୁଙ୍କ ସଂପର୍କରେ-

## ଛକଡ଼ି ମହାନ୍ତି :

ରହିଯାଅ ପଥିକ Stay on stranger । ପଲ୍ଲୀ ଭାରତୀର ମୁଖଶାଳା ଦେଇ ପ୍ରଜ୍ଞା-ସରଣି ପଥରେ କିଞ୍ଚିତ୍ ଆଗେଇଲେ ମୁହାଁମୁହିଁ ଦେଖିବେ ଗୋଟିଏ ଆବକ୍ଷ ମାର୍ବଲ ମୂର୍ତ୍ତି । ସେ କହୁଥିଲା, କହୁଥିବ : ରହିଯାଅ ପଥିକ- ବକୁଳ ଭରା ଆମ୍ର ଶାଖାତଳେ ମୁହୂର୍ତ୍ତେ ଠିଆ ହୋଇଯାଇ ଟିକିଏ ଭାବ, ଚିନ୍ତା କର । କା' ସଂପର୍କରେ ? ଯେଉଁଠାକୁ ଆସିଲ, ଯାହା ଦେଖିଲ, ତା'ର ପୂର୍ବକଥା, ଟିକିଏ ଦୂର ଭବିଷ୍ୟତ କଥା ।

ପଲ୍ଲୀଭାରତୀ (ଭଦ୍ରକ ମହାବିଦ୍ୟାଳୟ) ଏକ ମହାଦୀପ । ପଲ୍ଲୀଭାରତୀ- ଭଦ୍ରକ ମହାବିଦ୍ୟାଳୟ ପରିସର; ମହାଦୀପ ଭଦ୍ରକ ମହାବିଦ୍ୟାଳୟ; ପ୍ରଜ୍ଞାସରଣି- ପ୍ରଧାନ ରାସ୍ତାରୁ ଯୋଗେନ୍ଦ୍ର ଅତିଥିଶାଳା ପର୍ଯ୍ୟନ୍ତ ପ୍ରସ୍ତୁତ ପିଚୁରାସ୍ତା; ମୁଖଶାଳା- ଭଦ୍ରକ ମହାବିଦ୍ୟାଳୟ

ପ୍ରବେଶ କରିବାର ତୋରଣ; ବିଶ୍ରାମଚତ୍ୱର- ଛକଡ଼ି ମହାନ୍ତି ସ୍ମୃତିପୀଠ । ଏ ଜାତିର ବୋଇତକୁ କାଳ ସମୁଦ୍ରରେ ପଥର ସନ୍ଧାନ ହେଉଛି, ଅଜ୍ଞତା-ଅନ୍ଧକାର ଦୂର କରି । ଛନ୍ଦୋମୟୀ ସାଳନ୍ଦୀର ସିକତାମୟ ବେଳାରେ ଶଙ୍ଖ-ଶୁଭ୍ର ପ୍ରାସାଦମାଳା । ଏ ମହାଦୀପ ସ୍ଥାପନର କଳ୍ପନା ଆସିଲା ଭଗବତ ନିର୍ଦ୍ଦେଶରେ । କଳ୍ପନା ବାସ୍ତବ ରୂପ ନେଲା । ରୂପ ଦେଲା କିଏ ? ନିମିତ୍ତ ହେଲା କିଏ ? କିଏ ସେ ସବ୍ୟସାଚୀ ? ନରେନ୍ଦ୍ର ପ୍ରସାଦ ? ଛକଡ଼ି ?

ପଥିକର ମୁହାଁମୁହିଁ ମୂର୍ତ୍ତିଟି କାର ? ଛକଡ଼ିର, ସେଇ ସବ୍ୟସାଚୀ ଛକଡ଼ି । ଅହର୍ନିଶ ମଂଜରୀଭରା ଚୂତ ଶାଖାତଳେ କହିଚାଲୁଛି- ରହିଯାଅ ପଥିକ ! ଅଟକି ଯାଅ, ଦଣ୍ଡେ, ମୁହୂର୍ତ୍ତେ ।

ହାତରେ ଯଷ୍ଟି, କାନ୍ଧରେ ଗାମୁଛା, ବେକରେ ତୁଳସୀମାଳି, ସାଦାସିଧା ଆଣ୍ଠୁଲୁଚା ପିନ୍ଧା ଖଣ୍ଡିଏ- ଠୁକୁଠୁକୁ କରି ପ୍ରଜ୍ଞାସରଣିରେ ଚାଲିଥିବ ନିର୍ମାଣ କାମ । ଏଣେ ଚୂନକୁଟା ଚାଲୁଥିବ- ଗୌରାଙ୍ଗ ତା'ର କରଣି ଖଣ୍ଡ ଧରି ଚଞ୍ଚଳ ହାତରେ ଇଟା ପରେ ଇଟା ଖଞ୍ଜି ଚାଲିଥିବ । ଗୌରାଙ୍ଗରେ ! ଆଜ୍ଞା ! କି ସ୍ନେହସିକ୍ତ ମଧୁର ଡାକ ! କି ପ୍ରାଣଭରା ସମ୍ଭ୍ରମଯୁକ୍ତ ଉତ୍ତର !

ଅର୍ଜି ଥିଲା ଢେର । କୋଠାବାଡ଼ି ବଗିଚା କରିଥିଲା । ବିଲାତ ଫେରନ୍ତା ପୁଅ । କାଳର ଡ଼ାକରା ଆସିଲା- ପୁଅ ଚାଲିଗଲା । ବିଷୟ, ଐଶ୍ୱର୍ଯ୍ୟ ତିକ୍ତ ଲାଗିଲା । ଅମୃତର ସନ୍ତାନ ଅମୃତର ସନ୍ଧାନ ପାଇଲା, ପ୍ରାପ୍ତିରେ ନୁହେଁ, ତ୍ୟାଗରେ ।

ସେଇ ତ୍ୟାଗର ମଧୁମତୀ ଗାଇ ଚାଲିଛି ଛକଡ଼ି ଚୂତ ମଞ୍ଜରୀଭରା ଆମ୍ର ଶାଖାତଳେ । ପଥିକକୁ ସଙ୍କେତ ଦେଇ ଚାଲିଚି- ରହିଯାଅ ପଥିକ, ଦଣ୍ଡେ କ୍ଷଣେ ଅଟକି ଯାଅ । ଟିକିଏ ଭାବ, ଟିକିଏ ଚିନ୍ତାକର । କାହା କଥା ? ଅନୁଷ୍ଠାନ କଥା, ମଣିଷ କଥା, ଏ ଜାତି କଥା- ଏଇମିତି କେତେ ।

## ନରେନ୍ଦ୍ର ପ୍ରସାଦ ଦାସ :

ଭଦ୍ରକ କଲେଜ୍‌ର ପୂର୍ବତନ ସେକ୍ରେଟେରୀ ନରୁବାବୁ (ନରେନ୍ଦ୍ର ପ୍ରସାଦ ଦାସ) ୧୯୮୪ରେ ଚାଲିଗଲେ । ସେ ଥିଲେ ତା'ର ପ୍ରାଣ ପ୍ରତିଷ୍ଠାତା, ତା'ର ପ୍ରତ୍ୟେକ ଇଷ୍ଟକ ଖଣ୍ଡ ରେଣୁକଣା ସହ ଜଡ଼ିତ । ନରେନ୍ଦ୍ର ପ୍ରସାଦ ଦାସଙ୍କର ସ୍ମୃତି କମିଟି ଗଠିତ ହୋଇଛି । ଜୀବିତାବସ୍ଥାରେ ଏକାଧିକବାର କଲେଜ୍‌ରେ ଭଦ୍ରକ ରୋଟାରିକ୍ଲବ ଓ ଭଦ୍ରକ ବାର୍- ଆସୋସିଏସନ୍ ତରଫରୁ ତାଙ୍କୁ ସମ୍ମାନିତ କରାଯାଇଛି । ବାର୍ଦ୍ଧକ୍ୟରେ ନାନା ରୋଗର ଉପସର୍ଗ ସତ୍ତ୍ୱେ ତତ୍‌କାଳୀନ ରାଷ୍ଟ୍ରମନ୍ତ୍ରୀ ଯୁଗଳକିଶୋର ପଟ୍ଟନାୟକଙ୍କ ପ୍ରତିଷ୍ଠିତ ଭଦ୍ରକ ମହିଳା ମହାବିଦ୍ୟାଳୟର ସଂପାଦକ କାମ ତୁଲେଇ ଥିଲେ । ଭଦ୍ରକର ଶିକ୍ଷା ବିସ୍ତାରରେ ତାଙ୍କର ଅପୂର୍ବ ଉତ୍ସାହ, ସଂଗଠନ ଶକ୍ତି ଓ ନିଃସ୍ୱାର୍ଥପର ସେବାପରାୟଣତା ଏକ ମିଥ୍

(Myth) ହୋଇଯାଇଛି । ଦୀର୍ଘକାଳ ଧରି ଭଦ୍ରକ କଲେଜ୍‌ର ଇତିହାସ ସହ ତାଙ୍କର ସ୍ମୃତି ଜଡ଼ିତ ହୋଇ ରହିଥିବ କଲେଜ୍‌ର ପ୍ରାଣ ପ୍ରତିଷ୍ଠାତା ଭାବରେ । ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ସ୍ୱର୍ଗୀୟ ଦାସ ପରୋକ୍ଷରେ ଓଡ଼ିଶାର ବହୁ ଘରୋଇ ଶିକ୍ଷାନୁଷ୍ଠାନର ପ୍ରେରଣାଦାତା । ତାଙ୍କର ସ୍ମୃତି ରକ୍ଷାପାଇଁ ଭଦ୍ରକ କଲେଜ୍ ଓ ଭଦ୍ରକ ବାର୍‌ରେ ଯଥାଯଥ ବ୍ୟବସ୍ଥା ଚାଲିଥିବାର ଶୁଣିବାକୁ ମିଳେ ।

## ଭୂୟାଁ କୋଠିରେ ରହଣି :

ଅଧ୍ୟାପକ ଗଗନବିହାରୀ ମହାନ୍ତିଙ୍କ ପରଲୋକ ପରେ ସେ ରହୁଥିବା ଭୂୟାଁ ଭାସ୍କର ମହାପାତ୍ର କୋଠିରେ ମୋର ରହିବାର ବ୍ୟବସ୍ଥା ହେଲା । ହଷ୍ଟେଲ୍ ସୁପରିନ୍‌ଟେଣ୍ଡେଣ୍ଟସିପ୍ ଛାଡ଼ି ଭୂୟାଁ କୋଠିର ପୂର୍ବଭାଗ ଖଞ୍ଜାରେ ଯାଇ ରହିଲି । ମୋର ପ୍ରତିବେଶୀ ଅଧ୍ୟାପକ ଥିଲେ ଅର୍ଥନୀତି ବିଭାଗର ଅଧ୍ୟାପକ କଲିକତା ନିବାସୀ ଶ୍ରୀ ପ୍ରଭାତ କୁମାର ଘୋଷ ।

ନୂତନ ଘରଟି ଗୋଟିଏ ପାଚେରୀ ମଧ୍ୟରେ ଅବସ୍ଥିତ । ଏହା ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ରଙ୍କର ଏକ ପୁରୁଣା କଚେରୀ ଘର । ଅଗଣାରେ ଗୋଟିଏ ପକ୍କା କାନ୍ଥ ଦିଆଯାଇ ଖଞ୍ଜାଟିକୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ଘରଟିର କାନ୍ଥ ଓ ଚଟାଣ ପକ୍କା ହେଲେ ମଧ୍ୟ ଟାଳଛପର । ଘରର ପୂର୍ବକୁ ପୋଖରୀ, ପକ୍କା ତୁଠ । ରେଲ୍‌ପୁରର କମଳାକାନ୍ତ ନାୟକ ଥିଲେ ଭୂୟାଁ କୋଠିର ଲ' ଏଜେଣ୍ଟ । କୋଠିର ଦକ୍ଷିଣ ସୀମାକୁ ଲାଗି (ରାସ୍ତା ପାଖ) ଟିଣ ଘରଟିଏ ଥିଲା । ସେଥିରେ ଭାସ୍କର ମହାପାତ୍ରଙ୍କ ଜମିଦାରିର ମେନେଜର୍ ବଳରାମ ନାୟକ ସପରିବାର ରହୁଥିଲେ ।

ଭୂୟାଁ କୋଠିରେ ଭଦ୍ରକ କଲେଜରୁ ୧୯୫୯ ଜୁଲାଇରେ ବିଦାୟ ନେବା ପର୍ଯ୍ୟନ୍ତ ରହିଲି । ବସାଘରଟି ଅତି ପୁରୁଣା ଓ ଟାଳଘର ହେଲେ ମଧ୍ୟ ଏକ ପ୍ରଶସ୍ତ ହତା (ପ୍ରାୟ ୩/୪ ଏକର) ମଧ୍ୟରେ ପୋଖରୀ କୂଳରେ ଅବସ୍ଥିତି ଥିବାରୁ ବେଶ ଦକ୍ଷିଣା ପବନ ଆସେ । ପୋଖରୀ ହୁଡ଼ାରେ କେତୋଟି ଅର୍ଜୁନ ଗଛ ଓ ଖଜୁରି ଗଛ । ପୋଖରୀର ପୂର୍ବପାଖକୁ ଜଣେ ପଣ୍ଡିତଙ୍କ ଘର । ପଣ୍ଡିତେ ବହୁ ଦିନରୁ ସଂସାରରୁ ବିଦାୟ ନେଇଥାନ୍ତି । ଘରଟିରେ ପଣ୍ଡିତଙ୍କ ସ୍ତ୍ରୀ, ତାଙ୍କ ଝିଅ ଓ ପୁଅ ରହନ୍ତି ।

ଭୂୟାଁ କୋଠି ଭିତରେ କୋଠିକୁ ଲାଗି ଗୋଟିଏ କୂଅ । ସାମ୍ନାରେ କେତୋଟି ନଡ଼ିଆ ଗଛ ଲଗାଯାଇଥାଏ । ଦୁଇ ତିନୋଟି ଆମ୍ବଗଛ । ୧୯୫୩ ମସିହାର ଶୀତ କାଳରେ ସ୍ତ୍ରୀ ହେମଲତାଙ୍କୁ ଭଦ୍ରକ ଆଣିଲି । ବିଦେଶରେ ସସ୍ତ୍ରିକ ଜୀବନଯାତ୍ରାର ଅୟମାରମ୍ଭ ହୁଏ । ହେମଲତାଙ୍କ ସହ ବିଭାଘର ହୋଇଥିଲା ୧୯୪୮ ମସିହା ଜୁଲାଇ ମାସରେ, ଆଷାଢ଼ର ଶେଷ ଲଗ୍ନରେ । ଏ ପର୍ଯ୍ୟନ୍ତ ସେ ଗାଁରେ ଏକାନ୍ନବର୍ତ୍ତୀ ପରିବାରରେ ରହୁଥିଲା । ଘରେ ବୋହୂମାନଙ୍କ ଭିତରେ ବଡ଼ ଥିବାରୁ ତାଙ୍କ ପ୍ରତି ଅନ୍ୟମାନଙ୍କର ଯଥେଷ୍ଟ ସମ୍ମାନ ଓ ଶ୍ରଦ୍ଧା

ଥିଲା । ପରିବାରରେ ସମୟେ ସମୟେ ରୋଷେଇବାସ ସହ ପରିବାର ପରିଚାଳନାରେ ସେ ନ୍ୟାୟରେ କହୁଥିବାରୁ ଅନ୍ୟମାନେ ତାଙ୍କୁ ଭୟ କରୁଥିଲେ ।

ଆଜିକାଲି ବିଭାଘର ପରେ ପରେ ସ୍ତ୍ରୀମାନେ ସ୍ୱାମୀ ସହ ବିଦେଶକୁ ଚାଲି ଆସୁଛନ୍ତି, ଫଳରେ ଏକାନ୍ନବର୍ତ୍ତୀ ପରିବାରରେ ଜୀବନଯାପନର ଅଭ୍ୟାସ ସେମାନଙ୍କର ରହୁନାହିଁ, ତେଣୁ ପରିବାରର ଅନ୍ୟମାନଙ୍କ ପ୍ରତି ସେମାନଙ୍କର କର୍ତ୍ତବ୍ୟ ଓ ସେବାର ସ୍ୱାଦ ଅନ୍ୟମାନେ ପାଇପାରୁ ନାହାନ୍ତି । କିନ୍ତୁ ହେମ ଦୀର୍ଘ ୪/୫ ବର୍ଷ ଧରି ଏକାନ୍ନବର୍ତ୍ତୀ ପରିବାରରେ ସୁଖ ଦୁଃଖ ସହ ନିଜକୁ ସାମିଲ କରି ଚଳି ଆସିଥିବାରୁ ଶାଶୁ, ଶ୍ୱଶୁର ଓ ଅନ୍ୟମାନଙ୍କ ପ୍ରତି ନିଜ କର୍ତ୍ତବ୍ୟରେ ସଚେତନ ରହି ଯେପରି ସେମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ଏକାନ୍ନବର୍ତ୍ତୀ ପରିବାରର ପରିଚାଳନା ସଂପର୍କରେ ତାଙ୍କର ଯେଉଁ ପ୍ରାଥମିକ ଅନୁଭୂତି ହୋଇଥିଲା, ତାହା ବିଦେଶରେ କ୍ଷୁଦ୍ର ହେଲେ ମଧ୍ୟ ପରିବାର ପରିଚାଳନାରେ ବିଶେଷ ସହାୟକ ହୋଇଥିଲା । ଘରର ବଡ଼ଝିଅ ହୋଇଥିବାରୁ ଘର କାମରେ ସେତେ ଅଭ୍ୟସ୍ତ ହୋଇ ନଥିଲେ ମଧ୍ୟ ପୁତୁଣିଆଁ ଆସିବା ଦିନଠାରୁ ପରିବର୍ତ୍ତିତ ପରିସ୍ଥିତିରେ ନିଜକୁ ବେଶ ତିଆରି କରି ନେଇଥିଲେ । ବାପଘରର ପକ୍କାଘର ଛାଡ଼ି ଛାଳଘରେ ଆସି ରହିଲେ, ରୋଷେଇ ବାସରେ ଅଭ୍ୟସ୍ତ ହୋଇଗଲେ ।

ଗାଁର ବୋହୂ ଥିବାରୁ ଭଦ୍ରକ ଆସିଲେ ମଧ୍ୟ ସେଇ ଗାଁର ବଧୂସୁଲଭ ଲାଜ ସଂଭ୍ରମ ତାଙ୍କର ବହୁତ ଥିଲା, ଏପରିକି ଲୋକେ ଉଠି ପୋଖରୀରେ ସ୍ନାନ ପ୍ରକାର ସାରିବା ପୂର୍ବରୁ ସେ ତାଙ୍କର ଗାଧୁଆ ସାରି ଦେଉଥିଲେ । ମୁଣ୍ଡରେ ରୀତିମତ ଓଢ଼ଣା ଦେଉଥିଲେ । ନାକରେ ଉଜ୍ଜ୍ୱଳ ପଥରବସା ଚଣାଟିଏ ପିନ୍ଧିଥିଲେ । ବୋହୂଟିଏ ଆସି ପହଞ୍ଚିଲେ ସାଙ୍ଗସାଥୀର ଅଭାବ ହୁଅନ୍ତି ନାହିଁ । ମେନେଜରଙ୍କ ବୋହୂ ବିଦୁ (ବିଦ୍ୟୁଲ୍ଲତା), ଝିଅ ଶାନ୍ତି, ସ୍ଥାନୀୟ ଡାକ୍ତର ମୀନକେତନ ବାବୁଙ୍କ ଝିଅ ଶେଫାଳି ପ୍ରଭୃତି ହୋଇଯାଆନ୍ତି ତା'ର ସାଙ୍ଗସାଥୀ । ଧୀରେଧୀରେ କଲେଜ୍ ଛାତ୍ରୀ କିରଣ, ମାଳତୀ, ମୈଥିଳୀ, ଇନ୍ଦୁମତୀ, ସରଳା, ବୀଣା ଓ ବେଳାରାଣୀ ପ୍ରଭୃତି ସମୟେ ସମୟେ ଆସି ନୂଆବୋହୂ ଡାକରେ ଘର କମ୍ପାଇ ଦିଅନ୍ତି । ପ୍ରାୟ ସମବୟସ୍କା ଥିବାରୁ ନାନା ହସ ପରିହାସରେ କିଛି ସମୟ ବିତାଇ ତା'ର ମନର ନିର୍ଜନତା ଜନିତ କ୍ଳାନ୍ତି ଦୂର କରନ୍ତି । କୋଡ଼ପଡ଼ାରୁ ପିଲାଟିଏ ଆସି ସାହାଯ୍ୟକାରୀ ଭାବରେ ରହିଥାଏ ।

ବଡ଼ଶାଳୀ ମାଳତୀର ବିଭାଘର ହୋଇଥାଏ ସାବରଙ୍ଗର ଜମିଦାର ଉଦୟ ନାରାୟଣ ନାୟକଙ୍କ ନାତି (ଝିଅର ପୁଅ) ପ୍ରଫୁଲ୍ଲ ସଂଗରେ । ମାଳତୀକୁ ଭଦ୍ରକ ଅଣାଇଥିଲି । କିଛିଦିନ ଦୁଇ ଭଉଣୀ ଆନନ୍ଦରେ ରହିଲେ । ପରେ ଭାର ପ୍ରସ୍ତୁତ କରି ତା ଶାଶୁଘରେ ତାକୁ ଛାଡ଼ି ଆସିଲି । ସେହି ଦିନଠାରୁ ସାବରଙ୍ଗ ସହ ସଂପର୍କ ବଢ଼ି ଉଠିଥିଲା । ତା'ର ଦେଢ଼ ହେମ ଚାଲିଗଲା ପରେ ସଂପର୍କ ଯେ ତୁଟି ଯାଇଥିଲା, ତା' ନୁହେଁ । ପୁଣି ଭଦ୍ରକ ଆଗମନରେ ତାକୁ ଏକାଧିକାରବାର ଡକାଇଥିଲି । ସେ ଆସି ରହି ଚର୍ଚ୍ଚା ହୋଇଯାଏ; ରଜବେଳକୁ ପୋଡ଼ପିଠା ପଠାଏ । ଶଳା ବିଦ୍ୟାଧରଙ୍କ ମୃତ୍ୟୁ ପରେ ସାଙ୍ଗହୋଇ ନିର୍ଧୂମ ଖରାରେ ଶ୍ରୀମନ୍ତପୁର

(Myth) ହୋଇଯାଇଛି । ଦୀର୍ଘକାଳ ଧରି ଭଦ୍ରକ କଲେଜ୍‌ର ଇତିହାସ ସହ ତାଙ୍କର ସ୍ମୃତି ଜଡ଼ିତ ହୋଇ ରହିଥିବ କଲେଜ୍‌ର ପ୍ରାଣ ପ୍ରତିଷ୍ଠାତା ଭାବରେ । ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ସ୍ୱର୍ଗୀୟ ଦାସ ପରୋକ୍ଷରେ ଓଡ଼ିଶାର ବହୁ ଘରୋଇ ଶିକ୍ଷାନୁଷ୍ଠାନର ପ୍ରେରଣାଦାତା । ତାଙ୍କର ସ୍ମୃତି ରକ୍ଷାପାଇଁ ଭଦ୍ରକ କଲେଜ୍ ଓ ଭଦ୍ରକ ବାର୍‌ରେ ଯଥାଯଥ ବ୍ୟବସ୍ଥା ଚାଲିଥିବାର ଶୁଣିବାକୁ ମିଳେ ।

## ଭୂୟାଁ କୋଠିରେ ରହଣି :

ଅଧ୍ୟାପକ ଗଗନବିହାରୀ ମହାନ୍ତିଙ୍କ ପରଲୋକ ପରେ ସେ ରହୁଥିବା ଭୂୟାଁ ଭାସ୍କର ମହାପାତ୍ର କୋଠିରେ ମୋର ରହିବାର ବ୍ୟବସ୍ଥା ହେଲା । ହଷ୍ଟେଲ୍ ସୁପରିନ୍‌ଟେଣ୍ଡେଣ୍ଟସିପ୍ ଛାଡ଼ି ଭୂୟାଁ କୋଠିର ପୂର୍ବଭାଗ ଖଞ୍ଜାରେ ଯାଇ ରହିଲି । ମୋର ପ୍ରତିବେଶୀ ଅଧ୍ୟାପକ ଥିଲେ ଅର୍ଥନୀତି ବିଭାଗର ଅଧ୍ୟାପକ କଲିକତା ନିବାସୀ ଶ୍ରୀ ପ୍ରଭାତ କୁମାର ଘୋଷ ।

ନୂତନ ଘରଟି ଗୋଟିଏ ପାଚେରୀ ମଧ୍ୟରେ ଅବସ୍ଥିତ । ଏହା ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ରଙ୍କର ଏକ ପୁରୁଣା କଚେରୀ ଘର । ଅଗଣାରେ ଗୋଟିଏ ପକ୍କା କାନ୍ଥ ଦିଆଯାଇ ଖଞ୍ଜାଟିକୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ । ଘରଟିର କାନ୍ଥ ଓ ଚଟାଣ ପକ୍କା ହେଲେ ମଧ୍ୟ ଚାଳଛପର । ଘରର ପୂର୍ବକୁ ପୋଖରୀ, ପକ୍କା ତୁଠ । ଗେଲ୍‌ପୁରର କମଳାକାନ୍ତ ନାୟକ ଥିଲେ ଭୂୟାଁ କୋଠିର ଲ' ଏଜେଣ୍ଟ । କୋଠିର ଦକ୍ଷିଣ ସୀମାକୁ ଲାଗି (ରାସ୍ତା ପାଖ) ଟିଣ ଘରଟିଏ ଥିଲା । ସେଥିରେ ଭାସ୍କର ମହାପାତ୍ରଙ୍କ ଜମିଦାରିର ମେନେଜର୍ ବଳରାମ ନାୟକ ସପରିବାର ରହୁଥିଲେ ।

ଭୂୟାଁ କୋଠିରେ ଭଦ୍ରକ କଲେଜରୁ ୧୯୫୯ ଜୁଲାଇରେ ବିଦାୟ ନେବା ପର୍ଯ୍ୟନ୍ତ ରହିଲି । ବସାଘରଟି ଅତି ପୁରୁଣା ଓ ଚାଳଘର ହେଲେ ମଧ୍ୟ ଏକ ପ୍ରଶସ୍ତ ହତା (ପ୍ରାୟ ୩/୪ ଏକର) ମଧ୍ୟରେ ପୋଖରୀ କୂଳରେ ଅବସ୍ଥିତି ଥିବାରୁ ବେଶ ଦକ୍ଷିଣା ପବନ ଆସେ । ପୋଖରୀ ହୁଡ଼ାରେ କେତୋଟି ଅର୍ଜୁନ ଗଛ ଓ ଖଜୁରି ଗଛ । ପୋଖରୀର ପୂର୍ବପାଖକୁ ଜଣେ ପଣ୍ଡିତଙ୍କ ଘର । ପଣ୍ଡିତେ ବହୁ ଦିନରୁ ସଂସାରରୁ ବିଦାୟ ନେଇଥାନ୍ତି । ଘରଟିରେ ପଣ୍ଡିତଙ୍କ ସ୍ତ୍ରୀ, ତାଙ୍କ ଝିଅ ଓ ପୁଅ ରହନ୍ତି ।

ଭୂୟାଁ କୋଠି ଭିତରେ କୋଠିକୁ ଲାଗି ଗୋଟିଏ କୂଅ । ସାମ୍‌ନାରେ କେତୋଟି ନଡ଼ିଆ ଗଛ ଲଗାଯାଇଥାଏ । ଦୁଇ ତିନୋଟି ଆମ୍ବଗଛ । ୧୯୫୩ ମସିହାର ଶୀତ କାଳରେ ସ୍ତ୍ରୀ ହେମଲତାଙ୍କୁ ଭଦ୍ରକ ଆଣିଲି । ବିଦେଶରେ ସସ୍ତ୍ରିକ ଜୀବନଯାତ୍ରାର ଅୟମାରମ୍ଭ ହୁଏ । ହେମଲତାଙ୍କ ସହ ବିଭାଘର ହୋଇଥିଲା ୧୯୪୮ ମସିହା ଜୁଲାଇ ମାସରେ, ଆଷାଢ଼ର ଶେଷ ଲଗ୍ନରେ । ଏ ପର୍ଯ୍ୟନ୍ତ ସେ ଗାଁରେ ଏକାନ୍ନବର୍ତ୍ତୀ ପରିବାରରେ ରହୁଥିଲା । ଘରେ ବୋହୂମାନଙ୍କ ଭିତରେ ବଡ଼ ଥିବାରୁ ତାଙ୍କ ପ୍ରତି ଅନ୍ୟମାନଙ୍କର ଯଥେଷ୍ଟ ସମ୍ମାନ ଓ ଶ୍ରଦ୍ଧା

ଥିଲା । ପରିବାରରେ ସମୟେ ସମୟେ ରୋଷେଇବାସ ସହ ପରିବାର ପରିଚାଳନାରେ ସେ ନ୍ୟାୟରେ କହୁଥିବାରୁ ଅନ୍ୟମାନେ ତାଙ୍କୁ ଭୟ କରୁଥିଲେ ।

ଆଜିକାଲି ବିଭାଘର ପରେ ପରେ ସ୍ତ୍ରୀମାନେ ସ୍ୱାମୀ ସହ ବିଦେଶକୁ ଚାଲି ଆସୁଛନ୍ତି, ଫଳରେ ଏକାନ୍ନବର୍ତ୍ତୀ ପରିବାରରେ ଜୀବନଯାପନର ଅଭ୍ୟାସ ସେମାନଙ୍କର ରହୁନାହିଁ, ତେଣୁ ପରିବାରର ଅନ୍ୟମାନଙ୍କ ପ୍ରତି ସେମାନଙ୍କର କର୍ତ୍ତବ୍ୟ ଓ ସେବାର ସ୍ୱାଦ ଅନ୍ୟମାନେ ପାଇପାରୁ ନାହାନ୍ତି । କିନ୍ତୁ ହେମ ଦୀର୍ଘ ୪/୫ ବର୍ଷ ଧରି ଏକାନ୍ନବର୍ତ୍ତୀ ପରିବାରରେ ସୁଖ ଦୁଃଖ ସହ ନିଜକୁ ସାମିଲ କରି ଚଳି ଆସିଥିବାରୁ ଶାଶୁ, ଶ୍ୱଶୁର ଓ ଅନ୍ୟମାନଙ୍କ ପ୍ରତି ନିଜ କର୍ତ୍ତବ୍ୟରେ ସଚେତନ ରହି ଯେପରି ସେମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ଏକାନ୍ନବର୍ତ୍ତୀ ପରିବାରର ପରିଚାଳନା ସଂପର୍କରେ ତାଙ୍କର ଯେଉଁ ପ୍ରାଥମିକ ଅନୁଭୂତି ହୋଇଥିଲା, ତାହା ବିଦେଶରେ କ୍ଷୁଦ୍ର ହେଲେ ମଧ ପରିବାର ପରିଚାଳନାରେ ବିଶେଷ ସହାୟକ ହୋଇଥିଲା । ଘରର ବଡ଼ଝିଅ ହୋଇଥିବାରୁ ଘର କାମରେ ସେତେ ଅଭ୍ୟସ୍ତ ହୋଇ ନଥିଲେ ମଧ ପୁରୁଣିଆଁ ଆସିବା ଦିନଠାରୁ ପରିବର୍ତ୍ତିତ ପରିସ୍ଥିତିରେ ନିଜକୁ ବେଶ ତିଆରି କରି ନେଇଥିଲେ । ବାପଘରର ପକ୍କାଘର ଛାଡ଼ି ଛାଳଘରେ ଆସି ରହିଲେ, ରୋଷେଇ ବାସରେ ଅଭ୍ୟସ୍ତ ହୋଇଗଲେ ।

ଗାଁର ବୋହୂ ଥିବାରୁ ଭଦ୍ରକ ଆସିଲେ ମଧ ସେଇ ଗାଁର ବଧୂସୁଲଭ ଲାଜ ସଂଭ୍ରମ ତାଙ୍କର ବହୁତ ଥିଲା, ଏପରିକି ଲୋକେ ଉଠି ପୋଖରୀରେ ସ୍ନାନ ପ୍ରକାର ସାରିବା ପୂର୍ବରୁ ସେ ତାଙ୍କର ଗାଧୁଆ ସାରି ଦେଉଥିଲେ । ମୁଣ୍ଡରେ ରୀତିମତ ଓଢ଼ଣା ଦେଉଥିଲେ । ନାକରେ ଉଜ୍ଜ୍ୱଳ ପଥରବସା ଚଣାଟିଏ ପିନ୍ଧିଥିଲେ । ବୋହୂଟିଏ ଆସି ପହଞ୍ଚିଲେ ସାଙ୍ଗସାଥୀର ଅଭାବ ହୁଅନ୍ତି ନାହିଁ । ମେନେଜରଙ୍କ ବୋହୂ ବିଦୁ (ବିଦ୍ୟୁଲ୍ଲତା), ଝିଅ ଶାନ୍ତି, ସ୍ଥାନୀୟ ଡାକ୍ତର ମୀନକେତନ ବାବୁଙ୍କ ଝିଅ ଶେଫାଳି ପ୍ରଭୃତି ହୋଇଯାଆନ୍ତି ତା'ର ସାଙ୍ଗସାଥୀ । ଧୀରେଧୀରେ କଲେଜ୍ ଛାତ୍ରୀ କିରଣ, ମାଳତୀ, ମୈଥିଳୀ, ଇନ୍ଦୁମତୀ, ସରଳା, ବୀଣା ଓ ବେଳାରାଣୀ ପ୍ରଭୃତି ସମୟେ ସମୟେ ଆସି ନୂଆବୋହୂ ଡାକରେ ଘର କମ୍ପାଇ ଦିଅନ୍ତି । ପ୍ରାୟ ସମବୟସ୍କା ଥିବାରୁ ନାନା ହସ ପରିହାସରେ କିଛି ସମୟ ବିତାଇ ତା'ର ମନର ନିର୍ଜନତା ଜନିତ କ୍ଳାନ୍ତି ଦୂର କରନ୍ତି । କୋଡ଼ପଡ଼ାରୁ ପିଲାଟିଏ ଆସି ସାହାଯ୍ୟକାରୀ ଭାବରେ ରହିଥାଏ ।

ବଡ଼ଶାଳୀ ମାଳତୀର ବିଭାଘର ହୋଇଥାଏ ସାବରଙ୍ଗର ଜମିଦାର ଉଦୟ ନାରାୟଣ ନାୟକଙ୍କ ନାତି (ଝିଅର ପୁଅ) ପ୍ରଫୁଲ୍ଲ ସଂଗରେ । ମାଳତୀକୁ ଭଦ୍ରକ ଅଣାଇଥିଲି । କିଛିଦିନ ଦୁଇ ଭଉଣୀ ଆନନ୍ଦରେ ରହିଲେ । ପରେ ଭାର ପ୍ରସ୍ତୁତ କରି ତା ଶାଶୁଘରେ ତାକୁ ଛାଡ଼ି ଆସିଲି । ସେହି ଦିନଠାରୁ ସାବରଙ୍ଗ ସହ ସଂପର୍କ ବଢ଼ି ଉଠିଥିଲା । ତା'ର ଦେଢ ହେମ ଚାଲିଗଲା ପରେ ସଂପର୍କ ଯେ ତୁଟି ଯାଇଥିଲା, ତା' ନୁହେଁ । ପୁଣି ଭଦ୍ରକ ଆଗମନରେ ତାକୁ ଏକାଧିକାରବାର ଡକାଇଥିଲି । ସେ ଆସି ରହି ଚର୍ଚ୍ଚା ହୋଇଯାଏ; ରଜବେଳକୁ ପୋଡ଼ପିଠା ପଠାଏ । ଶଳା ବିଦ୍ୟାଧରର ମୃତ୍ୟୁ ପରେ ସାଙ୍ଗହୋଇ ନିର୍ଦ୍ଧୂମ ଖରାରେ ଶ୍ରୀମନ୍ତପୁର

(ଶ୍ୱଶୁରଘର) ଯାଇଛନ୍ତି । କିନ୍ତୁ କାଳକ୍ରମେ କୌଣସି କାରଣରୁ ପରସ୍ପରଠାରୁ ଦୂରେଇ ଯାଇଛନ୍ତି । ବ୍ୟକ୍ତିଗତ ସ୍ୱାର୍ଥ ଓ ଅହଂକାର ନିକଟରେ ଦୀର୍ଘକାଳର ଆତ୍ମୀୟତା ଯେ ତୁଚ୍ଛ, ଉଦ୍ଧବଙ୍କ ଚବିଶି ଗୁରୁ ଶିକ୍ଷାପରି ଏ ମୋର ମଧ୍ୟ ଏକ ଶିକ୍ଷା ।

## କେତେ ବନ୍ଧୁ କେତେ ସ୍ମୃତି :

ସପରିବାର ରହଣିକାଳ ମଧ୍ୟରେ ଭଦ୍ରକରେ ବିଭିନ୍ନ ଲୋକଙ୍କ ସହିତ ସଂପର୍କ ବଢ଼ି ଉଠିଥିଲା । ଫାରୁକ୍ ଅଳା କଥା ସବୁଠାରୁ ବେଶି ମନେପଡ଼େ । ଗୋରା ହୋଇ ଜମିଦାର ଚେହେରା, ମୁହଁ ଗୋରା ଲାଲ ତକ ତକ । ନିଶରେ କଳାରଂଗ ମାରି କାନ୍ଧରେ ବନ୍ଧୁକ ଖଣ୍ଡେ ପକାଇ ଅଳା ଶିକାର କରିଯାଏ । ପୁଣି ଘରକୁ ଫେରିଲେ ଚୁପ୍ ହୋଇ ରହିପାରେନା- ୟା' ଘର ତା' ଘର ବୁଲା । ଟାଉନ୍ ହଲ୍ ପାଖରେ ଚାନ୍ଦିନୀରେ ପଶାଖେଳ, ପକେଟ୍‌ରେ ପକେଟେ ପାନ । ପାନ ଖଣ୍ଡିଏ ଆଣି ପାଟିରେ ଗୁଞ୍ଜି ଦିଏ । ସେ ଭଦ୍ରକର ସାର୍ବଜନୀନ ଅଳା । ତା'ର ସ୍ନେହ କୋମଳ କଥା- ପରକୁ ଆପଣାର କରିବାର କି ଚମତ୍କାର ଆନ୍ତରିକତା । ଫାରୁକ୍ ଅଳା ଯୋଗୁଁ ଭଦ୍ରକ ବେଶ ଉପଭୋଗ୍ୟ ହୋଇ ଉଠୁଥାଏ ।

ଆଉ ଜଣେ ଥିଲେ, ସେ ସମସ୍ତଙ୍କର ଫନୀ ଦା । ଦାନ୍ତ ପଡ଼ିଯାଇଥାଏ । ସ୍ଥାନୀୟ କଚେରୀରେ କିରାଣି ଥିଲେ, ଅବସର ଗ୍ରହଣ କରି ଭଦ୍ରକରେ ରହିଥାନ୍ତି । ଅଭିନୟ କରିବାରେ, ନାଟକରେ ନିର୍ଦ୍ଦେଶ ଦେବାରେ ଭାରି ସଉକ । କଲେଜ୍ ନାଟକ ରିହରସାଲ୍ ସମୟରେ ବେଳେବେଳେ ତାଙ୍କୁ ଡକାଯାଏ । ଫନୀଦା ଆସି ପହଞ୍ଚିଲା ମାତ୍ରେ ଆମେ ମନରେ ତ ସହଜରେ ଖୁସ୍- ତାଙ୍କ ପାକୁଆ ପାଟିର ହସ ମନରେ ଲାଖିଯାଏ । ପ୍ରେମ ଦୃଶ୍ୟ ଅଭିନୟ ସମୟରେ ପାକୁଆ ପାଟିରେ ତାଙ୍କର ସ୍ନେହ କୋମଳ ସଂଳାପ ଓ ପ୍ରସନ୍ନୋଜ୍ଜ୍ୱଳ ମୁଖର ଲଳିତଭଙ୍ଗୀ ଏବେବି ସ୍ମୃତିପଟରେ ଉଜ୍ଜୀବିତ ଅଛି ।

ଇଂରାଜୀ ଅଧ୍ୟାପକ ଦୟାନିଧି ନାୟକ ଓ ହିନ୍ଦୀ ଅଧ୍ୟାପକ ରଘୁରାଜ ସିଂହଙ୍କ ସହ ମୋର ଘନିଷ୍ଠତା ହୋଇଥିଲା । ଦୟାନିଧି ବାବୁ ଜଣେ ପ୍ରବୀଣ ଅଧ୍ୟାପକ । ଇଂରାଜୀ ଓ ଓଡ଼ିଆରେ ସୁନ୍ଦର କବିତା ରଚନା କରୁଥିଲେ । ଜବାହରଲାଲ ନେହେରୁଙ୍କର କୌଣସି ଜନ୍ମ ଦିବସରେ ତାଙ୍କ ଉଦ୍ଦେଶ୍ୟରେ ଗୋଟିଏ ସୁନ୍ଦର ଇଂରାଜୀ କବିତା ଲେଖି ପଠାଇଥିଲେ । ସେ କବିତା ଓ ନେହେରୁଙ୍କ ଉତ୍ତର ସେ ପଢ଼ି ପୋଖରୀ ଘାଟରେ ଶୁଣାନ୍ତି । କେତେକ କାରଣରୁ ତାଙ୍କୁ କେତେକ ଅଧ୍ୟାପକ ପରିହାସ କରୁଥିଲେ ମଧ୍ୟ ତାଙ୍କର ଜ୍ଞାନ, ଗୁଣ ଓ ମାନବବାଦୀ ଦୃଷ୍ଟିଭଙ୍ଗୀରେ ମୁଁ ମୁଗ୍ଧ ଥିଲି । ତାଙ୍କ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରି ମୋର ଭଡ଼ାଘରର ସମ୍ମୁଖ ଭାଗର ଏକ ରୁମରେ ତାଙ୍କୁ ରହିବା ପାଇଁ ସ୍ୱତଃସ୍ଫୂର୍ତ୍ତ ଭାବରେ ଅନୁରୋଧ କରିଥିଲି । ସେ କିଛିଦିନ ସେଠାରେ ରହି ବିବାହ ପରେ ଅନ୍ୟତ୍ର ଘରଭଡ଼ା ନେଇ ରହିଲେ ।

ନାଟ୍ୟ ଓ ଅଭିନୟ ପ୍ରେମୀ ରଘୁରାଜ ସିଂହ ମଧ୍ୟ ବହୁ ସମୟରେ ମୋ ବସାକୁ ଆସନ୍ତି । ସାଙ୍ଗ ହୋଇ ଦୀର୍ଘ ସମୟ ପୋଖରୀତୁଠ ଚାନ୍ଦିନୀରେ ବସି କଥାବାର୍ତ୍ତା ହେଉଁ ।

ପୌଷର ଝରାପତର ଆମ ଉପରେ ପଡୁଥାଏ । ଚଟାଣରେ ପକ୍ୱ ପତ୍ରର ଆସ୍ତରଣ । ସେ ବେଳେବେଳେ ଭୋଜପୁରୀ ଲୋକଗୀତ ଗାଇ ଶୁଣାନ୍ତି । ଗୋଟିଏ ଗୀତର ପଦେ ମନେଅଛି-

କୋଇ ଧାନୀ ରଙ୍ଗାଦେ, କୋଇ ପିଲୀ ରଙ୍ଗାଦେ
ସୋନେ କି ଗଡୁୟା ଗଙ୍ଗାଜଲ ପାନୀ
ପୀନେବାଲା ପରଦେଶରେ
କୋଇ ଯା'କେ ବୁଲାଦେ ।

ସିଂହବାବୁଙ୍କର ନାଟ୍ୟାଭିନୟ ପ୍ରତି ଏତେ ଶ୍ରଦ୍ଧା; ନିଜେ ତ ଚମତ୍କାର ଅଭିନୟ କରନ୍ତି, ଅନ୍ୟକୁ ମଧ୍ୟ ଅଭିନୟରେ ଜଡ଼ିତ କରାଇ ଦିଅନ୍ତି । ମନେଅଛି : ଥରେ ହିନ୍ଦୀରେ ସେ ଏକ ଐତିହାସିକ ଏକାଙ୍କିକା ଅଭିନୟର ବ୍ୟବସ୍ଥାକରି ନିଜେ ନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ, ଯେଉଁଥିରେ ମୁଁ ପ୍ରଂପଟିଂ କରୁଥିଲି । ପରେପରେ ହିନ୍ଦୀରେ ଏକ ହାସ୍ୟରସପୂର୍ଣ୍ଣ ଏକାଙ୍କିକାର ଏପରି ଚମତ୍କାର ଯୋଜନା କରିଥିଲେ ଯେଉଁଥିରେ ଆମର ଅନ୍ୟ ଅଧ୍ୟାପକ ଓ ଲାବରେଟୋରୀ ଆସିଷ୍ଟାଣ୍ଟମାନେ ଯୋଗଦେଇ ଦର୍ଶକ ମଣ୍ଡଳୀକୁ ପେଟଫଟା ହସାଇଥିଲୁଁ । ସେଥିରେ ଲାବରୋଟେରୀ ଆସିଷ୍ଟାଣ୍ଟ ପ୍ରଭାକର ଜେନା ପ୍ରେମିକ ଭୂମିକାରେ ଅବତୀର୍ଣ୍ଣ ହୋଇ ମୁଣ୍ଡରେ ଜରି ଖଚିତ ଏକ ରାଜାର ପଗଡ଼ି ପିନ୍ଧିଥିଲେ ଏବଂ ଏକ କଲେଜ୍ ପିଟା ଘଣ୍ଟା ନେଇ ତାଙ୍କର ଗୃହିଣୀ ଭୂମିକାର ଅଭିନୟ କରୁଥିବା ଫନୀଦା (ସଂସ୍କୃତ ଅଧ୍ୟାପକ) ମୁଣ୍ଡରେ ପରଚୁନା ଓ ଶାଢ଼ୀ ପିନ୍ଧି କାନ ପାଖରେ ଘଣ୍ଟା ବାଡ଼ଉଥିଲେ । ନାରୀ ଭୂମିକାରେ ଅଧା ନିଶ ଲୁଚେଇ କେମିଷ୍ଟ୍ରି ଅଧ୍ୟାପକ ପ୍ରଭାକର ମହାପାତ୍ର ଏକ ଗଉଡୁଣୀ ଭୂମିକାରେ ଏବଂ ମୁଁ କବି ଭୂମିକାରେ ଅବତୀର୍ଣ୍ଣ ହୋଇଥିଲି । ବଟାନି ଅଧ୍ୟାପିକା ରେଣୁ ଅପାଙ୍କର ଏକ ଶୀତକାଳିଆ ଓଭର୍‌କୋଟ୍ ଓ ଧୋତି ପିନ୍ଧି, ବେକରେ ଚଦର ଗୁଡ଼ାଇ ଏକ ହିନ୍ଦୁସ୍ଥାନୀ କବିର ଭୂମିକା ଗ୍ରହଣ କରିଥିଲି । ମୁଁ ସୂର ଦାସଙ୍କର-''ଗବ୍ ଚୋରି କର୍‌ତେ ଆଗୟୀ ଗ୍ୱାଲିନ୍ କୋଇ ଓ୍ୱହାଁ'' ଗୀତର ଚାରୋଟି ପଦ ଆବୃତ୍ତି କରି ନୃତ୍ୟ ଭଙ୍ଗୀରେ ଯେତେବେଳେ ପଦ ସଞ୍ଚାଳନ କରୁଥିଲି, ଦର୍ଶକଙ୍କର ତାଳି ଦେଖ । ବିଶେଷତଃ ଯଶୋଦା ଯେତେବେଳେ କୃଷ୍ଣଙ୍କୁ ଲବଣୀ ଚୋରି କରି ଖାଉଥିବାରୁ ଶାସନ କରିବାକୁ ଆସନ୍ତି, କୃଷ୍ଣଙ୍କର ଉକ୍ତି-

''ଖାତା ନହୀଂ ମୈଂ ଉସ୍‌ସେ ନିକାଲାଥା ଚିଟିୟାଁ''-

ଅର୍ଥାତ ମୁଁ ଖାଉ ନଥିଲି ଯେ, ପାତ୍ରରୁ ପିମ୍ପୁଡ଼ି ବାଛୁଥିଲି- ଆବୃତ୍ତି କଲାମାତ୍ରେ ଦର୍ଶକଙ୍କ ହସ ଓ ତାଳିମରା ଦେଖିବାର କଥା । ଆମର ସେଦିନର ଅଭିନୟ ବହୁକାଳ ଧରି କଲେଜ୍‌ରେ ଏକ କାହାଣୀ ହୋଇ ରହିଯାଇଥିଲା ।

ମୁଁ ଭଦ୍ରକ କଲେଜରୁ ପ୍ରଥମ ପର୍ଯ୍ୟାୟରେ (୧୯୫୯ରେ) ବିଦାୟ ନେଲାପରେ ସିଂହବାବୁ ଦୀର୍ଘକାଳ ଧରି ଏଠାରେ ରହିଥିଲେ । ଭଦ୍ରକ କଲେଜ୍ ନାଟ୍ୟସଂସଦର ଉପସଭାପତି ଥାଇ ସଂସଦର ବହୁ ଉନ୍ନତି ସାଧନ କରିଥିଲେ ଏବଂ ସହରର ମନମୋହନ ସଙ୍ଗୀତ ପରିଷଦକୁ ମଧ୍ୟ ଶୃଙ୍ଖଳିତ କରିଥିବାର ଶୁଣିବାକୁ ପାଏଁ ।

ଅଞ୍ଚଳରେ ଜଣେ ଅବସରପ୍ରାପ୍ତ ପୁଲିସ୍ ସବ୍‌ଇନିସ୍‌ପେକ୍ଟର ଥିଲେ, ସାବରଙ୍ଗ ଆବୁ ତାଙ୍କ ସହ ବନ୍ଧୁବାନ୍ଧବ ସଂପର୍କ । ରାମକୃଷ୍ଣ କଳ୍ପତରୁ ଉତ୍ସବରେ ସେ ଆମକୁ ଡକାଇ ଖୁଆଇ ପିଆଇ ଛାଡ଼ନ୍ତି ।

ଝୁଲଣ ସମୟରେ ଜଗନ୍ନାଥପୁରର ଗଙ୍ଗାକରଙ୍କ ପୁଅ ରବି (ମୋର ଛାତ୍ର) ଝୁଲଣ ଯାତ୍ରା ଦେଖିବାକୁ ନିମନ୍ତ୍ରଣ କରେ । ତାଙ୍କ ସାଇରେ ରାତି ପାହିଲା ପର୍ଯ୍ୟନ୍ତ ଯାତ୍ରା ଦେଖି ଫେରେଁ । କାଳୀପୂଜା ସମୟରେ ଭଦ୍ରକ ରାସ୍ତା ମଫସଲ ଓ ସହରର ଯାତ୍ରାକାଳୀଙ୍କ ଦ୍ୱାରା ପୂର୍ଣ୍ଣ ହୋଇଯାଏ । ମଫସଲରୁ ସ୍ତ୍ରୀଲୋକ, ଝିଅ ପିଲା ଓ ପୁରୁଷମାନେ ରଙ୍ଗବେରଙ୍ଗର ପୋଷାକ ପିନ୍ଧି ଖୁସି ମନରେ ଦଳଦଳ ହୋଇ ଚରମା ଆଡ଼େ ଚାଲନ୍ତି ।

ଅଷ୍ଟମ ଶ୍ରେଣୀରୁ ଇଂରାଜୀ ମିନିଂ ବହି ମାଧ୍ୟମରେ ମୁଁ ବଙ୍ଗଳା ଶିକ୍ଷା କରିଆସିଥିଲି । ବଙ୍ଗଳା ପଢ଼ା ମୋର ଦୋରସ୍ତ ହୋଇଯାଇ ଥିବାରୁ ବିଭିନ୍ନ ସମୟରେ ବଙ୍ଗଳାରେ ମୁଁ ବହୁ ଉପନ୍ୟାସ, ତାତ୍ତ୍ୱିକ ସମାଲୋଚନାମୂଳକ ଗ୍ରନ୍ଥ ପଢ଼ି ସାରିଥାଏଁ । ବଙ୍କିମଚନ୍ଦ୍ର, ଶରତଚନ୍ଦ୍ର, ରବୀନ୍ଦ୍ରନାଥ, ବିମଳ ମିତ୍ର, ବନଫୁଲ୍ (ବାଲାଇ ଚାନ୍ଦ ମୁଖୋପାଧ୍ୟାୟ)ଙ୍କର ଉପନ୍ୟାସ ଓ ଗଳ୍ପ ପଢ଼ିବା ଫଳରେ ଖାଣ୍ଟି ବଙ୍ଗଳା ଭାଷା ସଂପର୍କରେ ଟିକିଏ ଜ୍ଞାନ ହୋଇଯାଇଥାଏ । ବଙ୍ଗଳା ଉପନ୍ୟାସ ପଢ଼ା, ରେଡ଼ିଓ ପ୍ରୋଗ୍ରାମ୍ ଶୁଣା ଏବଂ ବଙ୍ଗାଳୀ ଅଧ୍ୟାପକ ଶ୍ରୀ ଘୋଷ, ରାୟ, ଚୌଧୁରୀ, ପୋଦାର, ସରକାର ଓ ନନ୍ଦୀ ପ୍ରଭୃତିଙ୍କ ସଂପର୍କରେ ଆସିବା ଦ୍ୱାରା ବଙ୍ଗଳାରେ କହିବା ଅଭ୍ୟାସ କରୁଥିଲି ମୋର ଛୋଟ ଲାଇବ୍ରେରୀଟିରେ ବହୁ ବଙ୍ଗଳା ବହିର ସଂଗ୍ରହ ଦେଖି ପ୍ରଭାତବାବୁ, ଦୁର୍ଗାବାବୁଙ୍କ ସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇଯାଆନ୍ତି । ପ୍ରଭାତ ବାବୁ ଖୋଦ କଲିକତା ବାସିନ୍ଦା । ସେ ଓ ତାଙ୍କର ସ୍ତ୍ରୀ ଟିକିଏ sophisticated । ଗଣିତ ଅଧ୍ୟାପକ ଦୁର୍ଗାଦାସ ବାବୁ ଅତି ସୁନ୍ଦର ସ୍ନେହୀ, ଭଦ୍ର ଲୋକ । ତାଙ୍କ ସ୍ତ୍ରୀ ମଧ୍ୟ ଅତି ସରଳ ଓ କୋମଳ ହୃଦୟା- ଏମାନେ ଶାନ୍ତିପୁର ବାସିନ୍ଦା ।

ଭଦ୍ରକ କଲେଜ୍‌ରେ ଦୁର୍ଗାବାବୁ ଓ ଶ୍ରୀଯୁକ୍ତ ଘୋଷ ସେମାନଙ୍କର ଭବିଷ୍ୟତ ଅନିଶ୍ଚିତ ମନେ କରି ନିଜ ଷ୍ଟେଟ୍‌ରେ ବିଶେଷତଃ କଲିକତାରେ ଅଧିକ ସୁଯୋଗ ଓ ସୁବିଧାର ସମ୍ଭାବନା ପାଇଁ ଭଦ୍ରକରୁ ବିଦାୟ ନେଇଚାଲିଗଲେ ।

ସଂସ୍କୃତ ଅଧ୍ୟାପକ ଫନୀଦା (ଫଣୀନ୍ଦ୍ର ନାଥ ବାନାର୍ଜୀ) ଅତି ସ୍ନେହୀ ଲୋକ; କାଉପୁର ବାସିନ୍ଦା । ପକେଟ୍‌ରେ ମେଞ୍ଚାଏ ପାନ ଆଣିଥାନ୍ତି । ତାଙ୍କଠାରୁ ପାନ ମାଗି ଖାଇବା ଏବଂ ପୋଲା ମାର୍କଣ୍ଡିଆ ବୋଲି ମଧୁର ଗାଳିପଦେ ଶୁଣିବାରେ ଆମର ଆନନ୍ଦ । ଧୋତି, ପଞ୍ଜାବୀ ଓ ଚପଲ ହେଉଛି ତାଙ୍କର ବେଶପୋଷାକ । କଚେରୀ ପାଖରେ ରହିଥାନ୍ତି । ସଂସ୍କୃତ ସାହିତ୍ୟରେ ତ ଥିଲା ତାଙ୍କର ପ୍ରବେଶ; ତା' ସହିତ ତାଙ୍କର ଆଉ ଏକ ସାଧନା ଥିଲା, ତାହା ଥିଲା ତନ୍ତ୍ରସାଧନା । ସେ ଦେଓ ଘରରୁ ତନ୍ତ୍ରଶିକ୍ଷା କରିଥିଲେ । ପ୍ରତି ଅମାବାସ୍ୟାରେ ସେ ଘରେ ହୋମ କରନ୍ତି, ନିଜ ହାତ କାଟି ରକ୍ତ ବଳି ଦିଅନ୍ତି; ତାଙ୍କ ଘରେ ତାଙ୍କର ହୋମକ୍ରିୟା

ମୁଁ ଦେଖିଛି । ଘରେ ତାଙ୍କର ମଣିଷ ମୁଣ୍ଡ ମୁଣି ଭିତରେ ଥାଏ । ମୁଁ ଅନେକ ସମୟରେ ତାଙ୍କ ବସାକୁ ଯାଇ ବହୁ ସମୟ ଆଳାପ କରେଁ । ଛାତ୍ର ଓ ବାହାରର କେତେକ ତାନ୍ତ୍ରିକ ଶିଷ୍ୟ ମଧ୍ୟ ତାଙ୍କ ପାଖକୁ ଆସନ୍ତି । ସଂସ୍କୃତ ଛାତ୍ର ହଳଧର ପଣ୍ଡା (ବସନ୍ତିଆ ନିବାସୀ, ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗର ରିଡ଼ର) ତାଙ୍କର ପଟ୍ଟଶିଷ୍ୟ ଥିଲା । କଚେରୀ ବଜାରର ଜଣେ ମାରୱାଡ଼ୀ ଦୋକାନୀ ଓ ତାଙ୍କର ପୁଅମାନେ ଫନୀଦାଙ୍କର ଭାରି ଅନୁଗତ ଥିଲେ । ଏମାନେ ତାଙ୍କର ସୁଖ ଦୁଃଖ, ଅଭାବ ସମୟରେ ତାଙ୍କର ବହୁ ସେବା କରିଛନ୍ତି । ଫନୀଦା ପୁଣି ଜ୍ୟୋତିଷ ବିଦ୍ୟାରେ ଥିଲେ ପ୍ରବୀଣ । ତାଙ୍କର ପିଲାମାନଙ୍କ ମଧ୍ୟରୁ ଜଣକୁ ଛାଡ଼ିଦେଲେ ଅନ୍ୟମାନେ କେହି ଶିକ୍ଷାଦୀକ୍ଷା ଦୃଷ୍ଟିରୁ ଉପଯୁକ୍ତ ହୋଇ ପାରିଲେ ନାହିଁ । ଜୀବନର ସାୟାହ୍ନରେ ଶ୍ୱଶୁର ଘର ସହ ତାଙ୍କର ମାଲି ମୋକଦ୍ଦମା ଲାଗିଲା । ଶେଷରେ ସେ ଯେପରି ଅସହାୟ ଭାବରେ ମୃତ୍ୟୁବରଣ କଲେ, ଭାବିଲେ ଆଖିରୁ ଲୁହ ଝରିପଡ଼େ ।

ଆଉ ଜଣେ ମୋର ଅତି ପରିଚିତ ଥିଲେ, ସେ ହେଉଛନ୍ତି ବାଉଦପୁରର ଚନ୍ଦ୍ରଶେଖର ପଣ୍ଡା । କଚେରୀ ପାଖରେ ମନୋହରୀ ଦୋକାନଟିଏ ଦେଇଥାନ୍ତି, କିଛି ଔଷଧପତ୍ର ମଧ୍ୟ ବିକୁଥାନ୍ତି । ପଣ୍ଡାବାବୁ ଥିଲେ ଜଗତ୍‌ସିଂହପୁର ହାଇସ୍କୁଲ୍‌ର ଶିକ୍ଷକ । ଅଧ୍ୟାପକ ରାଜକିଶୋର ରାୟଙ୍କର ଶିକ୍ଷକ-ସହକର୍ମୀ । ବ୍ୟବସାୟ ପ୍ରତି ତାଙ୍କର ସହଜାତ ଶ୍ରଦ୍ଧା ଥିବାରୁ ସେ ଶିକ୍ଷକତା ଛାଡ଼ି ଭଦ୍ରକ କଚେରୀ ପାଖରେ ବ୍ୟବସାୟ ଆରମ୍ଭ କଲେ । ସେ ବ୍ୟବସାୟରେ ଏତେ ଉନ୍ନତି କରିଥିଲେ ଯେ ୧୯୭୧ ରେ ମୁଁ ଭଦ୍ରକ ଆସି କଚେରୀ ସାମନାରେ ତାଙ୍କର ଦୋକାନ ଖୋଜି ପାଇଲି ନାହିଁ । ଲୋକେ କହିଲେ : ଲୋକନାଥ ମନ୍ଦିର ଆଡ଼କୁ ରାସ୍ତାର ପଶ୍ଚିମ ପାଖକୁ ସେ ଦୋକାନ କରିଛନ୍ତି । ମୁଁ ଏକ ପ୍ରକାଣ୍ଡ ତିନିମହଲା କୋଠା ଦେଖି ପଣ୍ଡା ବାବୁଙ୍କର ବୋଲି ଧାରଣା କରି ପାରିଲି ନାହିଁ । ପରେ ଜାଣିପାରି ଦୋକାନରେ ତାଙ୍କୁ ଆବିଷ୍କାର କରି ଖୁସି ହୋଇଗଲି । ତାଙ୍କର ଉନ୍ନତିରେ ମୋର ଶୁଭେଚ୍ଛା ପ୍ରକାଶ କଲି । ଆଜି ସେ ଇହଧାମରେ ନାହାନ୍ତି ।

ସେଇ ପଣ୍ଡାବାବୁଙ୍କ କଚେରୀ ପାଖ ଦୋକାନରେ ମୋର ସହକର୍ମୀ ଓ ମୁଁ କେତେଥର ବସି ତାଙ୍କ ସହ ଆଳାପ ଆଲୋଚନା କରୁଁ । ସେ ତାଙ୍କ ଶିକ୍ଷକଜୀବନର ଅନୁଭୂତି ବର୍ଣ୍ଣନା କରି ମୁଗ୍ଧ କରନ୍ତି । ଦ୍ୱିତୀୟବାର ଭଦ୍ରକ ରହଣି କାଳରେ ତାଙ୍କ ସହ ସଂପର୍କ ଅତି ଘନିଷ୍ଠ ହୋଇଥିଲା । କେତେ ସଂଧ୍ୟା ତାଙ୍କର ସରସ୍ୱତୀ ଭବନ ସମ୍ମୁଖସ୍ଥ ସିମେଣ୍ଟ ଚେୟାରରେ ମଧୁର ଆଳାପରେ ଅତିବାହିତ ହୋଇଛି । ଆଳାପରେ ଯୋଗ ଦିଅନ୍ତି ସପ୍ଲାଇ ହେଡ୍‌କ୍ଲର୍କ ରାଧା ଗୋବିନ୍ଦ ମିଶ୍ର ଓ ଅନ୍ୟମାନେ । କାର୍ତ୍ତିକ ପୂର୍ଣ୍ଣିମା ସମୟରେ ସାଳନ୍ଦୀ କୂଳରେ (ରେଳପୋଲ ପାଖରେ) ସେ ଯେଉଁ ହରିହର ମୂର୍ତ୍ତି ନିର୍ମାଣ କରାଇ ତାଙ୍କ ସହ ଶ୍ରୀ ଚୈତନ୍ୟଙ୍କର ମୂର୍ତ୍ତି ମଧ୍ୟ ପ୍ରତିଷ୍ଠା କରାଇଥିଲେ, ସେଇ ମନ୍ଦିର ଚତ୍ୱରରେ କଟକ ଅନୁକରଣରେ ବାଲିଯାତ୍ରା ଓ ବୋଇତବନ୍ଦାଣ ଉତ୍ସବ କେତେବର୍ଷ ହେଲା କରାଇ ଆସୁଥାନ୍ତି । ବର୍ଷେ ବୋଇତବନ୍ଦାଣ

ପାଇଁ ମୁଁ ଏକ ଗୀତ ଲେଖି ଦେଇଥିଲି ଏବଂ ଉତ୍ସବ ଆରମ୍ଭରେ ସେଇ ଗୀତ ଗାନ କରାଯାଇଥିଲା । ବୋଇତ ବନ୍ଦାଣ ଉତ୍ସବରେ କେତେଥର ମୁଖ୍ୟବକ୍ତା ଭାବରେ ଭାଷଣ ଦେଇଛି । ବହୁବାର ପଣ୍ଡାବାବୁଙ୍କ ନିମନ୍ତ୍ରଣରେ ତାଙ୍କ ଘରେ ଭୋଜନ କରିଛି । ପଣ୍ଡାବାବୁଙ୍କର ସଂଗଠନ ଶକ୍ତି, ବନ୍ଧୁ ପ୍ରୀତି, ବ୍ୟବସାୟ କୁଶଳତା ଦେଖି ମୁଁ ମୁଗ୍ଧ ହୋଇଛି । ସାଳନ୍ଦୀ କୂଳରେ ପ୍ରକାଣ୍ଡ ବଗିଚାର ବ୍ୟବସ୍ଥା, ତୀର ଭୂମିରେ ଶୋଭାଦର୍ଶନ ନିମିତ୍ତ ଏକ ସ୍ତମ୍ଭାକାର ଦୁଇ ମହଲା ଘର ତାଙ୍କର ସୌନ୍ଦର୍ଯ୍ୟ ଜ୍ଞାନ ଓ ବନ୍ଧୁ ମେଳରେ ଅବସର ଉପଭୋଗର ପରିଚୟ ଦିଏ । ଜୀବନ କାଳରେ ବ୍ୟବସାୟିକ ସଫଳତା ଲାଭ କଲେ ମଧ୍ୟ ମନରେ ତାଙ୍କର ଅଭିମାନ ନଥିଲା । ଜୀବନରେ ଯେ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇନାହାନ୍ତି ତାହା ନୁହେଁ । ନିଜର ଚମତ୍କାର ହାସ୍ୟବୋଧ ଓ ବଚନ ମାଧୁର୍ଯ୍ୟରେ ସବୁ ପ୍ରତିକୂଳ ପରିସ୍ଥିତିକୁ ସେ ହସି ଉଡ଼େଇ ଦେଉଥିଲେ । ସେ 'ଭଗବାନ କିଏ କ'ଣ' ? ପୁସ୍ତକର ରଚୟିତା । ପୁସ୍ତକଟି ବଙ୍ଗଳାରେ ମଧ୍ୟ ଅନୂଦିତ ହୋଇଛି ।

ଭଦ୍ରକ ହାଇସ୍କୁଲ୍‌ର ଅବସର ପ୍ରାପ୍ତ ପ୍ରଧାନ ଶିକ୍ଷକ ଗୋକୁଳାନନ୍ଦ ନାୟକ ସେତେବେଳେ କଲେଜ୍ ରାସ୍ତା ପାଖ ତାଙ୍କ ଘରେ ରହୁଥିଲେ । ସେ ତ ଥିଲେ କଲେଜ୍ ଗଭର୍ଣ୍ଣିଂବଡ଼ିର ସଭ୍ୟ । ଶ୍ରୀଯୁକ୍ତ ନାୟକ କିଛିଦିନ କୌଣସି ରାଜପୁତ୍ରଙ୍କର ଗୃହଶିକ୍ଷକ ଥିଲେ । ତା'ପରେ ସେ ଭଦ୍ରକ ହାଇସ୍କୁଲ୍‌ରେ ଦୀର୍ଘକାଳ ଧରି ଶିକ୍ଷକତା କରିଥିଲେ । କିଛିଦିନ ମଧ୍ୟ ସେ ଥିଲେ ଭଦ୍ରକ ସବ୍‌ଡ଼ିଭିଜନାଲ୍ କଚେରୀରେ ଅବୈତନିକ (Honorary) ମାଜିଷ୍ଟ୍ରେଟ୍ । ତାଙ୍କର ଇଂରାଜୀ ଶିକ୍ଷାଦାନ ପଦ୍ଧତି ଓ ଶୃଙ୍ଖଳାବୋଧ ସେତେବେଳେ ଛାତ୍ରମାନଙ୍କ ତୁଣ୍ଡରେ ଏକ ମିଥ୍ ହୋଇ ଯାଇଥିଲା । ଅବସର ଗ୍ରହଣ ପରେ ସେ ହୋମିଓପାଥିକ୍ ଚିକିତ୍ସା କରୁଥିଲେ । ସକାଳ ଓ ସଂଧ୍ୟାରେ ତାଙ୍କର ଦୀର୍ଘପଥ ଭ୍ରମଣ ତାଙ୍କୁ ବଳିଷ୍ଠ ଓ କର୍ମଠ ରଖିଥିଲା । ଥରେ ଥରେ ଆଉ ଜଣେ ଅଧ୍ୟାପକ ଓ ମୁଁ ତାଙ୍କ ପ୍ରାତଃଭ୍ରମଣର ସାଥୀ ହୋଇଥାଉଁ ।

ବିଭାଘରର ସାତବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ କୌଣସି ସନ୍ତାନସନ୍ତତି ହୋଇ ନଥିବାରୁ ହେମର ମନରେ ବିଷାଦ ଓ ଆଶଙ୍କା ଦେଖାଦେଇଥିଲା । ପୂର୍ବରୁ ଡାକ୍ତର ଜ୍ୟୋତ୍ସ୍ନା ଦେଈଙ୍କ ପରାମର୍ଶ ଅନୁସାରେ ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜ୍‌ରେ ତାଙ୍କର Pelvic Dithermy ଚିକିତ୍ସା ଚାଲୁଥିଲା । ଭଦ୍ରକ ହସ୍‌ପିଟାଲ୍‌ରେ ସେତେବେଳେ ଥାଆନ୍ତି ଜଣେ ବୃଦ୍ଧା ଡାକ୍ତରାଣୀ । ତାଙ୍କର ପରାମର୍ଶ ଅନୁସାରେ ହେମ ଏକପ୍ରକାର ଆସନ ଅଭ୍ୟାସ କଲେ । ଈଶ୍ୱରଙ୍କ ଆଶୀର୍ବାଦରୁ ତାଙ୍କର ଅଭିଳାଷ ଚରିତାର୍ଥ ହେଲା । ୧୯୫୫ ମାର୍ଚ୍ଚରେ ପ୍ରଥମ ପୁଅର (ମିହିର କୁମାର, ଡାକ ନାମ ଟୁକ୍ରୁ) ଜନ୍ମ ଭଦ୍ରକ ହସ୍‌ପିଟାଲ୍‌ରେ ।

ରହିଥିବା ବସାଘରେ ଦୁଇଥର ଚୋର ପଶିଥିଲେ । ଥରେ ପୋଖରୀ ଘାଟ ପାଉଛ ଉପରେ ହାତରୁ ମୁଦିଟି କାଢ଼ି ରଖି ଗାଧୋଉ ଥିଲି । ମନେ ନ ପଡ଼ିବାରୁ ଛାଡ଼ି ଆସିଲି । ସିନେମା ପାଖ ଲୋକ ସେଠାକୁ ଗାଧୋଇ ଆସନ୍ତି । ଜଣେ ଲୋକ ଗାଧୋଇବା ପାଇଁ ଆସି

ମୁଦିଟି ପାଇ ନେଇଗଲା । ପୁଲିସ୍ ସାହାଯ୍ୟରେ ସିନେମା ଘର ପାଖରେ ଧମକ ଦିଆଯିବାରୁ ମୋ ବସାରେ ରହୁଥିବା ଛାତ୍ର ଅମୂଲ୍ୟ ହାତରେ ସେ ଲୋକ ମୁଦିଟି ଦେଇଦେଲା । ହଜିଲା ଜିନିଷ ମିଳିବା ସଂପର୍କରେ ସେତେବେଳେ ଯୁଗକାଳ ଏକପ୍ରକାର ଅନୁକୂଳ ଥିଲା । କିନ୍ତୁ ବର୍ତ୍ତମାନ ସଭ୍ୟତାର ସବୁ ସିଡ଼ିଯାକ ଆମେ ଯେତେବେଳେ ଗଡ଼ି ସାରିଲୁଣି, ସେତେବେଳେ ହଜିଲା ଜିନିଷ ମିଳିବା ଏକ ଦିବାସ୍ୱପ୍ନର ବିଷୟ ହୋଇଗଲାଣି ।

ସବୁବେଳେ ପିଲାମାନେ ଯେ ପାଖରେ ରହୁଥିଲେ, ତା' ନୁହେଁ, ମଝିରେ ମଝିରେ ଗାଁକୁ ଚାଲିଯାଉଥିଲେ, ଫଳରେ ବସାରେ ଏକୁଟିଆ ପଡ଼ିଯାଉଥିଲି । ଅଧ୍ୟାପକ ବନ୍ଧୁମାନେ ବେଳେବେଳେ ଆସି ନିଃସଂଗତା ଭାଙ୍ଗନ୍ତି । ଛାତ୍ରମାନଙ୍କ ମଧ୍ୟରୁ କେତେକ ସେବାରେ ଲାଗି ଯାଆନ୍ତି । ମୋର ମନେଅଛି : ଏହିପରି ଏକୁଟିଆ ଥିବା ସମୟରେ ଥରେ ମୋ ଦେହ ଖରାପ ହେଲା । ଅନ୍ୟ ଛାତ୍ରଙ୍କ ସହ ଶ୍ରୀମାନ୍ ଶୁକ (ଶୁକଦେବ ବେହେରା, ଏ.ଜି. ଅଫିସର୍ ଅବସରପ୍ରାପ୍ତ ସେକ୍‌ସନ ଅଫିସର୍) ମୋର ଦିନରାତି ଯେଉଁ ସେବା କରିଛି, ତାହା ଭୁଲି ପାରିବି ନାହିଁ । ସେ ପ୍ରକାର ସେବାପରାୟଣ ଛାତ୍ର ବାସ୍ତବିକ ସାଂପ୍ରତିକ କାଳରେ ଏକାନ୍ତ ଦୁର୍ଲ୍ଲଭ । କଟକ କିମ୍ବା ଭୁବନେଶ୍ୱରରେ ମିଟିଂ ପଡ଼ିଲେ ବଡ଼ିଭୋରୁ ଯିବାକୁ ଥିଲେ ପିଲାମାନେ ପ୍ରସ୍ତୁତ ହୋଇ ମୋତେ ଚରମ୍ପା ଷ୍ଟେସନରେ ଛାଡ଼ିକରି ଆସନ୍ତି ।

ଭଦ୍ରକ ରହଣି କାଳରେ ଆନନ୍ଦପୁର, ସୁକିନ୍ଦା, ଯାଜପୁର ଓ ଭଦ୍ରକ ଅଞ୍ଚଳର ବହୁ ଛାତ୍ର ମୋ ଦ୍ୱାରା ଉପକୃତ ହୋଇଛନ୍ତି । ଆମ ଗାଁ (ପୁରୁଣିଆଁ) ଗୋଟିଏ ଚାଷୀ ଗାଁ । ମୋ ପୂର୍ବରୁ ଗାଁରେ ଯେ ପଢୁନଥିଲେ ତା' ନୁହେଁ, କିନ୍ତୁ କେହି ମ୍ୟାଟ୍ରିକ୍ ଅତିକ୍ରମ କରିପାରି ନଥିଲେ । କିନ୍ତୁ ମୋ ପରେପରେ ଗାଁରେ ବର୍ଷାର ବନ୍ୟାପରି ଶିକ୍ଷାର ବିସ୍ତାର ହୋଇଯାଇଥିଲା, ଏପରିକି ନିହାତି ଗରିବ ପିଲା ମଧ୍ୟ ମ୍ୟାଟ୍ରିକ୍ ଖଣ୍ଡେ ପାଶ୍ କରି କିଛି ନା କିଛି ଚାକିରି ଖଣ୍ଡିଏ ଖଣ୍ଡିଏ ଧରି ନେଇଯାଇଛନ୍ତି । ଭଦ୍ରକ କଲେଜ୍‌ରେ ଯୋଗଦାନ ଫଳରେ ଗାଁର ଓ ଆନନ୍ଦପୁରର କେତେକ ପିଲା (ବାବାଜୀ ବଳ, କଳାକର ବଳ ପ୍ରଭୃତି), ଭଦ୍ରକ, ଚାନ୍ଦିଆ ଓ ବାଗୁରାଇ ପ୍ରଭୃତିରେ ଟିଉସନ୍ କରି, କଲେଜ୍ ଦରମା ଛାଡ଼ ପାଇ ବି.ଏ. ପାଶ୍ କରି ଶିକ୍ଷକତା ଠାରୁ ଆରମ୍ଭ କରି ବିଭିନ୍ନ ଚାକିରି ଧରିନେଇଛନ୍ତି । ବାବାଜୀ ବଳ ଏବେ ସେକେଣ୍ଡାରୀ ବୋର୍ଡ଼ ଅଫିସ୍‌ର ଡ଼େପୁଟି ସେକ୍ରେଟେରୀ ପଦରୁ ଅବସର ନେଇଛି । ଗାଁରେ ସିନା ଶିକ୍ଷାର ବିସ୍ତାର ଘଟିଲା, କିନ୍ତୁ ସମସ୍ତେ ଚାକିରି ଅଭିମୁଖୀ ହୋଇଥିବାରୁ ଚାଷୀ ଗାଁର ଚାଷ ଉଠିବା ଏବେ ଏକ ସମସ୍ୟା ହୋଇ ଦେଖାଗଲାଣି ।

ଅର୍ଥନୀତି ଅଧ୍ୟାପକ ଶ୍ରୀଯୁକ୍ତ ଘୋଷଙ୍କର କଲିକତା ବିଦାୟ ପରେ ଭୂୟାଁ କୋଠିରେ ସେ ରହୁଥିବା ଅଂଶରେ ପରେ କେମିଷ୍ଟ୍ରି ଅଧ୍ୟାପକ ପ୍ରଭାକର ମହାପାତ୍ର, ଇଂରାଜୀ ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ପ୍ରାଣୀବିଜ୍ଞାନ ଅଧ୍ୟାପକ ବିଦ୍ୟାଧର ନାୟକ ରହନ୍ତି । ବିଦ୍ୟାଧର ବାବୁଙ୍କ ବିଦାୟ ପରେ କୋଠିର ସେ ଭାଗକୁ ମୁଁ ଉଠିଯାଏଁ; ମୋ ରହୁଥିବା ଅଂଶରେ ଇତିହାସ

ଅଧ୍ୟାପକ ଶ୍ୟାମସୁନ୍ଦର ସାହୁ ରହନ୍ତି । ପ୍ରଭାକର ମହାପାତ୍ରଙ୍କ ରହଣି କାଳରେ ଭୂୟାଁ ପୋଖରୀରୁ ମାଛଧରା ଏବଂ କୋଠିରୁ ଚାଲୁଆ ମୂଷାମରା ପ୍ରଭୃତି ଛୋଟ ଛୋଟ ଘଟଣା ଏବେବି ମନେ ପଡ଼ିଲେ ବେଶ ମଜାଲାଗେ । ବଡ଼ ମଝିଆଁ ପୁଅ ତପନର ଜନ୍ମ ହୁଏ ଗାଁରେ, ସେପ୍ଟେମ୍ବର ୧୯୫୭ରେ । ଶିଶୁ ଦିନରୁ ତା'ର ଭୀମସେନ ଢଙ୍ଗ ଥିବାରୁ କଟକ ରହଣି କାଳରେ ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାରର ପରିଚାଳକ ଅନସୂୟା ପ୍ରସାଦ ପାଠକ ତାକୁ 'ଭୀମ' ଶୀର୍ଷକ ବହି ଖଣ୍ଡିଏ ଉପହାର ଦେଇଥିଲେ । ଟୁକ୍ରୁ, ତପନ ଦି'ଭାଇଙ୍କର ଖେଳ, କୌତୁକ, ମାଟିଖିଆ, ନାଚ ମୋ ପକ୍ଷରେ ଅବସର ବିନୋଦନ ପରି ହୋଇଥାଏ ।

ଗାଈଟିଏ ପୋଷିଥିଲି; ରହିବା ଓ ଚରାବୁଲାରେ କିଛି ଅସୁବିଧା ନଥାଏ । ସ୍ୱାମୀ ସ୍ତ୍ରୀ ଉଭୟେ ଗାଈର ଯତ୍ନ ନେଉଁ । ପ୍ରଥମେ ଯାଜପୁରରୁ ଅଣାଯାଇଥିବା ବୁଢ଼ୀ ଗାଈଟିଏ ଥିଲା । ସେ ଗାଈଟି ଆମ ଘରର ବହୁ ପିଲାଙ୍କୁ ଚଳାଇଥିଲା । ସେ ଗାଈଟି ଗଲାପରେ ଆନନ୍ଦପୁରର କାଳୀ ଗାଈଟିଏ କିଣା ଯାଇଥିଲା । ପଡ଼ୋଶୀ ଶିକ୍ଷକ ନିତ୍ୟାନନ୍ଦ ସେନାପତିଙ୍କ ଗଉଡ଼ ଗୋଲା ଆସି ଗାଈ ଦୁହିଁ ଦେଇଯାଏ । ଭଦ୍ରକରେ ଥିବାପର୍ଯ୍ୟନ୍ତ ଦୁଧରେ ହଇରାଣ ହୋଇନାହୁଁ । କିନ୍ତୁ ଗାଈଟିଏ ପୋଷିବା ପାଳିବା ବଡ଼ କଷ୍ଟକର ବ୍ୟାପାର । ବୁଢ଼ୀଗାଈ କଳକୁଣ୍ଡା ଖାଏ ନାହିଁ, ତା'ପାଇଁ ଖୋଜି ଲୋଡ଼ି କ୍ଷେତ୍ରି କୁଟା ବା ହଲର୍ ପେଷା କୁଣ୍ଡା ସଂଗ୍ରହ କରିବାକୁ ହୁଏ । ପେଟ ଖରାପ ହେଲେ ପଶୁଡାକ୍ତରଖାନାରୁ ଔଷଧ ଆଣି ତାକୁ ଖୁଆଇବା କଷ୍ଟକର । ଭଦ୍ରକରୁ ବିଦାୟ ନେଲାପରେ ଆଉ ଗାଈ ରଖିନାହିଁ ।

ଭଦ୍ରକ କଲେଜ୍ ସେତେବେଳେ ଥାଏ ଘରୋଇ କଲେଜ୍ । ଘରୋଇ କଲେଜ୍‌ରେ ସୁବିଧା ଅସୁବିଧା ଉଭୟ ଥାଏ, ସୁବିଧା ତୁଳନାରେ ଅସୁବିଧାର ମାତ୍ରା ବେଶୀ । କେତେକ କାରଣରୁ ସରକାରୀ ଚାକିରି ପାଇଁ ମନ ଦୃଢ଼ କରିବାକୁ ହେଲା । ୧୯୫୮ରେ ପବ୍ଲିକ୍ ସର୍ଭିସ୍ କମିଶନ ସାକ୍ଷାତ୍‌କାରରେ ଯୋଗଦାନ କରି ପ୍ରଥମସ୍ଥାନ ଅଧିକାର କଲି ଏବଂ ଗ୍ରୀଷ୍ମଛୁଟିରେ ରେଭେନ୍ସା କଲେଜ୍‌ରେ ଜୁଲାଇ ୧୩ରେ (୧୯୫୯) ଯୋଗ ଦେବାପାଇଁ ନିଯୁକ୍ତିପତ୍ର ପାଇଲି । ଛୁଟି ପରେ ଆସି ଦେଖେଁ ଘରଚାଳିରେ ନିଯୁକ୍ତି ପତ୍ରଟି ପଡ଼ିଛି ।

ବିଦାୟ ପାଳା ଚାଳିଲା, ଶେଷଆଡ଼କୁ କିଞ୍ଚିତ୍ ଅପ୍ରୀତିକର ପରିସ୍ଥିତିରେ ଭଦ୍ରକ ଛାଡ଼ିବାକୁ ହୋଇଥିଲା । ୧୧/୭/୫୯ରେ ଦାୟିତ୍ୱରୁ ଅବ୍ୟାହତ ନେଇ ୧୨ ତାରିଖ ରବିବାର ଦିନ କଟକ ଯାତ୍ରା କଲି । କଲେଜ୍ ତରଫରୁ ଅବଶ୍ୟ ବିଦାୟ ସମ୍ବର୍ଦ୍ଧନା ଦିଆଯାଇଥିଲା । କଟକରେ ଅଧ୍ୟାପନା ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା ୧୩/୭/୫୯ ଠାରୁ।

ଭୂୟାଁ କୋଠିରେ ରହଣି କାଳରେ ମୁଁ ଗଳ୍ପଭଙ୍ଗୀରେ ଭାରତ ତଥା ବିଶ୍ୱର କେତେଜଣ ବିଖ୍ୟାତ ସନ୍ଥଙ୍କର ଜୀବନୀ ରଚନା କରିଥିଲି । ସେଗୁଡ଼ିକରୁ କେତୋଟି 'ଡଗର'ରେ ପ୍ରକାଶିତ ହୋଇଥିଲା । ଛାତ୍ରାବସ୍ଥାରେ ପ୍ରାଚୀନ ରୀତିରେ କେତୋଟି ଚମ୍ପୂଗୀତ ଓ ଭଜନ ରଚନା କରିଥିଲି । ଗାଁର କୀର୍ତ୍ତନ ଓ ଭଜନ ଦଳ ଏବଂ ଅନ୍ୟ ଗାୟକମାନେ ବିଶେଷତଃ ମିଟଭାଇ

(ଇନ୍ଦ୍ରମଣି ବଳ) ସେଗୁଡ଼ିକ ବିଭିନ୍ନ ଆସରରେ ଆଗ୍ରହର ସହ ଗାଉଥିଲେ । ଚମ୍ପୂଗୀତ ଓ ଭଜନଗୁଡ଼ିକ ଆଧାତ୍ମିକ ଭାବମୂଳକ ଥିବାରୁ ସମସ୍ତେ ଶ୍ରଦ୍ଧା କରୁଥିଲେ, ଏପରିକି ମହିମାପନ୍ଥୀ ସନ୍ୟାସୀ ଭଗବାନ ଦାସ ସେଗୁଡ଼ିକ ପଢ଼ି ଖୁସି ହୋଇ ଆଶୀର୍ବାଦ କରିଥିଲେ । ଗାଁ ସ୍କୁଲ୍ ପିଲାଙ୍କ ଶିଶୁଦିବସ ଓ ଅନ୍ୟାନ୍ୟ ଉତ୍ସବ ଦିବସ ଉପଲକ୍ଷେ ଗୋଟିଏ ଗୋଟିଏ ମନଛୁଆଁ ଗୀତ ଲେଖିଦିଏଁ । ଗାଁରେ ସ୍କୁଲ୍ ପିଲାମାନେ ଧାଡ଼ିବାନ୍ଧି ଗୀତ ଗାଇ ଗାଁର ବିଭିନ୍ନ ସାଇ ପରିକ୍ରମା କରନ୍ତି । ମୋର ଗୋଟିଏ ଗୀତ : 'ଆହା ମୋର ବାପଧନରେ ମୋର ହୃଦ ପସରା' ପିଲାମାନେ ମଧୁର ସମବେତ କଣ୍ଠରେ ଗାଇ ଦାଣ୍ଡରେ ଯାଉଥିବାବେଳେ ଲୋକଙ୍କ ଆଖି ଲୋତକ ସଜଳ ହୋଇଥିବାର ଲକ୍ଷ୍ୟ କରିଛି । ଗୀତଟି ପ୍ରାଣସ୍ପର୍ଶୀ ହୋଇଥିବାରୁ ବଡ଼ ମାମୁଁ (ଲକ୍ଷ୍ମୀଧର ବଳ) ଗୀତଟିର ରଚୟିତା ମୁଁ ବୋଲି ଶୁଣି ମନେମନେ ତାରିଫ୍ କରୁଥାନ୍ତି ।

ସ୍କୁଲ୍ ଅବସ୍ଥାରୁ ଗୀତ ଓ କାବ୍ୟରଚନାର ଆଗ୍ରହ ଥିଲେ ମଧ୍ୟ ଅଭ୍ୟାସ ଓ ସାଧନାର ଅଭାବରୁ ତା'ର ବିକାଶ ଘଟିପାରିଲା ନାହିଁ; କିନ୍ତୁ ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ପ୍ରତି ରହିଥାଏ ଗଭୀର ଅନୁରାଗ । ଇଂରାଜୀ, ବଙ୍ଗଳା, ହିନ୍ଦୀ ଓ ସଂସ୍କୃତର ବହୁ ଗ୍ରନ୍ଥ ଅଧ୍ୟୟନ କରି ଜ୍ଞାନର ଦିଗବଳୟ ପ୍ରସାରଣ ପ୍ରତି ଥାଏ ପ୍ରାଣରେ ଅଦମ୍ୟ ସ୍ପୃହା ।

ଭୂୟାଁ କୋଠିରେ ପୂର୍ବୋକ୍ତ ରଚନା ବ୍ୟତୀତ କେତୋଟି ସମାଲୋଚନାମୂଳକ ପ୍ରବନ୍ଧ ରଚନା କରିଥିଲି । ସେଥିମଧ୍ୟରୁ 'ସହକାର', 'ଉତ୍କଳ ସାହିତ୍ୟ', 'ଆସନ୍ତାକାଲି', 'ସମାବେଶ', 'ଡଗର' ଓ 'ନବଜୀବନ'ରେ କେତେଗୁଡ଼ିଏ ପ୍ରବନ୍ଧ ପ୍ରକାଶ ପାଇଥାଏ । ମୋ ହାତରେ ପୁଣି ସଂଗୀତ, କବିତା ଓ ଏକାଙ୍କିକା ରଚନା ହୋଇପାରିବ କି ନାହିଁ, ଭୂୟାଁ କୋଠିରେ ତା'ର ପରୀକ୍ଷା ଓ ପ୍ରୟାସ କରିଥିଲି । ଏଇ ପ୍ରୟାସ ଫଳରେ ମୁଁ ଗୁଡ଼ିଏ ସଙ୍ଗୀତ, ଦୁଇଟି ଏକାଙ୍କିକା ରଚନା କରିଥିଲି । ସଙ୍ଗୀତଗୁଡ଼ିକ ମୁଖ୍ୟତଃ ଥିଲା ଅଧ୍ୟାତ୍ମଭାବମୂଳକ, କେତୋଟି ସଙ୍ଗୀତ ଦାମ୍ପତ୍ୟ ପ୍ରଣୟମୂଳକ । ଏକାଙ୍କିକାରୁ ଗୋଟିଏ (ନବସୃଷ୍ଟି) ଭଦ୍ରକ କଲେଜ୍‌ର ଏକ ସାଂସ୍କୃତିକ ଉତ୍ସବରେ ଅଭିନୀତ ହୋଇଥିଲା । ଆଣବିକ ଅସ୍ତ୍ରର ପରୀକ୍ଷା ଓ ପ୍ରୟୋଗ ଫଳରେ ବିଶ୍ୱରେ କିପରି ମାନବଜୀବନ, ସଭ୍ୟତା ଓ ସଂସ୍କୃତି ପ୍ରତି ସଙ୍କଟ ଆସି ପହଞ୍ଚିଛି, ପୌରାଣିକ ରୂପକ ଛଳରେ ଏକାଙ୍କିକାରେ ଦେଖେଇ ଦିଆଯାଇଥିଲା । ସେଥିରେ ଋଷି ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ଛାତ୍ର ବ୍ରଜମୋହନ ମହାନ୍ତି (ଆକାଶବାଣୀର ଜଣେ ଅବସର ପ୍ରାପ୍ତ ପ୍ରୋଗ୍ରାମ୍ ପ୍ରଡ୍ୟୁସର) ଏବଂ ଶ୍ରୀକୃଷ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ରବି କର (ବର୍ତ୍ତମାନ ଆଡ଼ଭୋକେଟ୍ ଓ ବ୍ୟବସାୟୀ) । ଭଦ୍ରକର ତତ୍କାଳୀନ କବି ନୀଳାଦ୍ରି ଦତ୍ତ (ଜାନୁଗଞ୍ଜ ଅଧିବାସୀ) ଏକାଙ୍କିକାଟିର ଭାବ ଓ ବିଷୟବସ୍ତୁର ପ୍ରଶଂସା କରିଥିଲେ ।

ଡାକ୍ତର ନୀଳାଦ୍ରି ଦତ୍ତ ଜଣେ କବି ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ତାଙ୍କ ରଚନା ମଧ୍ୟରୁ 'ଚନ୍ଦ୍ରୋଦ୍ଧାର' ହେଉଛି ଏକ ଉଲ୍ଲେଖଯୋଗ୍ୟ କାବ୍ୟ । ଭଦ୍ରକ ରହଣି କାଳରେ ତାଙ୍କ ସହ ମୋର ଘନିଷ୍ଠ ସଂପର୍କ ହୋଇଥିଲା । ମୋ ବସାରେ, ତାଙ୍କ ଘରେ ବିଭିନ୍ନ

ସମୟରେ ସାହିତ୍ୟ ଓ ଆଧ୍ୟାତ୍ମିକତା ସଂପର୍କରେ ଚର୍ଚ୍ଚା ହୁଏ । ଶ୍ରୀମଦ୍‌ଭଗବଦ୍ ଗୀତାରେ ମଧ୍ୟ ତାଙ୍କର ଗଭୀର ପ୍ରବେଶ ଥିଲା । ସେ ନିମନ୍ତ୍ରିତ ହୋଇ ବିଭିନ୍ନ ସଭାସମିତିରେ ଶ୍ରୀଗୀତା ଉପରେ ଭାଷଣ ଦିଅନ୍ତି ।

ଏମ୍.ଏ. ଶ୍ରେଣୀରେ ଅଧ୍ୟୟନ କାଳରେ ମୋର କେତୋଟି ଅନୁବାଦ ମୂଳକ ଓ ମୌଳିକ ଲେଖା ଝଙ୍କାର, ସହକାର ଓ ରବିବାର ପ୍ରଜାତନ୍ତ୍ରରେ ପ୍ରକାଶିତ ହୋଇଯାଇଥିଲା । ଏଇ ଲେଖା ମାଧ୍ୟମରେ ମୁଁ ସେତେବେଳେ ସହକାରର ସଂପାଦକ ବାଳକୃଷ୍ଣ କର, ଭଗବାନ ପତି (ବସନ୍ତ କୋକିଳ), ଝଙ୍କାର ଓ ପ୍ରଜାତନ୍ତ୍ରର ବିଭିନ୍ନ ସାହିତ୍ୟିକ ଓ ସାମ୍ବାଦିକମାନଙ୍କ ସହ ପରିଚିତ ହୋଇଯାଇଥିଲି ।

ଭଦ୍ରକ ରହଣି କାଳରେ ମୋର ଦୃଷ୍ଟି ଆକର୍ଷଣ କରିଥିଲେ ଜଣେ ଅଧ୍ୟୟନଶୀଳ, ଜ୍ଞାନପିପାସୁ ସାହିତ୍ୟିକ ତଥା ଶିକ୍ଷକ ଶ୍ରୀ ସୁଧାଂଶୁ ଶେଖର ରାୟ । ସେ ବି.ଏ., ବି.ଇ.ଡ଼ି. ପାଶ୍ କରି ବିଭିନ୍ନ ସ୍କୁଲ୍‌ରେ ଶିକ୍ଷକତା କରି ଶେଷରେ ବିନ୍ଦୁମାଧବ ବାଗୁରାଇ ହାଇସ୍କୁଲ୍‌ର ଶିକ୍ଷକ ଥିଲେ । ସେ ମୋ'ଠାରୁ ଭାଷାତତ୍ତ୍ୱ (Philology) ନୋଟ୍ ନେଇ ଘରୋଇ ଭାବରେ ଓଡ଼ିଆରେ ଏମ୍.ଏ. ପାଶ କରି ଭଦ୍ରକ କଲେଜ୍‌ର ଓଡ଼ିଆ ଅଧ୍ୟାପକ ଭାବରେ ଯୋଗଦାନ କଲେ । ସେ କବିତା ଓ ବହୁ ପ୍ରବନ୍ଧ ରଚନା କରିଥିଲେ; କେତୋଟି ପୁସ୍ତକ ତାଙ୍କର ପ୍ରକାଶିତ । ଅବସର ଗ୍ରହଣ ପରେ ସେ ଗୋଟିଏ ହାଇସ୍କୁଲ୍‌ରେ ପ୍ରଧାନ ଶିକ୍ଷକତା କରି ନବପ୍ରତିଷ୍ଠିତ ଚରମ୍ପା କଲେଜ୍‌ର ଅଧ୍ୟକ୍ଷ ହୋଇଥିଲେ । ତାଙ୍କର ପୁଅଗୁଡ଼ିକ ସମସ୍ତେ ମେଧାବୀ ଓ ସୁପ୍ରତିଷ୍ଠିତ ।

## ॥ ଦୁଇ ॥

## ରେଭେନ୍ସା କଲେଜ୍‌ରେ ଅଧ୍ୟାପନା

୧୯୫୯, ଜୁଲାଇ ୧୩ ତାରିଖ ପୂର୍ବାହ୍ନରେ ମୋର ରେଭେନ୍ସା କଲେଜ୍‌ର ଓଡ଼ିଆ ବିଭାଗରେ ଯୋଗଦାନ କରିବାର କଥା । ୧୨ ତାରିଖରେ ଆସି ପହଞ୍ଚେ କଟକ କୁମ୍ଭାର ସାହିରେ ଥିବା ଶ୍ୱଶୁରଙ୍କ କୋଠାରେ । ସେ କୋଠାରେ ଦେବେନ୍ଦ୍ର ବାବୁ ବୋଲି ଜଣେ ସପ୍ଲାଇ-ଇନିସ୍‌ପେକ୍ଟର ରହୁଥିଲେ । ମୋର ରେଭେନ୍ସା କଲେଜ୍ ଆସିବା ଓ କୁମ୍ଭାର ସାହିରେ ଥିବା ଘରେ ମୋର ରହଣି ସଂପର୍କରେ ତାଙ୍କୁ ସୂଚେଇ ଦିଆଯାଇଥିଲା । ବିନା ଭଡ଼ାରେ ରହୁଥିବା ଜଣେ ଲୋକ ପକ୍ଷରେ ଏ ସମ୍ବାଦ ନିଶ୍ଚୟ ଅପ୍ରୀତିକର; ଅପ୍ରୀତିକର ହେଲେ ମଧ୍ୟ ଛାଡ଼ିବାକୁ ହେବ ।

ମୁଁ ପହଞ୍ଚିଲାମାତ୍ରେ ଦାଣ୍ଡଘରେ ମୋର ଜିନିଷପତ୍ର ରଖିଦିଆଗଲା । ଦେବେନ୍ଦ୍ର ବାବୁଙ୍କ ସ୍ତ୍ରୀଙ୍କ ଅନୁରୋଧ କ୍ରମେ ସେଦିନ ରାତିରେ ମୁଁ ତାଙ୍କ ଘରେ ଖାଇଲି । ୧୩ ତାରିଖ ସକାଳୁ

ସ୍ନାନ ପ୍ରକାର ସାରି ଖାଇପିଇ ୧୦ଟା ବେଳକୁ କାର୍ଯ୍ୟରେ ଯୋଗ ଦେବାପାଇଁ ବାହାରିଲି । ବ୍ରଜବାବୁ (ମିଶ୍ର) ଥାଆନ୍ତି ସେତେବେଳେ ଅଫିସ୍ ସୁପରିନ୍‌ଟେଣ୍ଡେଣ୍ଟ; ଅଧ୍ୟକ୍ଷ ଥାଆନ୍ତି ଡଃ ସଦାଶିବ ମିଶ୍ର । ମୋର ଯୋଗଦାନ ସଂପର୍କରେ ବ୍ରଜବାବୁଙ୍କୁ ସୂଚାଇଲା ପରେ, ସେ ଅଧ୍ୟକ୍ଷଙ୍କୁ କହନ୍ତି । ଅଧ୍ୟକ୍ଷଙ୍କୁ ସାକ୍ଷାତ୍ କରି ତାଙ୍କ କକ୍ଷରେ ବସିଲି । ମୋର ଯୋଗ ଦେବାରେ ସାମାନ୍ୟ ଅସୁବିଧା ହୋଇଥାଏ । ଅସୁବିଧାଟି ହେଉଛି : ମୁଁ ଓଡ଼ିଆ ବିଭାଗରେ ଶ୍ରୀ ସଦାନନ୍ଦ ରାମାନୁଜ ଦାସଙ୍କ ସ୍ଥାନରେ ଯୋଗ ଦେବାପାଇଁ ନିଯୁକ୍ତି ପତ୍ରରେ ଉଲ୍ଲେଖ ଥାଏ; ପୁଣି ଅଧ୍ୟାପକ ଚିନ୍ତାମଣି ବେହେରାଙ୍କୁ ଯେଉଁ ବଦଳି ଅର୍ଡର ମିଳିଥାଏ, ସେଥିରେ ଉଲ୍ଲେଖ ଥାଏ ଯେ ସେ ସଦାନନ୍ଦ ରାମାନୁଜ ଦାସଙ୍କ ସ୍ଥାନରେ ଯୋଗ ଦେବେ । ଏହି ଅସୁବିଧା ହେତୁ ଅଧ୍ୟକ୍ଷ ମହୋଦୟ ଡ଼ି.ପି.ଆଇ. ବାମାଚରଣ ଦାସଙ୍କୁ ମୋର କାର୍ଯ୍ୟରେ ଯୋଗଦାନ ସଂପର୍କରେ ଫୋନ୍ କଲେ । ୧୦/୧୫ ମିନିଟ୍ ଧରି କିଛି ଉତ୍ତର ନ ଆସିବାରୁ ପୁଣି ଫୋନ କଲେ । ନିର୍ଦ୍ଦେଶକ କହିଲେ ବିଭାଗରେ ଅନ୍ୟ ପୋଷ୍ଟ ଖୋଲାଥିଲେ ତାଙ୍କୁ ସେଇଥିରେ ଯୋଗଦାନ କରାନ୍ତୁ । ଭାଗ୍ୟକୁ ବିଭାଗରେ ଅନ୍ୟ ଏକ ସ୍ଥାୟୀ ପୋଷ୍ଟ ଖାଲିଥିଲା । ମୁଁ ଅଧ୍ୟକ୍ଷଙ୍କ ପରାମର୍ଶ କ୍ରମେ ସେହି ପୋଷ୍ଟରେ ଯୋଗ ଦେଲି ପୂର୍ବାହ୍ଣରେ । ଡଃ ମିଶ୍ର କଥା ପ୍ରସଙ୍ଗରେ କହିଲେ, "ଖାଲି ପୋଷ୍ଟରେ ମୁଁ ଯୋଗ ଦେବାପାଇଁ କହିସାରିନ୍ତିଣି, କିନ୍ତୁ ନିର୍ଦ୍ଦେଶଙ୍କୁ ନ ପଚାରି କିଛି କରିଯିବା ଆମ ପକ୍ଷରେ ଦୋଷାବହ । ନିର୍ଦ୍ଦେଶକଙ୍କ ଅଫିସ୍‌ରେ ଦୋଷତ୍ରୁଟି ରହିଲେ ତାହା ତାଙ୍କ ପକ୍ଷରେ କ୍ଷମଣୀୟ, ଆମେ କିଛି କହିପାରିବା ନାହିଁ, କିନ୍ତୁ ଆମର ଭୁଲ ତ୍ରୁଟି ରହିଲେ ସିଧା ସଳଖ କୈଫିୟତ୍‌ଟାଏ ଚାଲିଆସିବ । ତା'ଛଡ଼ା ଏ ସଂପର୍କରେ ଲେଖାଲେଖି କରିଥିଲେ ମାସେ କି ପନ୍ଦର ଦିନ ଅଯଥା ଡ଼େରି ହୋଇଥାନ୍ତା, ଫୋନ୍‌ରେ ସମସ୍ୟାର ସମାଧାନ ଅଳ୍ପ ସମୟରେ ହୋଇଗଲା । ମୁଁ ନମସ୍କାର କରି ଖୁସିମନରେ ଅଧ୍ୟକ୍ଷଙ୍କଠାରୁ ବିଦାୟ ନେଲି । ମୋର ଜଏନିଂ କାଗଜ ୭/୮କିତା ପୂରଣ କରି ଦସ୍ତଖତ ଦେଇ ଓଡ଼ିଆ ବିଭାଗକୁ ଗଲି ।

ସେତେବେଳେ ପ୍ରଫେସର୍ ଥାଆନ୍ତି ଡଃ କୁଞ୍ଜବିହାରୀ ତ୍ରିପାଠୀ । ଡଃ କରୁଣାକର କରଙ୍କ ପରେ ସେ ହେଲେ ପ୍ରଫେସର । ସେତେବେଳକୁ ବିଭାଗରେ ଥିବା ଅନ୍ୟ ଅଧ୍ୟାପକମାନେ ହେଉଛନ୍ତି : ଡଃ କୁଞ୍ଜବିହାରୀ ଦାଶ, ଶ୍ରୀ କାହ୍ନୁଚରଣ ମିଶ୍ର, ଡଃ ଗୋପାଳ ଚନ୍ଦ୍ର ମିଶ୍ର, ଶ୍ରୀ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ଶ୍ରୀନିବାସ ମିଶ୍ର, ଶ୍ରୀ କୁଳମଣି ମହାପାତ୍ର, ଶ୍ରୀମତୀ ରେଖା ମହାନ୍ତି । ଅଧ୍ୟାପକ ଚିନ୍ତାମଣି ବେହେରା ଗଙ୍ଗାଧର ମେହେର କଲେଜରୁ ଆସି ଯୋଗ ଦେଲେ । ବିଭାଗୀୟ କକ୍ଷରେ ପ୍ରଫେସର୍ ଏବଂ ଅନ୍ୟମାନଙ୍କ ସସ୍ନେହ ଅଭିନନ୍ଦନ ଓ ସ୍ୱାଗତ ଧ୍ୱନିରେ ମନ ମୋର ପୂରି ଉଠିଲା । ସମସ୍ତଙ୍କୁ ନମସ୍କାର ଜଣାଇ ବସିଲି । କିଛି ସମୟ ସାଧାରଣ ବାର୍ତ୍ତାଳାପ ପରେ ମୋତେ ଦିଆଯାଇଥିବା କ୍ଲାସ୍ (ରୁଟିନ୍) ଟିପି ଆଣିଲି । ଶ୍ରୀନିବାସ ମିଶ୍ର ଥିଲେ ସେତେବେଳେ ରୁଟିନ୍ ଦାୟିତ୍ୱରେ ।

ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ୱତନ୍ତ୍ର ବିଲ୍‌ଡ଼ିଂ ନଥିବାରୁ ବର୍ତ୍ତମାନ କୋଠିରେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ୍ ଓ ଉତ୍ତର ପାଖକୁ ଥିବା ଆଉଟ୍‌ହାଉସ୍ ଘରେ ସଂସ୍କୃତ, ଷ୍ଟାଟିଷ୍ଟିକ୍ସ

ପ୍ରଭୃତି କେତୋଟି ବିଶ୍ୱବିଦ୍ୟାଳୟ ପରିଚାଳିତ କ୍ଲାସ ଚାଲୁଥାଏ । ଇତିହାସ ଓ ରାଜନୀତି ବିଜ୍ଞାନର ଏମ୍.ଏ. କ୍ଲାସ ଚାଲୁଥାଏ ରେଭେନ୍ସା କଲେଜ୍‌ରେ । ଇତିହାସ ଓ ରାଜନୀତି ବିଭାଗର ରିଡର୍ ଥିଲେ ସେତେବେଳେ ଡଃ ମନ୍ମଥନାଥ ଦାସ, ଡଃ ଶ୍ରୀରାମଚନ୍ଦ୍ର ଦାସ ।

ରେଭେନ୍ସା କଲେଜ୍‌ରେ ସେତେବେଳେ ଡଃ ରମାନାଥ ମହାନ୍ତି ଥିଲେ ଗଣିତ ପ୍ରଫେସର୍, ଡଃ ବଂଶୀଧର ସାମନ୍ତରାୟ ବଟାନି ପ୍ରଫେସର୍, ଡଃ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ଅର୍ଥନୀତି ପ୍ରଫେସର । ବଂଗଳା ବିଭାଗର ଅଧାପକ ଥାଆନ୍ତି ଶ୍ରୀ ବିବେକାନନ୍ଦ ମୁଖର୍ଜୀ, ଉର୍ଦ୍ଦୁ ଅଧାପକ ମିଃ. ହାସାନ୍, ପର୍ଶିୟାନ୍ ଅଧାପକ ମସିଉଲ୍ଲା (ବର୍ତ୍ତମାନ ସ୍ୱର୍ଗୀୟ); ଡଃ ମହେନ୍ଦ୍ର କୁମାର ରାଉତ କେମିଷ୍ଟ୍ରି ପ୍ରଫେସର୍, ଇଂରାଜୀ ଅଧାପକ ଓ ସମାଲୋଚକ ଯତୀନ୍ଦ୍ର ମୋହନ ମହାନ୍ତି, ତ୍ରିଲୋଚନ ମିଶ୍ର, ନନ୍ଦୀ ବାବୁ, ଗଣିତ ଅଧାପକ ଡଃ ଘନଶ୍ୟାମ ସାମଲ, ଅର୍ଥନୀତି ପ୍ରାଧାପକ କ୍ଷେତ୍ରମୋହନ ପଟ୍ଟନାୟକ, ଦର୍ଶନ ଅଧାପକ ଶ୍ରୀ ଭଟ୍ଟାଚାର୍ଯ୍ୟଙ୍କ ସହ ଘନିଷ୍ଠତା ହୋଇଥାଏ । ପ୍ରଫେସର ମାନଙ୍କର ସ୍ୱତନ୍ତ୍ର ବିଭାଗୀୟ କକ୍ଷ ଥିଲେ ମଧ କି ପ୍ରଫେସର୍, କି ଅଧାପକ ସମସ୍ତେ ପ୍ରାୟ ପ୍ରଫେସର୍ କମନ୍ ରୁମ୍‌ରେ ବସୁଥିଲେ । କମନ୍ ରୁମରେ ବିଭିନ୍ନ ସମୟରେ ଡଃ ଶ୍ରୀରାମ ଚନ୍ଦ୍ର ଦାଶ, ଡଃ ବଂଶୀଧର ସାମନ୍ତରାୟ ତାଙ୍କର ମଜା ଗଳ୍ପ ଦ୍ୱାରା ସମସ୍ତଙ୍କୁ ମୁଗ୍ଧ କରନ୍ତି । ଥରେ ଥରେ ଅଧକ୍ଷ ମିଶ୍ର କମନ୍ ରୁମକୁ ଆସିଯା'ନ୍ତି । ଖଦଡ଼ ଧୋତି ପଞ୍ଜାବୀ ପରିହିତ ବଂଗାଳୀ ଅଧାପକ ବିବେକାନନ୍ଦ ମୁଖର୍ଜୀ ଖାଇପିଇ ଇଜିଚେୟାର୍‌ରେ ଶୋଇ ବେଶ ଘୁଙ୍ଗୁଡ଼ି ମାରି ଚାଲୁଥାନ୍ତି । ଅଧକ୍ଷଙ୍କ ଉପସ୍ଥିତି ସଂପର୍କରେ ତାଙ୍କୁ ଚେତେଇବା ପାଇଁ କେହି କେଞ୍ଚିବା ଉଦ୍ୟମ କଲେ ହସି ହସି ଅଧକ୍ଷ କହନ୍ତି, ଥାଉ ଥାଉ, ତାଙ୍କୁ ଡିଷ୍ଟର୍ବ କରନା । କମନ ରୁମ୍‌ରେ ଗୋଟାଏ ଚପା ହସର ତରଙ୍ଗ ଖେଳିଯାଏ । ବିବେକାନନ୍ଦ ବାବୁ ବେଳେବେଳେ ଭୂତ ଗଳ୍ପ କହି ଆମକୁ ମୁଗ୍ଧ କରନ୍ତି ।

ରେଭେନ୍ସାରେ ଯୋଗ ଦେବାର ପ୍ରଥମ ଦିନରେ କନିକା ଲାଇବ୍ରେରୀକୁ ଗଲି । ସେଠାରେ ଥିବା ପୁରାତନ କର୍ମଚାରୀଙ୍କ ସହ ଆଳାପ ଆଲୋଚନାରେ ଲାଗିଗଲି । କଲେଜରୁ ବସାକୁ ଫେରେଁ । କଟକରେ ମୋର ପୁରାତନ ବନ୍ଧୁ ସହପାଠୀ ବିଚିଭାଇଙ୍କ (ବିଚିତ୍ରାନନ୍ଦ କର) ପ୍ରେସ୍ (ସାରସ୍ୱତ ପ୍ରେସ୍) କୁମ୍ଭାର ସାହି ପାଖରେ ଥିବାରୁ ସେଠାକୁ ଯାଇ ତାଙ୍କୁ ଭେଟେ । ସାତବର୍ଷ ପରେ ମୋତେ ଦେଖି ସେ ଖୁସି ହୋଇଯାଆନ୍ତି । ସେତେବେଳେ ମାତୃଭୂମିର ସଂପାଦକ ଥାଆନ୍ତି ଶ୍ରୀ ଗୌରଚନ୍ଦ୍ର ରାଉତ; ବିଚିଭାଇ ପ୍ରେସ ପରିଚାଳନା ଓ ସମ୍ବାଦ ସଂପାଦନା ଦାୟିତ୍ୱରେ । ସହକାର ସେତେବେଳେ ବନ୍ଦ ହୋଇଯାଇଥାଏ, କିନ୍ତୁ ମାତୃଭୂମିର ପୂଜା ସଂଖ୍ୟା ଗୋଟିଏ ପ୍ରକାଶ କରନ୍ତି । ମାତୃଭୂମିରେ କିଶୋର ଫଉଜ ଓ ଅନ୍ୟାନ୍ୟ ବିଭାଗରେ ପ୍ରବନ୍ଧ ପ୍ରକାଶର ଫିଚର୍ ରଖିଥାନ୍ତି । ବିଭିନ୍ନ ସମୟରେ ଲେଖା ଦେବାପାଇଁ ସେ ତାଗିଦ୍ କରନ୍ତି ।

ବିଚିଭାଇ ସେତେବେଳେ ଥା'ନ୍ତି ଉତ୍କଳ ସାହିତ୍ୟ ସମାଜର ସଂପାଦକ, ଅଧାପକ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଥାଆନ୍ତି ଯୁଗ୍ମ ସଂପାଦକ । ସେମାନଙ୍କ ପ୍ରଚେଷ୍ଟାରେ

ଉତ୍କଳ ସାହିତ୍ୟ ସମାଜରେ ବହୁ ସାହିତ୍ୟ ସଭା ଅନୁଷ୍ଠିତ ହେଉଥାଏ । ସେତେବେଳେ ସଭାପତି ଥାନ୍ତି କାଳିନ୍ଦୀଚରଣ ପାଣିଗ୍ରାହୀ । ବିଚିତ୍ରଭାଇଙ୍କ ଅନୁରୋଧ କ୍ରମେ ମୁଁ ଉତ୍କଳ ସାହିତ୍ୟ ସମାଜର ସଭ୍ୟ ହୁଏଁ ଏବଂ କାର୍ଯ୍ୟକାରୀ କମିଟିର ସଭ୍ୟ ନିର୍ବାଚିତ ହୁଏ । ଉତ୍କଳ ସାହିତ୍ୟ ସମାଜ ସହ ସଂପୃକ୍ତ ହେବାଦ୍ୱାରା ବହୁ ସାହିତ୍ୟିକ, ସାମ୍ବାଦିକ ଓ ସାଧାରଣ ଭଦ୍ର ବ୍ୟକ୍ତିଙ୍କ ସହ ସଂପର୍କ ଦୃଢ଼ ହୁଏ ।

ଓଡ଼ିଶାର ଐତିହ୍ୟପୂର୍ଣ୍ଣ ବିଖ୍ୟାତ ରେଭେନ୍ସା କଲେଜ୍‌ରେ ଅଧ୍ୟାପନା କମ୍ ଗୌରବ ଓ ଆନନ୍ଦର ବିଷୟ ନୁହେଁ । ୧୯୪୫ରେ ଛାତ୍ର ଭାବରେ ରେଭେନ୍ସାରେ ଯୋଗଦାନ କରି ୧୯୫୧ରେ ବିଦାୟ ନିଏଁ । ଓଡ଼ିଶାର ଆଧୁନିକ ଯୁଗର ଇତିହାସ ରେଭେନ୍ସାର ଇତିହାସ ସହ ଜଡ଼ିତ । ଓଡ଼ିଶା ଓ ଓଡ଼ିଶା ବାହାରର ବହୁ ଖ୍ୟାତନାମା କବି, ଐତିହାସିକ, ବୈଜ୍ଞାନିକ, ଶିକ୍ଷାବିତ୍, ରାଜନୀତିଜ୍ଞ ଏଇ ରେଭେନ୍ସା କଲେଜ୍‌ର ଦାନ । ଶିକ୍ଷାବିତ୍‌ମାନଙ୍କ ମଧ୍ୟରେ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ (ସାମନ୍ତ ଚନ୍ଦ୍ରଶେଖରଙ୍କୁ ଯେ ବିଶ୍ୱ ଦରବାରରେ ପରିଚିତ କରାଇଥିଲେ), ଶ୍ୟାମାଚରଣ ତ୍ରିପାଠୀ, ବୈଜ୍ଞାନିକ ଡଃ ପ୍ରାଣକୃଷ୍ଣ ପରିଜା, ପ୍ରଫେସର୍ ବିପିନ ବିହାରୀ ରାୟ, ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରଫେସର ରତ୍ନାକର ପତି, ଡଃ କରୁଣାକର କର, ପ୍ରଫେସର୍ ପ୍ରହ୍ଲାଦ ପ୍ରଧାନ, ଡଃ ସଦାଶିବ ମିଶ୍ର, ଡଃ କୁଞ୍ଜବିହାରୀ ତ୍ରିପାଠୀ, ଡଃ ଶ୍ରୀରାମଚନ୍ଦ୍ର ଦାଶ, ଡଃ କୁଞ୍ଜବିହାରୀ ଦାଶ, ଜୟକୃଷ୍ଣ ମିଶ୍ର, ପ୍ରଫେସର ଗୋଲୋକ ବିହାରୀ ଧଳ ଓ ଡଃ ନଟବର ସାମନ୍ତରାୟଙ୍କ ନାମ ପ୍ରସିଦ୍ଧ ।

ଜନସେବା ଓ ରାଜନୀତି କ୍ଷେତ୍ରରେ ରେଭେନ୍ସାର ଯେଉଁ ସନ୍ତାନମାନେ ପରବର୍ତ୍ତୀ ଜୀବନରେ ପ୍ରଖ୍ୟାତ ହୋଇଥିଲେ ସେମାନେ ହେଉଛନ୍ତି- ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, କୃପାସିନ୍ଧୁ ମିଶ୍ର, ଆଚାର୍ଯ୍ୟ ହରିହର, ଗୋଦାବରୀଶ ମିଶ୍ର, ବିଶ୍ୱନାଥ ଦାସ, ଡଃ ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ନୀଳମଣି ରାଉତରାୟ, ବୀରେନ ମିତ୍ର, ସଦାଶିବ ତ୍ରିପାଠୀ, ମନମୋହନ ମିଶ୍ର, ଜାନକୀବଲ୍ଲଭ ପଟ୍ଟନାୟକ ।

କବି ଓ ଲେଖକମାନଙ୍କ ମଧ୍ୟରେ ଡଃ କାଳିନ୍ଦୀଚରଣ ପାଣିଗ୍ରାହୀ, ଅନ୍ନଦା ଶଙ୍କର ରାୟ, ହରିହର ମହାପାତ୍ର, ବୈକୁଣ୍ଠ ନାଥ ପଟ୍ଟନାୟକ, ଶରତ ମୁଖର୍ଜୀ, ଡଃ ମାୟାଧର ମାନସିଂହ, ଡଃ ସଚ୍ଚିଦାନନ୍ଦ ରାଉତରାୟ, ରାଜକିଶୋର ରାୟ, ସୁରେନ୍ଦ୍ର ମହାନ୍ତି ଏବଂ ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ ଭାବରେ ଏଇ କଲେଜ୍‌ର ଛାତ୍ର ପରମାନନ୍ଦ ଆଚାର୍ଯ୍ୟ, ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡଃ ମନ୍ମଥନାଥ ଦାସ, ଡଃ ନବୀନ କୁମାର ସାହୁ ଖ୍ୟାତି ଅର୍ଜନ କରିଛନ୍ତି ।

ଏଇ ରେଭେନ୍ସାରେ ପୂର୍ବରୁ ଗୋରା ଅଧ୍ୟକ୍ଷ ଓ ବହୁ ବଙ୍ଗାଳୀ ଅଧ୍ୟାପକ ଥିଲେ । ସମୟ ଚକ ଘୂରିଗଲା । ଗୋରାଙ୍କ ସ୍ଥାନରେ ଓଡ଼ିଶାର କୃତବିଦ୍ୟ ଲୋକ ଅଧ୍ୟକ୍ଷ ହେଲେ ।

ଓଡ଼ିଆ ସନ୍ତାନମାନେ ଅଧ୍ୟାପକ ହୋଇ ଲେଖକ, ଗବେଷକ ଓ ଶିକ୍ଷାବିତ୍ ଭାବରେ ସୁନାମ ଅର୍ଜନ କରି ବହୁ ମେଧାବୀ ଛାତ୍ର ସୃଷ୍ଟିକରି ରେଭେନ୍ସାର ମୁଖ ଉଜ୍ଜ୍ୱଳ କରିଛନ୍ତି । ଶୁଣାଯାଏ: ରେଭେନ୍ସା କଲେଜ୍ ହେଉଛି କମିଶନର ଟି.ଇ. ରେଭେନ୍ସାଙ୍କର ନଅଙ୍କ ଦୁର୍ଭିକ୍ଷକାଳୀନ (୧୮୬୬) ପ୍ରକାଣ୍ଡ ଭୁଲ୍‌ରେ ଅନୁତାପ-ପ୍ରସୂତି । କେବଳ ସେତିକି ନୁହେଁ, ପ୍ରତ୍ନତତ୍ତ୍ୱ ଗବେଷକ ରାଜେନ୍ଦ୍ର ଲାଲ ମିତ୍ର, ଶିକ୍ଷକ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଓ ଆଉ କେତେକ ଓଡ଼ିଆ ଭାଷା ବିଦ୍ୱେଷୀ ଲୋକଙ୍କର ଚକ୍ରାନ୍ତ ଫଳରେ ଓଡ଼ିଶାର ସ୍କୁଲ୍‌ମାନଙ୍କରୁ ଓଡ଼ିଆ ଭାଷା ଉଠିଯିବାର ଯେତେବେଳେ ଓଡ଼ିଶା ସ୍ୱାର୍ଥବିରୋଧୀ ସରକାରୀ ନିର୍ଦ୍ଦେଶ ଆସିଯାଇଥିଲା, ତା'ର ମୂଳଚ୍ଛେଦ କରିଥିଲେ ବାଲେଶ୍ୱରର କଲେକ୍ଟର ସାର୍ ଜନ୍ ବୀମ୍‌ସ ଓ କମିଶନର ଟି.ଇ. ରେଭେନ୍ସା ।

ରେଭେନ୍ସା କଲେଜ୍ ଆର୍ଟସ୍ ବ୍ଲକ୍ କମନ୍ ରୁମ୍‌ରେ ବିଭିନ୍ନ ସ୍ଥାନରେ କମିଶନର ଟି.ଇ. ରେଭେନ୍ସା, ପୁରାତନ ସାହେବ ଅଧକ୍ଷମାନଙ୍କର ବଡ଼ ବଡ଼ ତୈଳଚିତ୍ର ଦେଖିବାକୁ ପାଇଥିଲି । ସେଥିମଧ୍ୟରୁ କେତେକ ବର୍ତ୍ତମାନର ଅଧକ୍ଷଙ୍କ ପ୍ରକୋଷ୍ଠରେ ଝୁଲାଯାଇଛି, କିନ୍ତୁ ବହୁ ମୂଲ୍ୟବାନ୍ ତୈଳଚିତ୍ର ଓ ଫଟୋ ଏ ମଧ୍ୟରେ ନଷ୍ଟ ହୋଇଗଲାଣି । କନିକା ଲାଇବ୍ରେରୀରେ ଦଣ୍ଡୀଠାରୁ ଆରମ୍ଭ କରି ବହୁମୂଲ୍ୟ ଭୂଷଣ ଭୂଷିତା ସୋନପୁର ମହାରାଣୀଙ୍କର ଗୋଟିଏ ବିରାଟ ତୈଳଚିତ୍ର ଦେଖିବାକୁ ମିଳେ । ସୋନପୁର ମହାରାଣୀଙ୍କର ଆର୍ଥିକ ଦାନରେ ରେଭେନ୍ସାରେ ଏମ୍.ଏ.ରେ ଇଂଲିଶ୍ ଚେୟାର୍ ଖୋଲିଥିଲା ।

ରେଭେନ୍ସା ପ୍ରତି ଓଡ଼ିଶାର ବହୁ ରାଜା ମହାରାଜାଙ୍କର ଦାନ ରହିଛି । କନିକା ଲାଇବ୍ରେରୀ କୋଠା କନିକା ରାଜାଙ୍କର ଦାନ; ପଦାର୍ଥ ବିଜ୍ଞାନ କୋଠା ମୟୂରଭଞ୍ଜ ମହାରାଜଙ୍କ ଦାନ । ଏଇ କଲେଜ୍‌ର ପଶ୍ଚିମ ଛାତ୍ରାବାସ ପାଖ ଦୁଇ ମହଲା ଉଇଂଗସ୍‌ରେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ୍ ଆରମ୍ଭ ହୋଇଥିଲା ପୁଣି ଏହାର ଆର୍ଟସ୍ ବ୍ଲକ୍ ସଂଲଗ୍ନ ପୂର୍ବ ଉଇଙ୍ଗସ୍‌ର ପ୍ରକାଣ୍ଡ ହଲରେ ଓଡ଼ିଶା ରାଜ୍ୟର ଆସେମ୍ବ୍ଲି ବସୁଥିଲା । ଏଇଠି କେତେ କନ୍‌ଭୋକେସନ୍‌ରେ ଛାତ୍ରମାନଙ୍କୁ ଡିଗ୍ରୀ ନେବାର ଦେଖିଛି । ଏଇ ହଲ୍‌ରେ ତତ୍‌କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ (ସେତେବେଳେ ପ୍ରଧାନମନ୍ତ୍ରୀ) ଡଃ ହରେକୃଷ୍ଣ ମହତାବ ଓଡ଼ିଶାର ଗଡ଼ଜାତ ରାଜାମାନଙ୍କୁ ଏକତ୍ରିତ କରି ଓଡ଼ିଶା ସହିତ ମିଶ୍ରଣ ସଂପର୍କରେ ସେମାନଙ୍କୁ ଆହ୍ୱାନ ଦେଇଥିଲେ । ସେତେବେଳେ ଭାରତର ଦେଶ ରକ୍ଷାମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓଡ଼ିଶାକୁ ଆସିଥିଲେ । ଏଇ ହଲ୍‌ରେ ନିଆଯାଇଥିବା ନିଷ୍ପତ୍ତିରେ ଓଡ଼ିଶାର ଭାଗ୍ୟ ବଦଳିଯାଇଛି; ବୃହତ୍ତର ଉତ୍କଳର ସ୍ୱପ୍ନ ବାସ୍ତବ ରୂପ ନେଇଛି । କେତେ ବାଦ ବିସମ୍ବାଦ ଓ ଯୁକ୍ତିତର୍କର ଝଡ଼ଝଞ୍ଜା ମଧ୍ୟରେ ଭୁବନେଶ୍ୱରରେ ଓଡ଼ିଶାର ରାଜଧାନୀ ନିର୍ମିତ ହୋଇଛି । ମହାନଦୀର ଜଳକୁ ନିୟନ୍ତ୍ରିତ କରି ବିଦ୍ୟୁତ୍ ଉତ୍ପାଦନ ଓ କୃଷିର ଉନ୍ନତି ପାଇଁ ହୀରାକୁଦର ବିଖ୍ୟାତ ଜଳଭଣ୍ଡାର ବିଶ୍ୱବିଖ୍ୟାତ ଇଞ୍ଜିନିୟର ସାର୍ ବିଶ୍ୱେଶ୍ୱରିୟାଙ୍କ ଅଧକ୍ଷତାରେ ନିର୍ମିତ ହେବାର ସ୍ଥିରୀକୃତ ହୋଇଛି ।

କଲେଜ୍‌ର ବିସ୍ତୃତ ପ୍ରାନ୍ତରରେ ଅତୀତରେ କେତେ ସଭାସମିତି, କନଫରେନ୍‌ସ (Oriental Conference, Indian Science Congress) ହୋଇଯାଇଛି । ଭାରତର

ଓ ଭାରତ ବାହାରର ବହୁ ପଣ୍ଡିତ (ରାହୁଳ ସଂସ୍କୃତାୟନ ପ୍ରଭୃତି) ବିଭିନ୍ନ ସମୟରେ ନିମନ୍ତ୍ରିତ ହୋଇ ରେଭେନ୍ସା ହଲ୍‌ରେ ବିଭିନ୍ନ ବିଷୟରେ ବହୁ ମୂଲ୍ୟବାନ୍ ବକ୍ତୃତା ଦେଇଯାଇଛନ୍ତି । କଲେଜ୍ ମଧ୍ୟରେ ଛାତ୍ର ଓ ଅଧ୍ୟାପକଙ୍କ ମଧ୍ୟରେ ନିବିଡ଼ ସଂପର୍କ, ବହୁ ସଭାସମିତିର ଆୟୋଜନ, ବର୍ଷସାରା ବକ୍ତୃତା ପ୍ରତିଯୋଗିତା, ଅଧ୍ୟାପକମାନଙ୍କ ଦ୍ୱାରା ବିଭିନ୍ନ ବିଷୟରେ ବକ୍ତୃତା ପ୍ରଦାନ ଯେପରି ଚାଲିଥିଲା ଆଜି ତାହା ବହୁ ପରିମାଣରେ ସ୍ତିମିତ ହୋଇଯାଇଛି ।

ଆମେ ଛାତ୍ର ଥିଲାବେଳେ ଅଧ୍ୟାପକମାନଙ୍କୁ ଦେଖିଲେ ଛାଏଁ ଛାଏଁ ମୁଣ୍ଡ ନଇଁ ଯାଉଥିଲା । ଅଧ୍ୟାପକମାନେ ଥିଲେ ଆଦର୍ଶ ଓ ଆଚରଣର, ଜ୍ଞାନ ଅଧ୍ୟୟନ ଓ ଅଧ୍ୟାପନାର ଗୋଟିଏ ଗୋଟିଏ ମୂର୍ତ୍ତିମନ୍ତ ବିଗ୍ରହ । ସେମାନଙ୍କର ନିକଟବର୍ତ୍ତୀ ହେଲାବେଳେ ମନରେ ଆମର ସଂଭ୍ରମ, ସଂକୋଚ ଓ ଭୟ ରହୁଥିଲା । ଅଧ୍ୟାପକମାନେ ପ୍ରସ୍ତୁତ ହୋଇ ଯେପରି ଶ୍ରେଣୀକକ୍ଷକୁ ଆସୁଥିଲେ, ଛାତ୍ରମାନେ ମଧ୍ୟ ଅଧ୍ୟୟନ ଓ ଜ୍ଞାନାର୍ଜନର ସ୍ପୃହା ନେଇ ଶ୍ରେଣୀରେ ଆଗ୍ରହର ସହ ଅଧ୍ୟାପନା ଶୁଣୁଥିଲେ । ବିଶୃଙ୍ଖଳା, ହୈଚୈ, ଛାତ୍ର ଅଶାନ୍ତି, ପରୀକ୍ଷାରେ କପି, ଉତ୍ତରଖାତା ମୂଲ୍ୟାୟନରେ ଦୁର୍ନୀତି ଓ ଅଯଥା ବିଳମ୍ବ ଏସବୁ ସ୍ୱପ୍ନର ବିଷୟ ଥିଲା ।

ଲିଜର ଘଣ୍ଟାରେ ଛାତ୍ରମାନେ ଅଯଥା ବାହାରେ ଏଠିସେଠି ବୁଲି ବାଜେ ଗପ ନ କରି ଲାଇବ୍ରେରୀରେ ବସି ବିଭିନ୍ନ ବହି, ପତ୍ରପତ୍ରିକା ପଢୁଥିଲେ । ବହୁ ଛାତ୍ରଛାତ୍ରୀ ରିଡିଂ ରୁମ୍ ଭିତରେ ବସି ପଢୁଥିଲେ ମଧ୍ୟ ଗୋଳମାଳ, ବିଶୃଙ୍ଖଳା କିଛି ନଥିଲା । ପ୍ରତ୍ୟେକ ଛାତ୍ର/ ଛାତ୍ରୀର ପଢ଼ି ନୋଟ୍ କରିବାପାଇଁ ମଧ୍ୟ ସ୍ୱତନ୍ତ୍ର ଡେସ୍କଥିଲା, ଯେଉଁ ଡେସ୍କର ତିନି ପାଖରେ ପଟା ଦିଆଯାଇଥିଲା ପ୍ରତ୍ୟେକ ଡେସ୍କଠାରୁ ସ୍ୱତନ୍ତ୍ରତା ରକ୍ଷା କରିବା ପାଇଁ ।

ଲାଇବ୍ରେରୀରେ ପୁସ୍ତକଗୁଡ଼ିକର ସଜ୍ଜୀକରଣ, ବହୁ ପୁରାତନ ପୁସ୍ତକ ପୋଥି, ରିଭ୍ୟୁ ରିପୋର୍ଟ ଆଦି ଦେଖିଲେ ଜ୍ଞାନାର୍ଜନର ସ୍ପୃହା ଛାଏଁ ଛାଏଁ ଜାତ ହୋଇଥାଏ । ପ୍ରକୃତ ଛାତ୍ର, ଗବେଷକ ଓ ଜ୍ଞାନପିପାସୁଙ୍କ ପକ୍ଷରେ କନିକା ଲାଇବ୍ରେରୀ ଗୋଟିଏ ତୀର୍ଥ ତୁଲ୍ୟ । ପତ୍ରିକା କକ୍ଷରେ ଦେଶ ବିଦେଶର ଅଜସ୍ର ଜ୍ଞାନବିଜ୍ଞାନମୂଳକ ପତ୍ରିକା ଦେଖିଲେ ଆଖି ଖୋସି ହୋଇଯାଏ । ଜ୍ଞାନର ବାତାୟନ ଖୋଲା ରହିଛି, କେବଳ ଆଗ୍ରହ, ଅଧ୍ୟବସାୟ ବଳରେ ନିଜର ମୁକ୍ତପ୍ରାଣରେ ସେହି ଜ୍ଞାନ-ରତ୍ନ ସଞ୍ଚୟ କରିବାର କଥା, ଭାବ ଓ ଚିନ୍ତାର ସୁରଭି ଆଘ୍ରାଣ କରିବାର କଥା । ଏ ପ୍ରକାର ଆଦର୍ଶ, ଶୃଙ୍ଖଳା, ଅଧ୍ୟୟନ ଓ ଅଧ୍ୟାପନାର ପରଂପରା ଭିତରେ ମୋର ଛାତ୍ରଜୀବନ ଅତିବାହିତ ହୋଇଥିଲା, ଫଳରେ ଅଧ୍ୟାପକ ହେବା ଥିଲା ଜୀବନରେ ଅଭିଳାଷ ।

**ବୃତ୍ତି ଓ ବ୍ରତ :**

ଭଗବଦ୍ ଆଶୀର୍ବାଦରୁ ଅଧ୍ୟାପନା ଜୀବନର ବୃତ୍ତି ହେଲେ ମଧ୍ୟ ତାହା କିପରି ବ୍ରତରେ ପରିଣତ ହେବ, ଏଇଥିଲା ମୋର ଅଧ୍ୟାପକ ଜୀବନର ଆଦର୍ଶ । ସେଥିପାଇଁ ବ୍ୟକ୍ତିଗତ ଲାଭାଲାଭ ପ୍ରତି ମୁଁ ବିଶେଷ ଧ୍ୟାନ ନ ଦେଇ ଅନେକ ସମୟରେ ଜ୍ଞାନାର୍ଜନର

ସ୍ପୃହା ନେଇ ସମୟ ଓ ଶକ୍ତିର ପ୍ରୟୋଗ କରିବାକୁ ଚେଷ୍ଟା କରିଛି । ଗ୍ରନ୍ଥରାଜି ମଧ୍ୟରେ ମୁଁ ଏକପ୍ରକାର ବିଶ୍ୱ ପରିକ୍ରମା କରି ଯେଉଁ କବି ଓ ମନୀଷୀଙ୍କର ଭାବ ଓ ଚିନ୍ତାରାଜ୍ୟରେ ପ୍ରବେଶ କରି ରତ୍ନ-ସଞ୍ଚୟରେ ବ୍ୟାକୁଳ, ପାଗଳ ହୋଇପଡ଼ିଛି, ସେଇ କବି ଓ ମନୀଷୀମାନେ ମୋର ପରମ ନମସ୍ୟ । ରକ୍ତମାଂସର ଶରୀରରେ ସେମାନଙ୍କୁ ନ ଦେଖିଲେ ମଧ୍ୟ ସେମାନଙ୍କର ସୂକ୍ଷ୍ମଭାବ ଓ ଚିନ୍ତାର ବିଭୂତି ମସ୍ତକରେ ବୋଳି ମୁଁ ନିଜକୁ କମ୍ କୃତକୃତ୍ୟ ମନେକରେ ନାହିଁ ।

ମୋର ଜୀବନରେ ବିଭିନ୍ନ ସମୟରେ ବହୁ ପ୍ରତିକୂଳ ପରିସ୍ଥିତି ଆସିଛି, ବହୁ ତଥାକଥିତ ଶିକ୍ଷିତ ଓ ଅଶିକ୍ଷିତ ବ୍ୟକ୍ତି, ତଥାକଥିତ ଆତ୍ମୀୟଙ୍କର ଛଳନା ଓ ପ୍ରତାରଣାରେ ଅନ୍ତର ମୋର କ୍ଷତବିକ୍ଷତ ହୋଇଛି । ମଣିଷର ଏ ମୂର୍ଖତା ଓ ମୂଢ଼ତାରେ ମୁଁ ବିସ୍ମିତ ହୋଇ ସେମାନଙ୍କର ଅପକର୍ମଜନିତ ଅପରାଧରୁ ମୁକ୍ତି ପାଇଁ ମୁଁ ଭଗବାନଙ୍କ ନିକଟରେ ବହୁବାର ପ୍ରାର୍ଥନା କରିଛି । ଅଗଣିତ ତଥାକଥିତ ଶିକ୍ଷିତ ମଣିଷଙ୍କଠାରେ ଏ ଦ୍ୱୈତବ୍ୟକ୍ତିତ୍ୱ (Dual personality) ଲକ୍ଷ୍ୟକଲେ ମୁଁ ସେମାନଙ୍କୁ ପଶୁଠାରୁ ଆହୁରି ହୀନ ମନେ କରେଁ । ଏମାନେ ନିଜର ସ୍ୱାର୍ଥପାଇଁ କେତେବେଳେ ଚରଣ ଧରନ୍ତି, କେତେବେଳେ ଚୁଟି ଧରନ୍ତି ତା'ର ଠିକ୍ ଠିକଣା ନାହିଁ । ଏ ପ୍ରକାର ନର-ରାକ୍ଷସଙ୍କଠାରୁ ମୁଁ ନିଜକୁ ଦୂରେଇ ନେଇ କେବଳ ସଦ୍‌ଗ୍ରନ୍ଥ ଅଧ୍ୟୟନ, ଚିନ୍ତା ଓ ଆଳାପରେ ସମୟ ଅତିକ୍ରାନ୍ତ କରିବାକୁ ଶ୍ରେୟସ୍କର ମନେକରେଁ । ସେଥିପାଇଁ ମୋର ତଥାକଥିତ ବନ୍ଧୁ ସଂଖ୍ୟା କମ୍ । ଲୋକେ ନିଜର ସ୍ୱାର୍ଥପାଇଁ ନିଜର ବିବେକ ଓ ମାନଇଜ୍ଜତକୁ ବଳିଦେଇ ଅନ୍ୟର ପଦଲେହନ କରିବାକୁ କୁଣ୍ଠାପ୍ରକାଶ କରନ୍ତି ନାହିଁ । ଅର୍ଥ, ସୁରାଠାରୁ ଆରମ୍ଭ କରି ଯେତେ ପ୍ରକାର ଅଧମପନ୍ଥା, କେଉଁଟିକୁ ସେମାନେ ବାଦ ଦିଅନ୍ତି ନାହିଁ; ସେଥିପାଇଁ ଅଯୋଗ୍ୟ ମଣିଷର ସେବା ଓ ପୂଜାରେ ଯେତେ ଶକ୍ତି, ସମୟ ଓ ଅର୍ଥର ଅପଚୟ ହୁଏ, ତା'ର ସୀମା ନାହିଁ । କବିବର ରାଧାନାଥଙ୍କ ଭାଷାରେ-

କରୁଛନ୍ତି ଲୋକେ ଉପାଧି ଆଶାରେ
ମନୁଷ୍ୟର ପୂଜା ଷୋଡ଼ଶୋପଚାରେ,
ମନୁଷ୍ୟ ତୋଷିବା ପାଇଁ ସହି କଷ୍ଟ
ମନୁଷ୍ୟ ପଣରୁ ହେଉଛନ୍ତି ଭ୍ରଷ୍ଟ
ଭ୍ରମନ୍ତି ମନୁଷ୍ୟ ପାଦ ଅନୁସରି
ସେହି ମନୁଷ୍ୟର ପୋଷା ଶ୍ୱାନ ପରି । (ଦରବାର)

କୌଣସି ପ୍ରକାରେ କାମ ହାସଲ କରିନେବାର ମନୋବୃତ୍ତି ବା କୌଶଳ ନଥିବାରୁ ବ୍ୟାବହାରିକ ଦୁନିଆରେ ହୁଏତ ମୁଁ ଜଣେ ଅପାରଗ ବ୍ୟକ୍ତି; କିନ୍ତୁ ଅଯୋଗ୍ୟ ମଣିଷ ପଛରେ ଗୋଡ଼ାଇ ସମୟ ଓ ଶକ୍ତିର ଅପଚୟକୁ ମୁଁ ବ୍ୟକ୍ତିତ୍ୱର ଚରମ ଅପମାନ ମନେ କରେଁ । ଏଇ ମନୋଭାବ, ଜୀବନ ଓ ଜଗତ ପ୍ରତି ଏଇ ଦୃଷ୍ଟିଭଂଗୀ ହେତୁ ମୁଁ ତଥାକଥିତ ମଣିଷ ସମାଜ ଅପେକ୍ଷା ପ୍ରକୃତିର ବିବିକ୍ତ କୋଳ, ନିର୍ଜନ ପ୍ରାନ୍ତର, ପୁସ୍ତକାଗାରର ଗ୍ରନ୍ଥସ୍ଫୀତ ପ୍ରକୋଷ୍ଠକୁ ମୁଁ ଶ୍ରେୟସ୍କର ମନେ କରେଁ ।

ମୋର ଅଧ୍ୟାପନା ସମୟ [illegible] ଅତିବାହିତ ହୁଏ ଲାଇବ୍ରେରୀ ଭିତରେ । ପାଖରେ ଥାଏ ନୋଟ୍ ବହି । କେବଳ ଯେ ଓଡ଼ିଆ ସାହିତ୍ୟ ସଂପର୍କିତ ଗ୍ରନ୍ଥ ଅଧ୍ୟୟନ କରେଁ, ତା' ନୁହେଁ; ବଙ୍ଗଳା, ହିନ୍ଦୀ, ସଂସ୍କୃତ ଓ ଇଂରାଜୀ ସାହିତ୍ୟ ସଂପର୍କରେ ନାନାଗ୍ରନ୍ଥ ଅଧ୍ୟୟନ ସହ ଜୀବନୀ ଗ୍ରନ୍ଥ, ଇତିହାସ, ସମାଜତତ୍ତ୍ୱ, ସଂସ୍କୃତ, ଦର୍ଶନ ଓ ବିଜ୍ଞାନ ସଂପର୍କିତ ବହୁ ଗ୍ରନ୍ଥ ଅଧ୍ୟୟନ କରି ଜ୍ଞାନର ଦିଗ୍‌ବଳୟ ପ୍ରସାରିତ କରିବାକୁ ଚେଷ୍ଟା କରେଁ । ଜଣେ ଅଧ୍ୟାପକ ଓ ଲେଖକ ପକ୍ଷରେ ଜ୍ଞାନର ବିଭିନ୍ନ ଶାଖାର ବହୁଗ୍ରନ୍ଥ ଅଧ୍ୟୟନ ଓ ମନନ କରିବା ଯେ ଏକାନ୍ତ ଅପରିହାର୍ଯ୍ୟ, ଏହା ସାଂପ୍ରତିକ କାଳର ପ୍ରତ୍ୟେକ ଚିନ୍ତାଶୀଳ ଲେଖକ, ଗବେଷକ ତଥା ଅଧ୍ୟାପକ ଉପଲବ୍ଧି କରିପାରୁଛନ୍ତି । ଇତିହାସର ଅଧ୍ୟାପକଙ୍କୁ ଆଜି ଇତିହାସ ସହ ସଂସ୍କୃତି, ସମାଜତତ୍ତ୍ୱ, ନୃତତ୍ତ୍ୱ, ଭୂଗୋଳ, ସାହିତ୍ୟ ଓ ଦର୍ଶନ ଅଧ୍ୟୟନ କରିବାକୁ ହେଉଛି; ସାହିତ୍ୟିକଙ୍କୁ ସାହିତ୍ୟତତ୍ତ୍ୱ ସହ ସମାଜତତ୍ତ୍ୱ, ନୃତତ୍ତ୍ୱ, ଇତିହାସ, ମନସ୍ତତ୍ତ୍ୱ, ଭୂଗୋଳ, ଦର୍ଶନ ଓ ବିଜ୍ଞାନର ବିଭିନ୍ନ ଶାଖା ସଂପର୍କରେ ଯେ ବିଶେଷ ଜ୍ଞାନ ଅର୍ଜନ କରିବାକୁ ହେବ, ଏଥିରେ ସନ୍ଦେହ ନାହିଁ । ସଫଳ ଅଧ୍ୟାପନା ଓ ଉଚ୍ଚକୋଟୀର ରଚନା ପାଇଁ ଯେ ଗଭୀର ତଥା ବ୍ୟାପକ ଅଧ୍ୟୟନ ଓ ମନନ ଏକାନ୍ତ ଆବଶ୍ୟକ ପ୍ରତ୍ୟେକ ଲେଖକ ତଥା ଅଧ୍ୟାପକ ଏହା ଉପଲବ୍ଧି କରୁଥିବେ ।

ଏଇ ଆଭିମୁଖ୍ୟ ନେଇ ମୁଁ ମୋର ଅଧ୍ୟାପନା ଓ ରଚନାରେ ଅଗ୍ରସର ହୋଇଥିବାରୁ ମୁଁ ବହୁ ଗ୍ରନ୍ଥ ଅଧ୍ୟୟନ କରି ବିଶେଷ ଆନନ୍ଦ ପାଇଛି, ଅର୍ଜିତ ଜ୍ଞାନର ମଧ୍ୟ ଉପଯୋଗ କରିଛି; କିନ୍ତୁ ଅର୍ଥ ପାଇଁ ଜ୍ଞାନର ଅପବ୍ୟବହାର କରିନାହିଁ; ଅନ୍ୟମାନଙ୍କ ପରି ସାହିତ୍ୟ ନାମରେ ବ୍ୟବସାୟ କରିବାର ଦୁଷ୍ପ୍ରବୃତ୍ତି ମୋର କେବେ ହୋଇନାହିଁ ।

ପ୍ରାଣରେ ଆଦର୍ଶ ଓ ଉନ୍ମାଦନା ନେଇ ଅନାସକ୍ତ ଚିତ୍ତରେ ଶେଷରେ ଅଧ୍ୟାପନା ଦ୍ୱାରା ହୃଦୟରେ ଯେଉଁ ଆନନ୍ଦ ଅନୁଭବ କରିଛି, ତାହା ଅନିର୍ବଚନୀୟ । ଚାକିରି କରିଛି, ଅପ୍ରସ୍ତୁତ ଭାବରେ ପିଲାଙ୍କୁ ଏଣୁ ତେଣୁ କହି କାମ ଚଳେଇ ନେବି : ଏଥିରେ ପ୍ରକୃତ ଅଧ୍ୟାପନା ହୁଏନା । ପିଲା ଅସନ୍ତୁଷ୍ଟ ହୁଅନ୍ତି । ଅଧ୍ୟାପକଙ୍କ ସଂପର୍କରେ ପିଲାଙ୍କର ଲଘୁଧାରଣା ହୁଏ; ଶ୍ରେଣୀରେ ଗୁଞ୍ଜରଣ, ଯୋତାଘଷା; ଶେଷରେ ପୁଞ୍ଜୀଭୂତ ଅସନ୍ତୋଷର ପ୍ରତୀକ ପ୍ରତିବାଦ ଶ୍ରେଣୀରେ ଓ ବିଭାଗୀୟ ମୁଖ୍ୟଙ୍କଠାରେ । ଅଧ୍ୟାପକ ଜୀବନର ସାର୍ଥକତା ନିଜର ଗଭୀର ଅଧ୍ୟୟନ ତଥା ପ୍ରସ୍ତୁତି ପିଣ୍ଡିତ ଅଧ୍ୟାପନାରେ ଏବଂ ପିଲାଙ୍କର ସନ୍ତୋଷ ଓ ପ୍ରଶଂସାରେ । ପିଲାମାନେ ହେଉଛନ୍ତି ଅଧ୍ୟାପକଙ୍କର ସର୍ବଶ୍ରେଷ୍ଠ ପରୀକ୍ଷକ । ଜଣେ ସଫଳ ଅଧ୍ୟାପକ ହେବାକୁ ହେଲେ ସାଧନା ଦରକାର । ପଠିତ ବସ୍ତୁରେ ଗଭୀର ଜ୍ଞାନ ଅର୍ଜନ କରିବାକୁ ହେବ । ହୃଦୟରେ ଆବେଗ ଓ ଅନୁପ୍ରେରଣା ନେଇ ଅନାସକ୍ତ ଚିତ୍ତରେ ଛାତ୍ରଙ୍କ ମଧ୍ୟରେ ଜ୍ଞାନ ବିତରଣ କରିବାକୁ ହେବ । ସେଥିରେ ପ୍ରାଣରେ ସନ୍ତୋଷ ଆସେ; ଛାତ୍ରଙ୍କ ହୃଦୟର ଆନନ୍ଦ ତାଙ୍କୁ ଆହୁରି ଅଧ୍ୟୟନ ଓ ମନନ କରିବାକୁ ପ୍ରେରଣା ଦିଏ । ସେ ପ୍ରକାର ଅଧ୍ୟାପକ

ଛାତ୍ରଙ୍କ ଦୃଷ୍ଟିରେ ଦିଗ୍‌ଦର୍ଶକ ଧ୍ରୁବତାରା ହୋଇ ରହିଯାନ୍ତି; ଅଧ୍ୟାପକ ଜୀବନସାରା ଛାତ୍ରମାନଙ୍କ ହୃଦୟରେ ଅଧିଷ୍ଠିତ ହେବା ସଂଗେ ସଂଗେ ସମାଜରେ ଜଣେ ପ୍ରତିଷ୍ଠିତ ଓ ସମ୍ମାନିତ ବ୍ୟକ୍ତି ଭାବରେ ପୂଜାଯାଏ ।

ଅଧ୍ୟାପକ ଜୀବନର ଏଇ ଆଦର୍ଶ ଓ ଅଭ୍ୟାସ ହେତୁ ମୁଁ ଅଧ୍ୟାପନାରେ ଆନନ୍ଦ ଲାଭ କରିବା ସଂଗେ ସଂଗେ ଛାତ୍ରଛାତ୍ରୀଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଛି । ମୋର ଆର୍ଥିକ ଅଭାବ ଓ ଜୀବନରେ ବହୁ ବୈଷୟିକ ବ୍ୟର୍ଥତା, ତଥାକଥିତ ବନ୍ଧୁ ଓ ଆତ୍ମୀୟମାନଙ୍କର ଛଳନା ତଥା ପ୍ରତାରଣା ସତ୍ତ୍ୱେ ଅନାସକ୍ତ ଅଧ୍ୟୟନ, ମନନ, ଅଧ୍ୟାପନା ପୁଣି ରଚନା ମୋ ମନରେ ଭାରସାମ୍ୟ ରକ୍ଷା କରିଛି ।

ଛାତ୍ର ଅନ୍ୟ ସହକର୍ମୀ ଅଧ୍ୟାପକଙ୍କର ଦୃଷ୍ଟି ଆକର୍ଷଣ କରିବା ସଂଗେ ସଂଗେ କଟକର ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ଏବଂ ଶିକ୍ଷାୟତନମାନଙ୍କରେ ସାହିତ୍ୟ ଓ ସଂସ୍କୃତି ସଂପର୍କରେ ଭାଷଣ ଦେବାପାଇଁ ନିମନ୍ତ୍ରିତ ହୁଏ । ରେଭେନ୍ସା କଲେଜ୍‌ରେ ଅନୁଷ୍ଠିତ ବିଭିନ୍ନ ସଭା ଓ ଉତ୍ସବମାନଙ୍କରେ ବହୁବାର ଭାଷଣ ଦେଇଛି । ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ଆୟୋଜିତ ସାହିତ୍ୟ ସଭାମାନଙ୍କରେ (ଅଭିମନ୍ୟୁ ଜୟନ୍ତୀ, ଭଞ୍ଜ ଜୟନ୍ତୀ, କବିସୂର୍ଯ୍ୟ ଜୟନ୍ତୀ, ମେହେର ଜୟନ୍ତୀ, ସାରଳା ସ୍ମୃତି ଇତ୍ୟାଦି) ମଧ୍ୟ ଭାଷଣ ଦେବାର ଅବସର ମିଳିଛି । ପ୍ରଜାତନ୍ତ୍ର ଅନୁଷ୍ଠାନର ବିଷୁବ ମିଳନକୁ ନିମନ୍ତ୍ରିତ ହୋଇ ଓଡ଼ିଆ ଭାଷା ସମସ୍ୟା ସଂପର୍କରେ ଆଲୋଚନା କରି ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ବହୁ ପିଣ୍ଡିତ ବ୍ୟକ୍ତିଙ୍କର ସଶ୍ରଦ୍ଧ ଆଶୀର୍ବାଦ ଲାଭ କରିଛି । ଗଡ଼ ଗଡ଼େଶ୍ୱର ମହାଦେବଙ୍କ ପୀଠରେ ଅଧ୍ୟାପକ ହୃଦାନନ୍ଦ ରାୟ, ଅଧ୍ୟାପକ ଡଃ କୃଷ୍ଣପ୍ରସାଦ ମିଶ୍ର, ଦୁଃଖୀଶ୍ୟାମ ପଟ୍ଟନାୟକ ପ୍ରଭୃତି ବହୁ ସାହିତ୍ୟିକ ବନ୍ଧୁ ମିଳିତ ହୋଇ ନାନା ଆଲୋଚନା ଦ୍ୱାରା ମହାନଦୀ ତୀରସ୍ଥ ପୁରାଣ ବଟବୃକ୍ଷ ମୂଳେ ରବିବାସରର ମାଧୁର୍ଯ୍ୟ ଆସ୍ୱାଦନ କରିଛୁଁ । ମନେ ଅଛି : ଟେପ୍ ରେକର୍ଡ଼ର ନିଆଯାଇଥାଏ । ଆମର ଆଲୋଚନା ଓ ଆବୃତ୍ତ ସଂସ୍କୃତ ଶ୍ଳୋକଗୁଡ଼ିକ ରେକଡ଼ିଂ କରାଯାଏ । ନିଜର ଆଲୋଚନା, ସଂସ୍କୃତ ଶ୍ଳୋକ ଆବୃତ୍ତି, ତା' ସହିତ ତରୁ ଶାଖାରେ ଉପବିଷ୍ଟ ପକ୍ଷୀମାନଙ୍କର କାକଳି ଶୁଣି କମ ଆନନ୍ଦ ଉପଭୋଗ କରିନାହୁଁ । ବନ୍ଧୁ ହୃଦାନନ୍ଦ ବାବୁ ଦାର୍ଶନିକ, କାଶୀ ପଣ୍ଡିତ; ବଚନରେ ତାଙ୍କର ବାଟ୍ଟୁଳି ବାଜେ ନାହିଁ । ଚମତ୍କାର ଯୌକ୍ତିକତାପୂର୍ଣ୍ଣ ବଚନିକା ଓ ଆଳାପ ପ୍ରାଣରେ ଅମୃତ ବର୍ଷା କରିଦିଏ । ଏଥିରେ ପୁଣି ଦାର୍ଶନିକ ସୁଲଭ ଅଯଥା ଗାମ୍ଭୀର୍ଯ୍ୟ ବା ପାଣ୍ଡିତ୍ୟର ଅଭିମାନ ନାହିଁ । ଅନର୍ଗଳ ବଚନିକା ପରେ ତାଙ୍କର ଶୁଭ୍ର ଦଶନୋଜ୍ଜ୍ୱଳ ହାସ ପ୍ରାଣରେ ଅନିର୍ବଚନୀୟ ପୁଲକ ସଞ୍ଚାର କରେ । ସେତେବେଳେ ସେ ଯାହାଥିଲେ ବର୍ତ୍ତମାନ ବି ସେଇଆ । କଲେଜ୍ ବାରଣ୍ଡା ଓ ପଥଘାଟରେ ଦେଖା ହୋଇଗଲେ ସେଇ ବିପୁଳ ବାହୁ ବିସ୍ତାର, ପ୍ରସନ୍ନୋଜ୍ଜ୍ୱଳ ମୁଖ ନିଃସୃତ ବଚନ ମାଧୁରୀ ।

୧୯୬୧ରେ ଭୁବନେଶ୍ୱରରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ନିଖିଳ ଉତ୍କଳ ଲେଖକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ସାହିତ୍ୟିକ

ନିମନ୍ତ୍ରିତ ହୋଇ ଆସିଥିଲେ । ଡକ୍ଟର ହରେକୃଷ୍ଣ ମହତାବ ଥାଆନ୍ତି ସେତେବେଳେ ସାହିତ୍ୟ ଏକାଡ଼େମୀର ସଭାପତି । ରାଜ୍ୟ ସଂଗ୍ରହାଳୟ ପରିସରରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ତିନି ଦିନ ଧରି । କଟକରୁ ପ୍ରତ୍ୟହ ଗୋଟିଏ ବସ୍ କଟକର ଲେଖକ ଓ ସାହିତ୍ୟିକମାନଙ୍କୁ ଧରି ଭୁବନେଶ୍ୱର ଯାଉଥିଲା । ଆମେ ସେତେବେଳେ କଟକର ଗୌରୀଶଙ୍କର ପାର୍କଠାରୁ ବସ୍‌ରେ ଚଢୁଥିଲୁଁ । ଜ୍ଞାନମଣ୍ଡଳର ସଂକଳକ ବିନୋଦ କାନୁନ୍‌ଗୋ ମଧ୍ୟ ଆମର ସହଯାତ୍ରୀ ହେଉଥିଲେ । ଏବଂ ବାଟରେ ନାନା ମଜାକଥା କହି ଯାତ୍ରୀଙ୍କୁ ଉତ୍ସବମୁଖର କରୁଥିଲେ । ଏ ସମ୍ମିଳନୀରେ ଓଡ଼ିଶାର ବର୍ଷୀୟାନ୍ ସାହିତ୍ୟିକମାନଙ୍କୁ (ଡଃ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତି) ସମ୍ମାନିତ କରାଯାଇଥିଲା ଏବଂ ପ୍ରତ୍ୟହ ଆଲୋଚନା ସହ ଶେଷରେ କବିତା ପାଠୋତ୍ସବ ଅନୁଷ୍ଠିତ ହେଉଥିଲା । ମୁଁ ଭଦ୍ରକରେ ରଚିତ ଗୋଟିଏ କବିତା ଆବୃତ୍ତି କରିଥିଲି; କବିତାଟିର ଶୀର୍ଷକ ଥିଲା : ''ବ୍ୟଥାର ପୂରବୀ ବାଜୁଗୋ ତୁମରି ବୀଣାର ତାରେ'' । ଆଣବିକ ବିସ୍ଫୋରଣକୁ ନେଇ ଲେଖାଯାଇଥିବା କବିତାଟି ଭାବ ଓ ଛନ୍ଦ ଦୃଷ୍ଟିରୁ ପ୍ରାଣସ୍ପର୍ଶୀ ହୋଇଥିବାରୁ କେତେକ ତା'ର ପ୍ରଶଂସା କରିଥିଲେ । ଜ୍ଞାନମଣ୍ଡଳର ସଂକଳକ ଖୁସିହୋଇ କବିତାଟି ମୋ ହାତରୁ ନେଇଯାଇଥିଲେ । ସାହିତ୍ୟିକମାନଙ୍କୁ ଖଣ୍ଡଗିରି ଓ ଉଦୟଗିରି ବୁଲାଇ ନେବାର ବ୍ୟବସ୍ଥା ହୋଇଥିଲା । ସମ୍ମିଳନୀର ବିଭିନ୍ନ ଅଧିବେଶନ ସାରି କଟକକୁ ପ୍ରତିଦିନ ଫେରି ଆସୁଥିଲୁଁ । ଏହି ସମ୍ମିଳନୀରେ ମୁଁ ଡଃ ମହତାବଙ୍କୁ ମୋର ପ୍ରଥମ ପ୍ରକାଶିତ ପୁସ୍ତକ 'ଅମୃତପୁତ୍ର' ଉପହାର ଦେଇଥିଲି । ସେ ଆଗ୍ରହରେ ପୁସ୍ତକଟି ଗ୍ରହଣ କରି ଆଶୀର୍ବାଦ କରିଥିଲେ । ସେ ବୋଧହୁଏ ପୁସ୍ତକଟି ପାଠକରି ମୋର ବିଶଦ ପରିଚୟ କେଉଁଠୁ ସଂଗ୍ରହ କରିଥିଲେ । ଏହାପରେ ଯେତେବେଳେ ଯେଉଁଠି ତାଙ୍କ ସହ ଦେଖାହୋଇଛି ଅତି ଆପଣାର ପରି ଲେଖା, ଗାଁଗଣ୍ଡା ଖବର ଓ ଅନ୍ୟାନ୍ୟ ବିଷୟ ଆଗ୍ରହର ସହ ପଚାରି ବୁଝିଛନ୍ତି । ଯେତେବେଳେ ତାଙ୍କୁ ପତ୍ର ଦେଇଛି କର୍ମଚଞ୍ଚଳ ମଧ୍ୟରେ ସେ ତା'ର ଉତ୍ତର ଦେବାରେ ଅବହେଳା କରିନାହାନ୍ତି । ଥରେ ମୋର ଭାଇ ଡକ୍ଟର ଗୋପବନ୍ଧୁ ପ୍ରତି ସ୍ୱାସ୍ଥ୍ୟ ବିଭାଗ ଅବହେଳା କରି କମ ବର୍ଷ ଗ୍ରାମ୍ୟ ଚିକିତ୍ସା ଅଭିଜ୍ଞତା ଥିବା ଡାକ୍ତରଙ୍କୁ ଏମ୍.ଏସ୍. କରିବାପାଇଁ ସୁଯୋଗ ନ ଦେବାରୁ ମୁଁ ଫକୀର ମୋହନ କଲେଜ୍‌ରେ ଥିଲାବେଳେ ଡଃ ମହତାବଙ୍କୁ ଏ ଅନ୍ୟାୟ ସଂପର୍କରେ ପତ୍ର ଦେଇଥିଲି । ସେ ବର୍ତ୍ତମାନର ଅଧିକାରୀମାନଙ୍କର ମନମୁଖୀ କାରବାର, ଅନ୍ୟାୟ ବିଚାର ସଂପର୍କରେ ପତ୍ରରେ ସୂଚିତ କରିବା ସଂଗେ ସଂଗେ ତା'ର ଆଶୁ ପ୍ରତିକାର କରୁଛନ୍ତି ବୋଲି ପତ୍ରରେ ଲେଖିଥିଲେ । ତାଙ୍କର ହସ୍ତକ୍ଷେପ ଫଳରେ ଗୋପ ଏମ୍.ଏସ୍. କରିବାକୁ ଅନୁମତି ପାଇଲା । ଆଜିକାଲି ଯୁଗରେ ନେତୃସ୍ଥାନୀୟ ବ୍ୟକ୍ତିଙ୍କଠାରୁ ସାହାଯ୍ୟ ପାଇବା ତ ଦୂରର କଥା, ବହୁବାର ଦୌଡ଼ି ତାଙ୍କର ସାକ୍ଷାତ୍ ପାଇବା ମଧ୍ୟ ସମ୍ଭବପର ହୁଏ ନାହିଁ, ଯେଉଁଠି ଦେବତାଙ୍କର ଦର୍ଶନ ଅତି ସହଜ । ଅନ୍ୟାୟ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଦୂରର କଥା, ପତ୍ର ଦେଲେ ବା ଆବେଦନ ପତ୍ର ଦାଖଲ କଲେ ତା'ର କିଛି ଉତ୍ତର ମିଳେନା ।

କଟକରେ ବିଭିନ୍ନ ସମୟରେ ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ସଭା ସମିତିମାନଙ୍କରେ ଭାଷଣ ଦେବା ଫଳରେ ବହୁ ସାହିତ୍ୟିକ ଓ ସାଧାରଣ ବ୍ୟକ୍ତିଙ୍କ ସହ ପରିଚିତ ହୋଇଯାଇଥିଲି । ରାମଚନ୍ଦ୍ର ଭବନରେ ଅଭିମନ୍ୟୁ ଜୟନ୍ତୀ ଉତ୍ସବରେ ଭାଷଣ ଦେଇ ମୁଁ ମଧୁବାବୁ (ମଧୁସୂଦନ ଚୌଧୁରୀ), ବଂଶୀଧର ମିଶ୍ର, ସହଦେବ ସାହୁ, ଡଃ ସରସ୍ୱତୀ ଦେବୀ ପ୍ରଭୃତି ବହୁ ନୂତନ ସମଧର୍ମା ବନ୍ଧୁ ଲାଭ କରିଥିଲି, ଯେଉଁମାନଙ୍କ ସହ ସଂପର୍କ ଘନିଷ୍ଠ ହୋଇଥିଲା । ସେମାନଙ୍କର ନିମନ୍ତ୍ରଣ ଓ ଆୟୋଜନ କ୍ରମେ ବିଭିନ୍ନ ସାହିତ୍ୟ ଓ ସାଂସ୍କୃତିକ ସଭାମାନଙ୍କରେ ଭାଷଣ ଦେବାର ସୁଯୋଗ ପାଇଛି । ଚୌଧୁରୀ ମଧୁସୂଦନ ମହାପାତ୍ର ପୁରୁଣା ଅରୁଣୋଦୟ ପ୍ରେସ ମ୍ୟାନେଜର୍ ଥିଲାବେଳେ କିପରି ସେଠାକୁ ଓଡ଼ିଶାର କେତେକ ରାଜା, ମହାରାଜା, ଖ୍ୟାତନାମା କବି, ସାହିତ୍ୟିକ, ଗାୟକ ଓ ପଣ୍ଡିତ ଆସୁଥିଲେ, ବେଳେବେଳେ ପ୍ରେସ୍ କୋଠାରେ ସଂଗୀତ ଆସର ଓ ଆଲୋଚନା ହେଉଥିଲା ମଧୁବାବୁ ଓ ସରସ୍ୱତୀ ଦେବୀ ବର୍ଣ୍ଣନା କରନ୍ତି । ମହୁରୀ ରାଜା କୃପାସିନ୍ଧୁ ନରେନ୍ଦ୍ର (ଗୋପାଳକୃଷ୍ଣ ପଦ୍ୟାବଳୀର ସଂପାଦକ), ପଣ୍ଡିତ ଦଶରଥ ଶତପଥୀଙ୍କ ଆଗମନ ଓ ଶାସ୍ତ୍ରାର୍ଥ ଆଲୋଚନା ବଡ଼ ଆଗ୍ରହର ସହ ବର୍ଣ୍ଣନା କରନ୍ତି । ମଧୁବାବୁ କହନ୍ତି : ଅରୁଣୋଦୟ ପ୍ରେସ୍‌ରୁ ବ୍ରହ୍ମଦେଶରେ ଥିବା ଓଡ଼ିଆଙ୍କ ପାଇଁ ଓଡ଼ିଆ ପୁରାଣ, ଗୀତ, ଭଜନ ପାର୍ଶଲରେ ପଠାଇବା ସଂଗେ ସଂଗେ ବଟୁଆ, ଗୁଆକାତି ଓ ଆକବର ଖାଁ ଗୁଡ଼ାଖୁ ମଧ ପଠାଯାଉଥିଲା ।

ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟକାରୀ କମିଟିର ସଭ୍ୟ ହେବା ଫଳରେ ବିଭିନ୍ନ ଅଧିବେଶନରେ ଯୋଗଦେବା ସଂଗେ ସଂଗେ ବହୁ ସଭାରେ ଭାଷଣ ଦେଇଛି । ଥରେ କେନ୍ଦ୍ର ଶିକ୍ଷାମନ୍ତ୍ରୀ ଡଃ ହୁମାୟୁନ୍ କବିରଙ୍କୁ ପ୍ରଜାତନ୍ତ୍ର ବିଷୁବ ମିଳନରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରାଯାଇଥିଲା । କବୀରଙ୍କୁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ସମ୍ବର୍ଦ୍ଧନା ଦିଆଯିବାର ଆୟୋଜନ କରାଯାଇଥିଲା । ଡଃ ହରେକୃଷ୍ଣ ମହତାବ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । କବୀରଙ୍କର ରାମଚନ୍ଦ୍ର ଭବନରେ ଉପସ୍ଥିତି ପୂର୍ବରୁ ଡଃ ମହତାବ ଓ ଆମେ ଭବନର ପ୍ରବେଶ ପଥର ଦୁଇ ପାଖରେ ଧାଡ଼ିବାନ୍ଧି ତାଙ୍କ ଅପେକ୍ଷାରେ ଥାଉଁ । ଡଃ ମହତାବଙ୍କୁ ନମସ୍କାର କରିବାରୁ ସେ ଆମ ଗାଁ ଖବରଠାରୁ ଆରମ୍ଭ କରି ନାନା ଖବର ପଚାରି ଚାଲିଲେ; କହିଲେ ଆନନ୍ଦପୁର ଆଗରପଡ଼ା ପାଖାପାଖି । ଡଃ କବୀର ପହଞ୍ଚିଲାମାତ୍ରେ ତାଙ୍କ ସହ ମୋତେ ପରିଚିତ କରାଇବାରେ ସେ କୁଣ୍ଠାପ୍ରକାଶ କରିନାହାନ୍ତି । ବଡ଼ ଲୋକଙ୍କର ଏ ମହତ୍‌ଗୁଣ ଲକ୍ଷ୍ୟ କଲେ ହୃଦୟ କେତେ ଆଶା ଓ ଉତ୍ସାହର ସମ୍ଭାବନାର ଭରିଯାଏ ।

## ମୋର ପୁସ୍ତକ ରଚନା ଓ ପ୍ରକାଶକଙ୍କ ସହ ସଂପର୍କ :

ସାହିତ୍ୟିକମାନଙ୍କ ସହ ପରିଚୟ ଫଳରେ ପ୍ରକାଶକମାନଙ୍କ ସଂପର୍କରେ ଆସେ । କଟକ ଆସିବା ପୂର୍ବରୁ ଅବଶ୍ୟ ମୋର ନିଉ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍‌ର ପରିଚାଳକ ଭିକାରୀ

ଚରଣ ଦାସଙ୍କ ସହ ସଂପର୍କ ସ୍ଥାପିତ ହୁଏ । ସେ ଗଳ୍ପ ଶୈଳୀରେ ଲିଖିତ ମୋର 'ଅମୃତ ପୁତ୍ର' ପୁସ୍ତକଟିଏ ପ୍ରକାଶ କରିବାକୁ ଆଗ୍ରହ ପ୍ରକାଶ କରିବାରୁ ପାଣ୍ଡୁଲିପିଟିକୁ ପୂର୍ବରୁ ତାଙ୍କ ପାଖକୁ ପଠାଇ ଦେଇଥିଲି । ବହିଟି ୧୯୬୦ରେ ପ୍ରକାଶିତ ହୁଏ । ୧୯୬୧ରେ ସେ ପ୍ରକାଶ କରନ୍ତି ଆଦିବାସୀ କାହାଣୀ ଏବଂ ୧୯୬୪ରେ 'ସାହିତ୍ୟାଲୋକ' ଓ ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳର ସମୀକ୍ଷାମୂଳକ ଟୀକା । ୧୯୬୧ରେ ବାଣୀଭଣ୍ଡାର ପ୍ରକାଶ କରନ୍ତି ମୋର 'ସ୍ରଷ୍ଟା ଓ ସୃଷ୍ଟି', ଯେଉଁଥିରେ ଓଡ଼ିଶା, ଭାରତ ଓ ବିଶ୍ୱର ପ୍ରଖ୍ୟାତ କବି ଓ ବିପ୍ଳବୀ ଲେଖକମାନଙ୍କର ଜୀବନୀ ଓ ସାହିତ୍ୟ କୃତି ଗଳ୍ପଭଙ୍ଗୀରେ ଲେଖାଯାଇଥିଲା । ପୁସ୍ତକଟି ୧୯୬୧ରେ ଓଡ଼ିଶା ସରକାରଙ୍କର ଶିଶୁସାହିତ୍ୟ କମିଟି ଦ୍ୱାରା ପୁରସ୍କୃତ ହୋଇଥିଲା । ୧୯୬୩ରେ କଟକ ପବ୍ଲିଶିଂହାଉସ୍ ପ୍ରୋପାଇଟର୍ ଉମାଚରଣ ମହାନ୍ତି ପ୍ରକାଶ କରନ୍ତି 'କଥାକଳିକା'- ଶିଶୁମାନଙ୍କ ଉଦ୍ଦେଶ୍ୟରେ କେତୋଟି ଉଚ୍ଚକୋଟୀର ଗଳ୍ପ । ପରେ ଏ ବହିଟିର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଛି ।

ମୋର 'ସାହିତ୍ୟାଲୋକ' ଶୀର୍ଷକ ସମାଲୋଚନମୂଳକ ଗ୍ରନ୍ଥଟି ପ୍ରକାଶିତ ହୁଏ ୧୯୬୪ରେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଯା'ର ଆଶୀର୍ବାଣ ଲେଖି ମୋତେ ଉତ୍ସାହିତ କରିଥିଲେ । ୧୯୬୦ରେ ପ୍ରକାଶିତ 'ଅମୃତ ପୁତ୍ର'ର ଉପୋଦ୍‌ଘାତ ଲେଖି ଓଡ଼ିଆ ଓ ସଂସ୍କୃତ ବିଭାଗର ପ୍ରଫେସର୍ ଡଃ କୁଞ୍ଜବିହାରୀ ତ୍ରିପାଠୀ ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଥିଲେ । ତତ୍‌କାଳୀନ ଓଡ଼ିଆ ବିଭାଗର ଅଧ୍ୟାପକ ଓ ଛାତ୍ରଙ୍କ ଦ୍ୱାରା ଲିଖିତ ଓ ଡଃ ତ୍ରିପାଠୀଙ୍କ ଦ୍ୱାରା ସଂପାଦିତ 'ଓଡ଼ିଆ ସାହିତ୍ୟ ସମୀକ୍ଷଣ' ଆଲୋକ ସାହିତ୍ୟ ପ୍ରତିଷ୍ଠାନର ପରିଚାଳକ ଭୁବନେଶ୍ୱର ମିଶ୍ରଙ୍କ ଦ୍ୱାରା ପ୍ରକାଶିତ ହୁଏ (୧୯୬୪) । ରେଭେନ୍ସା କଲେଜ୍ ଓଡ଼ିଆ ସାହିତ୍ୟ ସମାଜ ପକ୍ଷରୁ ଅଧ୍ୟାପକ ଓ ଛାତ୍ରଙ୍କ ଦ୍ୱାରା ଲିଖିତ ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ଉପରେ ଏକ ପୁସ୍ତକ ପ୍ରକାଶିତ ହୁଏ ୧୯୬୨ରେ ଯାହା ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ପବିତ୍ର ମୋହନ ପ୍ରଧାନଙ୍କ ଦ୍ୱାରା ଏକ ସଭାରେ ଉଦ୍‌ଘାଟିତ ହୋଇଥିଲା । କଟକ ରହଣିକାଳରେ ବନ୍ଧୁ ସାହିତ୍ୟିକ ମୁରାରି ମୋହନ ଜେନାଙ୍କ ଉଦ୍ୟମରେ ବିଭିନ୍ନ ଲେଖକଙ୍କ ଉପରେ ସ୍ମରଣିକା ଗ୍ରନ୍ଥ ପ୍ରକାଶିତ ହୁଏ । ସେଗୁଡ଼ିକ ହେଲା : ପ୍ରାଣକୃଷ୍ଣ ସ୍ମରଣିକା, ବିଚ୍ଛନ୍ଦ ସ୍ମରଣିକା । ରେଭେନ୍ସାରୁ ବିଦାୟ ନେବାପରେ ତାଙ୍କରି ଉଦ୍ୟମରେ ପ୍ରକାଶିତ ହୁଏ ଗୋଦାବରୀଶ ମହାପାତ୍ରଙ୍କ ସଂପର୍କରେ ଏକ ପ୍ରାମାଣିକ ଗ୍ରନ୍ଥ । ପୂର୍ବୋକ୍ତ ସଂକଳିତ ଗ୍ରନ୍ଥମାନଙ୍କରେ ମୋର ଏକ ଏକ ସମାଲୋଚନା ମୂଳକ ପ୍ରବନ୍ଧ ପ୍ରକାଶିତ ହୋଇଛି ।

ବିଭିନ୍ନ ପତ୍ରପତ୍ରିକା ସ୍ମରଣିକା ଓ ସଂକଳନ ଗ୍ରନ୍ଥମାନଙ୍କରେ ମୋର ଲେଖା, ବକ୍ତୃତା ଓ ରେଡ଼ିଓ ଭାଷଣ ଯୋଗୁଁ ସାହିତ୍ୟିକମାନଙ୍କ ମଧ୍ୟରେ ପରିଚିତ ହେବା ଫଳରେ ମନରେ ଆନନ୍ଦ ଓ ଆତ୍ମବିଶ୍ୱାସ ଆସେ । ଓଡ଼ିଶାର ତତ୍‌କାଳୀନ ସମ୍ବାଦ ପତ୍ରଗୁଡ଼ିକ ('ସମାଜ', 'ପ୍ରଜାତନ୍ତ୍ର', 'ଗଣତନ୍ତ୍ର', 'ମାତୃଭୂମି') ମୋର ବହିଗୁଡ଼ିକର ରିଭ୍ୟୁ ପ୍ରକାଶ କରି ମୋତେ ବିଶେଷ ଉତ୍ସାହିତ କରନ୍ତି ।

କଟକ ରହଣିକାଳରେ ବିଖ୍ୟାତ ବ୍ୟଙ୍ଗ ପତ୍ରିକା 'ନିଆଁଖୁଣ୍ଟା'ର ସଂପାଦକ କବି ଗୋଦାବରୀଶ ମହାପାତ୍ର ମୋତେ ତାଙ୍କର 'ଟୁଆଁଟୁଇଁ' ଶିଶୁପତ୍ରିକା ପାଇଁ ଲେଖା ଲେଖିବାକୁ କହି ଶିଶୁସାହିତ୍ୟ ରଚନା ଦିଗରେ ଉତ୍ସାହିତ କରନ୍ତି । ମୋର କେତେକ ଗଳ୍ପ ସେତେବେଳେ ତାଙ୍କର 'ଟୁଆଁଟୁଇଁ'ରେ ସୁନ୍ଦର ଚିତ୍ର ସହ ପ୍ରକାଶିତ ହୋଇଥିଲା; ତା'ଛଡ଼ା କେତୋଟି ଲୋକ ପ୍ରିୟ ଗଳ୍ପ ମାତୃଭୂମିର କିଶୋର ଫଉଜ ଫିଚର୍‌ରେ ପ୍ରକାଶିତ ହୋଇଥିଲା ।

ଓଡ଼ିଆ ବିଭାଗର ଛାତ୍ରଛାତ୍ରୀଙ୍କ ଗହଣରେ ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ସହ ମୁଁ ଢେଙ୍କାନାଳର କପିଳାସ ଯାତ୍ରା କରିଥିଲି ୧୯୬୨ରେ । ସାଙ୍ଗରେ ଯାଇଥିଲା ପୁଅ ତପନ । ପିଲାମାନେ କପିଳାସ ପାହାଡ଼ର ପାହାଚ ଆରୋହଣ କାଳରେ ତାକୁ କାଖେଇ କାଖେଇ ନେଇଥିଲେ । ବହୁସଂଖ୍ୟକ ପାହାଚ ଅତିକ୍ରମ କାଳରେ ମୁଁ ଅଣନିଶ୍ୱାସୀ ହୋଇ ବାରମ୍ବାର ଥକି ମଝିରେ ବସି ବସି ଶେଷରେ ଚନ୍ଦ୍ରଶେଖରଙ୍କ ପୀଠରେ ପହଞ୍ଚିଥିଲି । କପିଳାସର ମନୋଜ୍ଞ ପ୍ରାକୃତିକ ଦୃଶ୍ୟ ଏବଂ ପର୍ବତ ଶିଖରରୁ ମନ୍ଦିର ମଧ୍ୟଦେଇ ପାହାଚର ପାର୍ଶ୍ୱ ଦେଶରେ କୁଳୁକୁଳୁ ନାଦରେ ପ୍ରବାହିତ ଝରଣାଟି ମୋର କ୍ଳାନ୍ତି ଅପନୋଦନ କରିଥିଲା । ଚନ୍ଦ୍ରଶେଖରଙ୍କୁ ଦର୍ଶନ କରି ମୋର ସମସ୍ତ କ୍ଳାନ୍ତି ଦୂର ହୋଇଥିଲା । ଅନ୍ୟମାନେ ପାହାଡ଼ର ଶିଖର ଦେଶକୁ ଉଠିଥିଲେ ମଧ୍ୟ ଅଧିକ ଉପରକୁ ଉଠିବା ପାଇଁ ମୋର ସାହସ ହୋଇନଥିଲା । କପିଳାସରୁ ଅପରାହ୍ନରେ ବିଦାୟ ନେଇ ଏକ ମାଇଲ୍ ଦୂରବର୍ତ୍ତୀ ଦେଓଗାଁ ଡାକବଙ୍ଗଳାରେ ବିଶ୍ରାମ ନେଇ ଭୋଜିସାରି ସଂଧ୍ୟାରେ କଟକ ଫେରିଆସିଲୁଁ ।

୧୯୫୯ ଡିସେମ୍ବର ମାସରେ (୨୨ ତାରିଖ) ତୃତୀୟ ପୁଅ ଅରୁଣର ଜନ୍ମ ହୁଏ ଗାଁରେ । ସାତଆଠ ମାସ ପର୍ଯ୍ୟନ୍ତ ପିଲାମାନେ ରହିଥିଲେ ଗାଁରେ । ୧୯୬୦, ମାର୍ଚ୍ଚମାସ ଆଡ଼କୁ ମୁଁ ପିଲାମାନଙ୍କୁ କଟକ ଘେନି ଆଣେ । ବଡ଼ପୁଅ ମିହିର ଗାଁ ପ୍ରାଇମେରୀ ସ୍କୁଲ୍‌ରେ ପଢ଼ା ଆରମ୍ଭ କରିଥାଏ । କଟକ ଆସିବାପରେ ଟୁକୁର (ମିହିର) ନାମ ଲେଖାହୁଏ ମ୍ୟୁନସିପାଲିଟି ଉଚ୍ଚପ୍ରାଥମିକ ବିଦ୍ୟାଳୟରେ । ପରେ ପ୍ୟାରୀମୋହନ ଏକାଡ଼େମୀର ଏଣ୍ଟ୍ରାସ୍ ପରୀକ୍ଷାରେ ପ୍ରଥମ ହୋଇ ଚତୁର୍ଥ ଶ୍ରେଣୀରେ ପଢ଼େ । ତପନ ଘରେ ଘରେ ପ୍ରଥମ ଶ୍ରେଣୀର ପାଠ ଆରମ୍ଭ କରେ, ତା'ପରେ ମ୍ୟୁନିସିପାଲିଟି ସ୍କୁଲ୍‌ରେ ପଢ଼େ । ଅରୁଣଟି ହୋଇଥାଏ ୪/୫ ମାସର ଶିଶୁ । ହାମୁଡ଼େଇ ଚାଲି କୋଠାର ପାହାଚ ଉପରକୁ ଉଠିଯାଇ ତା'ର ମା'କୁ ଡ଼ାକେ 'ବା' ବୋଲି । ମା' ତାର ଥଟ୍ଟାରେ କହେ : ମୁଁ କ'ଣ ତୋର ବା ? ହସିଦେଇ ଆହୁରି ଉପରକୁ ଉଠିଯାଏ । ମା, ମାମା (ଆଈ)ଙ୍କ ପାଖରେ ତପନ ମୋ'ଠାରୁ ଶିଖିଥିବା ଭାଗବତ ପଦ ଗାଏ । ଭଦ୍ରକ ପରି ଏଠାରେ ଗାଈ ରଖିବା ଦିଗରେ ଥିଲା ନାନା ଅସୁବିଧା । ଦୁଧପାଇଁ ପ୍ରଥମତଃ ବହୁ ଅସୁବିଧା ଭୋଗିବାକୁ ହୁଏ । ଶେଷରେ ନିମସାଇ ପାଖରୁ ଗଉଡ଼ ଜଣେ ଗାଈ ଆଣି ବସା ଆଗରେ ଦୁହିଁ ଦେଇଯାଏ; ସେଥିରେ ମଧ୍ୟ କୌଶଳରେ ପାଣିମିଶାଇ ଦିଏ ବୋଲି ଶୁଣିବାକୁ ପାଇଛି ।

## କଟକ ବାସଗୃହ ସମସ୍ୟା :

କଟକ କୁମ୍ଭାର ସାହିରେ ମୋ ଶ୍ୱଶୁରଙ୍କ କୋଠାରେ ରହିବା ପୂର୍ବରୁ ରହିଥିବା ଦେବେନ୍ଦ୍ର ବାବୁ ଜଣେ କୁମ୍ଭାରକୁ ଫର୍ଣ୍ଣିଚର ଦୋକାନ କରିବା ପାଇଁ ଅନୁମତି ଦେଇଥିଲେ, ଫଳରେ କୋଠାର ପୂର୍ବଭାଗକୁ ଥିବା ଖାଲି ଜାଗାରେ ସେ ଗୋଟାଏ ଘର କରିଦେଇଥିଲା । ଦେବେନ୍ଦ୍ର ବାବୁ ଚାଲିଗଲା ପରେ ସେଠାରୁ ଦୋକାନ ଉଠେଇ ନେବାପାଇଁ ମୁଁ ନିର୍ଦ୍ଦେଶ ଦିଏଁ । ଶେଷରେ ବହୁ କୁଣ୍ଠିତ ମନରେ ସେଠାରୁ ସେ ଦୋକାନ ଉଠେଇ ନେଇଯାଏ । ସେଥିପାଇଁ ଖୁଡ଼ୁତାଶୁରଙ୍କୁ ସେ ସମସ୍ୟା ସମାଧାନ କରିବାପାଇଁ କଟକ ଆସିବାକୁ ହୋଇଥିଲା ।

କଟକ କୋଠା ଓ ଖାଲିଥିବା ଜାଗାର ପରିମାଣ ପ୍ରାୟ ୧୩/୧୪ ଗୁଣ୍ଠ । ଶ୍ୱଶୁର ପୁଅଝିଅଙ୍କ ପଢ଼ିବା ପାଇଁ କଟକର ଏ କୋଠା ଓ ଜମି କିଣିଥିଲେ । ଜାଗା ଓ ଘର ଶଳା ବିଦ୍ୟାଧର ନାମରେ କରି ଦେଇଯାଇଥିଲେ । ମୋର ଆଗମନରେ ବଡ଼ଶ୍ୱଶୁରଙ୍କ ପୁଅ କୃଷ୍ଣଚନ୍ଦ୍ର ସ୍ୱାଇଁଙ୍କ ମନରେ ନାନା ଅହେତୁକ ଆଶଙ୍କା ଆସି ପହଞ୍ଚେ । ତାଙ୍କର ଧାରଣା ହୁଏ ଯେ ଜାଗା ଓ ଜମି ମୁଁ ଶେଷକୁ ହସ୍ତଗତ କରି ନେଇଯିବି । ଏଇ ଆଶଙ୍କାରେ ସେ ଜାଗା ଓ ଜମି କୌଶଳରେ କୁମ୍ଭାରଙ୍କୁ ବିକ୍ରି କରି ଦେବାପାଇଁ ମୋର ଅଜ୍ଞାତରେ ନାନା ଷଡ଼ଯନ୍ତ୍ର ଆରମ୍ଭ କରେ । ଦ୍ୱିତୀୟ ଶାଳୀ ଶ୍ରୀମତୀର ବିଭାଘର ପାଇଁ ଖାଲିଥିବା ଜାଗାରୁ ଅବଶ୍ୟ କିଛି ଅଂଶ ବିକ୍ରି କରାଯାଏ । ଅବଶିଷ୍ଟ ଜାଗା ବିକ୍ରି କରିବାପାଇଁ ତାଙ୍କର ଷଡ଼ଯନ୍ତ୍ର । ଏଣେ ତାଙ୍କ ଗାଁରେ ଶଳା ଓ ଶାଶୁ ଏମାନଙ୍କ ଉପରେ ତା'ର ଅତ୍ୟାଚାର ଦିନକୁ ଦିନ ବଢ଼ିଚାଲେ । ଶଳାଟିକୁ ପଢ଼ାଇଲେ ନାହିଁ; ସେ ମଣିଷ ହେଲା ନାହିଁ । ଶେଷକୁ ଖାଇବା ପିଇବାରେ ହଇରାଣ କଲେ । ହେମ ଓ ମୁଁ ଏ ସଂପର୍କରେ ବଡ଼ଶଳା ସହ ନାନା ଯୁକ୍ତିତର୍କ କଲେ ସେ କୌଣସିମତେ ଏଡ଼େଇ ଦେବାପାଇଁ ଚେଷ୍ଟା କରେ । ଶେଷରେ ମୋର ଅଜ୍ଞାତରେ କୁମ୍ଭାରଙ୍କଠାରୁ କିଛି ଜାଗା ବିକ୍ରି କରି ଦେବାର ଆଶା ଦେଇ କିଛି ଟଙ୍କା ସେମାନଙ୍କଠାରୁ ନେଇଯାଏ । ମୋ ଉପସ୍ଥିତିରେ ଜାଗା କବଲା ଦେବା ଅସମ୍ଭବ ।

କୁମ୍ଭାରମାନେ ଶ୍ରୀମନ୍ତପୁର (ଶ୍ୱଶୁରଙ୍କ ଗାଁ) ବାରମ୍ବାର ଦୌଡ଼ି ହତାଶ ହେଲେ ଏବଂ ଅପମାନ ପାଇ ଫେରିଲେ । ସେ ଜାଗାକୁ କିପରି ଜବରଦଖଲ କରିବେ : ଏଇ ମସୁଧାରେ ସେମାନେ ରହିଲେ । ମୁଁ ଯେତେବେଳେ କଟକରୁ ବାଲେଶ୍ୱର ଚାଲିଗଲି, ସେତେବେଳେ କକା ପୁଅ ଗୋପାଳକୁ ସେଠାରେ ରଖାଇ ଦେଇଗଲି । ମୋ ଯିବାର ବର୍ଷକ ପରେ ପୂର୍ବରୁ ଅପମାନିତ ହୋଇଥିବା କୁମ୍ଭାରର (ଭାଇଗ) ନେତୃତ୍ୱରେ ଜବର ଦଖଲର ପାଲା ଚାଲେ । ସେତେବେଳେ ସମଗ୍ର ଓଡ଼ିଶାରେ ଛାତ୍ରଧର୍ମଘଟ ଚାଲିଥିବାରୁ ପୁଲିସ୍‌ଙ୍କର ଧ୍ୟାନ ଥାଏ ସେ ଦିଗରେ । ମୁଁ ଖବରପାଇ ଆସି କିଛି କରିପାରିଲି ନାହିଁ । ସ୍ଥାନୀୟ ଭଦ୍ରଲୋକଙ୍କ ମାଧ୍ୟମରେ କିଛି ହୋଇପାରିଲା ନାହିଁ । ଶେଷରେ ଖୁଡ଼ୁତାଶୁର ଆସି କୁମ୍ଭାରଙ୍କ କଥାରେ ମୁଣ୍ଡ ନୁଆଇଁ ଶାଗମାଛ ମୂଲ୍ୟରେ ଘର ଓ ଜମି ବିକ୍ରି କରିଦେଲେ; ତାହା କିଣି ନେଲେ ମାନଗୋବିନ୍ଦ

ମୁଦୁଲି ନାମକ ଜଣେ ବ୍ୟକ୍ତି । ବିକ୍ରି ଟଙ୍କା ରହିଲା ଶଳା ବିଦ୍ୟାଧର ପାଖରେ । ବେକାର, କର୍ମକୋଢ଼ୀ ହାତରେ ଅର୍ଥ ପଡ଼ିଲେ ଯା ହେବାର କଥା ତା' ହେଲା । ଟଙ୍କା ବରବାଦ କରି ଶେଷକୁ ବହୁମୂତ୍ର ରୋଗରେ ପଡ଼ିଲା । ରୋଗ ଭଲ କରିବାକୁ ବର୍ଷକୁ ବର୍ଷ ଚେଷ୍ଟା କଲେ ମଧ ତାର ଅସଂଯତ ଜୀବନ ଯାତ୍ରା ହେତୁ ଶେଷରେ ହେଲା ଯକ୍ଷ୍ମା । ସେଇ ଦୁଃଖରେ ହୁଏ ଶାଶୁଙ୍କର ମୃତ୍ୟୁ ।  ତାର ସ୍ତ୍ରୀ ଓ ପୁଅ ମଧ ଚାଲିଗଲେ । ଶେଷକୁ ଯକ୍ଷ୍ମା ରୋଗଗ୍ରସ୍ତ ହୋଇ ଅକାଳରେ ଅତି କରୁଣ ଭାବରେ ସେ ସଂସାରରୁ ବିଦାୟ ନିଏ । ଅଳ୍ପ ବୟସରେ ଶ୍ୱଶୁର ବହୁ ଜମିବାଡ଼ି କୋଠା କରିଯାଇଥିଲେ । ୪୨ ବର୍ଷ ପରେ ହୁଏ ତାଙ୍କର ପରଲୋକ । ଗୃହରେ ସଞ୍ଚିତ ଲକ୍ଷାଧିକ ଟଙ୍କା ମୋକଦ୍ଦମା ବାଟରେ ଅପବ୍ୟୟିତ ହୁଏ । ଶେଷକୁ ଯାହାଥିଲା ଏଇ ହେଉଛି ତାର ପରିଣତି । ନିଜେ କିମ୍ୱା ସ୍ତ୍ରୀ, ପୁଅ କେହି ଭୋଗ କରିପାରିଲେ ନାହିଁ । ଝିଅମାନଙ୍କୁ କୌଣସି ପ୍ରକାରେ ବିଭା ଦେଇ ଦିଆଯାଇଥିଲା, ହେଲେ ମଧ ବାପ ଘରର ସମସ୍ତ ସ୍ନେହ ଆଦରରୁ ସେମାନେ ବଞ୍ଚିତ । ଶଳାର ଅଂଶ ସେମାନେ ଭୋଗ କରୁଛନ୍ତି । ଝିଅମାନଙ୍କୁ କେହି ପଚାରନ୍ତି ନାହିଁ । ସେମାନଙ୍କର ଅପକର୍ମ ହେତୁ ସେମାନଙ୍କର ଅବସ୍ଥା ବି ସେହିପରି । ବର୍ତ୍ତମାନ ସେମାନେ ପ୍ରାୟ ଅର୍ଥଶୂନ୍ୟ ।

## କଟକ ନଗର-ଏକାଳ ସେକାଳ :

କଟକ ଏକଦା ଥିଲା ଓଡ଼ିଶାର ରାଜଧାନୀ । ଏହାର ବାରବାଟୀ ଦୁର୍ଗ, ନବତଳ ପ୍ରାସାଦ, କାଠଯୋଡ଼ି ପଥରବନ୍ଧ (ମର୍କତ କେଶରୀ ନିର୍ମିତ) ଏହାର ଅତୀତର ଗର୍ବ ଓ ଗୌରବ । କଟକର ରୂପାର ତାରକସି କାମ କୌଣସିମତେ ତାର ଗୌରବ ହୋଇରହିଛି । କିନ୍ତୁ କଟକର ଖୋଦ ବାସିନ୍ଦା ହେଉଛନ୍ତି ବସ୍ତିବାଲା । ଶିକ୍ଷା ଓ ସଂସ୍କାର ବର୍ଜିତ; ମୁଁ ପୁଣି ଯେଉଁ ସାଇରେ ରହିଥିଲି ଅଧିକାଂଶ ନିରକ୍ଷର । ସେମାନଙ୍କର ଏକମାତ୍ର ଗର୍ବ : ସେମାନେ କଟକିଆ, ଏଣେ ମୂର୍ଖ ହୋଇଥାନ୍ତୁ ପଛକେ । କିଛି ନ୍ୟାୟ, ନିଶାପ ପଡ଼ିଲା ତ ଢେଙ୍ଗାବାଡ଼ି ଓ ଢେଲା ମାଡ଼ରେ ହୁଏ ତା'ର ପରିଣତି । କଟକରେ ସାଇବାଲାଙ୍କର ଗୁଣ୍ଡାମି ସହିତ କଟକବାସୀ ପରିଚିତ । ବାହାରୁ ଯେଉଁମାନେ କଟକରେ ଆସି ରହିଲେ, ଯେତେ ଶିକ୍ଷିତ ହୁଅନ୍ତୁ ପଛେ ସେମାନେ ସାଇବାଲାଙ୍କ ଆଖିରେ ମଫସଲିଆ, କଥା କଥାକେ ମଫସଲିଆ ଗାଳି । ଯାନିଯାତ୍ରା ପୂଜା ପାର୍ବଣରେ ଚାନ୍ଦାର ଜୁଲମ କମ ନୁହେଁ । କୌଣସି ଶିକ୍ଷିତ ଲୋକ ସାଇ ଭିତରେ ଘରଦ୍ୱାର କରି ରହିଲେ ସେ ଅଣନିଶ୍ୱାସୀ ହୋଇପଡ଼େ । ଏ ହେଉଛି ଯେଉଁ ବସ୍ତି ପରିପୂର୍ଣ୍ଣ, ପଚା ନର୍ଦ୍ଦମା, ଗଳିଭରା କଟକର ଅବସ୍ଥା, ସେଠି ଉଚ୍ଚ ସଂସ୍କାର, ମାନବିକତା ଆଶା କରିବା ବିଡ଼ମ୍ବନା ମାତ୍ର । କଟକରେ ଦେବଦେବୀ ମନ୍ଦିର ସଂଖ୍ୟା ଢେର ବଢ଼ିଛି । ବାରମାସରେ ତେର ପର୍ବର ଊଣା ନାହିଁ । ବିଭିନ୍ନ ସମୟରେ ଦେବଦେବୀ ପୂଜାର ଆଡ଼ମ୍ବର କିଛି କମ ନୁହେଁ । ସାଧୁବାବାଙ୍କର ସଂଖ୍ୟା ମଧ କମ ନୁହେଁ; କିନ୍ତୁ ଏସବୁ ରାଜସିକତା ଓ

ତାମସିକତାରେ କଳୁଷିତ ହୋଇପଡ଼ିଛି । ପୂଜା ପାର୍ବଣକୁ ଉପଲକ୍ଷ୍ୟ କରି ଯେତେ ପ୍ରକାର ଗୁଣ୍ଡାମି, ଜୁଲମ ସାଇ ଅଶାନ୍ତି । ଦେବ ପୂଜାରେ ସାତ୍ତ୍ୱିକତା ସ୍ଥାନରେ ରାଜସିକତା ଓ ତାମସିକତା ହୋଇଛି ମୁଖ୍ୟ ।

ଏକଚାଳିଶି ବର୍ଷ ତଳେ କଟକକୁ ଯାହା ଦେଖିଥିଲି ଆଜି ତା'ର ଜନସଂଖ୍ୟା, କୋଠାବାଡ଼ି, ଫ୍ଲାଟ୍, ହୋଟେଲ, ରେଷ୍ଟୁରାଣ୍ଟ ଓ ସିନେମା ଘରର ବୃଦ୍ଧି ବ୍ୟତୀତ ଆଉ କିଛି ବିକାଶ ଦେଖାଯାଏନା । ନାଳନର୍ଦ୍ଦମାର ଅବସ୍ଥା କହିଲେ ନ ସରେ । ପ୍ରବଳ ବର୍ଷା ହେଲେ କଟକର ବହୁ ଗଳି ବସ୍ତି ହୁଏ ଅଗମ୍ୟ । ମଶାଙ୍କ ସଂଖ୍ୟା ତ ଅପରିମିତ । ଅତ୍ୟଧିକ ଜନସଂଖ୍ୟା ପୁଣି ଗାଡ଼ି, ମଟର, ରିକ୍ସାର ଭିଡ଼, ମାଇକ୍‌ର ଗର୍ଜନ, ଗାଡ଼ିମଟର ଦ୍ରୁତ ଗତିରେ ରାସ୍ତାଘାଟରେ ନିରାପଦରେ ଯିବା ଅସମ୍ଭବ- ପୁଣି ଧୂଳି ଓ ଧୂଆଁ । ଏ ଅସ୍ୱସ୍ତିକର ପରିବେଶକୁ ଆହୁରି ଅସ୍ୱସ୍ତିକର କରିଛି ଗୁଣ୍ଡା, ଚୋର, ଦାଗୀ ଓ ମାଫିଆଙ୍କ ଦୌରାତ୍ମ୍ୟ । ରାଷ୍ଟ୍ର, ସମାଜ, ରାଜନୀତି ସର୍ବତ୍ର ନୈତିକ ଅଧୋଗତି ଓ ଭ୍ରଷ୍ଟାଚାର ବଢ଼ିବା ଫଳରେ ମଣିଷ ଚରିତ୍ର ବହୁତଳକୁ ଚାଲିଯାଇଛି । ଚୋର, ଡକାୟତ, ଧର୍ଷଣକାରୀ ଓ ଗୁଣ୍ଡାଙ୍କ ସଂଖ୍ୟା ବୃଦ୍ଧି ପାଇ ଏବେ ଧନଜୀବନ ବିପଦପୂର୍ଣ୍ଣ ହୋଇ ପଡ଼ିଲାଣି । ଦିନ ଦିପ୍ରହରେ ରାସ୍ତାରେ ଅସାମାଜିକ ଯୁବକମାନଙ୍କର ଛୁରାମାଡ଼ ଚାଲିଛି । ସଂଧ୍ୟା ପ୍ରହରରେ ଜନଗହଳି ଥିବାବେଳେ ଅଳଂକାର ଓ ଲୁଗା ଦୋକାନରେ ଡକାୟତି ଦିନ ଦିପ୍ରହରେ ବ୍ୟାଙ୍କ ଡକାୟତି ଚାଲିଛି । ବସ୍‌ଷ୍ଟାଣ୍ଡ, ସିନେମା, ହୋଟେଲ ବର୍ତ୍ତମାନ ଅପରାଧୀ ଗୁଣ୍ଡା ଡକାୟତ ଓ ଅସାମାଜିକ ଯୁବକମାନଙ୍କର ଆଡ୍‌ଡ଼ାସ୍ଥଳୀ ହୋଇ ପଡ଼ିଲାଣି । ଖୋଲା ପକେଟ୍‌ରେ ଗାଡ଼ି ମଟରରେ ଯାତ୍ରା କରିବା ବର୍ତ୍ତମାନ ବିପଦଜ୍ଜନକ ।

ସମାଜ ଓ ରାଷ୍ଟ୍ରର ପ୍ରତ୍ୟେକ ସ୍ତର ବର୍ତ୍ତମାନ ଦୂଷିତ ହୋଇ ପଡ଼ିଥିବାରୁ ଶିକ୍ଷାୟତନ ଗୁଡ଼ିକ ସେଥିରୁ ରକ୍ଷା ପାଇନାହାନ୍ତି । ଶିକ୍ଷାର ବିକାଶରେ ସଂସ୍କୃତିର ବିକାଶ ଘଟେ । ମଣିଷର ପଶୁତ୍ୱ ସ୍ଥାନରେ ମାନବିକତାର ବିଜୟ ନିଶାଣ ଉଡ଼େ । କିନ୍ତୁ ଆଜି ଶିକ୍ଷା ଓ ଆଚରଣରେ ସାମଞ୍ଜସ୍ୟ ନାହିଁ । ସମାଜ ଓ ବ୍ୟକ୍ତିଗତ ଜୀବନରେ ସେ ପାରଂପରିକ ଉଚ୍ଚାଙ୍ଗ ମୂଲ୍ୟବୋଧ କାହିଁ ? ସ୍କୁଲ୍ କଲେଜ୍ ବଢ଼ିଚାଲିଛି; ବହି ପତ୍ରିକାର ସଂଖ୍ୟା ତ ଅଗଣିତ । ଲୋକେ ହୁଏତ ସାକ୍ଷର ହେଉଛନ୍ତି, କିନ୍ତୁ ପ୍ରକୃତ ଶିକ୍ଷିତ କାହାନ୍ତି ? ପ୍ରକୃତ ଶିକ୍ଷାରେ ଆସେ ମାର୍ଜିତ ରୁଚି, ନମ୍ରତା, ସମ୍ଭ୍ରମବୋଧ ସଂଯମ, ସହାନୁଭୂତି, ଆନ୍ତରିକତା, ସେବା ଓ ଆତ୍ମୋତ୍ସର୍ଗର ମନୋଭାବ । କିନ୍ତୁ ସାଂପ୍ରତିକ କାଳରେ ତଥାକଥିତ ଶିକ୍ଷିତ ଲୋକଙ୍କର କୃତଘ୍ନତା, ଆତ୍ମ-କୈନ୍ଦ୍ରିକତା, ନୀଚ ସ୍ୱାର୍ଥପରତା ଓ ବିଶ୍ୱାସ ଘାତକତା ଲକ୍ଷ୍ୟକଲେ ଏମାନଙ୍କୁ ମଣିଷ କହିବାକୁ ଜିଭ ଲେଉଟେନା । ସବୁଠି ଛଳନା, କପଟତା ଓ ନୀଚ ସ୍ୱାର୍ଥପରତାର ବାଜିକରି; କଥା ଓ କାର୍ଯ୍ୟ ମଧରେ ଆକାଶ ପାତାଳ ପ୍ରଭେଦ । ଆଜି ମଣିଷର ଅହଂକାର, ଔଦ୍ଧତ୍ୟ ନଭଶ୍ଚୁମ୍ବୀ, ଲୋଭ ଅତଳସ୍ପର୍ଶୀ । ଜଗତ ଓ ଜୀବନ ପ୍ରତି ତା'ର ସ୍ୱାର୍ଥପର ବସ୍ତୁତାନ୍ତ୍ରିକ ଦୃଷ୍ଟିଭଙ୍ଗୀ ତାକୁ

ବହୁତଳକୁ ନେଇଯାଇଛି । ସେ ଧନ, କ୍ଷମତା, ପ୍ରତିପତ୍ତି, ସ୍ୱାର୍ଥ ଛଡ଼ା ଆଉ କିଛି ଦେଖେନା, ଆଉ କୌଣସିକୁ ମୂଲ୍ୟ ଦିଏନା । ସେଥିପାଇଁ ସାଧାରଣ ଜୀବନରେ ନ୍ୟାୟ ଓ ନୀତିବୋଧ ଆଶା କରିବା ଆଜି ଏକ ଦୁରାଶାମାତ୍ର ।

ବସ୍ତୁ ତାନ୍ତ୍ରିକତା ଓ ବଣିକ ତନ୍ତ୍ରର ଅବାଞ୍ଛିତ ଚାପରେ ଆଜି ମଣିଷର ମନୁଷ୍ୟତ୍ୱ ସ୍ତିମିତ ହୋଇଆସୁଛି । ବ୍ୟକ୍ତି ଓ ସାଧାରଣ ଜୀବନରୁ ସତ୍ୟ, ନ୍ୟାୟ, ସମ୍ମାନ ବୋଧ, ସହିଷ୍ଣୁତା ଓ ସହୃଦୟତା ଲୋପ ପାଇଆସୁଛି । ଶିକ୍ଷାୟତନମାନଙ୍କରେ ଶିକ୍ଷକମାନଙ୍କର କର୍ତ୍ତବ୍ୟରେ ଅବହେଳା ଓ ଜ୍ଞାନ ଦାରିଦ୍ର୍ୟ, କୋଚିଂ ସେଣ୍ଟରମାନଙ୍କରେ ଶିକ୍ଷା ବ୍ୟବସାୟ ଆଦର୍ଶ ଶୂନ୍ୟ ଦିଗଭ୍ରଷ୍ଟ ଛାତ୍ରମାନଙ୍କର ସୁରାସେବନ- ଏକପ୍ରକାର ବିକୃତ ଆଭିଜାତ୍ୟ (?) କ୍ରମଶଃ ଆମକୁ ମେରୁଦଣ୍ଡ ଶୂନ୍ୟ କରି ଦେଲାଣି ।

ଇତିମଧ୍ୟରେ ଭାଇ ସମ୍ଭୁନାଥର ଇଞ୍ଜିନିୟରିଂ ପଢ଼ା ସରିଥାଏ । ଟ୍ରେନିଂ ପିରିୟଡ଼ ସରି ଯିବାରୁ କଟକରେ ତା'ର ପୋଷ୍ଟିଂ ହୁଏ । ସାନଭାଇ ଗୋପବନ୍ଧୁ ପ୍ରଥମ ବାର୍ଷିକ ବିଜ୍ଞାନ ପାଶ୍ କରି ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜ୍‌ରେ ନାମ ଲେଖାଏ । ୧୯୬୩, ଅଗଷ୍ଟ ୯ ତାରିଖରେ ମୋର ବାଲେଶ୍ୱର ଫକୀର ମୋହନ କଲେଜକୁ ବଦଳି ଆଦେଶ ଆସେ ବିକ୍ରମ ଜେନାଙ୍କ ସ୍ଥାନରେ ।

ମୁଁ ବିଭାଗରୁ ବୟୋଜ୍ୟେଷ୍ଠମାନଙ୍କର ଆଶୀର୍ବାଦ ଓ ଶୁଭେଚ୍ଛା ବହନ କରି ବିଦାୟ ନିଏ; ସାମାନ୍ୟ ଜିନିଷପତ୍ର ନେଇ ପିଲାମାନଙ୍କୁ କଟକରେ ଛାଡ଼ି ବାଲେଶ୍ୱର ଯାତ୍ରା କରେଁ । ଫକୀର ମୋହନ କଲେଜ୍‌ରେ ଯୋଗଦିଏଁ ୧୬/୦୮/୬୩ ରେ । ସେତେବେଳେ କଲେଜ୍‌ର ଅଧ୍ୟକ୍ଷ ଥାନ୍ତି ଅଜୟଚନ୍ଦ୍ର ବୀର ।

## ।। ତିନି ।।

## ଫକୀର ମୋହନ କଲେଜ୍‌ରେ ଅଧ୍ୟାପନା :

ଫକୀରମୋହନ କଲେଜ୍‌ରେ ଯୋଗଦାନ କରି ବନ୍ଧୁ ଚିନ୍ତାମଣି ବେହେରାଙ୍କ ଘରେ ଅତିଥି ହେଲି । ତା'ପରେ ଉତ୍ତର ଛାତ୍ରାବାସର ଗୋଟିଏ ରୁମରେ କିଛିଦିନ ରହିଲି । ସେଠାରୁ ସୁଏଲ୍‌ପୁରର ଗୋଟିଏ ଘରେ ଗଣିତ ଅଧ୍ୟାପକ ହେମନ୍ତ କୁମାର ମହାନ୍ତିଙ୍କ ସହିତ ରହିଲି । ହେମନ୍ତ ବାବୁଙ୍କ ସହ କିଛି ଦିନର ରହଣି ବେଶ ଆନନ୍ଦଦାୟକ ହୋଇଥିଲା । ସେ ଘରର ଅପରପାର୍ଶ୍ୱରେ ରହୁଥିଲେ ସ୍କୁଲ୍ ବିଭାଗର ସର୍କଲ୍ ଇନିସ୍‌ପେକ୍ଟର ଦୀନବନ୍ଧୁ ପାଣିଗ୍ରାହୀ । ଆମେ ରହୁଥିବା ଘରର ପଶ୍ଚିମ ପାର୍ଶ୍ୱକୁ ଜଣେ ବଣିଆର ଘର । ବଣିଆ ଓ ତା' କର୍କଶ ଭାଷିଣୀ ସ୍ତ୍ରୀ ତା'ର ବାପପ୍ରତି ନିଷ୍ଠୁର ବ୍ୟବହାରରେ ଆମେ ଅତିଷ୍ଠ ହୋଇ ପଡୁଥିଲୁଁ । ସକାଳୁ ରାତିଯାଏଁ ବୁଢ଼ାବାପଟିର କାନ୍ଦଣା ସହ ଆଖିରୁ ସର୍ବଦା ଲୁହ ଝରୁଥାଏ ।

ଫକୀର ମୋହନ କଲେଜ୍‌ର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଥାନ୍ତି ବନ୍ଧୁ ଚିନ୍ତାମଣି ବେହେରା । ଓଡ଼ିଆ ବିଭାଗର ଯଦୁମଣି ମହାପାତ୍ର ସେତେବେଳେ ଥାନ୍ତି ଉତ୍ତର ଛାତ୍ରାବାସର ତତ୍ତ୍ୱାବଧାରକ । ଇଂରାଜୀ ବିଭାଗର ଅଧ୍ୟାପକ ଥାଆନ୍ତି ଗଳ୍ପ ଲେଖକ ବସନ୍ତ କୁମାର ଶତପଥୀ । ଇତିହାସ ବିଭାଗର ରିଡ଼ର୍ ରାଜେନ୍ଦ୍ର କୁମାର ଦାସ ଓ ଅର୍ଥନୀତି ବିଭାଗର ରିଡ଼ର୍ ରାମଚନ୍ଦ୍ର ପଟ୍ଟନାୟକ ସେତେବେଳେ ଅଧ୍ୟାପକମାନଙ୍କ ମଧ୍ୟରେ ଥିଲେ ବୟୋଜ୍ୟେଷ୍ଠ । ସଂସ୍କୃତ ବିଭାଗରେ ଯୋଗ ଦିଅନ୍ତି ଦୀନବନ୍ଧୁ ଶତପଥୀ । କଲେଜ୍‌ରେ ମୋର ଯୋଗ ଦେବା ସମୟକୁ ଇତିହାସ ଅଧ୍ୟାପକ ଜଗନ୍ନାଥ ପଟ୍ଟନାୟକ, ରସାୟନ ଅଧ୍ୟାପକ ଅକ୍ଷୟ କୁମାର ହୋତା, ଇଂରାଜୀ ଅଧ୍ୟାପକ ମହାଜିତେଶ୍ୱର ଦାସ, ତାଙ୍କର ସ୍ତ୍ରୀ ଶାନ୍ତି ଦାସ (ଅର୍ଥନୀତି) ଏବଂ ଇତିହାସ ଅଧ୍ୟାପକ ରାଜେନ୍ଦ୍ର ପ୍ରସାଦ ଦାସ ସେଠାରେ ଯୋଗଦାନ କରନ୍ତି ।

ଫକୀର ମୋହନ କଲେଜ୍ ପୁରାତନ ବାଲେଶ୍ୱର ଜିଲ୍ଲା ସ୍କୁଲ୍ କୋଠାରେ ହେଉଥିଲା । କଲେଜ୍ ସମ୍ମୁଖରେ କେତୋଟି ପ୍ରାଚୀନ ମୂର୍ତ୍ତି ଓ ଗୋଟିଏ ବଡ଼ ଲୁହାନଂଗର (ଜାହାଜାତି କାରବାରର ସ୍ମାରକୀ) ସଂରକ୍ଷିତ ହୋଇଥାଏ । କଲେଜ୍ ହତାର ଦକ୍ଷିଣ-ପଶ୍ଚିମକୁ ଲାଗି ଶିବମନ୍ଦିରଟିଏ; ପାଖରେ ଏକ ଛାୟା ଶୀତଳ ପ୍ରାଚୀନ ବଟବୃକ୍ଷ ।

ମୋର ଯୋଗଦାନ ଉପଲକ୍ଷେ ଷ୍ଟାଫ୍ କାଉନ୍‌ସିଲ୍ ପକ୍ଷରୁ ସ୍ୱାଗତ-ସମ୍ବର୍ଦ୍ଧନା ସଭାର ଆୟୋଜନ ହୋଇଥିଲା । ଅଧ୍ୟକ୍ଷ ଶ୍ରୀଯୁକ୍ତ ବୀର ତାଙ୍କର ସ୍ୱଭାବ ସୁଲଭ ଭଙ୍ଗୀରେ କହିଥିଲେ- ଶ୍ରୀଯୁକ୍ତ ବଳ ଓଡ଼ିଶାର ବିଖ୍ୟାତ କଲେଜ୍ ରେଭେନ୍ସାରୁ ଏ କଲେଜକୁ ଆସିଛନ୍ତି; ଏ କଲେଜ୍ ଛୋଟ ହେଲେ ମଧ୍ୟ ତାଙ୍କ ଅଧ୍ୟାପନା ଦୃଷ୍ଟିରୁ ଆନନ୍ଦଦାୟକ ହେବ । ଶ୍ରୀଯୁକ୍ତ ବୀରଙ୍କର ସମ୍ବର୍ଦ୍ଧନାକାଳୀନ କ୍ଷୁଦ୍ର ଭାଷଣଟି ମୋ ପକ୍ଷରେ ଆଶା ଓ ଆନନ୍ଦର ଅଜ୍ଞାତବାର୍ତ୍ତା ବହନ କରି ଆସିଥିଲା । ବାଲେଶ୍ୱରରେ ଦୀର୍ଘ ଛ'ବର୍ଷକାଳ ରହଣି ମୋର ଚାକିରି କାଳ ମଧ୍ୟରେ ସବୁଠାରୁ ଆନନ୍ଦ ଓ ଉତ୍ସାହଜନକ ହୋଇଥିଲା ।

ପ୍ରଥମତଃ ଭଲ ବସାଘର ଖଣ୍ଡିଏ ନ ପାଇ ମୁଁ ବାଲେଶ୍ୱର ଉପରେ ବିରକ୍ତ ହୋଇ ପଡ଼ିଥିଲି । କିନ୍ତୁ ପ୍ରଥମତଃ ମନ୍ମଥ କୁମାର ଦାସଙ୍କ ଏବଂ ପରେ ବ୍ୟାସକବି ଫକୀର ମୋହନଙ୍କ ଶାନ୍ତିକାନନ ମଧ୍ୟରେ ମ୍ୟୁନିସିପାଲିଟି କ୍ୱାର୍ଟରଟିଏ ପାଇବାରୁ ମୋର ବାଲେଶ୍ୱର ରହଣି ସବୁଠାରୁ ଆନନ୍ଦଦାୟକ ହୋଇଥିଲା । ଏ ଦିଗରେ ସହାୟକ ହୋଇଥିଲେ କବି ବନ୍ଧୁ ବ୍ରଜନାଥ ରଥ, ବନ୍ଧୁ ଚିନ୍ତାମଣି ବେହେରା ।

## ଫକୀର ମୋହନ ସାହିତ୍ୟ ପରିଷଦ :

ଫକୀର ମୋହନ ପରିଷଦର ସଭାପତି ଥିଲେ ଚିନ୍ତାମଣି ବାବୁ, ବ୍ରଜନାଥ ରଥ ଥିଲେ କାର୍ଯ୍ୟକାରୀ କମିଟିର ସଭ୍ୟ, ଅବସରପ୍ରାପ୍ତ ଡି.ପି.ଆର.ଓ ହରିବନ୍ଧୁ ଶତପଥୀ ଥିଲେ ସଂପାଦକ । ଏତଦ୍‌ବ୍ୟତୀତ ବାଲେଶ୍ୱରର କେତେକ ଯୁବକବି ଏବଂ ସଂଗୀତ ଓ କଳାପ୍ରାଣ

ବ୍ୟକ୍ତି ଫକୀର ମୋହନ ସାହିତ୍ୟ ପରିଷଦର ସଭ୍ୟ ଥିଲେ, ସେମାନେ ହେଲେ ଜ୍ଞାନରଞ୍ଜନ ପଟ୍ଟନାୟକ, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ବିଶ୍ୱମୋହନ ଦାସ, ଅଚ୍ୟୁତାନନ୍ଦ ଦାସ, ମିହିର କୁମାର ଆଚାର୍ଯ୍ୟ (ସାମ୍ବାଦିକ), ଶ୍ୟାମସୁନ୍ଦର ମହାପାତ୍ର, ଯଦୁନାଥ ଦାଶ ମହାପାତ୍ର, ରବୀନ୍ଦ୍ର କୁମାର ଦାସ, ବଟବିହାରୀ ଦାସ, ସୁକୁମାର ସାହୁ ପ୍ରଭୃତି ।

ଫକୀର ମୋହନ ସାହିତ୍ୟ ପରିଷଦକୁ କେନ୍ଦ୍ରକରି ବାଲେଶ୍ୱରର ବିଶିଷ୍ଟ ସାହିତ୍ୟିକ, ସଂସ୍କୃତି ପ୍ରେମୀ ଓ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହ ମୋର ନିବିଡ଼ ପରିଚୟ ଘଟିଥିଲା । ବାଲେଶ୍ୱରର ବିଭିନ୍ନ ସ୍ଥାନରେ ଚିନ୍ତାମଣି ବାବୁ ଓ ମୁଁ ସାହିତ୍ୟ ଓ ସଂସ୍କୃତି ସଂପର୍କରେ ଭାଷଣ ଦେବା ଫଳରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲୁଁ । ସେତେବେଳେ ଫକୀର ମୋହନ ସାହିତ୍ୟ ପରିଷଦ ପକ୍ଷରୁ ନିୟମିତ ଭାବରେ ଶାନ୍ତିକାନନରେ ପାଠଚକ୍ର ଅନୁଷ୍ଠିତ ହେଉଥିଲା । ଫକୀର ମୋହନଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିର୍ମିତ ଗୃହର ପ୍ରଶସ୍ତ ବାରଣ୍ଡାରେ ଏ ପାଠଚକ୍ର ବସୁଥିଲା । ବାଲେଶ୍ୱରର କବି ଓ ଲେଖକମାନେ ପାଠଚକ୍ରରେ ଯୋଗଦାନ କରି ସ୍ୱରଚିତ କବିତା, ଗଳ୍ପ ଆଦି ପାଠ କରୁଥିଲେ । ସାମ୍ବାଦିକ ମିହିର କୁମାର ଆଚାର୍ଯ୍ୟ ପାଠଚକ୍ର ଓ ପ୍ରତ୍ୟେକ ସଭାର ବିବରଣୀ ସମାଜ ଓ ମାତୃଭୂମିରେ ପ୍ରକାଶ କରୁଥିଲେ । ଚିନ୍ତାମଣି ବାବୁ ଓ ମୁଁ ଦୁଇଜଣ ଅଧ୍ୟାପକ ସାହିତ୍ୟ ପରିଷଦ ସହ ସଂପୃକ୍ତ ଥିବାରୁ କଲେଜ୍ ସହ ଫକୀର ମୋହନ ସାହିତ୍ୟ ପରିଷଦର ସଂପର୍କ ନିବିଡ଼ତର ହୋଇଥିଲା । ବହୁ ଅଧ୍ୟାପକ ଓ ଛାତ୍ରଛାତ୍ରୀ ଫକୀର ମୋହନ ସାହିତ୍ୟ ପରିଷଦର ସଭ୍ୟ ହୋଇଥିଲେ ଏବଂ ପରିଷଦର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦାନ କରି ସହରରେ ଏକ ଉଚ୍ଚାଙ୍ଗ ସାହିତ୍ୟିକ ଓ ସାଂସ୍କୃତିକ ବାତାବରଣ ସୃଷ୍ଟି କରିଥିଲେ ।

ମୁଁ ଚାରିପାଞ୍ଚ ବର୍ଷ ଫକୀର ମୋହନ ସାହିତ୍ୟ ପରିଷଦର ଉପସଭାପତି ଏବଂ ଗୋଟିଏ ବର୍ଷ (୧୯୬୭) ସଭାପତି ଥିଲି । ପରିଷଦର ଦୁଇଟି ବଡ଼ ଉତ୍ସବ ହେଲା : ପ୍ରତିବର୍ଷ ଜାନୁୟାରୀ ମକର ସଂକ୍ରାନ୍ତିରେ ଫକୀର ମୋହନ ଜୟନ୍ତୀ ଏବଂ ରଜ ସଂକ୍ରାନ୍ତିରେ ଶ୍ରାଦ୍ଧୋତ୍ସବ । ଉଭୟ ଉତ୍ସବ ଦୀର୍ଘକାଳ ଧରି ପାଳିତ ହୋଇଆସୁଛି । ମକର ସଂକ୍ରାନ୍ତି ଉତ୍ସବଟି ବେଶ ଜାକଯମକରେ ଅନୁଷ୍ଠିତ ହୁଏ । ପ୍ରାୟ ଦୁଇତିନି ଦିନ ଧରି ଜୟନ୍ତୀ ଉଦ୍ଦେଶ୍ୟରେ ବିଭିନ୍ନ କାର୍ଯ୍ୟକ୍ରମ ଚାଲେ । ଜୟନ୍ତୀର ପ୍ରଥମ ଦିବସରେ (ମକର ସଂକ୍ରାନ୍ତିରେ) ଶାନ୍ତିକାନନର ଫକୀର ମୋହନଙ୍କ ମୂର୍ତ୍ତି ପାଖରେ ଉତ୍ସବ ଆରମ୍ଭ ହୁଏ । ବିଭିନ୍ନ ସାହିତ୍ୟିକ ଓ ନେତୃସ୍ଥାନୀୟ ବ୍ୟକ୍ତି ଉକ୍ତ ଉତ୍ସବକୁ ନିମନ୍ତ୍ରିତ ହୋଇ ଆସିଥାନ୍ତି । ଶଙ୍ଖଧ୍ୱନି ମଧ୍ୟରେ ଫକୀରମୋହନଙ୍କ ମୂର୍ତ୍ତିରେ ମାଲ୍ୟାର୍ପଣ କରାଯାଏ ଏବଂ ତାଙ୍କର ଜୀବନ ଓ ସାହିତ୍ୟ ସାଧନା ସଂପର୍କରେ ଆଲୋଚନା ହୁଏ । ସକାଳ ୯/୧୦ଟା ବେଳକୁ ପୂର୍ବାହ୍ନ ଅଧିବେଶନ ସରିଯାଏ । ମଧ୍ୟାହ୍ନରେ ସ୍କୁଲ୍ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବକ୍ତୃତା ଓ ଫକୀରମୋହନଙ୍କ କବିତା ଆବୃତ୍ତି ପ୍ରତିଯୋଗିତା ଅନୁଷ୍ଠିତ ହୁଏ । ସଂଧ୍ୟାରେ ହୁଏ ସାଧାରଣ ସଭା । ନିମନ୍ତ୍ରିତ କବି ଓ ସାହିତ୍ୟିକମାନେ ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟି ସଂପର୍କରେ ଆଲୋଚନା କରନ୍ତି । ଆଲୋଚନା ପରେ ଫକୀରମୋହନଙ୍କ ରଚନାକୁ ଭିତ୍ତି କରି ଏକାଙ୍କିକା/ନାଟକର ଅଭିନୟ ହୁଏ ।

ମୁଁ ଯେଉଁ ବର୍ଷ ସଭାପତି ଥିଲି ଦୁଇଦିନ ଧରି ଉତ୍ସବର ଆୟୋଜନ ହୋଇଥିଲା । ପ୍ରଥମ ଦିବସରେ ଫକୀର ମୋହନଙ୍କ ସାହିତ୍ୟ ସାଧନା ସଂପର୍କରେ ସେମିନାର୍ ଓ କବିତା ପାଠୋତ୍ସବ ଅନୁଷ୍ଠିତ ହୋଇଥିଲା । ଉତ୍ସବ ଉପଲକ୍ଷେ ଶାନ୍ତିକାନନର ଫକୀର ମୋହନ ସ୍ମୃତି ପରିଷଦ ଗୃହ, ମୂର୍ତ୍ତି, ସର୍ବଧର୍ମ ସମନ୍ୱୟ ସ୍ତମ୍ଭ ଏବଂ ବୃକ୍ଷଗୁଡ଼ିକ ଲିଚୁ ବଲ୍‌ବରେ ସୁସଜ୍ଜିତ କରାଯାଇଥିଲା । ବକ୍ତୃତା ଓ ଅଭିନୟ ପାଇଁ ଏକ ସ୍ୱତନ୍ତ୍ର ଅସ୍ଥାୟୀ ମଞ୍ଚ ନିର୍ମିତ ହୋଇଥିଲା । ଦ୍ୱିତୀୟ ଦିବସରେ ପ୍ରତିଯୋଗୀଙ୍କ ମଧ୍ୟରେ ପୁରସ୍କାର ବିତରଣ କରାଯାଏ । ମୁଁ ସଭାପତି ଥିବା ବର୍ଷ ସଂସ୍କୃତି ବିଭାଗର ମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ମୁଖ୍ୟ ଅତିଥି ଭାବରେ ଭାଷଣ ଦେଇଥିଲେ ଏବଂ ଗବେଷକ ଲଣ୍ଡନ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଶ୍ରୀ ବୋଲ୍‌ଟନ୍ ଓ ଶ୍ରୀମତୀ ବୋଲ୍‌ଟନ୍ ମଧ୍ୟ ଉତ୍ସବରେ ଯୋଗଦାନ କରିଥିଲେ ।

ଅନ୍ୟ ଗୋଟିଏ ବର୍ଷରେ ଡଃ ହରେକୃଷ୍ଣ ମହତାବ ମୁଖ୍ୟଅତିଥି ଭାବରେ ଯୋଗଦାନ କରି ଜୟନ୍ତୀ ଉତ୍ସବକୁ ସାଫଲ୍ୟମଣ୍ଡିତ କରିଥିଲେ । ଭାଷଣ ପ୍ରସଙ୍ଗରେ ବୃଦ୍ଧ ଫକୀର ମୋହନଙ୍କ ସହ ସହପାଠୀଙ୍କ ଗହଣରେ ତାଙ୍କର ସାକ୍ଷାତ୍ ସଂପର୍କରେ ବର୍ଣ୍ଣନା କରିଥିଲେ ।

ମୋ ପରେ ପରେ ବିଭିନ୍ନ ସମୟରେ ଶ୍ରୀ ଯଦୁନାଥ ଦାଶ ମହାପାତ୍ର (ପୂର୍ବତନ ଶିକ୍ଷାମନ୍ତ୍ରୀ), କବି ବ୍ରଜନାଥ ରଥ, ଶ୍ରୀ ବସନ୍ତ କୁମାର ଶତପଥୀ ଫକୀର ମୋହନ ସାହିତ୍ୟ ପରିଷଦର ସଭାପତି ହୋଇ ପରିଷଦର କାର୍ଯ୍ୟକ୍ରମକୁ ଅଧିକ ବ୍ୟାପକ ଓ ଗଭୀର କରିଛନ୍ତି । ଶ୍ରୀଯୁକ୍ତ ରଥଙ୍କ ସଭାପତିତ୍ୱରେ ବାଲେଶ୍ୱରରେ ଫକୀର ମୋହନ ସାହିତ୍ୟ ପରିଷଦ ପକ୍ଷରୁ କବି ସମ୍ମେଳନ, ପୁସ୍ତକ ପ୍ରଦର୍ଶନୀ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ସହଯୋଗରେ ସେମିନାର ମାନ ଅନୁଷ୍ଠିତ ହୋଇଯାଇଛି । ଶ୍ରୀଯୁକ୍ତ ରଥ ଓ ଶ୍ରୀଯୁକ୍ତ ଶତପଥୀଙ୍କ ସଂପାଦନାରେ ଫକୀର ମୋହନଙ୍କ ସଂପର୍କରେ ଏକ ପ୍ରାମାଣିକ ସମାଲୋଚନାମୂଳକ ପୁସ୍ତକ ପ୍ରକାଶିତ ହୋଇଛି (ତାଙ୍କର କେତୋଟି ଗଳ୍ପର ଇଂରାଜୀ ଅନୁବାଦ ସହ) ଏବଂ ପୂର୍ବ ପ୍ରକାଶିତ ଫକୀର ମୋହନ ସାହିତ୍ୟ ପରିକ୍ରମାର ଦ୍ୱିତୀୟ ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶିତ ହୋଇଯାଇଛି ।

## ଶାନ୍ତିକାନନର ସାନ୍ତ୍ୱନା :

ଫକୀରମୋହନଙ୍କର ଶାନ୍ତିକାନନରେ ନିର୍ମିତ କ୍ୱାର୍ଟର୍‌ରେ ଦୀର୍ଘ ଛ' ବର୍ଷକାଳ ରହିବାର ସୁଯୋଗ ମିଳିଥିବାରୁ ଶାନ୍ତିକାନନ ଓ ବାଲେଶ୍ୱର ପ୍ରତି ଏକ ମାୟାଜାତ ହୋଇଥିଲା । ଶାନ୍ତିକାନନର ଫକୀରମୋହନ ସ୍ମୃତି ମନ୍ଦିର, ମୂର୍ତ୍ତି, ସର୍ବଧର୍ମ ସମନ୍ୱୟ ସ୍ତମ୍ଭ ଓ ଫକୀରମୋହନଙ୍କ ସମୟରୁ ମନ୍ଦିର ମଧ୍ୟରେ ସୁପ୍ରତିଷ୍ଠିତ ମୂର୍ତ୍ତିର ତତ୍ତ୍ୱାବଧାନ ସହ ଏକ ସୁରମ୍ୟ ପୁଷ୍ପ ଉଦ୍ୟାନର ବ୍ୟବସ୍ଥା ବାଲେଶ୍ୱର ମ୍ୟୁନିସିପାଲିଟି ପକ୍ଷରୁ କରାଯାଇଛି । ମ୍ୟୁନିସିପାଲଟି ଶାନ୍ତିକାନନ ପରିସର ମଧ୍ୟରେ ଯେଉଁ କେତୋଟି କ୍ଷୁଦ୍ର କ୍ୱାର୍ଟର ନିର୍ମାଣ କରିଛି, ତା'ର ତତ୍ତ୍ୱାବଧାନ ସହ ସ୍ମୃତି ମନ୍ଦିରର ତତ୍ତ୍ୱାବଧାନ ତା'ର ଦାୟିତ୍ୱ ।

ଫକୀରମୋହନ ଓଡ଼ିଆ ଜାତିର ଭାଷା ଓ ସାହିତ୍ୟର ଗର୍ବ ଓ ଗୌରବ । ତାଙ୍କ ନାମରେ ବାଲେଶ୍ୱର ମହାବିଦ୍ୟାଳୟର ନାମ ଫକୀରମୋହନ ମହାବିଦ୍ୟାଳୟ ହୋଇଛି । ତାଙ୍କର ଶାନ୍ତିକାନନ ଓଡ଼ିଆ ଜାତି ପକ୍ଷରେ ଏକ କ୍ଷୁଦ୍ର ଅଥଚ ମନୋଜ୍ଞ ତୀର୍ଥସ୍ଥାନ । ଫକୀର ମୋହନଙ୍କ ଜୀବିତାବସ୍ଥାରେ ଉତ୍କଳର ବହୁ ସାହିତ୍ୟିକ, ଶିକ୍ଷାବିତ୍ ଓ ନେତୃସ୍ଥାନୀୟ ବ୍ୟକ୍ତି ତାଙ୍କର ବାସସ୍ଥଳୀକୁ ଆସି ତାଙ୍କୁ ସମ୍ମାନିତ କରିଯାଉଥିଲେ । ନିଜେ ଫକୀର ମୋହନ ତାଙ୍କର ଆତ୍ମଜୀବନ ଚରିତରେ ତାଙ୍କର ମଲ୍ଲିକାଶପୁରସ୍ଥିତ ବାସଭବନରେ ପଲ୍ଲୀକବି ନନ୍ଦକିଶୋରଙ୍କ ରହଣି, ଏବଂ ନିଃସଙ୍ଗ ଭାବରେ ବାସକାଳରେ ତତ୍କାଳୀନ ବିହାର ଓଡ଼ିଶା କାଉନ୍‌ସିଲ୍ ସଭ୍ୟ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଅକୁଣ୍ଠ ସହାନୁଭୂତି ସଂପର୍କରେ ମର୍ମସ୍ପର୍ଶୀ ଭାଷାରେ ଉଲ୍ଲେଖ କରିଛନ୍ତି । ବ୍ୟାସକବି ତାଙ୍କ ବାସଭବନ ପରିସରରେ ଦ୍ୱିତୀୟା ପତ୍ନୀ କୃଷ୍ଣକୁମାରୀଙ୍କ ଉଦ୍ଦେଶ୍ୟରେ ଯେଉଁ ସ୍ମୃତିସ୍ତମ୍ଭ ନିର୍ମାଣ କରିଥିଲେ ତା'ର ଅସ୍ତିତ୍ୱ ଏ ଅବଧି ରହିଛି । ତାଙ୍କର ବାସଭବନ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ରହିଛି । ବାସଭବନର ଜାତୀୟକରଣ ସଂପର୍କରେ ପ୍ରସ୍ତାବ ହୋଇଯାଇଛି । ବାସଭବନ ପରିସର, ଶାନ୍ତିକାନନ ପରିସରସ୍ଥ ଫକୀର ମୋହନଙ୍କ ହସ୍ତରୋପିତ ବୃକ୍ଷ ଓ ପୁଷ୍କରିଣୀ, ସ୍ୱ-ପ୍ରତିଷ୍ଠିତ ପ୍ରତିମୂର୍ତ୍ତି ଓ ସର୍ବଧର୍ମ ସମନ୍ୱୟ ସ୍ତମ୍ଭ ଏ ପର୍ଯ୍ୟନ୍ତ ତାଙ୍କର ଉଜ୍ଜ୍ୱଳ ସ୍ମାରକୀ ହୋଇ ରହିଛନ୍ତି ।

ମୋର ସଭାପତିତ୍ୱ ସମୟରେ ତତ୍‌କାଳୀନ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ହର ପ୍ରସାଦ ମହାପାତ୍ରଙ୍କ ପ୍ରତିଶ୍ରୁତି ଅନୁଯାୟୀ ବ୍ୟାସକବିଙ୍କ ଆବକ୍ଷ ମାର୍ବଲ ମୂର୍ତ୍ତି ନିର୍ମାଣ ସଂପର୍କରେ କିଛି ଅର୍ଥ (ପ୍ରାୟ ଛ'ହଜାର ଟଙ୍କା) ବରାମଦ ହୋଇଥିଲା । ବାଲେଶ୍ୱର ମ୍ୟୁନିସିପାଲିଟି ଜରିଆରେ ସେ ଅର୍ଥ ଦିଆଯାଇଥିଲା । ପରେ ସେଇ ଅର୍ଥ ସାହାଯ୍ୟରେ ଶାନ୍ତିକାନନରେ ତାଙ୍କର ମାର୍ବଲ ମୂର୍ତ୍ତି ପ୍ରତିଷ୍ଠିତ ହୋଇଯାଇଛି ।

ଶାନ୍ତିକାନନରେ ମୋର ଏକୁଟିଆ କ୍ୱାର୍ଟର୍‌ଟି ପଶ୍ଚିମ ସୀମାରେ ଅବସ୍ଥିତ । କ୍ୱାର୍ଟର୍‌ସ ପୂର୍ବକୁ ଗୋଟିଏ ପୋଖରୀ; ଦକ୍ଷିଣକୁ କେତୋଟି ଆମ୍ବ ଓ ବେଲ ଗଛ । ଗହୀରିଆ କୂଅଟିଏ । କ୍ୱାର୍ଟରସ୍‌ଟି ଏକୁଟିଆ ଅବସ୍ଥିତ ଥିବାରୁ ଆଲୋକ ଓ ପବନର ପ୍ରାଚୁର୍ଯ୍ୟ ସହ ଲେଖାପଢ଼ା ଦିଗରୁ ତା'ର ଆପାତ ନିର୍ଜ୍ଜନତା ମନରେ ଆନନ୍ଦ ଦେଉଥାଏ । ଘରଟି ନୂଆ ତିଆରି ହୋଇଥାଏ । କେହି ରହି ନଥାନ୍ତି । ଛାତ୍ର ଅରୁଣ ଦେ (ପରବର୍ତ୍ତୀ କାଳରେ ବିଧାନସଭା ସଦସ୍ୟ) ସହ ବୁଲିବାକୁ ଯାଇ ଘରଟିକୁ ଦେଖି ଆସେ । ମ୍ୟୁନିସିପାଲିଟି ଚେୟାର୍‌ମ୍ୟାନ ଜ୍ଞାନବାବୁଙ୍କ ସହୃଦୟତା ଫଳରେ କ୍ୱାର୍ଟର୍‌ସଟି ମିଳିଯାଏ । ଦଶହରା ପରେ ନଭେମ୍ବର ମାସରେ ବାରବାଟୀର ଭଡ଼ାଘର ଛାଡ଼ି ଶାନ୍ତିକାନନ କ୍ୱାର୍ଟରସ୍‌କୁ ଜିନିଷପତ୍ର ସହ ଚାଲିଆସେଁ । ଅନ୍ୟ କ୍ୱାର୍ଟରଗୁଡ଼ିକରେ ରହୁଥିଲେ ଗଣିତ ଅଧ୍ୟାପକ ପ୍ରଭାସ ଚନ୍ଦ୍ର ପାଲିତ, ଶଶଧର ଦାସ, ନିରଞ୍ଜନ ବେହେରା (ଲାବରେଟରୀ ଆସିଷ୍ଟାଣ୍ଟ), ଶିକ୍ଷକ ମୁରଲିଧର ପଣ୍ଡା ଏବଂ ଅଧ୍ୟାପକ ପ୍ରଭାକର ନନ୍ଦ ।

ଟୁକୁ, ତପନର ନାମ ଲେଖାଯାଏ ଆଜିମାବାଦ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ । କ୍ୱାର୍ଟରସ୍ ପରିବେଶଟି ଶାନ୍ତ ଓ ନିର୍ଜନ ହୋଇଥିବାରୁ ପିଲାମାନେ ଅବସର ସମୟରେ ସ୍ମୃତି ପରିଷଦ ପ୍ରାନ୍ତରରେ କ୍ରୀଡ଼ାମୋଦରେ ମାତିଯାଆନ୍ତି । ତପନ ଟିକିଏ ଦୁଃସାହସୀ ଥିବାରୁ ମଝିରେ ମଝିରେ କିଛି ନା କିଛି ଦୁଷ୍ଟାମି ତାର ପ୍ରକାଶ ପାଉଥାଏ । ବେଳେବେଳେ ଶାନ୍ତିକାନନର ଗଛ ଉପରକୁ ଚଢ଼ିଯାଏ । ଥରେ ଖରାଦିନେ ପାଚିଲା ବେଲ ପାରିବାପାଇଁ ଶାନ୍ତିକାନନର ଗୋଟିଏ ଗଛର ଅଗ୍ରଭାଗକୁ ଚାଲିଯାଉଥିଲା । ଧମକ ଖାଇ ଆଉ ସେପରି ଦୁଃସାହସ ପ୍ରକାଶ କରେ ନାହିଁ; କେବଳ ପୋଖରୀକୁ ଥାଏ ଭୟ । ବାଲେଶ୍ୱରରେ ପୋଖରୀ ସଂଖ୍ୟା ବହୁତ । ପୋଖରୀରେ ବୁଡ଼ି ମରିବା ଘଟଣା ବହୁତ ଶୁଣାଯାଏ । ଖରାଦିନେ ୟୁ.ପି. ପରୀକ୍ଷା ଦେଇ ଗୋପୀନାଥ ମିଶ୍ରଙ୍କ (ଓଡ଼ିଆ ଅଧ୍ୟାପକ) ଝିଅ ସହ ଆଉ ଗୋଟିଏ ଝିଅର କଲେଜ୍ ପୂର୍ବପାଖ ବୁଢ଼ୀ ପୋଖରୀରେ ସଲିଳ ସମାଧି ସମସ୍ତଙ୍କୁ ଶୋକାକୁଳ କରି ଦେଇଥିଲା । ଆମ କ୍ୱାର୍ଟର୍‌ସକୁ ଲାଗିଥିବା ପୋଖରୀରେ ପିଲାମାନେ ବେଳେବେଳେ ପହଁରନ୍ତି । ଥରେ ଟୁକୁ (ବଡ଼ପୁଅ) ପହଁରିବା ସମୟରେ ବେଶି ପାଣିକୁ ଚାଲିଯାଇ ଦୁଇ ଚାରି ହାବୁକା ପାଣି ପିଇଦେଲାଣି । ମା' ତାର ହଠାତ୍ ଦେଖିପାରି ପୋଖରୀକୁ ଡେଇଁ ପହଁରି ପହଁରି ତାକୁ କୂଳକୁ ଘେନି ଆଣେ (ଖରସ୍ରୋତା ନଦୀରେ ପହଁରା ଅଭ୍ୟାସ ହେତୁ) । ଆଉଥରେ ସାନପୁଅ ବୁଲୁ ଓ ନନ୍ଦବାବୁଙ୍କ ଝିଅ ତୁଠରେ ଖେଳୁ ଖେଳୁ ବେଶି ପାଣିକୁ ଚାଲିଯାଆନ୍ତି । ନନ୍ଦବାବୁ ଦଉଡ଼ି ଆସି ପାଣିରୁ ସେମାନଙ୍କୁ ଉଦ୍ଧାର କରନ୍ତି । ଏଇମିତି ମଣିଷର ଜୀବନ ଧାରଣ କରି ବଞ୍ଚି ରହିବା ଭଗବତ୍ ଆଶୀର୍ବାଦ ଛଡ଼ା କିଛି ନୁହେଁ ।

## କଲେଜ୍ ଲାଇବ୍ରେରୀ :

କଲେଜ୍‌ରେ ଅଧ୍ୟାପନା ଓ ସଭାସମିତିରେ ବକ୍ତୃତାଦାନ ଫଳରେ ଛାତ୍ର, ଅଧ୍ୟାପକ ଓ ସାଧାରଣ ବ୍ୟକ୍ତିଙ୍କ ଦୃଷ୍ଟି ଆକର୍ଷଣ କରେଁ । କଲେଜ୍ ଲାଇବ୍ରେରୀରେ ମନମୋହନ ଦାସ ଓ ହେମନ୍ତ କୁମାର ଦାସ ଦୁଇଜଣ ପୋଖତ ଲାଇବ୍ରେରୀୟାନ୍ ଥାଆନ୍ତି । ମନମୋହନ ଦାସ ଓଡ଼ିଆରେ ଏମ୍.ଏ. ପାଶ କରିଥିଲେ । ସେ ଥିଲେ ଅଧ୍ୟାତ୍ମବାଦୀ, ସରଳ ଓ ଉଦାର ସ୍ୱଭାବର ଲୋକ । ତାଙ୍କର ଭଦ୍ର ଓ ନମ୍ର ବ୍ୟବହାର, ଅଧ୍ୟାତ୍ମ ଚର୍ଚ୍ଚା, ଜ୍ଞାନାନୁସନ୍ଧିତ୍ସା ମୋତେ ବିଶେଷ ଭଲ ଲାଗିଥିଲା । ନିର୍ବିକାର ଚିତ୍ତରେ ଉଚ୍ଚ ଆସନୋପରି ଛାତ୍ରଛାତ୍ରୀଙ୍କୁ ପୁସ୍ତକ ପ୍ରଦାନ ବେଶ ଏକ ଆକର୍ଷଣୀୟ ଦୃଶ୍ୟ ।

ହେମନ୍ତ ବାବୁ ବାଲେଶ୍ୱରର ଜଣେ ବଙ୍ଗୀୟ ସନ୍ତାନ; ଚାକିରି ଆରମ୍ଭରୁ ଫକୀର ମୋହନ କଲେଜ୍ ଲାଇବ୍ରେରୀ ସହିତ ସଂପୃକ୍ତ ଥିବାରୁ ତାଙ୍କର ଅଧ୍ୟୟନ ସ୍ପୃହା ଓ ଭଦ୍ର ବ୍ୟବହାରରେ ମୁଁ ବିଶେଷ ଆନନ୍ଦିତ ଥିଲି । ଉଭୟ ମନମୋହନ ବାବୁ ଓ ହେମନ୍ତ ବାବୁ ସଂସ୍କୃତଠାରୁ ଆରମ୍ଭ କରି ବିଭିନ୍ନ ଭାଷାର (ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଇଂରାଜୀ) ପୁସ୍ତକ ଓ

ପୁରାତନ ପତ୍ରପତ୍ରିକା ପ୍ରାପ୍ତିରେ ମୋତେ ବିଭିନ୍ନ ସମୟରେ ଅକୁଣ୍ଠିତ ମନରେ ଆଗ୍ରହୀ ହୋଇ ନାନା ଭାବରେ ସାହାଯ୍ୟ କରିଛନ୍ତି । ଯେତେବେଳେ ଯେଉଁ ବହି ମୋର ଦରକାର ହୋଇଛି, ମୁଁ ତାଲିକା ଦେବାମାତ୍ରେ ଲାଇବ୍ରେରୀକୁ ଅଣାଇବାର ବ୍ୟବସ୍ଥା କରିଛନ୍ତି ।

## ଗବେଷଣା ପ୍ରସ୍ତୁତି :

ଯେତେବେଳେ ମୁଁ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଉପରେ ଗବେଷଣା କରୁଥିବାରୁ ସଂସ୍କୃତ ସାହିତ୍ୟ, ଅଳଙ୍କାର ଶାସ୍ତ୍ର ଓ ବୈଷ୍ଣବ ସାହିତ୍ୟ ସଂପର୍କିତ ବହୁ ମୌଳିକଗ୍ରନ୍ଥ ଲୋଡ଼ିଥିଲି । ବୈଷ୍ଣବ ସାହିତ୍ୟ ସଂପର୍କରେ ବହୁ ପୁରାତନ ଗ୍ରନ୍ଥ ଲାଇବ୍ରେରୀରେ ଥିଲା । ଗିରିଜା ଶଙ୍କର ରାୟ ଅଧ୍ୟକ୍ଷ ଥିଲାବେଳେ ସଂସ୍କୃତ, ବଙ୍ଗଳା ଓ ବୈଷ୍ଣବ ସାହିତ୍ୟର ବହୁ ଉପାଦେୟ ଗ୍ରନ୍ଥ କଲେଜ୍ ଲାଇବ୍ରେରୀକୁ ଅଣାଇଥିଲେ । ରୂପ ଗୋସ୍ୱାମୀ, ଜୀବ ଗୋସ୍ୱାମୀ, ସନାତନ ଗୋସ୍ୱାମୀ, ରଘୁନାଥ ଭଟ୍ଟ, କୃଷ୍ଣଦାସ କବିରାଜଙ୍କର ପ୍ରାମାଣିକ ବୈଷ୍ଣବ କାବ୍ୟ, ନାଟକ, ଅଳଙ୍କାର ଓ ରସଗ୍ରନ୍ଥଗୁଡ଼ିକ ସେଠାରୁ ପାଇ ମୁଁ ବିଶେଷ ଆନନ୍ଦିତ ଓ ଉପକୃତ ହୋଇଥିଲି । ବୈଷ୍ଣବଚରଣ ଦାସ ସଂକଳିତ ଓ ସତୀଶ ଚନ୍ଦ୍ର ରାୟ ସଂପାଦିତ ବିଖ୍ୟାତ 'ପଦକଳ୍ପତରୁ' ପାଇ ମୁଁ ବ୍ରଜବୁଲି ସାହିତ୍ୟ ଉପରେ ଏକ ଗବେଷଣାମୂଳକ ସନ୍ଦର୍ଭ ରଚନା କରିଥିଲି, ଯାହା ଓଡ଼ିଶା ସାହିତ୍ୟ ଏକାଡ଼େମୀର ମୁଖପତ୍ର 'କୋଣାର୍କ'ରେ ପ୍ରକାଶିତ ହୋଇଥିଲା । ବୈଷ୍ଣବ ସାହିତ୍ୟ ସଂପର୍କରେ ଅଧିକ ଜ୍ଞାନାର୍ଜନ ପାଇଁ ମୁଁ ଲାଇବ୍ରେରୀ ଜରିଆରେ ଡଃ ରାଧାଗୋବିନ୍ଦ ନାଥ ପ୍ରଣୀତ ପ୍ରକାଣ୍ଡ 'ଗୌଡ଼ୀୟ ବୈଷ୍ଣବ ଦର୍ଶନ'ର ଆଠଟି ଭାଗ ଲାଇବ୍ରେରୀକୁ ଅଣାଇ ଥିଲି । ଅଭିମନ୍ୟୁ ଜଣେ ପ୍ରଖ୍ୟାତ ବୈଷ୍ଣବ କବି ପୁଣି ମଧ୍ୟଯୁଗୀୟ ଓଡ଼ିଆ ଆଳଙ୍କାରିକ (ରୀତି) କବି ଥିବାରୁ ମୋର ଅଧ୍ୟୟନ ପରିସର ମଧ୍ୟରେ ସଂସ୍କୃତ ସାହିତ୍ୟ ଓ ଅଳଙ୍କାର ଶାସ୍ତ୍ରର ତାତ୍ତ୍ୱିକ ଭିତ୍ତିକୁ ବ୍ୟାପକ ଓ ଦୃଢ଼ କରିବାପାଇଁ କାଳିଦାସ, ଶ୍ରୀହର୍ଷ, ମାଘ, ଭାରବି, ବାଣଭଟ୍ଟ, ଭର୍ତ୍ତୃହରି ଭବଭୂତି ପ୍ରଭୃତିଙ୍କର ବିଖ୍ୟାତ ମହାକାବ୍ୟ, କାବ୍ୟ ଓ ନାଟକଗୁଡ଼ିକର ତୁଳନାତ୍ମକ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଅଳଙ୍କାର ଶାସ୍ତ୍ର ବା ସାହିତ୍ୟ ଶାସ୍ତ୍ରର ମୌଳିକ ଗ୍ରନ୍ଥଗୁଡ଼ିକ ଯଥା- ଭରତ-ନାଟ୍ୟଶାସ୍ତ୍ର, ଦଣ୍ଡୀ-କାବ୍ୟାଦର୍ଶ, ମମ୍ମଟଭଟ୍ଟ-କାବ୍ୟପ୍ରକାଶ, ଦଣ୍ଡୀ-କାର୍ବ୍ୟାଦର୍ଶ, ଆନନ୍ଦବର୍ଦ୍ଧନ- ଧ୍ୱନ୍ୟାଲୋକ, ଅଭିନବଗୁପ୍ତ-ଧ୍ୱନ୍ୟାଲୋକ (ଲୋଚନଟୀକା), ବାମନ-କାବ୍ୟାଳଙ୍କାର ସୂତ୍ର ବୃତ୍ତି, ବିଶ୍ୱନାଥ କବିରାଜ-ସାହିତ୍ୟ ଦର୍ପଣ, ଭୋଜରାଜଙ୍କର ଶୃଙ୍ଗାର ପ୍ରକାଶ, ସରସ୍ୱତୀ କଣ୍ଠାଭରଣ; କୁନ୍ତେକ-ବକ୍ରୋକ୍ତି ଜୀବିତ, ପଣ୍ଡିତରାଜ ଜଗନ୍ନାଥ-ରସଗଙ୍ଗାଧର, କ୍ଷେମେନ୍ଦ୍ର-ଔଚିତ୍ୟ ବିଚାର ଚର୍ଚ୍ଚା ସାନୁବାଦ ଅଧ୍ୟୟନ କରିବା ସହିତ ଭାରତୀୟ ଅଳଙ୍କାର ଶାସ୍ତ୍ର ଉପରେ ଭାରତର ପ୍ରଖ୍ୟାତ ପଣ୍ଡିତମାନଙ୍କର ରଚିତ ଗବେଷଣାମୂଳ ଗ୍ରନ୍ଥ ଆଗ୍ରହର ସହ ଅଧ୍ୟୟନ କରି ଆବଶ୍ୟକୀୟ ନୋଟ୍ କରିଥିଲି । ଏ କ୍ଷେତ୍ରରେ ଡଃ ସୁଶୀଳ କୁମାର ଦେ ଓ ଡଃ ସୁରେନ୍ଦ୍ର ନାଥ ଦାଶଗୁପ୍ତଙ୍କ ପ୍ରକାଣ୍ଡ ସଂସ୍କୃତ ସାହିତ୍ୟ ଇତିହାସ (History

of Sanskrit Literature), ଡଃ ଦେଙ୍କର ସଂସ୍କୃତ ଅଳଙ୍କାର ଶାସ୍ତ୍ରର ଇତିହାସ (History of Sanskrit Poetics), ସଂସ୍କୃତ ଅଳଙ୍କାର ଶାସ୍ତ୍ରର କେତୋଟି ସମସ୍ୟା (Some problems of Sanskrit Poetics), ସଂସ୍କୃତ ଅଳଙ୍କାର ଶାସ୍ତ୍ରର କେତୋଟି ବିଭାବ (Some Aspects of Sanskrit Poetics), କୁନ୍ତକଙ୍କର ବକ୍ରୋକ୍ତି ଜୀବିତ (Vakrokrit Jivita of Kuntaka) ; ଡଃ ଭି. ରାଘବନ୍‌ଙ୍କର ରସସଂଖ୍ୟା (Number of Rasas), ଅଳଙ୍କାର ଶାସ୍ତ୍ରର କେତୋଟି ଚିନ୍ତା ଉପରେ ଅଧ୍ୟୟନ (Studies in some concepts of Alankars sastra), ଭୋଜ ରାଜଙ୍କର ଶୃଙ୍ଗାର ପ୍ରକାଶ (ସଂପାଦନା); ପି.ସି. ଲାହିଡ଼ୀଙ୍କର ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ରୀତି ଓ ଗୁଣର ଚିନ୍ତାଧାରା (Concepts of Riti & Guna in Sanskrit Poetics in their Historical Development) ; ପି.ଭି. କାନେଙ୍କର (History of Alankara litarature); କେ.ସି. ପାଣ୍ଡେଙ୍କର ତୁଳନାତ୍ମକ ସୌନ୍ଦର୍ଯ୍ୟଶାସ୍ତ୍ର (Comparative Aesthetics, Eastern and Western); କୃଷ୍ଣ ଚୈତନ୍ୟଙ୍କର ସଂସ୍କୃତ ଅଳଙ୍କାର ଶାସ୍ତ୍ର (Sanskrit Poetics), ଆର.ସି. ଦ୍ୱିବେଦୀଙ୍କର (Principles of Literary Criticism in Sanskrit), ଡଃ ରାଘବନ୍ ଓ ଡଃ ନଗେନ୍ଦ୍ର ସଂପାଦିତ (Sanskrit Poetics) ବଳଦେବ ଉପାଧ୍ୟାୟଙ୍କର ସାହିତ୍ୟଶାସ୍ତ୍ର, ଅତୁଳଚନ୍ଦ୍ର ଗୁପ୍ତଙ୍କର କାବ୍ୟ ଜିଜ୍ଞାସା, ଡଃ ସୁଧୀର କୁମାର ଦାଶଗୁପ୍ତଙ୍କର କାବ୍ୟାଲୋକ, ଡଃ ସୁରେନ୍ଦ୍ରନାଥ ଦାଶଗୁପ୍ତଙ୍କର କାବ୍ୟ ମୀମାଂସା ପ୍ରଭୃତି ଗ୍ରନ୍ଥ ଉଲ୍ଲେଖଯୋଗ୍ୟ ।

ଅଭିମନ୍ୟୁ ସାମନ୍ତସିଂହାରଙ୍କ ଜୀବନୀ ଓ ସାହିତ୍ୟ ସୃଷ୍ଟି ସଂପର୍କିତ ସମୀକ୍ଷା ମୋର ଗବେଷଣାର ପ୍ରତିପାଦ୍ୟ ବିଷୟ ହେଲେ ମଧ ତାଙ୍କର ରଚନା ସହିତ ସଂପର୍କ ଥିବା ବୈଷ୍ଣବ ସାହିତ୍ୟର ମୌଳିକ ଗ୍ରନ୍ଥ ଓ ଗବେଷଣା-ସନ୍ଦର୍ଭ ସଂପର୍କରେ ମୁଁ ଏକପ୍ରକାର ବ୍ୟାପକ ଓ ଗଭୀର ଅଧ୍ୟୟନ କରି ଯେଉଁ ମୂଲ୍ୟବାନ ନୋଟ୍ କରିଛି ସେଗୁଡ଼ିକ ବହୁ ଗବେଷଣାମୂଳକ ସନ୍ଦର୍ଭ ରଚନାରେ ବିଶେଷ ସହାୟକ ହେବ । ସାହିତ୍ୟର ଯଥାର୍ଥ ବିଚାର ପାଇଁ କେବଳ ପ୍ରାଚ୍ୟ ଅଳଙ୍କାର ଶାସ୍ତ୍ର ଅଧ୍ୟୟନ କଲେ ଯେ ହୋଇଯିବ, ତା' ନୁହେଁ, ଆମକୁ ପାଶ୍ଚାତ୍ୟ ସାହିତ୍ୟତତ୍ତ୍ୱ ତୁଳନାତ୍ମକ ଭାବରେ ଅଧ୍ୟୟନ କରିବାକୁ ହେବ । ଏ କ୍ଷେତ୍ରରେ ଆଜିକାଲି ପ୍ରାଚ୍ୟ ପାଶ୍ଚାତ୍ୟର ତୁଳନାତ୍ମକ ଅଧ୍ୟୟନ ମୂଳକ କେତୋଟି ଗ୍ରନ୍ଥ ପ୍ରକାଶ ପାଇଲାଣି (ଯଥା- Comparative Criticism, Eastern and Western, Sanskrit Poetics - Krisna Chaitanya) ଏତଦ୍‌ବ୍ୟତୀତ ସାଂପ୍ରତିକ କାଳରେ ସାହିତ୍ୟ ବିଶ୍ୱତୋମୁଖୀ ହୋଇ ପଡ଼ିବାରୁ ବିଶ୍ୱସାହିତ୍ୟ କ୍ଷେତ୍ରରେ ବିଭିନ୍ନ ସମୟରେ ଯେଉଁ ପ୍ରବୃତ୍ତିଗୁଡ଼ିକ ଲକ୍ଷିତ ହେଉଛି, ସେ ସଂପର୍କରେ ବର୍ତ୍ତମାନର ସାହିତ୍ୟିକ ଓ ସମୀକ୍ଷକଙ୍କୁ ଯେ ଅବହିତ ହେବାକୁ ହେବ, ଏଥିରେ ସନ୍ଦେହ ନାହିଁ । ସାହିତ୍ୟର ବହୁ ବିଷୟ ସହିତ ସଂପର୍କ ଥିବାରୁ ଏହାର ଯଥାର୍ଥ ସୃଷ୍ଟି ଓ ଆଲୋଚନା ପାଇଁ ବିଭିନ୍ନ ବିଷୟ ଓ ତତ୍ତ୍ୱ ସଂପର୍କରେ (ମନସ୍ତତ୍ତ୍ୱ, ସମାଜତତ୍ତ୍ୱ, ନୃତତ୍ତ୍ୱ, ଦର୍ଶନ, ସୌନ୍ଦର୍ଯ୍ୟ

ତତ୍ତ୍ୱ, ବିଭିନ୍ନ ବୈଜ୍ଞାନିକ ତଥ୍ୟ, ଆପେକ୍ଷିକ ତତ୍ତ୍ୱ, ବ୍ୟାପ୍ତିତତ୍ତ୍ୱ, ଆଣବିକ ତତ୍ତ୍ୱ) ପ୍ରାସଙ୍ଗିକ ଜ୍ଞାନ ଅର୍ଜନ କରିବାକୁ ହେବ । ଏ ସଂପର୍କରେ ଆଜିକାଲି ବହୁ ଗ୍ରନ୍ଥ ପ୍ରକାଶ ପାଇଲାଣି । ପୁଣି ବିଭିନ୍ନ ବିଷୟରେ (ସାହିତ୍ୟ, ବିଜ୍ଞାନ, ନୀତିଶାସ୍ତ୍ର, ଦର୍ଶନ, ସମାଜ ବିଜ୍ଞାନ) ବିଶ୍ୱକୋଷର ଅଭାବ ନାହିଁ । ସୀମିତ ଜୀବନ କାଳ ମଧ୍ୟରେ ସାହିତ୍ୟର ଅଧ୍ୟାପକ/ଛାତ୍ର ହୋଇ ଜଣେ ଯଥାର୍ଥ ସ୍ରଷ୍ଟା ଓ ସମୀକ୍ଷକ ହେବାକୁ ହେଲେ ଜ୍ଞାନର ବିଭିନ୍ନ ଶାଖା ସଂପର୍କରେ ସାଧାରଣ ଜ୍ଞାନ ନ ରହିଲେ ଯୁଗ ସହିତ ତାଳ ଦେଇପାରିବା ଅସମ୍ଭବ । ଏହାଛଡ଼ା ସାଂପ୍ରତିକ ପରିପ୍ରେକ୍ଷୀରେ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟର ପୁନର୍ମୂଲ୍ୟାୟନ ନ ହେଲେ (କାଳୋପଯୋଗୀ ପ୍ରାସଙ୍ଗିକ ଅଧ୍ୟୟନ) ତା'ର ପଠନ ଓ ଆଲୋଚନାର ଯଥାର୍ଥତା ରହିବ ନାହିଁ, ଏଥିପ୍ରତି ଅଧ୍ୟାପକ ଓ ଛାତ୍ରମାନଙ୍କୁ ଦୃଷ୍ଟି ଦେବାକୁ ହେବ ।

ଫକୀର ମୋହନ କଲେଜ୍ ଲାଇବ୍ରେରୀରେ ମୋର ଗବେଷଣା ସନ୍ଦର୍ଭ ପରିସର ବାହାରେ ବିଭିନ୍ନ ଭାଷାରେ ବହୁ ଉପାଦେୟ ଗ୍ରନ୍ଥ ରହିଥିବାରୁ ଝାଳ ଓ ଧୂଳିସୂସର ହୋଇ ମୋର ଜ୍ଞାନ ଓ ଆଲୋଚନାର ଉପଯୋଗୀ ବହୁଗ୍ରନ୍ଥର ତାଲିକା କରିଛି । ସେଗୁଡ଼ିକ ମଧ୍ୟରୁ କେତେଗୁଡ଼ିଏ ଅଧ୍ୟୟନ କରି ଆବଶ୍ୟକୀୟ ନୋଟ୍ ମଧ୍ୟ ରହିଛି ।

ଅନ୍ୟମାନଙ୍କ ପରି ଅଧ୍ୟାପକମାନଙ୍କର ପେଟପାଟଣାର ଚାହିଦା ଥିଲେ ମଧ୍ୟ ପେଟପୋଟଣା ଯଦି ଜୀବନରେ ଏକମାତ୍ର ଆଭିମୁଖ୍ୟ, ଏକମାତ୍ର ଧ୍ୟାନ ହୋଇଯାଏ, ତା'ହେଲେ ଅଧ୍ୟାପକ ଜୀବନ ବ୍ୟର୍ଥ ହୋଇଗଲା ବୋଲି ବୁଝିବାକୁ ହେବ । ଆହାର, ବିହାର, ନିଦ୍ରା ଓ ମୈଥୁନ ଏଇ ଜୈବିକ ପ୍ରୟୋଜନ ଦୃଷ୍ଟିରୁ ମନୁଷ୍ୟ କେବଳ ପଶୁସ୍ତରର; କିନ୍ତୁ ଏଇ ସ୍ତରରେ ଆବଦ୍ଧ ରହିଲେ ଜୀବନ ବ୍ୟର୍ଥ ହୋଇଯାଏ । ଭୟ, ଅପୂର୍ଣ୍ଣତା, ଅଶାନ୍ତି ଓ ଗୌଣତ୍ୱ ମଧ୍ୟରେ ଜୀବନ କ୍ଷତବିକ୍ଷତ ହୋଇପଡ଼େ । ଏହାର ଊର୍ଦ୍ଧ୍ୱକୁ ଉଠିବାପାଇଁ ଭଗବାନ ମନୁଷ୍ୟ ଜୀବନରେ ଆହୁରି ଉନ୍ନତ ସମ୍ଭାବନା ଦେଇଛନ୍ତି, ତା' ହେଉଛି ଜ୍ଞାନ ଓ ଆନନ୍ଦ । ଏଥିରେ ଜୀବନ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହୁଏ । ସେଥିପାଇଁ ତ ବିଶ୍ୱରେ ପଶୁତ୍ୱର ଊର୍ଦ୍ଧ୍ୱରେ ଜ୍ଞାନ, ବିଜ୍ଞାନ, ସଂସ୍କୃତି, ସଭ୍ୟତାର ଅନନ୍ତ ସମ୍ଭାବନା ଉନ୍ମୋଚିତ ହୋଇଯାଇଛି । ମନୁଷ୍ୟ ଅଳ୍ପରେ ଆନନ୍ଦ ପାଏ ନାହିଁ, ପାଏ ଭୂମାରେ, 'ଯୋ ବୈଭୂମା ତଦ୍ ସୁଖଂ, ନାଳ୍ପେ ସୁଖମସ୍ତି (ଛାନ୍ଦୋଗ୍ୟ ଉପନିଷଦ)। ସେଥିପାଇଁ ବିଶ୍ୱରେ ସାହିତ୍ୟ, ସଂଗୀତ, କଳା, ସ୍ଥାପତ୍ୟର ବିକାଶ କାଳେ କାଳେ ଦେଖାଯାଇଛି । ଭଗବାନ ଜଗତ ସୃଷ୍ଟି କରିଛନ୍ତି, ଜୀବନ ସୃଷ୍ଟି କରିଛନ୍ତି, କୌଣସି ପ୍ରୟୋଜନର ତାଡ଼ନାରେ ନୁହେଁ, ତାଙ୍କର ଏଇ ସୃଷ୍ଟିଲୀଳା କେବଳ ଆନନ୍ଦ ପାଇଁ । ମଣିଷ ଭଗବଦ୍ ସୃଷ୍ଟି, ତା'ର ଜୀବନରେ ସେଇ ପରାନନ୍ଦର କଣିକା ରହିଛି, କିନ୍ତୁ ରଜୋଗୁଣର ବିକ୍ଷେପ ଓ ତମୋଗୁଣର ଆବରଣ ହେତୁ ସେଇ ଆନନ୍ଦ-ଚୈତନ୍ୟର ପ୍ରକାଶ ହୋଇପାରେ ନାହିଁ; ତା'ର ପ୍ରକାଶ ହୁଏ ସତ୍ତ୍ୱଗୁଣ ଅଧିଷ୍ଠିତ ଚିତ୍ତ-ମୁକୁରରେ । ତେଣୁ ଧନ, କ୍ଷମତା ପ୍ରତିପତ୍ତି, ସ୍ୱାମୀ, ସ୍ତ୍ରୀ, ପୁତ୍ର ଏମାନେ ନିମିତ୍ତମାତ୍ର ହେଲେ ମଧ୍ୟ ମଣିଷ ଜୀବନର ଏମାନେ ସର୍ବସ୍ୱ ନୁହନ୍ତି । ଏମାନଙ୍କ ମେଳରେ ରହିଲେ ଜାଗତିକ ସୁଖ ଦୁଃଖର ତାଡ଼ନା ସହିବାକୁ

ହେବ; କିନ୍ତୁ ନିଜର ଅସଲ ସ୍ୱରୂପ ଯେ ଆନନ୍ଦ ସ୍ୱରୂପ : ଏ ସଂପର୍କରେ ମନୁଷ୍ୟ ସଚେତ ରହିଲେ ପଙ୍କ ମଧ୍ୟରେ ପଦ୍ମର ସନ୍ଧାନ ପାଇପାରିବ, ଅନ୍ଧକାର ମଧ୍ୟରେ କୋଟି ସୂର୍ଯ୍ୟର ଆଭା ଝଲସି ଉଠିବ । ସେଥିପାଇଁ ନିଷ୍କାମ, ନିରବଚ୍ଛିନ୍ନ, ଅହେତୁକୀ ସାଧନା ଦରକାର ।

ଏଇ ଲକ୍ଷ୍ୟନେଇ ଯେଉଁମାନେ ସାଧନା କରିଯାଇଛନ୍ତି; ସେମାନେ ଯୁଗେ ଯୁଗେ କବି, ମନୀଷୀ ନାମରେ ପରିଚିତ । ଜଗତର ସମସ୍ତ ସୁଖ ଦୁଃଖ, ଭାବ ଅଭାବ ଏବଂ ଆନୁକୂଲ୍ୟ ଓ ବୈପରୀତ୍ୟ ମଧ୍ୟରେ ସ୍ଥିତ-ପ୍ରଜ୍ଞ ରହି, ଜୀବନ ଓ ଜଗତର ଶତ ତାଡ଼ନା, ଉପେକ୍ଷା ଓ ଲାଞ୍ଛନାର କଷାଘାତ ସହି ବିଶ୍ୱବାସୀଙ୍କ ପାଇଁ ଅମୃତର, ଆଶା ଓ ଆଶ୍ୱାସନାର ବାଣୀ ଶୁଣାଇ ଯାଇଛନ୍ତି । ନିଜେ କମଠ ହୋଇ ପୃଥିବୀର ପାପଭାର ସହ୍ୟ କରିଛନ୍ତି ବିଶ୍ୱର ମଙ୍ଗଳପାଇଁ । ସେଥିପାଇଁ ତ ଏ ଦେଶର କେତେ ମୁନି, ଋଷି, କେତେ ସାଧୁସନ୍ଥ, କେତେ ମନୀଷୀ ଓ ମହାତ୍ମା ଆମର ଦିଗ୍‌ଦର୍ଶକ, ଆମର ଧ୍ରୁବତାରା ହୋଇ ରହିଛନ୍ତି । ଏ ଦେଶର କବି ପ୍ରେରଣା ପାଇଁ, ଆଶିଷ ପାଇଁ ମହାପୁରୁଷଙ୍କର ବନ୍ଦନା କରିଆସିଛି-

ଧ୍ୟେୟଂ ସଦା ପରିଭବଘ୍ନ ମଭୀଷ୍ଟ ଦୋହଂ
ତୀର୍ଥାସ୍ପଦଂ ଶିବ ବିରିଞ୍ଚିନୁତଂ ଶରଣ୍ୟମ୍ ।
ଭୃତ୍ୟାର୍ତ୍ତ୍ୟହଂ ପ୍ରଣତପାଳ ଭବାବ୍ଧି ପୋତଂ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ ॥

ଊନବିଂଶ ଓ ବିଂଶ ଶତାବ୍ଦୀରେ କେତେ ମନୀଷୀ, ମହାତ୍ମା, ଚିନ୍ତାଶୀଳ ଦାର୍ଶନିକ, ବୈଜ୍ଞାନିକ ଓ ଦେଶ ସେବକ ନିଜର ତ୍ୟାଗ, ନିଷ୍କାମ ସାଧନା ଓ ସେବା ହେତୁ ଆମର ପ୍ରାତଃ ସ୍ମରଣୀୟ ହୋଇ ଜୀବନର ପ୍ରତିମୁହୂର୍ତ୍ତରେ ନିଷ୍କାମ କର୍ମସାଧନାର ପ୍ରେରଣା ଦେଇଆସିଛନ୍ତି; ଏ କ୍ଷେତ୍ରରେ ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ରାଜା ରାମମୋହନ ରାୟ, ନିଗମାନନ୍ଦ ସରସ୍ୱତୀ, ମହାତ୍ମାଗାନ୍ଧୀ, ଅରବିନ୍ଦ, ସ୍ୱାମୀ ଶିବାନନ୍ଦ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଲାଇବ୍ରେରୀର ଚତୁର୍ଥଶ୍ରେଣୀ କର୍ମଚାରୀଙ୍କ ମଧ୍ୟରେ ସନ୍ତୋଷ ଏବେବି ସ୍ମରଣରେ ଆସନ୍ତି । କଲେଜ୍‌ର ବିଭିନ୍ନ ବିଭାଗରେ ବହୁ ଚତୁର୍ଥଶ୍ରେଣୀ କର୍ମଚାରୀ ନିଯୁକ୍ତି ଲାଭ କରୁଛନ୍ତି, କିନ୍ତୁ ସନ୍ତୋଷଙ୍କ ପରି ନିରଳସ, ସଦାପ୍ରସନ୍ନ, ସଚ୍ଚୋଟ ବ୍ୟକ୍ତି ଦେଖିବାକୁ ବିରଳ । ଯେଉଁ ବହି ଯେତେବେଳେ ଖୋଜିବା ପାଇଁ କୁହାଯାଉଥିବ, ବାହାର କରି ସନ୍ତୋଷ ନିଶ୍ଚୟ ରଖିଥିବେ । ପରିଶ୍ରମ ନ କରି ଫାଙ୍କି ଦେବାର ମନୋବୃତ୍ତି ମୁଁ ଦିନକ ପାଇଁ ଦେଖିନାହିଁ ।

## ବାଲେଶ୍ୱରର ନାନା ସ୍ମୃତି :

କଲେଜ୍ ହଲ୍‌ରେ ବିଭିନ୍ନ ସମୟରେ ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଭାଷଣ ଶୁଣିଛି । ଆମେରିକାର କବି ରବର୍ଟ ଫ୍ରଷ୍ଟଙ୍କର ପ୍ରକୃତିର ମନୋଜ୍ଞ ପୃଷ୍ଠଭୂମିରେ ତାଙ୍କ କବିତା ଆବୃତ୍ତିର

ଚମତ୍କାର ଆଲୋକଚିତ୍ର ଦେଖିଛି । କାର୍ତ୍ତିକ ପୂର୍ଣ୍ଣିମାରେ ବଳଙ୍ଗ ନଦୀ ବାଲିଘାଟରେ ବୋଇତ ଭସାଣ, ସୂନହଟରେ ଓ ସମୁଦ୍ରତୀରବର୍ତ୍ତୀ ଗ୍ରାମରେ ବୋଇତ ବନ୍ଦାଣ ଉତ୍ସବ, ବାଗ୍ ବୃନ୍ଦାବନ ପୋଖରୀ ତଟରେ ଅନ୍ନପୂର୍ଣ୍ଣା ଥିଏଟର୍ 'ଏ' ଗ୍ରୁପ୍ କଳାକାରଙ୍କର ଅଭିନୟ, ନୃତ୍ୟକଳା ମନ୍ଦିରର ଛାତ୍ରଛାତ୍ରୀଙ୍କର ନୃତ୍ୟ ଗୀତ ସମାରୋହ, ଇତିହାସ ପ୍ରସିଦ୍ଧ ଝାଡ଼େଶ୍ୱର ମନ୍ଦିରରେ ଶିବ ଚତୁର୍ଦ୍ଦଶୀ ପାଳନ ଉତ୍ସବ, ରେମୁଣାରେ କ୍ଷୀରଚୋରା ଗୋପୀନାଥ ଦର୍ଶନ : ଏସବୁ ଭୁଲିବାର ନୁହେଁ । ବାଲେଶ୍ୱରରେ ବିଭିନ୍ନ ସମୟରେ ବିବେକାନନ୍ଦ ଜୟନ୍ତୀ, ଫକୀର ମୋହନ ଜୟନ୍ତୀ, ଭଞ୍ଜ ଜୟନ୍ତୀ, କବିସୂର୍ଯ୍ୟ ଜୟନ୍ତୀ, ବୋଇତ ବନ୍ଦାଣ ଓ ଅନ୍ୟାନ୍ୟ ଉତ୍ସବମାନଙ୍କରେ ଭାଷଣ ଦେଇଛି । ଛାତ୍ରଛାତ୍ରୀଙ୍କ ସହ ଶିକ୍ଷାମୂଳକ ଭ୍ରମଣରେ ମହିଷାପାଟରେ ବଣଭୋଜି; ପୁରୀ ଓ କୋଣାର୍କ ମନ୍ଦିରର କାଳଜୟୀ କାରୁକାର୍ଯ୍ୟ, ଚାନ୍ଦିପୁର ନିକଟସ୍ଥ ସିକତାମୟ ସାଗରର ବେଳାଭୂମି, ନୀଳତରଙ୍ଗ ଆନ୍ଦୋଳିତ ବଙ୍ଗୋପସାଗରର ପ୍ରଶାନ୍ତ ଓ ବିସ୍ତୃତ ବକ୍ଷ, ସାଗରର ଦିଗ୍‌ବଳୟ ରେଖାରେ ଅରୁଣୋଦୟ ଏ ସମସ୍ତ ମୁଗ୍ଧ ଚିତ୍ତରେ ଲକ୍ଷ୍ୟ କରିଛି । ମନେଅଛି : ଥରେ କଲେଜ୍‌ର ଇତିହାସ ସୋସାଇଟି ପକ୍ଷରୁ ଚାନ୍ଦିପୁରରେ ହୋଇଥିଲା ବଣଭୋଜି । ଛାତ୍ରଛାତ୍ରୀ, ବହୁ ଅଧ୍ୟାପକ ସମୁଦ୍ର ବେଳାର ଝାଉଁବଣରେ ରୋଷେଇ ଆୟୋଜନ କରି ଲଞ୍ଚରେ ଯାଇଥିଲୁଁ ବଳଙ୍ଗମୁହାଣ ଦେଇ ସମୁଦ୍ର ଭିତରକୁ । ସମୁଦ୍ର ଭିତରେ ପ୍ରାୟ ଆଠ, ନ' ମାଇଲ୍ ପର୍ଯ୍ୟନ୍ତ ଯାତ୍ରା କରିଥିଲୁ । ପଛକୁ ଫେରି ଚାହାନ୍ତେ ବେଳାଭୂମି ଦେଖାଯାଉଥାଏ । ଉତ୍ତାଳ ତରଙ୍ଗରେ ଲଞ୍ଚଟିର ଉଠାପଡ଼ା ଦୃଶ୍ୟ ବେଶ ଉପଭୋଗ୍ୟ ହୋଇଥାଏ । ବଳଙ୍ଗ ସ୍ରୋତ ସମୁଦ୍ର ଜଳରେ ଯେଉଁଠି ମିଶିଯାଉଥାଏ, ସେ ଦୃଶ୍ୟ ଦେଖିବାର କଥା । ସମୁଦ୍ର ତୀରରେ ତରଙ୍ଗ ରାଜିର ନୃତ୍ୟ, ପକ୍ଷୀମାନଙ୍କର ମତ୍ସ୍ୟ ଶିକାର ଏବଂ ନାଲି-କଙ୍କଡ଼ାଗୁଡ଼ିକର ବାଲିରେ ବିଚରଣ ଓ ଗର୍ତ୍ତ ପ୍ରବେଶ ବେଶ କୌତୁକପ୍ରଦ ହୋଇଥାଏ । ସାଗର ବେଳାର ଝାଉଁବୀଥିରେ କଲେଜ୍‌ର ଛାତ୍ରୀଙ୍କର ମଧୁର କଣ୍ଠସ୍ୱର ଏବେବି ସ୍ମୃତିରେ ରହିଛି । ବାଲେଶ୍ୱରରୁ ସୁଦୂର ଖଡ଼୍‌ଗପୁର, ଲଙ୍କଳେଶ୍ୱର, ଇଡ଼୍‌ଦା, ରୁପ୍‌ସା, ନାମୋ, ସୋରୋ, ଖଇରା, ଭଦ୍ରକ, ତିହିଡ଼ି, ବାରିପଦା ପ୍ରଭୃତିରେ ବିଭିନ୍ନ ଉତ୍ସବରେ ଭାଷଣ ପ୍ରଦାନ କରି ଆନନ୍ଦ ପାଇଛି । ବାଲେଶ୍ୱର ରହଣି କାଳରେ ମୋର ସହପାଠୀ ଜୟକୃଷ୍ଣ ବେହେରା (ଆୟକର ଓକିଲ), ଡାକ୍ତର ଅଲେଖ ଚନ୍ଦ୍ର ମହାନ୍ତି, କବି ବ୍ରଜନାଥ ରଥ, ଲୋକସେବକ ବାଲେଶ୍ୱରର ଗାନ୍ଧୀ ରବୀନ୍ଦ୍ର ମୋହନ ଦାସ ପ୍ରଭୃତିଙ୍କର ସ୍ନେହ ସୌହାର୍ଦ୍ଦ୍ୟ ଅବିସ୍ମରଣୀୟ ରହିବ ।

## ହାଟ ମଧ୍ୟରେ ବ୍ରହ୍ମଜ୍ଞାନ :

ବାଲେଶ୍ୱର ମୋତିଗଞ୍ଜ ହାଟର ସଦ୍ୟ ପନିପରିବା ଓ ମାଛ ଥିଲା ବାଲେଶ୍ୱର ରହଣିର ଅନ୍ୟତମ ଆକର୍ଷଣ । ମୁଁ ଯେଉଁ ବର୍ଷ ବାଲେଶ୍ୱର ଗଲି ଇଲିଶିମାଛ କିଲୋ ତିନି ଟଙ୍କାରେ ବିକ୍ରି ହେବାର ଦେଖିଛି, କିଣିଛି ମଧ୍ୟ । ମଫସଲରୁ ବିଶେଷ ବଳଙ୍ଗ ସେପାରିରୁ

ବିଭିନ୍ନ ଋତୁରେ ଲୋକେ ବିଭିନ୍ନ ପ୍ରକାର ସଦ୍ୟ ପନିପରିବା ବଜାରରେ ଗଦା କରୁଥିବାରୁ କ୍ରେତାମାନଙ୍କ ପକ୍ଷରେ ତାହା ଥିଲା ଏକାନ୍ତ ଆକର୍ଷଣୀୟ । ଓଡ଼ିଶାର ଅନ୍ୟ ଅଞ୍ଚଳରେ ଡେମ୍ଫସହ ପାନକଡ଼ା ବିକ୍ରି କରାଯାଏ, କିନ୍ତୁ ବାଲେଶ୍ୱରରେ ଲକ୍ଷ୍ୟ କରିଛି : ଡେମ୍ଫ କାଟି ଦିଆଯାଇଥାଏ । ପୁଣି ପାନ ସହ ନିଶ୍ଚୟ ପତ୍ରରେ କିଛି ଚୂନ ଦେବେ ।

ବଜାରରେ ଆଉ ଗୋଟିଏ ଦୃଶ୍ୟ ମୁଁ କେବେ ଭୁଲିପାରିବି ନାହିଁ । ସଂଧ୍ୟା ୫/୬ଟା ବେଳେ ମୋତିଗଞ୍ଜ ପରିବା ବଜାରର ପୂର୍ବ ଆଡ଼କୁ ଟିକିଏ ଚାଲିଗଲେ ଗୋଟିଏ ଦୋକାନରେ ଦୁଇଜଣ ଲୋକଙ୍କୁ ପ୍ରାୟ ବହୁବାର ଦେଖିବାକୁ ପାଏଁ- ଜଣେ ହେଉଛି ଦୋକାନୀ, ଯେ କି ଚାବି ସଜାଡ଼ିବାଠାରୁ ଆରମ୍ଭ କରି ଟିଣରେ ନାନା କାମ କରେ । ଲୋକଟି ବାଙ୍ଗରା, ସ୍ୱାସ୍ଥ୍ୟବାନ୍; ମୁହଁରେ ଦାଢ଼ୀ ଓ ହସ ତା'ର ବ୍ୟକ୍ତିତ୍ୱକୁ ଆହୁରି ମଧୁର କରିଥାଏ । ଅନ୍ୟଜଣକ ହେଉଛନ୍ତି ଜଣେ ଧୋତି କାମିଜ ପିନ୍ଧା ବପୁବନ୍ତ ବ୍ୟକ୍ତି ଯେ କି ଦୋକାନୀ ସହିତ ଶାସ୍ତ୍ର ଓ ଜ୍ଞାନଚର୍ଚ୍ଚାରେ ବେଶ ବୁଡ଼ିଯାଇଥାନ୍ତି । ସେ ବ୍ୟକ୍ତି କେହି ନୁହଁନ୍ତି, ଫକୀର ମୋହନ କଲେଜ୍‌ର ଲାଇବ୍ରେରୀୟାନ୍ ମନମୋହନ ବାବୁ । ବହୁବାର ସେ ବାଟେ ଯାଇଛି; ସେମାନଙ୍କର ଆଲୋଚନା ଶୁଣି ଆନନ୍ଦ ପାଇଛି । ପାଖରେ ଆଉ ତିନି-ଚାରିଜଣ ଲୋକ ଆଗ୍ରହରେ ବସି ଶୁଣିବାର ଦେଖିଛି । କେହି କେହି ଭାବି ପାରନ୍ତି : ଏ ହାଟ ବଜାରରେ ବ୍ରହ୍ମଜ୍ଞାନ । କିନ୍ତୁ ଜ୍ଞାନଚର୍ଚ୍ଚା ହାଟ ବଜାରରେ ହେଉଥିଲେ ମଧ ଯେଉଁମାନେ ଏ ଚର୍ଚ୍ଚା କରିଥାନ୍ତି, ସେମାନେ ସମଧର୍ମା; ଶ୍ରଦ୍ଧାଳୁ ବ୍ୟକ୍ତି । ଭଗବଦ୍ ଚର୍ଚ୍ଚା ଯେଉଁଠି, ସେଠାରେ ଭଗବାନଙ୍କର ଅଧିଷ୍ଠାନ । ମୋ ଦୃଷ୍ଟିରେ ସେ ଦୋକାନଟି ଗୋଟିଏ ମନ୍ଦିର । ତାଙ୍କ ଆଲୋଚନାରେ କେତେଥର ଆଗ୍ରହୀ ହୋଇ ଭାଗ ନେଇଛି, ଆନନ୍ଦ ପାଇଛି ।

## ଜ୍ଞାନରଂଜନ ପଟ୍ଟନାୟକ :

ଶାନ୍ତିକାନନ ପାଖରେ ମଲ୍ଲିକାଶପୁରରେ ଜ୍ଞାନରଂଜନ ପଟ୍ଟନାୟକଙ୍କ ଘର ରାସ୍ତା ପାଖରେ ଥିବାରୁ ସବୁବେଳେ ଆମ ଦୃଷ୍ଟିରେ ପଡ଼େ । ଜ୍ଞାନବାବୁ ବାଲେଶ୍ୱର ମ୍ୟୁନିସିପାଲିଟିର ଚେୟାର୍‌ମ୍ୟାନ । ରାସ୍ତାର ପୂର୍ବପାଖ ଜାଗାରେ ସୁନ୍ଦର ଫୁଲବଗିଚା କରିଥାନ୍ତି । ବଗିଚା ତଳକୁ ପୋଖରୀଟିଏ । ବିଭିନ୍ନ ଋତୁରେ ଜ୍ଞାନବାବୁ ଓ ତାଙ୍କ ସ୍ତ୍ରୀ ଦୁହିଁଙ୍କୁ ସେଥିରେ ଖଟିବାର ଦେଖିଛି । ସେଇ ବାଟେ କଲେଜକୁ ଯିବାକୁ ପଡୁଥିବାରୁ ସେମାନଙ୍କ ସହ ଘନିଷ୍ଠ ସଂପର୍କ ସ୍ଥାପିତ ହୁଏ । ପୁଣି ବୁଝୁ ବୁଝୁ ତାଙ୍କ ସ୍ତ୍ରୀ ହେଉଛନ୍ତି ଯାଜପୁର ନିକଟସ୍ଥ ରାମବାଗ୍‌ର ମୋ ସତୁର ପିଉସୀ । ଦୂର ବନ୍ଧୁବାନ୍ଧବ ସଂପର୍କ ସଂପର୍କରେ ଅବଗତ ହେବାରୁ ତାଙ୍କର ସ୍ତ୍ରୀ ମୋର ସ୍ତ୍ରୀ ଓ ପିଲାମାନଙ୍କ ନିକଟତମ ସଂପର୍କରେ ଆସନ୍ତି । ବିଭା ନିମିତ୍ତ ଓ ଅନ୍ୟାନ୍ୟ ଉତ୍ସବରେ ନିମନ୍ତ୍ରଣ ଆସେ । ଜ୍ଞାନବାବୁଙ୍କ ସ୍ତ୍ରୀ ଓ ଝିଅମାନେ ଅନେକ ସମୟରେ ଆମ ବସାକୁ ଆସନ୍ତି । ସଂପର୍କରେ ମୋର ପିଲାମାନେ ଜ୍ଞାନବାବୁଙ୍କର ନାତି ହୋଇଥିବାରୁ କାନ୍ଧରେ

ହାତ ପକାପକି ହୋଇ ତାଙ୍କ ଘରବାଟେ ଗଲାବେଳେ ତାଙ୍କ ସହ ଥଟ୍ଟା କରନ୍ତି । ବେଳେବେଳେ ଥଟ୍ଟା କରି କହନ୍ତି- ଗୋଟିଏ ହେଉଛି ବିଛୁଆତି, ଆଉ ଗୋଟିଏ ବାଇତଙ୍କ ।

ତାଙ୍କ ଫୁଲ ବଗିଚା ସଂପର୍କରେ ପଚାରିଲେ ସେ କହନ୍ତି- ଏ ହେଉଛି ଫକୀର ମୋହନଙ୍କର ଶିକ୍ଷା । ଫକୀର ମୋହନଙ୍କ ବୃଦ୍ଧବୟସ ବେଳକୁ ସେ (ଜ୍ଞାନବାବୁ) ଥିଲେ ପାଞ୍ଚ ସାତ ବର୍ଷର ପିଲା । ଫକୀର ମୋହନ ଫୁଲ, ଗଛଲତା ସବୁକୁ ଭାରୀ ଭଲପାଉଥିଲେ । ଶାନ୍ତିକାନନରେ ଆମ୍ବ, ବେଲଠାରୁ ଆରମ୍ଭ କରି ନାନା ପ୍ରକାର ଗଛ ଲଗାଇଥିଲେ । ପୋଖରୀ ଖୋଳାଇ ଚାନ୍ଦିନୀ କରି ତା' ଉପରେ ବସି ଲେଖୁଥିଲେ । ଚୌବଚା କରି ସେଥିରେ ନାଲି, ନେଳି ରଂଗର ମାଛ ଛାଡ଼ିଥିଲେ । ଶାନ୍ତିକାନନରେ ଗଛ, ବୃଛର ଯତ୍ନ ନେବା ସଂଗେ ସଂଗେ ବିଭିନ୍ନ ଋତୁରେ ନାନା ଫୁଲ ଉଞାରନ୍ତି । ସେ ଏତେ ଗଛଲତା ପ୍ରିୟ ଥିଲେ ଯେ କେହି ଡାଳଟିଏ ଭାଙ୍ଗି ଦେଲେ, ପତ୍ରଟିଏ ଛିଡ଼ାଇ ଦେଲେ ପ୍ରାଣରେ କଷ୍ଟ ଅନୁଭବ କରନ୍ତି । ସେ କହନ୍ତି ଗଛପତ୍ର ଲଗାଇବା ହେଉଛି ଏକପ୍ରକାର ପୂଜା । ତା'ଦ୍ୱାରା ମନୁଷ୍ୟର ପ୍ରକୃତି ପ୍ରତି ଶ୍ରଦ୍ଧା ବଢ଼ିବା ସଂଗେ ସଂଗେ ବୃକ୍ଷଲତା ଗହଣରେ ମଣିଷ ବିଶୁଦ୍ଧ ପବନ ଓ ଅମ୍ଳଜାନ ପାଇବା ସଂଗେ ସଂଗେ ତା'ର ଫୁଲ ଫଳରେ ଆନନ୍ଦ ପାଏ । କୋଇଲିଟିଏ ଆମ୍ବ ଡାଳରେ ବସି କୁହୁ କୁହୁ କରୁଥିଲେ, ନାନା ଜାତିର ପକ୍ଷୀ ପକ୍ଷବିସ୍ତାର କରି କାକଳି କରୁଥିଲେ କାହା ପ୍ରାଣ ପୂରି ନ ଉଠେ ? ଛାୟାରେ କେଉଁ ପଥିକର ପ୍ରାଣ ଶୀତଳ ନ ହୁଏ ? ବୃକ୍ଷ ସେବା ଫଳରେ ମଣିଷର ଦୈହିକ ପରିଶ୍ରମ ସହ ତା'ର ସୌନ୍ଦର୍ଯ୍ୟବୋଧର ବିକାଶ ହୁଏ । ବୃଦ୍ଧଙ୍କର ସେଇ ଆଦର୍ଶ ଦ୍ୱାରା ପିଲାଦିନରୁ ପ୍ରଭାବିତ ହୋଇ ଏଇ ବଗିଚା କରିଚାଲିଛି, ଏଥିରେ ପ୍ରକୃତରେ ଆନନ୍ଦ ପାଉଛି ।

ଫକୀରମୋନହଙ୍କ ସଂପର୍କରେ ସେ ତାଙ୍କର ଅନ୍ୟ ଅନୁଭୂତି ବର୍ଣ୍ଣନା କରି କହନ୍ତି- ବାର୍ଦ୍ଧକ୍ୟରେ ଫକୀର ମୋହନ ଏକୁଟିଆ ତାଙ୍କ କୋଠାରେ ରହୁଥିଲେ । ସାଙ୍ଗରେ ଗୋଟିଏ ଗୁମାସ୍ତା, ରୋଷେୟା ଓ ଚାକର ରହୁଥିଲେ । ବେଳେବେଳେ ଗୋପବନ୍ଧୁ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କୁ ଦେଖିବାକୁ ଆସୁଥିଲେ । ଶେଷ ଜୀବନରେ ଏକେ ତ ନିଃସଙ୍ଗ ଜୀବନ କଟାଉଥିଲେ; ପୁଅ ବୋହୂ ପାଖରେ ନଥିଲେ । ଏଣେ ବାପପୁଅଙ୍କ ମଧ୍ୟରେ ସବୁବେଳେ ସଂଘର୍ଷ ଚାଲିଥିଲା । ଫକୀର ମୋହନ ଈଶ୍ୱର ବିଶ୍ୱାସୀ ଥିଲାବେଳେ ତାଙ୍କ ପୁଅ ମୋହିନୀ ମୋହନ ଥିଲେ ନାସ୍ତିକ । ମୋତିଗଞ୍ଜ ବଜାରରେ ଥିବା ତାଙ୍କର ଗୋଟିଏ ଘର ବିକ୍ରି କରି ଜାପାନର ଶିଳ୍ପ ପ୍ରଦର୍ଶନୀ ଦେଖିବାକୁ ମନସ୍ଥ କରିବାରୁ ବାପପୁଅଙ୍କ ମଧ୍ୟରେ ସଂଘର୍ଷ ଓ ସଂଘର୍ଷରୁ ମୋକଦ୍ଦମା ପର୍ଯ୍ୟନ୍ତ ଚାଲିଲା । ଜ୍ଞାନବାବୁ କହନ୍ତି- ବୁଢ଼ା ଆସି ଆମ ଘରେ ବାପାଙ୍କ ପାଖରେ ( ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ଯେ କି ସରକାରୀ କର୍ମଚାରୀ ଥିବା ସଂଗେ ସଂଗେ ଫକୀର ମୋହନଙ୍କ ବାଲେଶ୍ୱର ସମ୍ବାଦ ବାହିକା ସଂପାଦନା କରୁଥିଲେ, ବାହିକା ପାଇଁ ମଧ୍ୟ ଲେଖା ଲେଖୁଥିଲେ) ବସି ଆଖିରୁ ଲୁହ ଝରାନ୍ତି । ବାପା ତାଙ୍କୁ ସାନ୍ତ୍ୱନା ଦେବାପରେ ସେ ଅଣ୍ଟାଦମ୍ଭ କରି ଖାଡ଼ା ହୋଇ ଠିଆହୋଇଯାଇ ଶପଥ କଲାଭଳି କହନ୍ତି- 'ମୋକଦ୍ଦମା

ଚାଲୁ, ଦେଖାଯାଉ କ'ଣ ହେଉଛି ।' ବେଳେବେଳେ ବୃଦ୍ଧ ଫକୀର ମୋହନ ଛାନବାବୁ ଓ ଅନ୍ୟ ପିଲାଙ୍କୁ ପାଖରେ ବସାଇ କୋମଳ କଣ୍ଠରେ ବୁଝାଇ କହନ୍ତି- 'ବାବାମାନେ ! ବାପ ମା' ଗୁରୁଜନଙ୍କ ମନରେ କେବେ କଷ୍ଟ ଦେବନାହିଁ; ସେମାନଙ୍କ ନିଃଶ୍ୱାସ ପଡ଼ିବ । ସେମାନଙ୍କର ସେବା କରିବାରେ କେବେହେଲେ ହେଳା କରିବ ନାହିଁ । ଛାନବାବୁ ଫକୀର ମୋହନଙ୍କର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିବାରୁ ମୁଁ ମୁଗ୍ଧ ଚିତ୍ତରେ ତାଙ୍କ କଥାଗୁଡ଼ିକ ଶୁଣେ ଏବଂ ବ୍ୟାସକବିଙ୍କଠାରୁ ପ୍ରତ୍ୟକ୍ଷ ଉପଦେଶ ଲାଭ କରୁଥିବା ପରି ମନେହୁଏ ।

୫/୬ଟା ବେଳେ ଶାନ୍ତିକାନନର ପରିଷଦ ଅଂଶକୁ ପିଲାଙ୍କ ସହ ବୁଲିଆସେ, ପିଲାମାନେ ଆନନ୍ଦରେ ସର୍ବଧର୍ମ ସମନ୍ୱୟ ସ୍ତମ୍ଭ ଚାରିପାଖରେ ଖେଳି ବୁଲନ୍ତି । ସେଥିରେ ଯୀଶୁ, ଚୈତନ୍ୟ ପ୍ରଭୃତି ଯେଉଁ ମହାପୁରୁଷମାନଙ୍କର ମୂର୍ତ୍ତି ଖୋଦିତ ହୋଇଥାଏ, ସେ ସଂପର୍କରେ ନାନା ପ୍ରଶ୍ନ କରନ୍ତି । ମୁଁ ସେମାନଙ୍କ ବୁଝିବା ଭଳି ଭାଷାରେ ସେଇ ମହାପୁରୁଷମାନଙ୍କ ସଂପର୍କରେ କହେଁ । ତପନ, ଅରୁଣ ସାନ ସାନ ହୋଇଥିବାରୁ ଫକୀର ମୋହନଙ୍କ ବଡ଼ ମୂର୍ତ୍ତି ପାଖକୁ ଯାଇ ତାଙ୍କ ବାଡ଼ି ଧରନ୍ତି, ମଜାରେ କହି କହି ନାଚି ଗାଇନ୍ତି- ଅଜାବୁଢ଼ା ବାଡ଼ି ଧରିଚି, ନିଶ ରଖିଚି, ପାଗ ଭିଡ଼ିଚି ।

ଭଦ୍ରକ ଓ ଅନ୍ୟାନ୍ୟ ଅଞ୍ଚଳରୁ ବେଳେବେଳେ କଲେଜ୍ ଛାତ୍ରଛାତ୍ରୀମାନେ ବାଲେଶ୍ୱର ଚାନ୍ଦିପୁର ବଣ ଭୋଜିରେ ଆସି ଶାନ୍ତିକାନନରେ ଘଣ୍ଟେ ଦୁଇ ଘଣ୍ଟା କଟାଇ ଯାଆନ୍ତି । ଥରେ ଅଧ୍ୟାପକ କୃଷ୍ଣଚରଣ ବେହେରା ଭଦ୍ରକ କଲେଜ୍‌ର ଛାତ୍ରଛାତ୍ରୀଙ୍କୁ ଧରି ବଣଭୋଜିରେ ଆସିଥିବାବେଳେ ଶାନ୍ତିକାନନରେ କବିତା ପାଠୋତ୍ସବ କରିଥିଲେ; ପାଠୋତ୍ସବକୁ ମୋତେ ଡାକିଥିଲେ ।

## ମୋର ବସାଘର :

ଶାନ୍ତିକାନନରେ ମୋ ବସାଘରଟି ଥିଲା ଛୋଟ, ଦୁଇଟି ମାତ୍ର ରୁମ୍, ଗୋଟିଏ ରୋଷେଇ ଘର, ଆଉ ଗୋଟିଏ ଷ୍ଟୋରରୁମ୍ । ପାଇଖାନା, ଗାଧୁଆଘର ଥିଲା । ଘରଟି ଏକୁଟିଆ ପୁଣି ପୋଖରୀ କୂଳରେ ଥିବାରୁ ସକାଳେ ଶୋଇବା ଘର ଝରକା ଖୋଲି ଦେଲେ ନାଲି ସୂର୍ଯ୍ୟକିରଣ ଘର ଭିତରେ ବିଛାଡ଼ି ପଡ଼େ । ଦକ୍ଷିଣମୁହାଁ ହୋଇଥିବାରୁ ଖରାଦିନେ ଘରଟି ବେଶ ଉପଭୋଗ୍ୟ ହୋଇଥାଏ । ଘର ସାମ୍ନାରେ ୩/୪ଟି ଆମ୍ବଗଛ, ଗୋଟିଏ ଜାମୁଗଛ, ଗୋଟିଏ ବେଲଗଛ । ଗଛଗୁଡ଼ିକ ହେତୁ ବସାଟି ବେଶ ରମଣୀୟ ଓ ସୁଖକର ହୋଇଥାଏ । ଖରାଦିନେ କଞ୍ଚା ଆମ୍ବ ପାରି ହେମ ବହୁବାର ଆମ୍ବୁଲ କରିଛି । ବସା ଆଗର ଜାମୁଗଛର ବଡ଼ ବଡ଼ କୋଳି ସାଇ ପିଲାମାନଙ୍କୁ ଆକୃଷ୍ଟ କରି ଆଣେ ।

ଶରତ୍ କାଳରେ ବାଲେଶ୍ୱର ଅଞ୍ଚଳରେ ଆଉ ଏକ ଦୃଶ୍ୟ ଦେଖିବାର କଥା । ସ୍ତ୍ରୀ ଲୋକମାନେ ବାଉଁଶରେ ଲୁଗାବାନ୍ଧି ଏକ ଏକ ଛଙ୍କା କରନ୍ତି; ଭିତରେ ଅଟା ଓ ତୁସ ଗୋଳା

ଗୋବର ପିଣ୍ଡୁଳା ଛାଡ଼ି ପୋଖରୀ ପାଣିରେ ଥୋଇ ଦେଇଆସନ୍ତି । କିଛି ସମୟ ପରେ ପାଣି ଭିତରୁ ଉଠାଇ ଆଣିଲେ ଗୁଡ଼ିଏ ଚୂନାମାଛ ଛଙ୍କାରେ ଚାଲିଆସନ୍ତି । ହେମ ଏଇ ଛଙ୍କା ସାହାଯ୍ୟରେ ଦିନେ ଦିନେ ଅଧକିଲେ ପର୍ଯ୍ୟନ୍ତ ମାଛଧରି ସୁନ୍ଦର ଭଜା କରି ଖୁଆଏ । ଥରେ ହେମ ଓ ପିଲାମାନଙ୍କୁ ଜିପ୍‌ରେ ନେଇ ଚାନ୍ଦିପୁର ସମୁଦ୍ରକୂଳ ବୁଲାଇ ଆଣିଥିଲି । ସମୁଦ୍ର ଦେଖି ପିଲାମାନେ ଆନନ୍ଦରେ ନାଚି ଉଠିଲେ ।

ଟୁକୁ, ତପନ ଓ ଅରୁଣ ବାଲେଶ୍ବର ଜିଲ୍ଲା ସ୍କୁଲ୍‌ରେ ପଢୁଥିଲେ । ସେମାନଙ୍କର ପଢ଼ା ଦିଗରେ ମୁଁ ବିଶେଷ ଯତ୍ନ ନେଉଥିଲି । ନିଜେ ଅବଧାନଙ୍କ ପରି ସେମାନଙ୍କର ଘର ରୁଟିନ୍ ତିଆରି କରି ସବୁ ବିଷୟ ବୈଜ୍ଞାନିକ ପଦ୍ଧତିରେ ପଢ଼ାଇ ସେମାନଙ୍କର ନିୟମିତ ଲେଖାପଢ଼ାର ଯେପରି ଅଭ୍ୟାସ ହୋଇପାରିବ, ସେଥିପ୍ରତି ଧ୍ୟାନ ଦେଉଥିଲି । ଟିଉସନ ମାଷ୍ଟର୍ ରଖିଥିଲେ ମଧ୍ୟ ମୁଁ ତାଙ୍କର ଶିକ୍ଷାଦାନ ପଦ୍ଧତି ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲି । ଆବଶ୍ୟକ ସ୍ଥଳେ ମାଷ୍ଟରଙ୍କୁ ମଧ୍ୟ ଶିକ୍ଷାଦାନ ସଂପର୍କରେ ପରାମର୍ଶ ଦେଉଥିଲି । ଏଇ ଯତ୍ନ ଫଳରେ ସେମାନଙ୍କର ଶିକ୍ଷାର ମାନ ଉନ୍ନତ ଧରଣର ହୋଇପାରିଥିଲା । ବିଶୁଦ୍ଧ ଭାବରେ ସେମାନେ ଓଡ଼ିଆ ଓ ଇଂରାଜୀ ଲେଖି ପାରୁଥିଲେ । ପିଲାମାନଙ୍କର ଚାଲିଚଳଣ ଓ ଗତିବିଧି ପ୍ରତି ସତର୍କ ଧ୍ୟାନ ରଖିଥିଲି । ପିଲାମାନଙ୍କର ପାଠ୍ୟପୁସ୍ତକ ବାହାରେ ଅନ୍ୟ ଉନ୍ନତ ପୁସ୍ତକ (ମହାପୁରୁଷଙ୍କ ଜୀବନୀ ନାଟକ, ଗଳ୍ପ ପୁସ୍ତକ ଆଦି) ପଠନର ଅଭ୍ୟାସ ଥିଲା । ସେମାନେ କଲେଜ୍ ଲାଇବ୍ରେରୀରୁ ମୋ ନାମରେ ବିଭିନ୍ନ ସମୟରେ ମନମୋହନ ବାବୁଙ୍କୁ କହି ବହି ଆଣୁଥିଲେ । ବହି ପଢ଼ିବାବେଳେ ଭୋକ ଶୋଷ ଭୁଲିଯାଉଥିଲେ । ଥରେ ଅରୁଣ ଗୋଟିଏ ବହିରୁ ଶ୍ରବଣକୁମାର କଥା ପଢ଼ି କାନ୍ଦି ପକାଇଲା; ମା' ପଚାରିବାରୁ କହିଲା- ଦଶରଥ ଶ୍ରବଣ କୁମାରକୁ ଶରରେ ମାରିଦେଲେ, ଶ୍ରବଣ କୁମାରର ଅନ୍ଧ ବାପା ମା' କେତେ କାନ୍ଦିଲେ ।

ବାଲେଶ୍ବରର ଛ' ବର୍ଷ ରହଣି ମଧ୍ୟରେ ଘରଟି ହେମକୁ ବେଶି ଆନନ୍ଦ ଦେଇଥିଲା । ଭାବିଥିଲା ଚାକିରି ଜୀବନ ଏଇମିତି ଆନନ୍ଦରେ କଟିଯିବ, ବୋଧହୁଏ ଏଠୁ ବଦଳି ହେବନାହିଁ ।

## ବଦଳି ଆଦେଶ :

କିନ୍ତୁ ଅପ୍ରତ୍ୟାଶିତ ଭାବରେ ବଦଳି ଆଦେଶ ଆସିଲା, ପୁଣି ଅସମୟରେ । ୧୯୬୯ ମସିହା ଗଣେଶ ଚତୁର୍ଥୀ ଦିନ ସାନପୁଅ ବୁଲୁକୁ (ବାଲେଶ୍ବରରେ ଯା'ର ଜନ୍ମ ହୋଇଥିଲା) କାଖେଇ ଠିଆ ହୋଇଛି, କଲେଜରୁ ଜଣେ ଖବର ଦେଲା : ବଦଳି ଅର୍ଡ଼ର ଆସିଯାଇଛି; କଟକ କିମ୍ବା ପୁରୀକୁ ନୁହେଁ, ଢେଙ୍କାନାଳକୁ । ହଠାତ୍ ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗିଲା ।

ଅଧ୍ୟକ୍ଷ ଥାନ୍ତି କେ.ପି.ଏ. ପିଲାଇ । ଅଜୟ ବୀରଙ୍କ ବିଦାୟ ପରେ ରାମଚନ୍ଦ୍ର ରାଜଗୁରୁ କିଛିଦିନ ଅଧ୍ୟକ୍ଷ ଥିଲେ । ଶ୍ରୀଯୁକ୍ତ ପିଲାଇ ମୋର ଅଧ୍ୟାପନା, ଗବେଷଣା ଓ ବକ୍ତୃତା ସଂପର୍କରେ ଭଲ ଭାବରେ ଜାଣନ୍ତି । ଅସମୟରେ ସ୍ଥାନାନ୍ତର ପୁଣି ଢେଙ୍କାନାଳ ପରି ଜାଗା ମୋର ଗବେଷଣା ଦୃଷ୍ଟିରୁ ଅନୁକୂଳ ନୁହେଁ ବୋଲି କହିବାରୁ ସେ ଶିକ୍ଷାବିଭାଗର ନିର୍ଦ୍ଦେଶକଙ୍କୁ ଗବେଷଣା

ଦୃଷ୍ଟିରୁ ମୋର ଅସୁବିଧା ସଂପର୍କରେ ଜଣାଇଥିଲେ । ନିର୍ଦ୍ଦେଶଙ୍କ ପରାମର୍ଶକ୍ରମେ ମୁଁ ତାଙ୍କୁ ଦେଖାକରି ମୋର ଅସୁବିଧା ସଂପର୍କରେ ଜଣାଇବାରୁ ସେ ମୋ ପ୍ରତି ସହାନୁଭୂତି ପ୍ରକାଶ କରି କହିଲେ- ଢେଙ୍କାନାଳ କଲେଜ୍‌ରେ ଦୀର୍ଘଦିନ ଧରି ଛାତ୍ର ଆନ୍ଦୋଳନ ଚାଲିଛି, ବସ୍‌ପୋଡ଼ି ମଧ ହୋଇଯାଇଛି । ସେଠାକାର ନେତୃସ୍ଥାନୀୟ ବ୍ୟକ୍ତିମାନେ ପରିସ୍ଥିତିର ସୁଯୋଗ ନେଇ ଆନ୍ଦୋଳନକୁ ବଢ଼ାଉଥିବାରୁ ସରକାର ଏହାର ଆଶୁ ଅବସାନ ଚାହାନ୍ତି । ତେଣୁ ସରକାରଙ୍କର ସମ୍ମାନ ଦୃଷ୍ଟିରୁ ମୋର ସେଠି ଯୋଗଦେବା ଅପରିହାର୍ଯ୍ୟ ଓ ଜରୁରୀ । ବର୍ତ୍ତମାନ ପାଇଁ ସେଠି ଯୋଗ ଦେଇଥା'ନ୍ତୁ, ପରେ ଗବେଷଣାର ସୁବିଧା ଥିବା ଅନ୍ୟ କଲେଜକୁ ଘେନି ଆଣିବା । ଅନ୍ୟ କଲେଜ୍ ସଂପର୍କରେ ଆବେଦନ ପତ୍ର ଦାଖଲ କରିବା ପାଇଁ ପରାମର୍ଶ ଦେବାରୁ ମୁଁ କୌଣସିମତେ ମନକୁ ବୁଝାଇ ତାଙ୍କ ଠାରୁ ବିଦାୟ ନେଲି । ନିର୍ଦ୍ଦେଶକ ମହୋଦୟ (ପ୍ରଫେସର ବିଧୁଭୂଷଣ ଦାସ) ଉତ୍କଳ ବିଶ୍ୱବିଦ୍ୟାଳୟର ରିଡ଼ର୍ ପୋଷ୍ଟପାଇଁ ପୂର୍ବରୁ ହୋଇଥିବା ଏକ ସାକ୍ଷାତକାରରେ ମୋର ସଂସ୍କୃତ ସାହିତ୍ୟ ଓ ଅଳଙ୍କାର ଶାସ୍ତ୍ର ସଂପର୍କିତ ଜ୍ଞାନ ସଂପର୍କରେ ଅବହିତ ଥିଲେ । ସେଥିପାଇଁ ତାଙ୍କ ସହିତ ମୋର ସାକ୍ଷାତ୍ ଭବିଷ୍ୟତ ସଂପର୍କରେ ଆଶାଜନକ ହୋଇଥିଲା ।

ଦଶହରା ଛୁଟିରେ ମୁଁ ଦିନେ କଟକ ହୋଇ ଢେଙ୍କାନାଳ ଯାତ୍ରା କଲି । ଅଧକ୍ଷ ଥାଆନ୍ତି ରାମଚନ୍ଦ୍ର ପଟ୍ଟନାୟକ । ମୋର ପୁରାତନ ଛାତ୍ର ପ୍ରେମାନନ୍ଦ ସାହୁ ସେତେବେଳେ ଢେଙ୍କାନାଳ କଲେଜ୍‌ର ଓଡ଼ିଆ ଅଧାପକ ଥାଆନ୍ତି । ଢେଙ୍କାନାଳରେ ପହଞ୍ଚି ରାମବାବୁଙ୍କୁ ଦେଖାକଲି । ତାଙ୍କ ସହ କଲେଜ୍ ଆଡ଼େ ବୁଲିଆସିଲି । ପାହାଡ଼ ପାଖରେ ଜାତୀୟ ରାଜପଥ କଡ଼ରେ ତୋଟା ଭିତରେ କଲେଜଟି । କଲେଜ୍‌ର ଅବସ୍ଥିତି ବେଶ ଭଲ ଲାଗିଲା, କିନ୍ତୁ କଲେଜ୍‌ର କୌଣସି କ୍ୱାର୍ଟରସ୍ କିମ୍ବା ସୁବିଧାଜନକ ଭଡ଼ାଘର ନଥିବାରୁ ମନଟା ତିକ୍ତ ଲାଗିଲା । ରାମବାବୁଙ୍କ ଘରେ ମଧାହ୍ନ ଭୋଜନ ସାରି ବିଦାୟ ନେଇ ପ୍ରେମାନନ୍ଦ ସଂଗରେ ଆସିଲି । ପ୍ରେମାନନ୍ଦ କୁଞ୍ଜକାନ୍ତ ଭିତରେ ଗୋଟିଏ ବଡ଼ ଜାଗା ନେଇ ଫକୀର ମୋହନ କଲେଜ୍ ନିକଟବର୍ତ୍ତୀ ମନ୍ମଥନାଥ ଦାସଙ୍କ କୋଠା ଆଦର୍ଶରେ ଗୋଟିଏ ଦୁଇ ମହଲା କୋଠା କରୁଥାନ୍ତି । କାମ ସରିନଥାଏ; ଛାତରେ ପଲସ୍ତରା ଦିଆଯାଉଥାଏ । ବାଡ଼ି ପାଖକୁ କୂଅଟିଏ ଖୋଳା ଯାଇଥାଏ । ମୁଁ ପ୍ରେମାନନ୍ଦଠାରୁ ବିଦାୟ ନେଇ ବାଲେଶ୍ୱରକୁ ବସ୍ ଧରିଲି ।

## ।। ଚାରି ।।

### ଢେଙ୍କାନାଳ କଲେଜରେ ଅଧାପନା :

ଅକ୍ଟୋବର ୩୧ ତାରିଖରେ ଫକୀର ମୋହନ କଲେଜରୁ ଅବ୍ୟାହତି ନେଇ ନଭେମ୍ବର, ୪ ତାରିଖରେ ଢେଙ୍କାନାଳ କଲେଜ୍‌ରେ ପୂର୍ବାହ୍ନରେ ଯୋଗ ଦେଲି । ଯୋଗ ଦେବା ଦିନ

ଢେଙ୍କାନାଳ କଲେଜରୁ ବିଦାୟ ନେବାପାଇଁ ନିର୍ଦ୍ଦେଶକଙ୍କ ପରାମର୍ଶ ଅନୁସାରେ ଆବେଦନପତ୍ର ମଧ୍ୟ ଦାଖଲ କଲି ।

ବିଭାଗରେ ଅନ୍ୟ ଓଡ଼ିଆ ଅଧ୍ୟାପକ ଥା'ନ୍ତି ଶରତଚନ୍ଦ୍ର ପ୍ରଧାନ, ରବୀନ୍ଦ୍ର କୁମାର ମିଶ୍ର, କାଳିନ୍ଦୀ ଚରଣ ବେହେରା (ପରେ ଓଡ଼ିଶାର ଜନୈକ ମନ୍ତ୍ରୀ), ଇଂରାଜୀ ଅଧ୍ୟାପକ ଥାଆନ୍ତି ଛିତୁ ପଟ୍ଟନାୟକ । ମୁଁ ଯେଉଁଦିନ କାର୍ଯ୍ୟରେ ଯୋଗଦେଲି ପରଦିନ ମହମ୍ମଦ ଫକୀରୁଦ୍ଦିନ (ଇଂରାଜୀ ଅଧ୍ୟାପକ) ଯୋଗ ଦେଲେ । ସେ ମଧ୍ୟ ମୋର ସହକର୍ମୀ ଥିଲେ ଫକୀର ମୋହନ କଲେଜ୍‌ରେ ଯାଜପୁର ଏନ୍.ସି. କଲେଜ୍‌ର ସଂସ୍କୃତ ଅଧ୍ୟାପକ ଜଗନ୍ନାଥ ରଥ ମଧ୍ୟ ବଦଳି ଆଦେଶ ପାଇ କଲେଜ୍‌ରେ ଯୋଗଦେଲେ ।

କଲେଜ୍‌ଟି ଛୋଟ ଥିବାରୁ ତା'ର ମେନ୍ ବିଲ୍‌ଡ଼ିଂକୁ ଛାଡ଼ିଦେଲେ ଆଉ ନିଜସ୍ୱ ଘର ନଥାଏ । ପାଖରେ ଜିଲ୍ଲା ଶିକ୍ଷ ବିଭାଗର କେତୋଟି ଘର କଲେଜ୍‌ର ବିଭିନ୍ନ କ୍ଲାସ ପାଇଁ ବ୍ୟବହୃତ ହେଉଥାଏ ।

କଲେଜ୍ ଲାଇବ୍ରେରୀଟି ଥାଏ ଛୋଟ । ଆଶାନୁରୂପ ପୁସ୍ତକ ଆଶା କରିବା ଅସମ୍ଭବ । ଢେଙ୍କାନାଳରେ ରହିବାର ମନୋବୃତ୍ତି ନ ଥିବାରୁ ଘର ଗୋଟିଏ ବୁଝି ପିଲାଛୁଆଙ୍କୁ ଆଣିବା ସଂପର୍କରେ ମୁଁ ଆଗ୍ରହୀ ନଥିଲି । ମୁଁ ଗୋଟିଏ ସପ୍ତାହ ପ୍ରେମାନନ୍ଦର ଆତିଥ୍ୟ ଗ୍ରହଣ କଲି । ତା'ପରେ ଦୁଇ ଚାରିଦିନ କୌଣସି ଛୁଟି ପଡ଼ିଯିବାରୁ ବାଲେଶ୍ୱର ଆସି ଛୁଟି ପରେ ଢେଙ୍କାନାଳ ଗଲି ।

ରହିବାର ସେପରି ସୁବିଧା ହୋଇପାରିଲା ନାହିଁ । ପ୍ରେମାନନ୍ଦ ଘରେ ପୁନଶ୍ଚ ଅତିଥି ଭାବରେ ରହିବା ସମୀଚୀନ ମନେ କଲିନାହିଁ । ଢେଙ୍କାନାଳ ବ୍ରଜନାଥ ହାଇସ୍କୁଲ୍‌ର ହେଡ୍‌ମାଷ୍ଟର ଥାନ୍ତି ବୈଦ୍ୟନାଥ ରଥ । ସେ ଯେପରି ଜଣେ ଦକ୍ଷ ଶିକ୍ଷକ, ସେହିପରି ଜଣେ ଜଣାଶୁଣା ହୋମିଓପାଥିଷ୍ଟ । ତାଙ୍କ ସହ ଶ୍ରୀଯୁକ୍ତ ରଥ ଓ ମୋର କୌଣସିମତେ ପରିଚୟ ଘଟିଥିବାରୁ ସେ ମହାଶୟ ଶ୍ରଦ୍ଧାପରବଶ ହୋଇ ତାଙ୍କ ସ୍କୁଲ୍‌ର ଗୋଟିଏ ରୁମ୍‌ରେ ଚାରି ପାଞ୍ଚଦିନ ରହିବାକୁ ଆମକୁ ଅନୁମତି ଦେଲେ । ଖଟ ତ ନଥାଏ । ଟେବୁଲ୍ ଯୋଡ଼ି ବିଛଣାଦି ବିଛାଇ ରାତିଟି କୌଣସିମତେ କଟାଇ ଦେଉଁ । ଖାଇବାପାଇଁ ସାର୍ବଜନୀନ ହୋଟେଲ୍ ଥାଏ ମୋର ଆଶ୍ରୟ ।

ଢେଙ୍କାନାଳ କଲେଜ୍‌ରେ ଅଧ୍ୟକ୍ଷଙ୍କ ପାଇଁ କୌଣସି କ୍ୱାର୍ଟରସ୍ ନଥାଏ, ଅନ୍ୟମାନଙ୍କ ବିଷୟ ତ ଦୂରର କଥା । ଛୋଟ ହଷ୍ଟେଲ୍‌ଟିଏ । ଅଳ୍ପ କେତେ ଜଣ ଛାତ୍ରଙ୍କ ପାଇଁ ବ୍ୟବସ୍ଥା ଥାଏ । ସୁପରିନ୍‌ଟେଣ୍ଡେଣ୍ଟ କ୍ୱାର୍ଟରସ୍ ମଧ୍ୟ ନଥାଏ । ଅଧ୍ୟକ୍ଷ ଗୋଟିଏ ରେଭିନ୍ୟୁକ୍ୱାର୍ଟରସ୍‌ରେ ରହିଥାନ୍ତି, ପୁଣି କ୍ୱାର୍ଟର୍‌ସ ଛାଡ଼ିବା ପାଇଁ ବାରମ୍ବାର ତାଙ୍କୁ ତାଗିଦା ଆସୁଥାଏ । ରଥ ଆପଣେ ଓ ମୁଁ ଢେଙ୍କାନାଳରେ ଘର ଖୋଜି ଖୋଜି ନୟାନ୍ତ ହୋଇପଡ଼ିଲୁଁ । ସ୍କୁଲ୍‌ରେ ରହିଥିବା ସମୟରେ ଢେଙ୍କାନାଳ ଟାଉନ୍‌ରେ ଲକ୍ଷ୍ମୀପୂଜା ଉପଲକ୍ଷେ ଯାତ୍ରା ଚାଲୁଥାଏ । ରାତିରେ ଯାତ୍ରାଗୀତ ଓ ବାଦ୍ୟ ଆସି କାନରେ ବାଜୁଥାଏ ।

ବହୁ ଖୋଜାଖୋଜି ପରେ ରଥ ଆପଣେ ଅଧ୍ୟକ୍ଷଙ୍କ କ୍ୱାର୍ଟରସ୍ ପୂର୍ବ ପାଖକୁ ଗୋଟିଏ ଘର ପାଇଲେ । ସେ ଘର ସଂପର୍କରେ ପୂର୍ବରୁ ମୋତେ କୁହାଯାଇଥିଲେ ମଧ୍ୟ ପରିବାର ଧରି ରହିବାର ଉଦ୍ଦେଶ୍ୟ ନ ଥିବାରୁ ମୁଁ ଆଗ୍ରହୀ ହୋଇ ନଥିଲି । ଈଶ୍ୱରଙ୍କ ଦୟାରୁ ବସ୍ ଷ୍ଟାଣ୍ଡ ଓ ସର୍କିଟ ହାଉସ୍‌ର ଦକ୍ଷିଣ ପାଖରେ ଥିବା ବ୍ରାହ୍ମଣ ସାଇରେ ଜଣେ ଶିକ୍ଷକଙ୍କ ଘରେ ଗୋଟିଏ ଦାଣ୍ଡପାଖିଆ ଛୋଟ ରୁମ୍ ପାଇଲି । ଜଣେ ଲୋକ ଚଳିବା ପାଇଁ ଯଥେଷ୍ଟ । କୂଅ ଅବଶ୍ୟ ତାଙ୍କର ଥାଏ, କିନ୍ତୁ ପାଇଖାନା ସୁବିଧା ନଥାଏ । ଅନ୍ୟଜଣକ ପାଇଖାନାକୁ ଯିବାକୁ ହୁଏ ବଡ଼ କୂଅ ଓ ଚାନ୍ଦିନୀ ଥିବାରୁ ସ୍ନାନ ପ୍ରକାରରେ କୌଣସି ଅସୁବିଧା ହୁଏ ନାହିଁ । ଶିକ୍ଷକ ମହାଶୟ ୨/୪ ଦିନ ପରେ ତାଙ୍କ ଘରବାଡ଼ିରେ ଗୋଟିଏ ବରପାଲୀ ପାଇଖାନା ପକାଇଲେ । ଶିକ୍ଷକଙ୍କ ଗୋଟିଏ ମେସ୍‌ରେ ଥିବା କେତୋଟି ଲୋକ ମଧ୍ୟ ସେ ପାଇଖାନା ବ୍ୟବହାର କରୁଥାନ୍ତି । କିଞ୍ଚିତ୍ ଅସୁବିଧା ଲାଗିଲେ ମଧ୍ୟ ପରିସ୍ଥିତିକୁ ଚାହିଁ କୌଣସିମତେ ଚଳାଇ ନେଲି । ମୋ ରୁମ୍‌ର ପଶ୍ଚିମ ପାଖକୁ ଶିକ୍ଷକଙ୍କ ଘରର ଅନ୍ୟ ଏକ ଅଂଶରେ ପରିସଂଖ୍ୟାନ ବିଭାଗର ଜଣେ କର୍ମଚାରୀ ସପରିବାର ରହୁଥିଲେ । କର୍ମଚାରୀଙ୍କର ସ୍ତ୍ରୀ ଜଣେ ଏସ୍.ଡ଼ି.ଓ.ଙ୍କର ଝିଅ । ବାପଘର ଯାଜପୁରର କଲ୍ୟାଣପୁର ।

ରୁମ୍‌ଟି ଛୋଟ । ଚଳିବା ପାଇଁ କିଛି ଅସୁବିଧା ନଥାଏ । ଶିକ୍ଷକ ମହାଶୟ ଦଉଡ଼ିଆ ଖଟଟିଏ ଦେଇଥାନ୍ତି । ମୋର ଜିନିଷ ଭିତରେ ବେଡ଼ିଂଟିଏ, ସୁଟକେଶଟିଏ, ଯିବା ଆସିବାର ସୁବିଧା ପାଇଁ ସାଇକେଲ୍‌ଟି ଆଣିଥାଏଁ ।

ଢେଙ୍କାନାଳରେ ରହିଲେ ମଧ୍ୟ ମନ ଥାଏ ବାଲେଶ୍ୱରରେ । ମୋର ବହିପତ୍ର ବାଲେଶ୍ୱରରୁ କିଛି ଆଣି ନଥିବାରୁ ଲାଇବ୍ରେରୀରୁ ସାମାନ୍ୟ ଅଣାଇ କାମ ଚଳାଉଥାଏଁ । ସେତେବେଳେ କୌଣସି ଲେଖା ଲେଖିବାର ଅନୁକୂଳ ମାନସିକ ଅବସ୍ଥା ପାଇନଥିଲି, କେବଳ ରାଉରକେଲାରେ ପ୍ରକାଶିତ ହେବାପାଇଁ ଭଞ୍ଜ ସ୍ମରଣିକା ପାଇଁ କେତୋଟି ଲେଖା ସଂପାଦନା କରିଥିଲି । କିନ୍ତୁ ଢେଙ୍କାନାଳ ରହଣି କାଳରେ କେତୋଟି ଭଲ ବହି ପାଇଥିଲି ଯେଉଁଗୁଡ଼ିକ ମୁଁ ଆମୂଳାନ୍ତ ପାଠକରି ନୋଟ୍ କରିଥିଲି । ବହିଗୁଡ଼ିକ ମଧ୍ୟରେ ଆମେରିକାର ଜଣେ ଡାକ୍ତର ହଣ୍ଡରସନ୍‌ଙ୍କର Modern ways to Health ନାମକ ଏକ ଉପାଦେୟ ପୁସ୍ତକ (ଦୁଇଟି ଭାଗ) ଉଲ୍ଲେଖଯୋଗ୍ୟ । ଭାଗ ଦୁଇଟି ରୟେଲ୍ ସାଇଜ୍‌ର ପ୍ରାୟ ହଜାର ପୃଷ୍ଠା ବିଶିଷ୍ଟ । ସେଥିରେ ସାଧାରଣଙ୍କ ପାଇଁ ଶରୀର ବିଜ୍ଞାନ, ସାଧାରଣ ସ୍ୱାସ୍ଥ୍ୟ, ବିଭିନ୍ନ ରୋଗର ଲକ୍ଷଣ ଓ ଚିକିତ୍ସା ସଂପର୍କରେ ବହୁ ଉପାଦେୟ ବସ୍ତୁ ଥିଲା । କେବଳ ସେତିକି ନୁହେଁ, ପୁତ୍ରକନ୍ୟାଙ୍କ ସଂସାର ମଧ୍ୟରେ ସ୍ୱାମୀ ସ୍ତ୍ରୀ କିପରି ଜୀବନ ଯାପନ କରିବା ଉଚିତ; ଶୈଶବଠାରୁ ଆରମ୍ଭ କରି ଯୌବନରେ ପଦାର୍ପଣ କଲା ପର୍ଯ୍ୟନ୍ତ ପୁତ୍ରକନ୍ୟା ପ୍ରତି ସେମାନେ କିପରି ବ୍ୟବହାର କରିବା ଉଚିତ, ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ସେଥିରେ ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଥିଲା । ରୋଗର ଚିକିତ୍ସା ଓ ପାରିବାରିକ ଜୀବନରେ ଶାନ୍ତି, ସଂହତି ଓ ସୌନ୍ଦର୍ଯ୍ୟ ପାଇଁ ସେ ଭଗବତ୍ ବିଶ୍ୱାସ ଉପରେ ଗୁରୁତ୍ୱ ଦେଇ ପୁସ୍ତକଟିର ଯେପରି ଉପସଂହାର କରିଛନ୍ତି, ମୋତେ

ଭାରି ଭଲ ଲାଗିଲା । ମୁଁ ଶରୀର ବିଜ୍ଞାନ ଓ ବିଭିନ୍ନ ରୋଗ ଓ ତା'ର ଚିକିତ୍ସା ସଂପର୍କରେ ଛବି ସହ ନୋଟ୍ କରିବା ସଂଗେ ସଂଗେ ପାରିବାରିକ ଜୀବନ ସଂପର୍କରେ ତାଙ୍କର ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ସମ୍ବଳିତ ଲେଖାଗୁଡ଼ିକ ଛାୟାରେ ମୁଁ ଗୋଟିଏ ପୁସ୍ତକ ରଚନା କରିଥିଲି । ପୁସ୍ତକଟିର ନାମ 'ଦ୍ୱିତୀୟାଶ୍ରମ' ।

## ଓଡ଼ିଶା ଶିକ୍ଷା ସେବାର ପ୍ରଥମ ଶ୍ରେଣୀକୁ ଉନ୍ନୀତ :

ଢେଙ୍କାନାଳ କଲେଜ୍‌ରେ ଥିବା ସମୟରେ ମୁଁ ଓଡ଼ିଶା ଶିକ୍ଷା ସେବାର (Orissa Educational Service) ପ୍ରଥମ ଶ୍ରେଣୀକୁ ଉନ୍ନୀତ ହୋଇଥିଲି ଏବଂ ଏହି ନୂତନ ରିଡ଼ର୍ ପଦବୀରେ ଯୋଗ ଦେଇଥିଲି ୧୯୭୦, ଜାନୁୟାରୀ ୭ ତାରିଖରେ । ଫକୀରୁଦ୍ଦିନ୍ ମଧ ମୋ ସାଙ୍ଗରେ ରିଡ଼ର୍ ପୋଷ୍ଟରେ ଯୋଗ ଦେଲେ । ସରକାରୀ ଭାବରେ ନିଯୁକ୍ତିପତ୍ର ଆସିବା ପୂର୍ବରୁ ନିର୍ଦ୍ଦେଶକ ଯେଉଁ ଉତ୍ସାହ ବ୍ୟଞ୍ଜକ ପତ୍ର ଦେଇଥିଲେ ତାହା ଏକ ସ୍ମରଣୀୟ ବସ୍ତୁ ଭାବରେ ସଯତ୍ନ ସଂଚିତ ରହିଛି ।

ସ୍ୱଳ୍ପକାଳ ରହଣି ମଧ୍ୟରେ ଢେଙ୍କାନାଳରେ ସେପରି ସ୍ମରଣୀୟ ଘଟଣା ଘଟିନାହିଁ । ଫକୀର ମୋହନ କଲେଜ୍‌ରେ ଓଡ଼ିଆ ଅନର୍ସ ଖୋଲିଲା ବେଳେ ଢେଙ୍କାନାଳ କଲେଜ୍‌ରେ ଖୋଲିଥିଲା । କେନ୍ଦ୍ର ଶିକ୍ଷାମନ୍ତ୍ରୀ ଡଃ ତ୍ରିଗୁଣା ସେନ୍ ଓ ସୋସାଲିଷ୍ଟ ନେତା ଜୟପ୍ରକାଶ ନାରାୟଣ ଢେଙ୍କାନାଳ କଲେଜ୍‌ରେ ଭାଷଣ ଦେଇଥିଲେ । ଓଡ଼ିଆ ସାହିତ୍ୟ ସମାଜ ପକ୍ଷରୁ କବି ସୀତାକାନ୍ତ ମହାପାତ୍ରଙ୍କୁ ମୁଁ ସେତେବେଳେ ନିମନ୍ତ୍ରଣ କରିଥିଲି । ସେ ମୋର ନିମନ୍ତ୍ରଣ ରକ୍ଷାକରି ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକ ଉତ୍ସବରେ ଉଦ୍‌ବୋଧନ ଦେଇଥିଲେ ଏବଂ ରାତିରେ ସର୍କିଟ୍ ହାଉସ୍‌ରେ ରହିଥିଲେ । ସଂଧ୍ୟାରେ ତାଙ୍କ ସହ ଦୀର୍ଘ ସମୟ ଧରି ଆଲୋଚନା ଚାଲିଥିଲା । ଏଥିରେ ଶରତ ଚନ୍ଦ୍ର ପ୍ରଧାନ, ଜିତେନ୍ଦ୍ର ପଟ୍ଟନାୟକ ଓ ଅନ୍ୟମାନେ ଯୋଗ ଦେଇଥିଲେ । ସରସ୍ୱତୀ ପୂଜା ଉପଲକ୍ଷେ ଢେଙ୍କାନାଳ ସନ୍ନିକଟ ଏକ ମଫସଲ ଗ୍ରାମରେ ବକ୍ତୃତା ଦେଇ ଆସିଥିଲି ।

ମଝିରେ ପିଲାମାନଙ୍କୁ ଥରେ ଢେଙ୍କାନାଳ ଆଣିଥିଲି । ଟ୍ରକ୍ ସହ ମୁଁ କଲେଜକୁ ଯାଉଥିଲି । କଲେଜରୁ ଫେରି ରାମବାବୁ, ଜଗନ୍ନାଥ ବାବୁ ଏବଂ ବୈଦ୍ୟନାଥ ବାବୁଙ୍କ ଘରକୁ ପିଲାମାନେ ଯାଉଥିଲେ । ମୋ ବସାର ଦକ୍ଷିଣକୁ ପାଣି ଓହଳା ପର୍ବତ ଅବସ୍ଥିତ ଥିବାରୁ ଦ୍ୱାର ମୁହଁରେ ଠିଆ ହୋଇଗଲେ ହଠାତ୍ ମେଘ ଆସିଲା ପରି ବୋଧହୁଏ । ହେମର ଠିକ୍ ସେଇ ଭ୍ରାନ୍ତି ହୋଇଥିଲା । ପିଲାମାନଙ୍କୁ ନେଇ ଗଡ଼ପାଖ ମନ୍ଦିର, ବଡ଼ଦାଣ୍ଡ, ଡାକ୍ତରଖାନା ଓ ପରିବା ମାର୍କେଟ ଦେଖି ଫେରିଥିଲୁଁ ।

ଦିନେ ଦୁଇ ଦିନର ରହଣି ମଧ୍ୟରେ ହେମ ବ୍ରାହ୍ମଣସାଇର ଅଧିକାଂଶଙ୍କୁ ଆପଣାର କରିପାରିଥିଲା । ପ୍ରଖ୍ୟାତ ଆଇ.ଏ.ଏସ୍. ଅଫିସର ବିମଳ ମିଶ୍ରଙ୍କ ଘର ସେଇ ସାଇରେ ।

ତାଙ୍କର ବାପା ଥରେ ଡକାଇ ନେଇ ଆଦର ଆପ୍ୟାୟନ କରିଥିଲେ । ଶିକ୍ଷକଙ୍କର ପିଲାମାନେ ବଡ଼ ନମ୍ର ଓ ଆଜ୍ଞାବହ ଥିଲେ । ବରାଦ ଦେଲା ମାତ୍ରକେ କିଛି ବୋଇହାକ କରୁଥିଲେ । ଦୁଇ ତିନିଦିନ ଖିଆପିଆ ଶିକ୍ଷକଙ୍କ ଘରେ ହୋଇଥିଲା । ଚତୁର୍ଥ ଦିନ ମୁଁ ପିଲାମାନଙ୍କୁ ବାଲେଶ୍ୱର ପଠାଇ ଦେବାପାଇଁ କଟକ ଯାତ୍ରା କଲି । ସାଉଥ ଇଣ୍ଡିୟାନ୍ ହୋଟେଲ୍‌ରେ ଖିଆପିଆ ସାରି ଫାଇଭ୍ ଡାଉନ୍ ଟ୍ରେନ୍‌ରେ ସେମାନଙ୍କୁ ବିଦାୟ ନେଲି । ହୁଇଲର୍ ବୁକ୍‌ଷ୍ଟଲ୍‌ରୁ ଆମେରିକୀୟ ଲେଖକ ଡେଲ୍ କାର୍ଣ୍ଣେଜ୍‌ଙ୍କର ଦୁଇଖଣ୍ଡ ବହି କିଣି ଢେଙ୍କାନାଳ ଫେରିଥିଲି ।

ଶିବ ଚତୁର୍ଦ୍ଦଶୀରେ କପିଳାସ ଯିବାପାଇଁ ବହୁଯାତ୍ରୀଙ୍କୁ ସେତେବେଳେ ଢେଙ୍କାନାଳରେ ଲକ୍ଷ୍ୟ କରିଛି । କୌଣସି କାରଣରୁ ମୁଁ କପିଳାସ ଯାଇ ନ ପାରିଲେ ମଧ୍ୟ ଶିବରାତ୍ରି ଦିନ ଢେଙ୍କାନାଳର ବିଭିନ୍ନ ଶିବମନ୍ଦିର ଦର୍ଶନ କରିଛି । ଚୈତ୍ର, ବୈଶାଖରେ ଢେଙ୍କାନାଳର କୁଞ୍ଜକାନ୍ତ ଏବଂ ବଡ଼ଦାଣ୍ଡରେ ସାୟଂଭ୍ରମଣ ବଡ଼ ସୁଖକର ଲାଗେ । ଥରେ ବୈଶାଖରେ ବଡ଼ ଦାଣ୍ଡରେ ହେଉଥିବା ଚଢ଼େଇଆ ଚଢ଼େଇଆଣି ନୃତ୍ୟ ଦେଖି ବେଶ୍ ଆନନ୍ଦିତ ହୋଇଥିଲି ।

କଲେଜ୍ ହଷ୍ଟେଲ୍‌ର ବାର୍ଷିକୋତ୍ସବରେ ପ୍ରଖ୍ୟାତ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଆସି ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । ସେଇ ବର୍ଷ ଶ୍ରୀ ମହାନ୍ତି ତାଙ୍କର 'ନୀଳଶୈଳ' ଉପନ୍ୟାସ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିଲେ । ପୁରସ୍କାର ପ୍ରାପ୍ତି ସମ୍ବାଦରେ ତାଙ୍କୁ ଅଭିନନ୍ଦନ ଜଣାଇଥିଲି ।

କ୍ଲାସ ସାରି ବସାକୁ ଫେରିବା ବେଳେ ଅଧ୍ୟକ୍ଷଙ୍କ ସହିତ ସାଙ୍ଗ ହୋଇ ଫେରେଁ । ଅନ୍ୟ ଅଧ୍ୟାପକ ମଧ୍ୟ ସାଙ୍ଗରେ ଯୋଗ ଦିଅନ୍ତି । କଲେଜ୍‌ଠାରୁ ଢେଙ୍କାନାଳ ବଡ଼ଦାଣ୍ଡରେ ଶେଷମୁଣ୍ଡ ପର୍ଯ୍ୟନ୍ତ ରାସ୍ତା କ୍ରମଶଃ ଗଡ଼ାଣିଆ ହୋଇଥିବାରୁ ଦିନର ବିଭିନ୍ନ ସମୟରେ ବାୟୁମଣ୍ଡଳର ତାପମାତ୍ରାର ବିଭିନ୍ନତା ଅନୁଭୂତ ହୁଏ । ସେଥିପାଇଁ ପରିହାସ କରି ମୁଁ ବେଳେବେଳେ କହେ- ଗୋଟିଏ ଦିନରେ କଲେଜ୍ ପାଖରେ ଶୀତକାଳ, କୁଞ୍ଜକାନ୍ତରେ ବସନ୍ତକାଳ, ବଡ଼ଦାଣ୍ଡରେ ଗ୍ରୀଷ୍ମକାଳ ।

## ଯତନ ନଗର :

ଦକ୍ଷିଣରେ ପର୍ବତ (ପାଣି ଓହଳା) ଢେଙ୍କାନାଳର ପ୍ରାଚୀର ପରି ରହିଥିବାରୁ ବର୍ଷା କାଳରେ ପର୍ବତସାନୁରେ ମେଘମାଳାର ବିଚରଣ ଏବଂ ମୁହୂର୍ତ୍ତକ ମଧ୍ୟରେ ବର୍ଷା ବେଶ ଉପଭୋଗ୍ୟ ହୋଇଥାଏ । କଲେଜରୁ ଫେରିଲାବେଳେ ଉଚ୍ଚରାସ୍ତାରୁ ଉତ୍ତର ପଶ୍ଚିମରେ ଏକ ପାହାଡ଼ରେ ଦେଖାଯାଏ ଏକ ପ୍ରକାଣ୍ଡ ପ୍ରାସାଦ, ଯାହା ଯତନ ନଗର ନାମରେ ପ୍ରସିଦ୍ଧ । ଯତନ ନଗରକୁ କେନ୍ଦ୍ର କରି ବହୁ କରୁଣ କାହାଣୀ ଶୁଣିବାକୁ ପାଏଁ । କୁଆଡ଼େ ରାଜା ଶଙ୍କର ପ୍ରତାପ ବିଲାତ ଯାଇଥିବା ବେଳେ ପଟାୟତଙ୍କ ଉପରେ ରାଜ୍ୟର ଶାସନଭାର ଅର୍ପଣ କରି ଯାଇଥିଲେ । ରାଜାଙ୍କର ଅନୁପସ୍ଥିତିରେ ସେ ଅତ୍ୟାଚାରର ଚୂଡ଼ାନ୍ତ ସୀମା ସ୍ପର୍ଶ କରିଥିଲେ ।

ପ୍ରଜାମାନେ ବେଠି ଖଟି ଖଟି ପ୍ରାଣାନ୍ତକ ହୋଇଥିଲେ । ଏହି ଯତନ ନଗର ହେଉଛି ତାଙ୍କ ଅତ୍ୟାଚାରର ନଗ୍ନ ପ୍ରତୀକ । ଲୋକଙ୍କ ଭାଷାରେ ଲୋକେ ତ ବେଠି ଖଟି କାନ୍ଦିଥିଲେ, ପଥର ବହୁଥିବା ହାତୀଙ୍କ ଆଖିରୁ ମଧ୍ୟ ଲୁହ ଝରିଥିଲା ।

ସମ୍ବଲପୁର ପର୍ଯ୍ୟନ୍ତ ସେଇ ବାଟେ ବସ୍ ଯିବା ଆସିବା କରୁଥିବାରୁ ସେତେବେଳେ ସମ୍ବଲପୁର ଓ ଅନୁଗୁଳରେ ଥିବା ବିଶିଷ୍ଟ ଲୋକଙ୍କ ସହିତ ଢେଙ୍କାନାଳରେ ଭେଟ ହୋଇଯାଏ । ଦୀର୍ଘକାଳ ପରେ ଭଦ୍ରକରେ ମୋର ଛାତ୍ର ଥିବା ଚାଟାର୍ଡ଼ ଏକାଉଣ୍ଟାଣ୍ଟ୍ ଗୁଣମଣି ମହାପାତ୍ର ସହିତ ପାରାଡାଇଜ୍ ହୋଟେଲ୍‌ରେ ଭେଟ ହୋଇଥିଲା । କବି ରାଧାମୋହନ ଗଡ଼ନାୟକଙ୍କ ସହିତ କେତେଥର ବସ୍‌ରେ ଭେଟ ହୋଇଛି । ଢେଙ୍କାନାଳର ଚେହେରା ଏବେ ବଦଳି ଯାଉଛି । ଢେଙ୍କାନାଳ ସହରର ଦକ୍ଷିଣ-ପଶ୍ଚିମ ପାର୍ଶ୍ୱଦେଇ ଏବେ ଜାତୀୟ ରାଜପଥ ଚାଲିଯାଇଛି । ଅନୁଗୁଳ ପରି ଢେଙ୍କାନାଳର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ବିଭିନ୍ନ ଶିଳ୍ପକାରଖାନା ଗଢ଼ି ଉଠିଛି ।

ମେ ପହିଲାରୁ ଗ୍ରୀଷ୍ମଛୁଟି ହୋଇଯିବ ବୋଲି ପୂର୍ବ ସୂଚନା ପାଇଲି । ଏମ୍.ପି.ସି. କଲେଜକୁ ବଦଳି ପାଇଁ ପୂର୍ବରୁ ଆବେଦନ ପତ୍ର ଦାଖଲ କରିଥିଲି । ଏ ସଂପର୍କରେ ଏକାଧିକବାର ନିର୍ଦ୍ଦେଶକଙ୍କୁ ଦେଖା କରିଥିଲି । ମେ ମାସରେ ବଦଳି ଆଦେଶ ଆଶା କରି ବାଲେଶ୍ୱରରେ ଥାଏଁ । ବାରିପଦାକୁ ମୋର ବଦଳି ଆଦେଶର ସୂଚନା ପାଇ ମୁଁ ସଂଗେ ସଂଗେ କାର୍ଯ୍ୟରୁ ଅବ୍ୟାହତି ନେବାପାଇଁ ଢେଙ୍କାନାଳ ଆସେଁ । ଅଧ୍ୟକ୍ଷଙ୍କ ସହ ଭେଟ ହୁଏ ନାହିଁ । ସେ ଭୁବନେଶ୍ୱର ଯିବା ପୂର୍ବରୁ ମୁଁ ଚାହିଁଲେ ମୋତେ ରିଲିଭ୍ କରିଦେବା ପାଇଁ ହେଡ଼କ୍ଲର୍କଙ୍କୁ ସୂଚନା ଦେଇଯାଇଥିଲେ । ମୁଁ ରିଲିଭ୍ ହୋଇ ଚାଲିଆସିଲି ।

ବାଲେଶ୍ୱରକୁ ଫେରି ସ୍ଥିର ହୋଇ ବସିପାରିଲି ନାହିଁ । ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ୍‌ରେ ଯୋଗ ଦେବାପାଇଁ ବ୍ୟସ୍ତ ହୋଇ ଉଠିଲି । ମେ, ୨୭ ତାରିଖରେ କାର୍ଯ୍ୟରେ ଯୋଗ ଦେଇ କ୍ୱାର୍ଟରସ୍ ପାଇଁ ଦରଖାସ୍ତ ଦେଇ ବାଲେଶ୍ୱର ଫେରିଲି ।

## ॥ ପାଞ୍ଚ ॥

## ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ୍‌ରେ ଅଧ୍ୟାପନା

ଗ୍ରୀଷ୍ମଛୁଟି ଭିତରେ ପରୀକ୍ଷାଖାତା ଦେଖା ଜଞ୍ଜାଳ ସାରି ବାରିପଦାରେ ବସାଘର ସନ୍ଧାନରେ ଲାଗିପଡ଼ିଲି । କିନ୍ତୁ ବାରିପଦାରେ ମନୋମତ ଘରଟିଏ ପାଇବା ମୋ ପକ୍ଷରେ କଷ୍ଟକର ହୋଇପଡ଼ିଲା । ଜୁବୁଲି ଲାଇବ୍ରେରୀ ସେକ୍ରେଟେରୀ କାଙ୍ଗାଳିଚରଣ ମହାନ୍ତିଙ୍କ ଘର ପୂର୍ବକୁ ଦୁଇଟି ଛୋଟ ଛୋଟ ଖଞ୍ଜା ତିଆରି ଚାଲିଥାଏ । ପୂର୍ବପାଖକୁ ଗେଞ୍ଜଗଳି ମଧ୍ୟରେ ଥିବା

ଘରଟି ମୋ ପାଇଁ ନିର୍ଦ୍ଦିଷ୍ଟ ହେଲା । ରଜଶେଷ ସୁଦ୍ଧା ଘରକାମ ସାରି ଦେବାପାଇଁ ମୁଁ କାଙ୍ଗାଳି ମଉସାଙ୍କୁ ଜୋର ଦେଉଥାଏଁ । ସେ କୌଣସି ମତେ କାମ ସାରିଲେ ।

ତା'ପରେ ଆମର ବାଲେଶ୍ୱର ଛାଡ଼ିବା ପର୍ବ ଆରମ୍ଭ ହେଲା । ଢେଙ୍କାନାଳ ବଦଳି ଦିନରୁ ଭାଗ୍ୟ ଆମପ୍ରତି ଆଉ ଅନୁକୂଳ ନ ଥିବାର ଲକ୍ଷ୍ୟକରି ଆସିଛି । ଦୀର୍ଘ ସାତମାସ କାଳ ପିଲାଛୁଆଙ୍କୁ ସୁଦୂର ବାଲେଶ୍ୱରରେ ଛାଡ଼ି ଢେଙ୍କାନାଳରେ ନିଃସଙ୍ଗ ଭାବରେ ଗୋଟିଏ ଅପାଙ୍‌କ୍ତେୟ ଘରେ ରହିଲି । ସେଥିରେ ଖାଇବା ପିଇବାରେ ନାନା ଅସୁବିଧା, ଏଣେ ବାରିପଦା ଯେଉଁଦିନ ଯିବାପାଇଁ ସ୍ଥିର ହେଲା, ଜିନିଷପତ୍ର ପ୍ୟାକ୍ ହୋଇ ଘରେ ଥୁଆ ହୋଇଥାଏ । ଗୋଟିଏ ଟ୍ରକ୍‌ର ବ୍ୟବସ୍ଥା ହୋଇଥିଲା । ଟ୍ରକ୍‌ଟି ଫାଟକ ପାଖରେ ରଖାଯାଇ ଜିନିଷ ଲଦା ହେଲା । କିନ୍ତୁ ବାହାରିବା ବେଳେ ପୂର୍ବଦିନ ବର୍ଷା ହୋଇଥିବାରୁ ଟ୍ରକର ପଛ ଚକ ନୟନଜୋର ଭିତରକୁ ଟାଣି ହୋଇଗଲା । ସେଠାରୁ ଟ୍ରକ୍ ଉଠିବା ବହୁ କଷ୍ଟକର ହେଲା । ଏନ୍.ସି.ସି. ଗାଡ଼ି ଲଗାଇ ବହୁ ଚେଷ୍ଟା କରାଗଲା, କିନ୍ତୁ ଟ୍ରକ୍ ଆଉ ଉଠିଲା ନାହିଁ ।

ଯାତ୍ରା ଆରମ୍ଭ ବେଳେ ଏ ଅଶୁଭ ଘଟଣାରେ ମନଭାଙ୍ଗି ପଡ଼ିଲା । ହେମର ଆଖିରେ ଲୁହ । ତା'ପରେ ଭାଇ ରବି ଆଉ ଗୋଟିଏ ଟ୍ରକ୍ ବ୍ୟବସ୍ଥା କରି ଜିନିଷଗୁଡ଼ିକ ଶାନ୍ତିକାନନ ଫାଟକ ପାଖରେ ଲଦାଇ ଟ୍ରକ୍ ସହ ଆଗେ ବାରିପଦା ଚାଲିଗଲା । ଆମେ ଦୁଇଟି ରିକ୍‌ସା ଯୋଗାଡ଼ କରି ବଳକା ଥିବା ସାମାନ୍ୟ ଜିନିଷ ସହ ବାରିପଦା ବାହାରିଲୁଁ । ଘାନବାବୁଙ୍କ ଘର ପାଖରେ ହେମ ରିକ୍‌ସାରୁ ଓହ୍ଲେଇ କାନ୍ଦି କାନ୍ଦି ତାଙ୍କ ସ୍ତ୍ରୀ ଓ ପିଲାମାନଙ୍କ ଠାରୁ ବିଦାୟ ନେଲା । କଲେଜ୍ ପାର ହୋଇ ଆଜିମାବାଦ ବାଟେ ବସ୍‌ଷ୍ଟାଣ୍ଡକୁ ଟ୍ୟାକ୍ସି ଧରିବା ପାଇଁ ଯାଉଛୁଁ, ଆଜିମାବାଦ ଛକରେ ଗୋଟିଏ ରିକ୍ସାର ରଡ଼ଟି ଭାଙ୍ଗିଗଲା । ପୁଣି ଗୋଟିଏ ରିକ୍‌ସା ଯୋଗାଡ଼ କରି ବସ୍‌ଷ୍ଟାଣ୍ଡରେ ପହଞ୍ଚିଲୁଁ । ଟାକ୍‌ସିଟିଏ କରି ବାରିପଦା ଗଲୁଁ । ଦୁର୍ଯୋଗକୁ ବାରିପଦା ମୁଣ୍ଡରେ ପହଞ୍ଚୁଣୁ ଟାକ୍‌ସିର ଗୋଟିଏ ଆଗଚକ ପଙ୍କଚର୍ ହୋଇଗଲା । ଉଠାଣିରେ ଗାଡ଼ିଥିବାରୁ ବେଗ କମ୍‌ଥିଲା, ଦ୍ରୁତ ଗତିରେ ଚାଲିଥିଲେ ଦୁର୍ଘଟଣାର ସମ୍ମୁଖୀନ ହୋଇଥାନ୍ତୁ । ଦୁଇଟି ରିକ୍‌ସାରେ ଆମେ କାଙ୍ଗାଳି ବାବୁଙ୍କ ଘରେ ପହଞ୍ଚିଲୁ । ଯାତ୍ରା ଦିବସରେ ଘଟିଯାଇଥିବା ସମସ୍ତ ଦୁର୍ନିମିତ୍ତ ପାଇଁ ମନରେ ମୋର ଶାନ୍ତି ରହିଲା ନାହିଁ ।

ବସାଘରେ ଜିନିଷପତ୍ରଗୁଡ଼ିକ ଗଦା କରି ଦିଆଗଲା । ଘର ଅନ୍ଧାରିଆ ଓ ଅପ୍ରଶସ୍ତ ଥିବାରୁ ହେମର ମନ ଫିକା ପଡ଼ିଗଲା । ବସାରେ ଗୋଡ଼ ଦେଉଁ ଦେଉଁ ତା' ମନରେ ଶାନ୍ତି କିଏ ସତେ ଯେପରି ହରି ନେଲା ।

ଭାଗ୍ୟ ଆମର ଏତେ ପ୍ରତିକୂଳ, କ୍ୱାର୍ଟରସ୍ ପାଇଁ ଦରଖାସ୍ତ କରିଥିଲେ ମଧ୍ୟ ଏବଂ କେତୋଟି କ୍ୱାର୍ଟରସ୍ ଗ୍ରୀଷ୍ମଛୁଟିରେ ଖାଲିଥିଲେ ମଧ୍ୟ ଗ୍ରୀଷ୍ମଛୁଟିରେ ଯୋଗ ଦେଇଥିବା ଅଧ୍ୟକ୍ଷ ବୈଦ୍ୟନାଥ ମିଶ୍ର ତାହା ନ ବାଣ୍ଟି ଜୁଲାଇ ମାସ ପର୍ଯ୍ୟନ୍ତ ଅପେକ୍ଷା କଲେ । ଜୁଲାଇରେ ମୋ ଠାରୁ ଦ୍ୱିତୀୟ ଶ୍ରେଣୀ ଚାକିରିରେ ସିନିଅର୍ ଥିବା ଜଣେ ଅଧ୍ୟାପକ ଆସିଯିବାରୁ କ୍ୱାର୍ଟରସ୍

ମୋତେ ନ ଦେଇ ତାଙ୍କୁ ଦେଇଦେଲେ । ଏ ସଂପର୍କରେ ହେଡ୍‌କ୍ଲର୍କ ଓ ଅଧ୍ୟକ୍ଷଙ୍କ ସହ ବହୁ ଯୁକ୍ତିତର୍କ ହେଲା । ଅଧ୍ୟକ୍ଷ ଅନ୍ୟାୟ କରିଛନ୍ତି ବୋଲି ତାଙ୍କ ସମକ୍ଷରେ ଖୋଲାଖୋଲି କହିଲେ ମଧ୍ୟ ଭାଗ୍ୟର ପ୍ରତିକୂଳତା ହେତୁ ସେ ରହିଲେ ନିର୍ବେଦ । କ୍ୱାର୍ଟରସ୍‌ଟିଏ ନ ମିଳିବାରୁ ହେମ ଓ ମୁଁ ହତାଶରେ ଭାଙ୍ଗିପଡ଼ିଲୁଁ । ନିରାଶ ହୋଇ ଶେଷରେ କଲେଜ୍ ପରେ ବାରିପଦା ସହରସାରା ଚାରିଆଡ଼େ ଘରର ସନ୍ଧାନରେ ଘୂରିବୁଲିଛି, କିନ୍ତୁ କେଉଁଠି ମନୋମତ ଘରର ସନ୍ଧାନ ନ ପାଇ ଭାଗ୍ୟକୁ ଆଦରି ପଡ଼ିରହିଲି କିନ୍ତୁ ଫଳ ହେଲା ଭିନ୍ନ ପ୍ରକାର ।

ବଡ଼ପୁଅ ଟୁକୁର ମ୍ୟାଟ୍ରିକ୍ ଶେଷବର୍ଷ, ତପନର ନବମ ଶ୍ରେଣୀ, ଅରୁଣର ଷଷ୍ଠଶ୍ରେଣୀ । ଟୁକୁ ହୋଇଥାଏ ତିନିବର୍ଷର । ମହାରାଜା କୃଷ୍ଣଚନ୍ଦ୍ର ହାଇସ୍କୁଲ୍‌ରେ ସେମାନଙ୍କ ନାମ ଲେଖାଇ ଦେଲି । ମୋର ଜଣେ ପୁରାତନ ଶିକ୍ଷକ ହରିବନ୍ଧୁ ଦାସ ଥିଲେ ସେଠି ଗଣିତ ଶିକ୍ଷକ । ମୋତେ ଦେଖି ସେ ଭାରି ଖୁସି ହେଲେ ଏବଂ ଟୁକୁର ଦାୟିତ୍ୱ ବହନ କଲେ । ମୋର ପୁରାତନ ବନ୍ଧୁ ଆମ ଗାଁ ପାଖ ଟୁକୁଣା ଶାସନର କରୁଣାକର ଦାଶ ଥିଲେ ମୂଳରୁ ସେଠି ସଂସ୍କୃତ ଓ ହିନ୍ଦୀ ଶିକ୍ଷକ । ଟୁକୁର ସଂସ୍କୃତ ପଢ଼ା ସଂପର୍କରେ ମୋତେ ଚିନ୍ତା କରିବାକୁ ପଡ଼ିଲା ନାହିଁ । ତପନ ଓ ଅରୁଣର ପଢ଼ାର ଯତ୍ନ ନିଜେ ନେଲି । ଅରୁଣ ତଳ ଶ୍ରେଣୀର ପିଲା ହେଲେ ମଧ୍ୟ ତା'ର ପଢ଼ା ନିଶାଥିଲା ପ୍ରବଳ । କାଙ୍ଗାଳି ମଉସାଙ୍କଠାରୁ ଲାଇବ୍ରେରୀରୁ ବଡ଼ ବଡ଼ ବହି ଆଣି ଏକ ନିଃଶ୍ୱାସକେ; ପଢ଼ିଦିଏଁ । ସୁରେନ୍ଦ୍ର ମହାନ୍ତିଙ୍କର 'ଶତାବ୍ଦୀର ସୂର୍ଯ୍ୟ' ପ୍ରକାଶ ପାଇଥାଏ; ତାଙ୍କଠାରୁ ସେ ବହି ଆଣି ବହିଟି ପଢ଼ିସାରି ଦୁଇଦିନ ପରେ ଫେରାଇ ଦିଏ । କାଙ୍ଗାଳି ମଉସା ତା'ର ପଢ଼ା ନିଶାରେ ବିସ୍ମିତ ହୋଇ ତା'ର ପ୍ରଶଂସା କରୁଥାନ୍ତି ।

କାଙ୍ଗାଳି ମଉସା ଓ ତାଙ୍କର ସ୍ତ୍ରୀ ଥିଲେ ବଡ଼ ସ୍ନେହୀ । ହେମକୁ ଝିଅପରି ଓ ପିଲାମାନଙ୍କୁ ନିଜ ନାତି ଦୃଷ୍ଟିରେ ଦେଖୁଥିଲେ । ପିଲାମାନେ ମଉସାଙ୍କ ଘରେ ଅଜା ଆଈ ଡାକରେ ଘର କଂପାଇ ଦିଅନ୍ତି । ମଉସାଙ୍କ ବଡ଼ଝିଅ ଗୀତା ଡାକ୍ତରୀ ପାଶ୍ କରିଥାଏ, ସାନଝିଅ ନନ୍ଦିକା ଡାକ୍ତରୀ ପଢ଼ିବାପାଇଁ ବନ୍ଧା ଯାଇଥାଏ; ବଡ଼ପୁଅ ଥାଏ ଆମେରିକାରେ । ସାନପୁଅ ଆଇ.ଏ. ପରେ ଆଉ ନ ପଢ଼ି ଘର ଖବର ବୁଝିବା ସହ ପତ୍ରପତ୍ରିକା ଏଜେନ୍‌ସି ନେଇଥାଏ । କାଙ୍ଗାଳି ମଉସା ବୃଦ୍ଧ ହେଲେ ମଧ୍ୟ ବାର୍ଦ୍ଧକ୍ୟ ସୁଲଭ ଦୁର୍ବଳତା ତାଙ୍କଠାରେ କିମ୍ବା ମାଉସୀଙ୍କଠାରେ ଦେଖିନାହିଁ । ପିଲାମାନେ ମଉସା ମାଉସୀଙ୍କୁ ଏତେ ଆପଣାର କରି ନେଇଥିଲେ ଯେ ବେଳେବଳେ ଅଝଟ ଲଗାଉଥିଲେ ।

ପଶ୍ଚିମପାଖ ଖଞ୍ଜାରେ ରହୁଥାନ୍ତି ଅର୍ଥନୀତି ଅଧ୍ୟାପକ ଶିବନାଭ ମିଶ୍ର । ତାଙ୍କର ସ୍ତ୍ରୀ ବାଲେଶ୍ୱରର ଅକ୍ଷୟ ନାରାୟଣ ପ୍ରହରାଜଙ୍କ କନ୍ୟା । ତାଙ୍କର ଦୁଇଟି ଛୁଆ । ବଡ଼ ପୁଅଟି ଟୁକୁର ସାଙ୍ଗ । ସାଙ୍ଗ ହୋଇ ଦୁହେଁ ଖେଳନ୍ତି ।

କାଙ୍ଗାଳି ମଉସା ଓ ତାଙ୍କ ସ୍ତ୍ରୀ ପୁତ୍ର କନ୍ୟା ଭାବରେ ଆମକୁ ଦେଖିଲେ ମଧ୍ୟ ବାସଗୃହଟି ଆମର ସ୍ୱାସ୍ଥ୍ୟ, ପରିବେଶ ରୁଚିର ଅନୁକୂଳ ହୋଇନଥିବାରୁ ଏବଂ ସରକାରୀ

କ୍ୱାର୍ଟରସ୍ ଆଶା ହରାଇବାରୁ ହେମର ମନରେ ଭୀଷଣ ପ୍ରତିକ୍ରିୟା ଦେଖାଗଲା । କ୍ରମଶଃ ସେ ମନର ଭାରସାମ୍ୟ ହରାଇ ବେଳେବେଳେ ଛୁଆଙ୍କୁ ଧରି କାନ୍ଦିବାକୁ ଲାଗିଲା । ଘର, ପାଇପ୍ ସବୁକିଛି ତାକୁ ବିଷପ୍ରାୟ ବୋଧ ହେଲା । ତା'ର ମନର ଏ ପ୍ରକାର ପ୍ରତିକ୍ରିୟାରେ ମୁଁ ଭୟଭୀତ ହୋଇପଡ଼ିଲି । ରଥଯାତ୍ରା ଯାଇ ବାହୁଡ଼ା ଯାତ୍ରା ଗଲା । ରଥଯାତ୍ରାରେ ଶୃଙ୍ଖଳା ରକ୍ଷା କରିବାର ଦାୟିତ୍ୱ ଆମ ଅଧ୍ୟାପକମାନଙ୍କୁ ଦିଆଯାଇଥିଲା । ବାହୁଡ଼ା ପର୍ଯ୍ୟନ୍ତ ହେମ ମନରେ ଏ ପ୍ରକାର ପ୍ରତିକ୍ରିୟା ଦେଖାଯାଇ ନଥିଲା । ରଥଯାତ୍ରା ସମୟରେ ତାକୁ ମଧ ନେଇ ମନ୍ଦିର, ରଥ, ବାରିପଦାର ଅନ୍ୟାନ୍ୟ ମନ୍ଦିର (ଅମ୍ବିକା, ବାଣ୍ଟୁଆ ଜଗନ୍ନାଥ) ବୁଲାଇ ଆଣିଥିଲି; କିନ୍ତୁ ରଥଯାତ୍ରା ପରେ ପରେ ତା'ର ଏ ପ୍ରକାର ମାନସିକ ଅବସ୍ଥା ଦେଖି ହୋମିଓପାଥିକ୍ ଓ ପରେ ଆଲୋପାଥିକ୍ ଚିକିତ୍ସା ଆରମ୍ଭ କଲି । କେନ୍ଦୁଝର ଗଡ଼ରେ ମୋର ଡାକ୍ତର-ଶିକ୍ଷକ କରୁଣାକର ବେହେରା ସେତେବେଳେ ବାରିପଦାକୁ ସି.ଡ଼ି.ଏମ୍. ଓ ଭାବରେ ଆସିଥିଲେ । ସେ ମଧ ମୋ ବସାକୁ ଆସି ତାକୁ ପରୀକ୍ଷା କଲେ । ତା'ର କିଛି ହୋଇନାହିଁ ବୋଲି ଯେତେ ବୁଝାଇ କହିଲେ ମଧ ସମସ୍ତ ବୁଝା, ଆଶ୍ୱାସନା କ୍ରମଶଃ ବ୍ୟର୍ଥ ହୋଇ ପଡ଼ିଲା । ମୁଁ ଅନନ୍ୟୋପାୟ ହୋଇ ଦିନେ ରାତିରେ ତାକୁ ନେଇ ଚିକିତ୍ସା ପାଇଁ କଟକ ଯାତ୍ରା କଲି । ବସାରୁ ବାହାରିଲା ବେଳେ ରାସ୍ତାରେ ସେ ବାଣ୍ଟୁଆ ଜଗନ୍ନାଥଙ୍କୁ ପ୍ରଣାମ କରି ମଉସା ମାଉସୀଙ୍କୁ ପ୍ରଣାମ କଲା । ସାଙ୍ଗରେ ସାନପୁଅ ବୁଲୁକୁ ମଧ ନେଇଗଲି ।

ଭାଇ ଗୋପବନ୍ଧୁ ସେତେବେଳେ ଏମ୍.ଏସ୍. କରୁଥିଲା । ସର୍ଜିକାଲ୍ ୱାର୍ଡ଼ର ତିନି ମହଲାରେ ଥିବା ଗୋଟିଏ ବଡ଼ରୁମ୍‌ରେ ସସ୍ତ୍ରୀକ ରହୁଥିଲା । ରୁମଟିରେ କାଠ-ପାର୍ଟିସନ ଥିଲା ।

ଆମେ ସକାଳୁ ଗାଧୁଆ ପାଧୁଆ ସାରି ମାନସିକ ରୋଗ ଚିକିତ୍ସକ ଡଃ ପାର୍ଥ ରାଓଙ୍କୁ ଦେଖାଇବା ପାଇଁ ଆଉଟ୍‌ଡ଼ୋରକୁ ଗଲୁଁ । ଡଃ ରାଓ ନାନା ପ୍ରଶ୍ନ କରି ଶେଷରେ ଗୋଟିଏ ପ୍ରକାର ଟାବ୍‌ଲେଟ୍ ଖାଇବା ପାଇଁ ଲେଖିଦେଲେ । ଏହାର ପ୍ରତିକ୍ରିୟା ଲକ୍ଷ୍ୟ କରି ସୋମବାର ଦିନ ଅନ୍ୟ ଔଷଧର ବ୍ୟବସ୍ଥା କରାଯିବ ବୋଲି କହିଲେ । ହେମକୁ ବାରଣ୍ଡାରେ ନ ବୁଲି ଶୋଇ ବିଶ୍ରାମ ନେବାପାଇଁ କହିଲି ଏବଂ ତା' ଉପରେ ସତର୍କ ଦୃଷ୍ଟି ମଧ ରଖିଲି ।

ଶନିବାର ରାତିରେ ମୁଁ ତାକୁ ବହୁତ ବୁଝାଇ ସାନ୍ତ୍ୱନା ଦେବାପାଇଁ ଚେଷ୍ଟା କଲି; କିନ୍ତୁ ମୋର ମନେ ହେଉଥାଏ, ସବୁ ଯେପରି ବୃଥା । ବାରିପଦାରେ ତା'ର କଥାବାର୍ତ୍ତା ଓ କାନ୍ଦକୁ ଲକ୍ଷ୍ୟ କରାଯାଇଥିଲା : ଯେପରି ସେ ଏ ଦୁନିଆର ମଣିଷ ନୁହେଁ; ଘର, ଛୁଆପିଲା, ସଂସାର ପ୍ରତି ପୂରାପୂରି ନିସ୍ପୃହା । ଅପର ଲୋକରୁ ଯେପରି ତା ପ୍ରତି ବାରମ୍ବାର ଆହ୍ୱାନ ଆସୁଛି, ଦୁନିଆ ଭଲ ଲାଗୁନାହିଁ । ଏଠୁ ଚାଲିଯିବାପାଇଁ ତାକୁ ଯେପରି କିଏ ଊର୍ଦ୍ଧ୍ୱରୁ ସଙ୍କେତ ଦେଉଛି । ବେଳେବେଳେ ଛୁଆଙ୍କୁ ଧରି କାନ୍ଦିଲେ ପିଲାମାନେ ତାକୁ ବୁଝାନ୍ତି : ମା' କ'ଣ ହୋଇଛି ? ତୁ ଏମିତି କାହିଁକି କାନ୍ଦୁଛୁ ? ଆମେ ପରା ସବୁ ଅଛୁଁ । ପିଲାଙ୍କର ଏ ପ୍ରଶ୍ନରେ ହେମ ନିରୁତ୍ତର ରହେ, ଆଖିରୁ ଲୁହ ଦରଦର ଧାରାରେ ବହିଯାଉଥାଏ ।

## ହେମର ପରଲୋକ :

୧୯୭୦, ଅଗଷ୍ଟ ୩୦ ତାରିଖ; ରବିବାର ସକାଳ । ହେମ ନିତ୍ୟକର୍ମ ସାରି ବୁଲୁ ପାଇଁ ଜଳଖିଆ ତିଆରି କରିବାପାଇଁ ନଡ଼ିଆ କୋରୁଥାଏ । ଇତିମଧ୍ୟରେ ନିତ୍ୟକର୍ମ ସାରିବା ପରେ ଗାଧୁଆ ଘରେ ପଶିଥାଏଁ । ୩/୪ ମିନିଟ୍ ପରେ ଗୋପ ଦୌଡ଼ି ଆସି କବାଟ ଠକଠକ କରି କାନ୍ଦି କାନ୍ଦି କହିଲା- ନନା ! ବୋହୂ ପାହାଚରୁ ତଳକୁ ପଡ଼ିଗଲେ । ଶବ୍ଦ ହେବାରୁ ଦୌଡ଼ିଯାଇ ଦେଖେଁ ତଳେ ପଡ଼ିଯାଇଛନ୍ତି- ମୁଣ୍ଡ ବୁଲେଇ ଦେଲା କି କ'ଣ ! ଟିକିଏ ଜଗିରଖି ସତର୍କ ଧ୍ୟାନ ଦେବାପାଇଁ କହିଥିଲି; ଆସନ୍ତୁ ମୁଁ ତଳକୁ ଯାଉଛି ।'' ମୁଁ ପୁଅ ବୁଲୁକୁ କାନ୍ଧରେ ପକାଇ ସିଡ଼ି ତଳକୁ ଓହ୍ଲେଇଗଲି । ମେଡ଼ିକାଲ୍ ଛାତ୍ର ଓ ନର୍ସ ଘେରିଯାଇଛନ୍ତି । ହେମ ଆଖିବୁଜି ଦେଇଥାଏ; ଯନ୍ତ୍ରଣା ହେତୁ ତଣ୍ଟି ଓ ଓଠରେ ସାମାନ୍ୟ ସ୍ପନ୍ଦନ ଦେଖାଯାଉଥାଏ । ତୁଣ୍ଡରେ ତା'ର ଜଳ ଦିଆଗଲା । ନର୍ସମାନେ ମାସେଜ୍ କରିବାରେ ଲାଗିଗଲେ । ବେଡ୍ ପାଖରେ ବୁଲୁକୁ କାନ୍ଧେଇ ଠିଆହୋଇଥାଏ । ମୋତେ ନର୍ସଙ୍କ ଡିଉଟି ରୁମ୍‌କୁ ଡାକି ନିଆଗଲା । ୫/୧୦ ମିନିଟ୍ ଧରି ଡାକ୍ତର ଓ ନର୍ସମାନେ ତା'ର ଜୀବନ ରକ୍ଷାପାଇଁ ପ୍ରାଣପଣେ ଉଦ୍ୟମ କଲେ; କିନ୍ତୁ ହେମ ଏସବୁକୁ ଫାଙ୍କି ଦେଇ ସବୁଦିନ ପାଇଁ ଆଖି ବୁଜି ଦେଲା । ଗୋପ ଭୋ କରି କାନ୍ଦି ପକାଇଲା । ମୁଁ ବୁଲୁକୁ କାନ୍ଧେଇ ନିର୍ବେଦଭାବରେ ଠିଆହୋଇଥାଏ- ଆଖିରେ ମୋର ଲୁହ ନାହିଁ ।

ଆଉ ଅପେକ୍ଷା କରି ଲାଭ ନାହିଁ, ସବୁ ସରିଗଲା । ସଂସାର ମୋର ଭାଙ୍ଗିଗଲା । ଗୋପର ସହପାଠୀ ଓ ଅନ୍ୟ ମେଡ଼ିକାଲ୍ ଛାତ୍ରମାନେ ଶବଯାତ୍ରାର ତୁରନ୍ତ ବ୍ୟବସ୍ଥା କରିଦେଲେ । ମେଡ଼ିକାଲ୍‌ରୁ ଖାନନଗର ରାସ୍ତାରେ ଶବଯାତ୍ରା ଆରମ୍ଭ ହେଲା । କଟକ ଦାଣ୍ଡରେ ଅହ୍ୟ ନାଗରା ବଜାଇ ଖଇକଉଡ଼ି ବିଞ୍ଚାଇ ହେମ ମୋର ଚାଲିଗଲା । ମେଡ଼ିକାଲ୍ ଛାତ୍ରମାନେ ଖାନନଗରରେ ତା'ର ଚିତାର ବ୍ୟବସ୍ଥା କରିଦେଲେ । ଚିତାରେ ଶୁଆଇବା ପୂର୍ବରୁ ନୂଆଶାଢ଼ୀ ପିନ୍ଧାଇ ଦେଲି କପାଳରେ ସିନ୍ଦୂର ଟୋପା । ଗୋପ ମୁଖାଗ୍ନି ଦେଲା । ମୁହୂର୍ତ୍ତକ ମଧ୍ୟରେ କାଠଯୋଡ଼ିତୀର ଶ୍ମଶାନ ଭୂମିରେ ତା'ର ଚିତା ଜଳି ଉଠିଲା । ଏଇ କରୁଣ ଦୃଶ୍ୟକୁ ଲକ୍ଷ୍ୟ କରି 'ଚିତା' ନାମକ ଏକ ଗଳ୍ପ ପରେ ଲେଖିଥିଲି । ତାହା ଡଗରରେ ପ୍ରକାଶ ପାଇଥିଲା । କେତେକ ମେଡ଼ିକାଲ ଛାତ୍ର ମଝିରେ ବିଦାୟ ନେଇ ଚାଲିଗଲେ । ଭାଇ ବେଣୁ ଓ ଆଉ ଜଣେ ମେଡ଼ିକାଲ ଛାତ୍ର ମୋ ପାଖରେ ଥାଆନ୍ତି । ମୁଁ ଶ୍ମଶାନ ପାଖ ପଥର ବନ୍ଧରେ ଉଦାସ ମନରେ ଚିତାର ଧୂଆଁ ଓ ଦୂର ଆକାଶକୁ ଚାହିଁ ରହିଥାଏ । ପାଖରେ ଥିବା ମେଡ଼ିକାଲ୍ ଛାତ୍ରଟି କହିଲା, ''ମୋ ମା'ଙ୍କର ଏହିପରି ଅସମୟରେ ଦେହାନ୍ତ ହୋଇଗଲା । ଆମେ ବଡ଼ ହଇରାଣ ହେଲୁଁ । ବାପା ଅନନ୍ୟୋପାୟ ହୋଇ ବଡ଼ ଭାଇଙ୍କର ବିଭାଘର କରି ଦେଲେ- ଆମେ ଶେଷକୁ ଗଣ୍ଡେ ଖାଇବାକୁ ପାଇଲୁଁ ।

ଚିତାଗ୍ନି ନିର୍ବାପିତ ହେଲା । ଜଳରେ ଶୀତଳ କରାଗଲା । ଗୋଟିଏ ଛୋଟ ସରାରେ ବେଣୁ ହେମର ସଲ (ଅସ୍ଥି) ଶୀତଳ କରି ଧରିଲା । ଗୁରୁ ଓ ଉଦାସମନରେ ମେଡ଼ିକାଲକୁ

ପ୍ରତ୍ୟାବର୍ତ୍ତନ କଲୁଁ । ପହଞ୍ଚିଲାବେଳକୁ ଦିନ ପ୍ରାୟ ସାଢ଼େ ଗୋଟାଏ ହୋଇଯାଇଥାଏ । ବୋହୂ (ଗୋପର ସ୍ତ୍ରୀ) ଭୁବନେଶ୍ୱରରେ ଥିଲେ । ଖବର ପାଇ କାନ୍ଦି କାନ୍ଦି ପହଞ୍ଚିଲେ । ମା' କାନ୍ଦି କାନ୍ଦି ପହଞ୍ଚିଲା । ସମ୍ଭୁ ରଘୁନାଥପୁରରୁ ଏ ଖବର ପାଇ ଆସି ପହଞ୍ଚିଲା । ଆଖିରେ ତା'ର ଲୁହ । ଶ୍ରୀମନ୍ତପୁର (ଯୋକଡ଼ିଆଁ, ହେମର ବାପଘର), ପୁରୁଣିଆଁ, ସାବରଙ୍ଗ, ଅଶ୍ୱନ୍ତପାଳ ସବୁଆଡ଼କୁ ଏ ଦୁଃସମ୍ବାଦ ପତ୍ର ଦ୍ୱାରା ଜଣାଇ ଦିଆଗଲା । ତିନିବର୍ଷର ଛୁଆ ବୁଲୁ । ମା' ସାଙ୍ଗରେ ବୁଲୁଥିଲା । ମା'କୁ ଦେଖୁନାହିଁ, ପିଲା ମନ ବୁଝୁ ନାହିଁ । ମା'ର ଅଭାବ ଅନୁଭବ କରି ମା', ମା' ବୋଲି ବେଳେବେଳେ ଅତିଷ୍ଠ ହେଉଛି । କୌଣସିମତେ ବୁଝାଇ ତାକୁ ଶାନ୍ତ କରାଯାଉଥାଏ : ମା' ଦେହ ଖରାପ ଅଛି, ମେଡ଼ିକାଲ୍‌ରେ ତାକୁ ଇଞ୍ଜେକ୍‌ସନ ଦିଆଯାଉଛି । ଭଲ ହେଲେ ଆସିବ ।

ରାତି ଟ୍ରେନ୍‌ରେ ମା' ସହିତ ବୁଲୁକୁ ଧରି ବାରିପଦା ଚାଲିଗଲି । ଓସ୍ତପାଳ ମା' କିଛିଦିନ ପୂର୍ବରୁ ବାରିପଦାକୁ ଆସିଥାଏ । ସକାଳେ ବସାରେ ପହଞ୍ଚିଲା ବେଳକୁ, ମା' ପାଟିରୁ କଥା ବାହାରୁ ନଥାଏ । ଓସ୍ତପାଳ ମା' ହେମକଥା ପଚାରିବାରୁ, 'ମା' କୋହ ସମ୍ଭାଳି ପାରିଲା ନାହିଁ । ଘର ଭିତରେ କାନ୍ଦଣାର ରୋଳ । ମଉସା, ମାଉସୀ ଆସି ଭୋ ଭୋ କରି କାନ୍ଦିଲେ । ସ୍କୁଲ୍‌ରେ ପିଲାଟିମାନେ ଥିଲେ । ତପନ, ଅରୁଣ ମା' ଆଉ ନାହିଁ ବୋଲି ଭୋ ଭୋ ହୋଇ କାନ୍ଦିଲେ । ଟୁକୁକୁ ସମ୍ଭାଳିବା ଅସମ୍ଭବ ହେଲା । କାନ୍ଦି କାନ୍ଦି ପାଗଳଙ୍କ ପରି ହେଲା । ମୁଁ ଯିବି, ମା'କୁ ଦେଖିବି'- ଅବୁଝା ହୋଇ କୋଡ଼ି କଚାଡ଼ି ହୋଇ କାନ୍ଦୁଥାଏ । କରୁଣାକର, ଚକ୍ରଧର ଓ ପାଖ ପଡ଼ୋଶୀମାନେ ଆସି ପିଲାଗୁଡ଼ିକୁ ସମ୍ଭାଳିବା ସଂଗେ ସଂଗେ ସାନ୍ତ୍ୱନା ଦେବାକୁ ଲାଗିଲେ ।

ଏ ଦୁଃସମ୍ବାଦରେ ସେ ସାଇରେ ଗୋଟାଏ ବିଷାଦର ଛାୟା ଖେଳିଗଲା । କଲେଜ୍‌ରେ ଏ ସମ୍ବାଦ ପହଞ୍ଚିଲାମାତ୍ରେ ଅଧ୍ୟାପକ ଓ ଛାତ୍ରମାନେ ଦଳ ଦଳ ହୋଇ ଆସି ଶୋକପ୍ରକାଶ କରିବା ସଂଗେ ସଂଗେ ସାନ୍ତ୍ୱନା ଦେବାକୁ ଲାଗିଲେ । ଜଣେ ପଡ଼ୋଶୀ ଘରର ସ୍ତ୍ରୀଲୋକ ଏ ସମ୍ବାଦରେ ଏତେ ଅଭିଭୂତ ହୋଇ ପଡ଼ିଲେ ଯେ ମା' ଛେଉଣ୍ଡ ବୁଲୁଟିକୁ କୋଳରେ ନେଇ କେତେ ଭୁଲାଇବାକୁ ଚେଷ୍ଟା କଲେ । ବୁଲୁ ସେ ସ୍ତ୍ରୀଲୋକଟିର ସ୍ନେହରେ ଏତେ କିଣି ହୋଇଗଲା ଯେ ପରେ ସବୁଦିନେ ତାଙ୍କ ଘରକୁ ଯାଏ, ଖେଳେ, ନାନା କଥାରେ ଅଝଟ ଲଗାଇ ବେଳେବେଳେ ମାରେ । ସ୍ତ୍ରୀଲୋକଟି ନାନା ପ୍ରକାରେ ବୁଝାଇ ଅଝଟିଆ ଶିଶୁକୁ ଶାନ୍ତ କରାନ୍ତି । ଦୈବଦୁର୍ଯ୍ୟୋଗକୁ ଯେଉଁ ସ୍ତ୍ରୀ ଲୋକଟି ଆମ ଘରେ କାମ କରୁଥିଲା, ତା'ର ସ୍ୱାମୀର ମଧ୍ୟ ସେହି ସମୟରେ ଦେହାନ୍ତ ହୋଇଗଲା । ସବୁ ଦୁର୍ଯ୍ୟୋଗ ଏକ ସଙ୍ଗରେ । ଚିଠିପାଇ ରବି, ଦାଦା ଆସି ବାରିପଦାରେ ପହଞ୍ଚିଲେ ।

କଲେଜରୁ ଛୁଟିନେଇ ସପରିବାର ବାଲେଶ୍ୱର ହୋଇ ଶୁଦ୍ଧିକ୍ରିୟା ପାଇଁ ଗାଁକୁ ଗଲୁଁ । ଗଲାଦିନ ବାଲେଶ୍ୱରରୁ ଲୁଗାପଟା କିଣି ବାଲିଆରେ ରବି ବସାରେ ରହିଲୁଁ । ସକାଳୁ ଟ୍ରେନ୍‌ରେ

ଗାଁକୁ ଚାଲିଗଲୁଁ । ଶୁଦ୍ଧିକ୍ରିୟା ସାରି ୧୨ ଦିନେ ଦିନ ପିଲାମାନଙ୍କୁ ଧରି ବାରିପଦା ଆସିଲି । ସାଙ୍ଗରେ ଦାଦା ଆସିଲେ ଓଡପାଳ ମା' ରହିଥାଏ ।

ସମୟକ୍ରମେ ମୋ ଜୀବନରେ ଏ ଦୁର୍ଯୋଗ ଧୀରେଧୀରେ ସ୍ମୃତିର ବିଷୟ ହେବାକୁ ଲାଗିଲା । ପତ୍ନୀ ବିଚ୍ଛେଦରେ ଅପରିପକ୍ୱ ପିଲାଗୁଡ଼ିକୁ ନେଇ ବିଦେଶରେ ଚଳିବା କିପରି କଷ୍ଟକର ତାହା ଭୁକ୍ତଭୋଗୀ କେବଳ ଅନୁଭବ କରିପାରିବ । ପତ୍ନୀ ବିୟୋଗ କାଳରେ ଘଟଣାର ଗୁରୁତ୍ୱ ହେତୁ ସିନା ଆଖିରେ ଲୁହ ଦେଖାଦେଇନି, କିନ୍ତୁ ପରେପରେ ସମୟ ବିଶେଷରେ ଅନ୍ତର୍ଲୋକରେ ସେ ବେଦନାର ଆଲୋଡ଼ନ କିପରି ବାଙ୍ମୟ ହୋଇଉଠିଛି, ସେ ସମୟରେ ରଚିତ କେତୋଟି କବିତା ଯଥା- 'ଆଲେଖ୍ୟ', 'ଛାୟା ଓ ଜନନୀ', 'ଅନ୍ତିମ ଆହ୍ୱାନ', 'ଅୟି ହେମଲତେ', 'ମୃଣ୍ମୟୀ ଓ ଚିନ୍ମୟୀ', 'ବିରହ', 'ଅନ୍ୱେଷଣ', 'ପ୍ରାପ୍ତି ଓ ଗଛ' ରୁ ତାହା ଲକ୍ଷ୍ୟ କରାଯାଇପାରିବ । ଏ ସଂପର୍କରେ ସ୍ୱଭାବକବି ଗଙ୍ଗାଧର ମେହେରଙ୍କର ପଦଟିଏ ମନେ ପଡ଼ିଯାଏ । ପତ୍ନୀହରା କବି ଲେଖିଛନ୍ତି-

ଭାସୁଥାଏ ଜୀବ ଯେବେ ସଂସାର-ସାଗରେ
ତରିବା ଭରସା ଥାଏ ବନିତା-ନାବରେ ।

'ଡଗର' ପତ୍ରିକାରେ କବିତାଗୁଡ଼ିକ ଧାରାବାହିକ ଭାବରେ ପ୍ରକାଶ ପାଇଥିଲା । କବିତାଗୁଡ଼ିକ ଜୀବନର ବାସ୍ତବ କରୁଣ ଅନୁଭୂତି ରଞ୍ଜିତ ହୋଇଥିବାରୁ ଅଧାପକ ଡଃ ଗୋପାଳଚନ୍ଦ୍ର ମିଶ୍ର, ଡଃ ଶ୍ୟାମସୁନ୍ଦର ମିଶ୍ର ଓ ଆହୁରି ଅନେକ ସହୃଦୟ ବନ୍ଧୁଙ୍କଠାରୁ ସମ୍ବେଦନା ସହ ପ୍ରଶଂସାସୂଚକ ପତ୍ର ପାଇଥିଲି । ପତ୍ନୀ ବିୟୋଗଜନିତ ଦୁଃସମ୍ବାଦ ପାଇ ଓଡ଼ିଶାର ବହୁ ଅଧାପକ, ଲେଖକ ବନ୍ଧୁ, ଗୁରୁଜନଙ୍କଠାରୁ ସମ୍ବେଦନା ଓ ସାନ୍ତ୍ୱନାର ପତ୍ର ପାଇଥିଲି । ଦୁର୍ଦ୍ଦିନରେ ବନ୍ଧୁ ଓ ଗୁରୁଜନଙ୍କର ସମ୍ବେଦନା-ସୂଚକ ପତ୍ର ପାଇ ଜଟିଳ ଦୁନିଆରେ ଜୀବନତରୀକୁ ବାହିନେବା ପାଇଁ ମୁଁ ଯେଉଁ ସାହସ ଓ ମନୋବଳ ପାଇଛି ସେଥିପାଇଁ ସେମାନଙ୍କ ପ୍ରତି ମୋର କୃତଜ୍ଞତାର ଭାଷା ନାହିଁ । ମୋର ଏ ଦୁର୍ଦ୍ଦିନ ସଂପର୍କରେ ଓଡ଼ିଶାର ସମ୍ବାଦପତ୍ରମାନଙ୍କରେ ସମ୍ବାଦ ପ୍ରକାଶ ପାଇଥିଲା । ଯେଉଁ ସ୍ୱପ୍ନନେଇ ବିଗତ ୮/୧୦ ମାସକାଳ ଚେଷ୍ଟାକରି ବାରିପଦା ଆସିଥିଲି ଏ ଦୁର୍ଦ୍ଦିନରେ ସେ ସ୍ଥାନ ମୋ ପକ୍ଷରେ ଆଉ ପ୍ରେରଣାଦାୟକ ନୁହେଁ, ଅକାଳରେ ପତ୍ନୀ ବିୟୋଗ ହେତୁ ମୋ ଜୀବନ କିପରି ସହାନୁଭୂତି ଶୂନ୍ୟ ହୋଇପଡ଼ିଛି ଏ ସଂପର୍କରେ ଶିକ୍ଷାବିଭାଗର ନିର୍ଦ୍ଦେଶକ ପ୍ରଫେସର ଦାସଙ୍କୁ ଏକ କରୁଣପତ୍ର ଦେଇଥିଲି । ପତ୍ର ପଢ଼ି ସେ ଏକାନ୍ତ ବ୍ୟଥିତ ହୋଇ ସମ୍ବେଦନା ଜଣାଇ ପତ୍ର ଦେଇଥିଲେ ଏବଂ ବର୍ଷକପରେ ଅନ୍ୟ କଲେଜକୁ ନେଇଯିବା ପାଇଁ ଆଶ୍ୱାସନା ଦେଇଥିଲେ ।

ଯେଉଁ ସ୍ୱପ୍ନ, ଓ ସମ୍ଭାବନା ନେଇ ବାରିପଦାକୁ ଆସିଥିଲି ଏ ଦୁର୍ଘଟଣାରେ ସେ ସମସ୍ତ ସ୍ତିମିତ ହୋଇଗଲା । ଦୁର୍ଦ୍ଦିନ ଆସୁ, ସୁଦିନ ଆସୁ କୌଣସିଟା ଚିର ନୁହେଁ । ଦୁର୍ଦ୍ଦିନର ପ୍ରଭାବ ଧୀରେ ଧୀରେ ଅବଶ୍ୟ ତୁଟି ତୁଟି ଆସିଲା । ଆଶ୍ୱିନ, କାର୍ତ୍ତିକ, ମାର୍ଗଶୀର ଓ ପୌଷ

: ଏଇ ମାସ ଚାରୋଟିରେ ଯେଉଁ କେତୋଟି ସ୍ମୃତି ସମ୍ବଳିତ କବିତା ଓ ଗଳ୍ପ ରଚନାର ଏକ ଏକ ଭାବତନ୍ମୟ ପରିବେଶରେ ରଚନା କରିଥିଲି ତା'ର ସୂଚନା ପୂର୍ବରୁ ଦେଇଛି । ଆଶ୍ୱିନ କି କାର୍ତ୍ତିକରେ କବି ରାଧାମୋହନ ଗଡ଼ନାୟକ ସେତେବେଳେ ବାରିପଦା ଆସିଥିଲେ । ସେ ମୋ ବସାକୁ ଆସି ମୋର ଦୁର୍ଦ୍ଦିନରେ କମ ସାନ୍ତ୍ୱନା ଦେଇନାହାନ୍ତି । ସେତେବେଳେ ମୁଁ ତାଙ୍କୁ ଓଡ଼ିଆ ବିଭାଗର ସେମିନାର୍ ତରଫରୁ ସମ୍ବର୍ଦ୍ଧିତ କରିଥିଲି ।

ଏମ୍.ପି.ସି. କଲେଜ୍‌ରେ ଶିକ୍ଷାପ୍ରଦାନ ଗତାନୁଗତିକ ରୀତିରେ ଚାଲିଥାଏ । ପୂର୍ବ ଅଭ୍ୟାସ ହେତୁ କି ଜେନେରାଲ୍ କ୍ଲାସ୍ କି ଟିଉଟୋରିୟାଲ୍ କ୍ଲାସ ସର୍ବତ୍ର ଉଚ୍ଚଧରଣର ଶିକ୍ଷାଦାନ ପ୍ରତି ମୁଁ ବିଶେଷ ଦୃଷ୍ଟି ଦେଉଥିଲି, ଫଳରେ ଛାତ୍ରଛାତ୍ରୀମାନେ ମୋର ଶିକ୍ଷାଦାନ ସଂପର୍କରେ ବିଶେଷ ଆଗ୍ରହୀ ହୋଇ ଉଠିଥିଲେ । ଓଡ଼ିଆ ବିଭାଗରେ ସେତେବେଳେ ଅସିତ କବି, ରାଘବାନନ୍ଦ ନାୟକ, ଉମେଶ ଚନ୍ଦ୍ର ମିଶ୍ର କାଳିନ୍ଦୀଚରଣ ମହାପାତ୍ର, ବନବାଳା ମହାନ୍ତି ଓ ଦାମୋଦର ମିଶ୍ର ପ୍ରଭୃତି ଅଧ୍ୟାପକମାନେ ଥିଲେ । ଏହା ଏକ ପ୍ରତିଷ୍ଠିତ କଲେଜ୍ ହୋଇଥିବାରୁ ଏହାର ଲାଇବ୍ରେରୀରେ ବହୁ ଉପାଦେୟ ପୁସ୍ତକ ସଂଗୃହୀତ ହୋଇଥିଲା । ବହୁ ପ୍ରକାରର ପତ୍ରପତ୍ରିକା (ବିଭିନ୍ନ ଭାଷାରେ) ମଧ୍ୟ କଲେଜକୁ ଆସୁଥିଲା । ବର୍ଷକ ପରେ ଏ କଲେଜରୁ ବିଦାୟ ନେବାର ଭାବନା ତୀବ୍ର ହୋଇ ପଡ଼ିଥିବାରୁ ଅଳ୍ପ ସମୟ ମଧ୍ୟରେ ଯାହା ମୋର ଗବେଷଣା ଦୃଷ୍ଟିରୁ ଉପାଦେୟ ପୁସ୍ତକ ପାଉଥିଲି, ନୋଟ୍ କରିନେଉଥିଲି ।

ବାରିପଦା ଜଗନ୍ନାଥ ମନ୍ଦିର ପାଖରେ ଶୁଦ୍ଧାଭକ୍ତିର ବୈଷ୍ଣବମାନଙ୍କର ଏକ ମଠ ଥିଲା, ମଠ ନାମ ସଚ୍ଚିଦାନନ୍ଦ ମଠ । ସେ ମଠରେ ମଧ୍ୟ ଏକ ପାଠାଗାର ଥିଲା । ପାଠାଗାରର ଦାୟିତ୍ୱ ବୁଝୁଥାନ୍ତି ଅଧ୍ୟାପକ ଉମେଶ ଚନ୍ଦ୍ର ମିଶ୍ରଙ୍କ ଶ୍ୱଶୁର । ମୁଁ ସେ ପାଠାଗାରରୁ ଗୋପାଳ ତାପନୀ ଉପନିଷଦ, ଭାରତୀୟ ସଂସ୍କୃତି, କୃଷ୍ଣଦାସ କବିରାଜଙ୍କ ସ୍ୱରତ କଥାମୃତମ୍ ଓ ଗୋବିନ୍ଦବଲ୍ଲଭ ନାଟକ ନାମରେ କେତୋଟି ଉପାଦେୟ ପୁସ୍ତକ ପାଇ ନୋଟ୍ କରି ଯଥା ସମୟରେ ଫେରସ୍ତ ଦେଇଥିଲି । ସମୟ ଅଭାବରୁ ଅନ୍ୟ ପୁସ୍ତକ ଆଣିପାରିଲି ନାହିଁ । ତ୍ରୁବ୍ଲି ଲାଇବ୍ରେରୀ ପାଖରେ ଥିଲେ ମଧ୍ୟ ସେଇ ସମୟ ଅଭାବରୁ ମୂଲ୍ୟବାନ୍ ପୁସ୍ତକଗୁଡ଼ିକର ନୋଟ୍ କରିପାରିଲି ନାହିଁ; କେବଳ ନୂତନ ଓ ପୁରାତନ ପୁସ୍ତକ ଉପରେ ଆଖିବୁଲାଇ ନେଇଥିଲି । ମୋପରି ପୁସ୍ତକରଙ୍କ ବ୍ୟକ୍ତି ପକ୍ଷରେ ଏ ଅନ୍ୟ ଏକ ଦୁଃଖ ।

## ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ :

ମୋପରି ବିପତ୍ନୀକ ପ୍ରତି ବାରିପଦା ଓ ଓଡ଼ିଶାର ବହୁ ମାନ୍ୟଗଣ୍ୟ ଲୋକ ସହାନୁଭୂତିଶୀଳ ଥିଲେ । ଜଗନ୍ନାଥ ମନ୍ଦିର ପାଖରେ ସେତେବେଳେ ବାର୍ଦ୍ଧକ୍ୟରେ ଅବସର ଜୀବନଯାପନ କରୁଥିଲେ ପ୍ରତ୍ନତତ୍ତ୍ୱବିତ୍ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ । ମୁଁ ଯେତେବେଳେ ତାଙ୍କ ପାଖକୁ ଗଲି ଏବଂ ମୋର ଏ ଦୁଃସମ୍ବାଦ ଶୁଣିଲେ ଦୁଃଖରେ ମୁହୂର୍ତ୍ତେ କାଳ ଅଭିଭୂତ

ହୋଇ ପଡ଼ିଲେ । କହିଲେ, ''ବାପା ! ତୁମେ ହେଉଛ ଯୁବକ । ଏ ବୃଦ୍ଧାବସ୍ଥାରେ ସ୍ତ୍ରୀ ମୋର ଚାଲିଗଲା, ବୟସ ଯାହା ହେଉନା କାହିଁକି ପତ୍ନୀ ବିୟୋଗ ଦୁଃଖ କ'ଣ, ତାହା କେବଳ ଭୁକ୍ତଭୋଗୀ ଜାଣିବ । ସ୍ତ୍ରୀ ରୁଗ୍ଣା ହେଉ ବା ସ୍ୱାସ୍ଥ୍ୟବତୀ ହେଉ, ବଞ୍ଚିଥିଲେ ସ୍ୱାମୀର ମନକଥା ଯେପରି ବୁଝିବ, ଆଉ କିଏ ବୁଝିବ ? ଅସୁସ୍ଥତାରେ ଦେହ ଓ ପାଦରେ ଟିକିଏ ହାତ ବୁଲାଇ ଆଣିଲେ ଅସୁସ୍ଥତା ଅଧା ଚାଲିଯିବ । ସ୍ତ୍ରୀ ମୋର ୪/୫ ବର୍ଷ ହେଲା ଚାଲିଗଲାଣି । କେବଳ ଏ ବୋହୂଟିର ସେବାଯୋଗୁଁ ମୁଁ ବଞ୍ଚି ରହିଛି, ନ ହେଲେ ବୁଢ଼ୀ ଗଲା ପରଠାରୁ ମୋର ଟିକଟ କଟା ସରନ୍ତାଣି । ତୁମେ ଯୁବକ, ଛୋଟ ଛୋଟ ପିଲାଗୁଡ଼ିକ; ତୁମର ଓ ତୁମ ପରିବାରର ଯତ୍ନ କିଏ ନେବ ? ଘର ଶ୍ରୀହୀନ ହୋଇଯିବ । ରୋଜଗାର କରି ମଧ୍ୟ ସୁସ୍ଥରେ ଗଣ୍ଡେ ଖାଇବାକୁ ପାଇବ ନାହିଁ ବରଂ ଯଦି ସେପରି କୌଣସି ଯୋଗ୍ୟ ପ୍ରସ୍ତାବ ଆସୁଛି, ଗ୍ରହଣ କରି ନେବା ଉଚିତ ।'' ମୁଁ ତାଙ୍କର ଏ ସହାନୁଭୂତିଶୀଳ ପ୍ରସ୍ତାବରେ ଯୌକ୍ତିକତା ଓ ବାସ୍ତବତା ଉପଲବ୍ଧି କଲେ ମଧ୍ୟ ଅସ୍ତି ନାସ୍ତି କିଛି ଉତ୍ତର ଦେଇପାରିଲି ନାହିଁ । କହିଲି : ନିକଟରେ ତ ଏ ଦୁର୍ଘଟଣା ଘଟିଗଲା । ମନରୁ ଦାଗ ନିଭି ନାହିଁ । କିଛିଦିନ ଯାଉ, ଅବସ୍ଥା ଦେଖି ଯାହା ଚିନ୍ତା କରିବି । ପଦ୍ମଶ୍ରୀ ଆଚାର୍ଯ୍ୟ ତାଙ୍କ ଜୀବନ କାଳର ନାନା ଅନୁଭୂତି ଓ ଗବେଷଣା ସଂପର୍କରେ ବର୍ଣ୍ଣନା କରି ଚାଲିଲେ । ସେ ବିଛଣାରୁ ଉଠି ହୀରା ବ୍ୟବସାୟୀ ମଟ୍ ସାହେବଙ୍କର ସମ୍ବଲପୁର ଯାତ୍ରାର ଅନୁବାଦ ବହି ଖଣ୍ଡେ ମୋତେ ଉପହାର ଦେଲେ । ମୁଁ ବିଦାୟ ନେବାକୁ ଚାହିଁବାରୁ କହିଲେ- ବାପା : ଦେଖିଚାହିଁ ଯାହାହେଲେ ବ୍ୟବସ୍ଥା କରିବ, ମୋତେ ଜଣାଇବ । ସମୟେ ସମୟେ ଆସୁଥିବ । ମୁଁ ପ୍ରଣାମ ଜଣାଇ ବିଦାୟ ନେଲି । ପରେ ଆଉ ଥରେ ଦୁଇଥର ଯାଇଥିଲି ।

ବାଲୁଆ ଜଗନ୍ନାଥ ମନ୍ଦିର ପାଖରେ ରହୁଥିବା ପଣ୍ଡିତ ପୂର୍ଣ୍ଣଚନ୍ଦ୍ର (ଲେଖକ ସାତକଡ଼ି ହୋତାଙ୍କ ଶ୍ୱଶୁର) ମୋର ଏ ଦୁର୍ଦ୍ଦିନରେ ମୋତେ କମ ସାନ୍ତ୍ୱନା ଦେଇ ନାହାନ୍ତି । ଆଚାର୍ଯ୍ୟଙ୍କ ପରି ସେ ମଧ୍ୟ ମୋର ଅବସ୍ଥା ଉପଲବ୍ଧି କରି କହିଥିଲେ- ଆପଣଙ୍କର ଏ ଅବସ୍ଥାରେ ଘର ସମ୍ଭାଳିବା ପାଇଁ ଯୋଗ୍ୟା ପାତ୍ରୀଟିଏ ଆବଶ୍ୟକ । ଆପଣ ସ୍ଥିରକଲେ ପାତ୍ରୀର ସନ୍ଧାନରେ ଲାଗିଯିବା । ଏସବୁ ସାନ୍ତ୍ୱନାବାଣୀ ଶୁଣୁଥିଲେ ମଧ୍ୟ କିଛି ନିଷ୍ପତ୍ତି ଗ୍ରହଣ କରିବା ଅବସ୍ଥାରେ ନଥାଏ ।

ଦିନେ ସକାଳେ ଉଦଳାବାଦ୍‌ର ଜଣେ ଆଡ୍‌ଭୋକେଟ୍ (ଶ୍ରୀ ଜ୍ଞାନେନ୍ଦ୍ର କୁମାର ଭୋଳ) ମୋ ବସାରେ ଆସି ପହଞ୍ଚିଲେ । ସେ ମୋର ଆତିଥ୍ୟ ଗ୍ରହଣ କରି ମୋ ପ୍ରତି ସହାନୁଭୂତି ପ୍ରକାଶ କରିବା ସଙ୍ଗେସଙ୍ଗେ କହିଲେ :''ଯଦି ଆପଣଙ୍କର ଆପତ୍ତି ନଥାଏ ତା'ହେଲେ ସ୍ଥାନୀୟ ସରକାରୀ ଉଚ୍ଚବିଦ୍ୟାଳୟରେ ଶିକ୍ଷୟିତ୍ରୀ ଥିବା ଆମର ଗୋଟିଏ ଭଉଣୀ ସଂପର୍କରେ ପ୍ରସ୍ତାବ ଆଣିଲେ କ'ଣ ହୁଅନ୍ତା ?'' ମୁଁ ନମ୍ରଭାବରେ କହିଲି : ଦୁର୍ଯୋଗ ଘଟିବାର ବେଶିଦିନ ଯାଇନାହିଁ । ଘରେ ଗୁରୁଜନ ଅଛନ୍ତି । ପିଲାମାନଙ୍କର ମନର ପ୍ରତିକ୍ରିୟା କିଛି ଜାଣିନାହିଁ-

ଏପରି ଅବସ୍ଥାରେ ସହସା ନିଷ୍ପତ୍ତି ଗ୍ରହଣ କଷ୍ଟକର । ପରେ ଏ ସଂପର୍କରେ ଜଣାଇବି । ଦୀର୍ଘ ୩/୪ ବର୍ଷ ଧରି ତାଙ୍କୁ ଆଉ କିଛି ଜଣାଇ ନାହିଁ; ନିଷ୍ପତ୍ତି ନେଇପାରିନାହିଁ ।

ଦ୍ୱିତୀୟ-ସଂସାର ସଂପର୍କରେ କେତେକ ଶୁଭେଚ୍ଛୁ ବନ୍ଧୁ ସ୍ୱତଃସ୍ଫୂର୍ତ୍ତ ଭାବରେ ଅନୁକୂଳ ପ୍ରସ୍ତାବ ଦେଇଥିଲେ; କେତେକ ସ୍ଥିତପ୍ରଜ୍ଞ ରହି ଭଗବଦ୍ ଚିନ୍ତାରେ ପିଲାଙ୍କ ଗହଣରେ ଜୀବନ ବିତାଇବାକୁ ପରାମର୍ଶ ଦେଇଥିଲେ । ଉଭୟ ପ୍ରକାର ବନ୍ଧୁଙ୍କର ପରାମର୍ଶ ଯୁକ୍ତିଯୁକ୍ତ । କିନ୍ତୁ ସଂସାରର ସୁଖ ଦୁଃଖର ଆଘାତ ମଧ୍ୟରେ, ଜଞ୍ଜାଳ ଓ ଯନ୍ତ୍ରଣା ମଧ୍ୟରେ ସ୍ଥିତପ୍ରଜ୍ଞତା କେତେଦୂର ସମ୍ଭବପର, ତାହାହିଁ ସମୟେ ସମୟେ ଚିନ୍ତା କରିବାକୁ ହୁଏ । ଏ ସଂପର୍କରେ ମୁଁ ଆଉ କୌଣସି ଚିନ୍ତା ନ କରି ଈଶ୍ୱରଙ୍କ ଉପରେ ସବୁ ଛାଡ଼ିଦେଲି । ମନେମନେ ଭାବିଛି-

ତ୍ୱୟା ହୃଷୀକେଶ ହୃଦିସ୍ଥିତେନ
ଯଥା ନିଯୁକ୍ତୋଽସ୍ମି ତଥା କରୋମି ।

ଚିତ୍ତରେ ଯୌବନକାଳରୁ ଭଗବଦ୍ ଅନୁରାଗ ରହିଥିଲେ ମଧ୍ୟ, ସ୍ୱାମୀ ଶିବାନନ୍ଦଙ୍କ ପରି ଗୁରୁଙ୍କର ଆଶୀର୍ବାଦ ଲାଭ କରିଥିଲେ ମଧ୍ୟ ସଂସାର-ଜମ୍ବାଳରେ ଘାଣ୍ଟି ହୋଇ କେତେବେଳେ ତାହା ନିଷ୍ପ୍ରଭ ହୋଇଯାଇଛି, କେତେବେଳେ ଉଜ୍ଜ୍ୱଳ ହୋଇଉଠିଛି । ପତ୍ନୀ ବିୟୋଗଜନିତ ଘଟଣା ପରେ ପାରିବାରିକ ଜଞ୍ଜାଳରେ ମନ କେତେବେଳେ କ୍ଷତବିକ୍ଷତ ହୋଇପଡ଼ିଛି, ପୁଣି କେତେବେଳେ ସ୍ଥିତପ୍ରଜ୍ଞତାର ଝଲକ ଦେଖାଦେଇଛି । ଆଶ୍ୱିନର ତାରା ବିଖଚିତ ନୀଳ ଆକାଶ, କେତେବେଳେ ପୁଣି ଶିଶିରସିକ୍ତ ଦୂର୍ବା ଓ କିଶଳୟରେ ଜ୍ୟୋସ୍ନାର ପ୍ରତିଫଳନକୁ ଚାହିଁ ଚାହିଁ ଭାବସ୍ଥ ହୋଇପଡ଼ିଛି । ଦୂରସ୍ଥ ତରୁ ଓ ପର୍ବତ ଶିଖରରେ ଉଜ୍ଜ୍ୱଳ ତାରାଟିକୁ ଚାହିଁ ହେମର ଆତ୍ମ-ଜ୍ୟୋତି ଉପଲବ୍ଧି କରିଛି । ଏହିପରି ମହାଜାଗତିକ ଚିନ୍ତାରେ ଭଗବଦ୍ ଅନୁରାଗ ଚିତ୍ତରେ ମୋର ଯେପରି ସାକାର ରୂପ ଗ୍ରହଣ କରିଛି, ତା ନିକଟରେ ଜଗତର ସବୁ କିଛି ତୁଚ୍ଛ, ଅଳୀକ ବୋଧ ହୋଇଛି । ଏକ ଦିଗରେ ସ୍ଥିତପ୍ରଜ୍ଞ ସୁଲଭ ଗଭୀର ଦାର୍ଶନିକ ଚିନ୍ତା, ଅନ୍ୟ ଦିଗରେ ଜଞ୍ଜାଳ କ୍ଲିଷ୍ଟପିଷ୍ଟ ସଂସାରର ରୂଢ଼ ବାସ୍ତବତାର ସମ୍ମୁଖୀନ ଜଣେ ସଂସାରୀର ଚିନ୍ତା- ଏ ଉଭୟ ଚିନ୍ତା ମଧ୍ୟରେ ଭାରସାମ୍ୟ ବା ସମନ୍ୱୟ ଆନୟନ : ସେ ଆଉ ଏକ ସମସ୍ୟା ।

ସୀତାକାନ୍ତ ମହାପାତ୍ର ସେତେବେଳେ ମୟୂରଭଞ୍ଜର କଲେକ୍ଟର ଥାନ୍ତି । ବନ୍ଧୁବାନ୍ଧବ ହେତୁ ସେ କାଙ୍ଗାଳି ମଉସାଙ୍କ ଘରକୁ ଆସନ୍ତି । ତାଙ୍କ ରେସିଡ଼େନ୍ସରେ ମଧ୍ୟ ବିଭିନ୍ନ ସମୟରେ ଆଳାପ ଆଲୋଚନା ହୁଏ । ଥରେ ନାରିକେଳ ବୃକ୍ଷ ରୋପଣ କରିବାକୁ ଦୁହେଁ ସଚ୍ଚିଦାନନ୍ଦ ମଠକୁ ଯାଇଥିଲୁଁ ।

ଗତାନୁଗତିକ ରୀତିରେ ଦିନଗୁଡ଼ିକ ଗଡ଼ି ଚାଲିଚି । ବର୍ଷା ପରେ ଶରତ, ଶରତ ପରେ ଶିଶିର, ହେମନ୍ତ ଓ ବସନ୍ତ ଚକ୍ରବଦ୍ଧ ଗଡ଼ିଚାଲିଛି । ବିଭିନ୍ନ ସମୟରେ କଲେଜ୍‌ର ରୁଟିନ୍‌ବନ୍ଧା କାମଗୁଡ଼ିକ ମଧ୍ୟ ସେଇମିତି ଗଡ଼ିଚାଲିଚି । ସାହିତ୍ୟ ସମାଜର ବାର୍ଷିକୋତ୍ସବରେ

କଲେକ୍ଟର କବି ବଂଧୁ ସୀତାକାନ୍ତ ମହାପାତ୍ର ମୋର ନିମନ୍ତ୍ରଣ ରକ୍ଷାକରି ମୁଖ୍ୟ ଅତିଥିଭାବରେ ଯୋଗଦାନ କରିଥିଲେ । ମୋର ପ୍ରିୟ ସୁହୃଦ ମହାରାଜା କୃଷ୍ଣଚନ୍ଦ୍ର ହାଇସ୍କୁଲ୍‌ର ସଂସ୍କୃତ ଶିକ୍ଷକ କରୁଣାକର ଦାଶଙ୍କ ଦ୍ୱାରା ଲିଖିତ ଗୋଟିଏ ଗୀତାଭିନୟ (ଗୁରୁ ଦକ୍ଷିଣା) କଲେଜ୍ ହଲ୍‌ରେ ଅନୁଷ୍ଠିତ ହୋଇଥିଲା । ହାଇସ୍କୁଲ୍‌ର ଦୁଇଟି ଛାତ୍ରଙ୍କର ଅଭିନୟ ଅତି ଚମତ୍କାର ହୋଇଥିଲା । ସେମାନଙ୍କୁ ଅନୁକରଣ କରି କଲେଜ୍ ଛାତ୍ର ସେ ପ୍ରକାର ଅଭିନୟ କରିଥିଲେ ମଧ ତାଲିମ ଅଭାବରୁ ଉପହସିତ ହୋଇଥିଲେ ।

ପୂର୍ବରୁ ଓଡ଼ିଶା ଶିକ୍ଷାବିଭାଗର ଜଏଣ୍ଟ ଡିରେକ୍ଟର୍ ଥିବା ଗୋକୁଳ ଚନ୍ଦ୍ର ଶତପଥୀ ଅବସର ଗ୍ରହଣ କରି ତାଙ୍କର ବାରିପଦା ନିବାସରେ ରହୁଥାନ୍ତି । ତାଙ୍କ ଘରେ ଏକାଧିକବାର ବାରିପଦା ସାହିତ୍ୟ ସଂସଦର ସଭା ଅନୁଷ୍ଠିତ ହୋଇଥିଲା । ମୋତେ ସାହିତ୍ୟ ସଂସଦର ଉପସଭାପତି କରି ଦିଆଯାଇଥିଲା ।

ମା'ର ଦେହାନ୍ତ ପରେ ଟୁକୁର ଜିଦ୍‌ଖୋର ପଣ ବଢ଼ିଚାଲେ । ତପନର ଉଦାସୀନ ଭାବ ଦେଖାଯାଏ । ବୁଲୁଟି ତିନିବର୍ଷରେ ହୋଇଥିବାରୁ ଏବଂ ମା' ପ୍ରତି ବିଶେଷ ଆସକ୍ତ ଥିବାରୁ ତା'ର ସ୍ନେହସିକ୍ତ ଆଶ୍ଳେଷର ଉଷ୍ଣସ୍ପର୍ଶ ଭୁଲି ନପାରି ବେଳେବେଳେ ଚିନ୍ତାନ୍ୱିତ ଭାବରେ କହିଉଠେ- 'ମା' କାହିଁ ?' ତାକୁ ସେଇ ପୁରୁଣା କଥା କହି ଭୁଲାଇବାକୁ ହୁଏ । ମା'ର ଅନୁପସ୍ଥିତି ତାକୁ ମୋ ପ୍ରତି ବେଶି ଆକୃଷ୍ଟ କରିଦିଏ; ଫଳରେ ଯେଉଁଆଡ଼େ ଗଲେ ମୋ ସାଙ୍ଗ ଛାଡ଼ିବାକୁ ନଛୋଡ଼ବନ୍ଧା । ବେଳେବେଳେ ତାକୁ ଲୁଚି କରି କଲେଜ୍ ଯାଏ; ଦେଖି ଦେଲେ ରକ୍ଷା ନାହିଁ । ସାଙ୍ଗରେ ତାକୁ ନେଇଯାଏଁ କଲେଜ୍ । ଶ୍ରେଣୀକୁ ଗଲେ ଯାଏ ସାଙ୍ଗରେ । ସେ ବସେ ଚେୟାର୍‌ରେ, ମୁଁ ଠିଆହୋଇ ପଢ଼ାଏ। ଭଦ୍ରକ କଲେଜକୁ ଯିବାର ଦୁଇବର୍ଷ ପର୍ଯ୍ୟନ୍ତ ବୁଲୁ ଥିଲା ପିଲାମାନଙ୍କର ଏକ ଆକର୍ଷଣ । ମା' ଛେଉଣ୍ଡ ପିଲାଟି ପ୍ରତି ସମସ୍ତଙ୍କର ଆଦର, ସ୍ନେହ । ସନ୍ତାନଗୁଡ଼ିକର ବାଲ୍ୟାବସ୍ଥାରେ ମା' ଚାଲିଗଲେ ମାନସିକ ଭାରସାମ୍ୟ ରଖି ସେମାନଙ୍କୁ ଚଳାଇବା କି କଷ୍ଟକର ବ୍ୟାପାର କେବଳ ଭୁକ୍ତଭୋଗୀ ଜାଣେ । ବାପ-ମା' ଦୁହିଁଙ୍କର ଭୂମିକାରେ ପରିବାର ଚଳେଇବାକୁ ହେଲେ ଶୃଙ୍ଖଳା ରକ୍ଷା ଦିଗରେ, ପିଲାମାନଙ୍କୁ ଶାସନ କରିବାରେ କିପରି ବିଭିନ୍ନ ସମୟରେ ଜଟିଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ହୁଏ ତାହା ଅଙ୍ଗେ ନିଭାଇବାକୁ ହୋଇଛି । ପିଲାମାନଙ୍କର ଜିଦ୍‌ଖୋର ମନୋବୃତ୍ତି, ଉଦାସୀନତା ପ୍ରଭୃତି ଲକ୍ଷ୍ୟକରି ଅନେକ ସମୟରେ ଆତ୍ମୀୟମାନେ ମୋତେ ଖୁଣର ଦୁର୍ବଳତା ଦୋଷରେ ଅଭିଯୁକ୍ତ କରିଛନ୍ତି; କିନ୍ତୁ ଅବସ୍ଥା ବିଶେଷରେ ଜଣେ ବିପତ୍ନୀକ ବ୍ୟକ୍ତିକୁ କିପରି ନାନା ଜଟିଳ ପରିସ୍ଥିତି ଓ ବେଳେବେଳେ ବିଚାର ସଙ୍କଟର ସମ୍ମୁଖୀନ ହେବାକୁ ହୁଏ, ପରିବାର ପରିଚାଳନାର ଏ ମନସ୍ତାତ୍ତ୍ୱିକ ଦିଗଟିକୁ ଅନେକ ଭୁଲିଯାଆନ୍ତି ଏବଂ ନିଜ ଦୃଷ୍ଟିକୋଣରୁ ଦୁନିଆ ମଣିଷକୁ ଦାୟିତ୍ୱହୀନ ଭାବରେ ଅଭିଯୁକ୍ତ କରିଥାନ୍ତି; କିନ୍ତୁ ଅନ୍ୟର ଅବସ୍ଥାକୁ ନିରପେକ୍ଷ ଓ ସହାନୁଭୂତିଶୀଳ ଭାବରେ ବିଚାର କରିବାପାଇଁ ମନୋବୃତ୍ତି ଓ ସହିଷ୍ଣୁତା ସେମାନଙ୍କର

କାହିଁ ? ଅନ୍ୟର ଦୋଷଗୁଣ ବିଚାର କଲାବେଳେ ନିରପେକ୍ଷ ସହୃଦୟ ଗଠନମୂଳକ-ଦୃଷ୍ଟିଭଙ୍ଗୀ ନ ରହିଲେ ମତାମତ ବା ମନ୍ତବ୍ୟ ଅନେକ ସମୟରେ ଏକଦେଶ ଦର୍ଶୀ ହେବା ସଙ୍ଗେସଙ୍ଗେ ଉଦ୍ଦେଶ୍ୟମୂଳକ ଭାବରେ କ୍ଷତିକାରକ ହୋଇଥାଏ । ପରେପରେ ମୋର ପରିବାରରେ ବିଭିନ୍ନ ସମୟରେ ନାନା ସଂକଟ ଓ ସମସ୍ୟା ଦେଖାଦେଇଛି । ବେଳେବେଳେ ମୁଁ କିଂ କର୍ତ୍ତବ୍ୟବିମୂଢ଼ ହୋଇପଡ଼ିଛି । ଏପରି ଅବସ୍ଥାରେ ସୂଚନା ଓ ଅନୁରୋଧ ସତ୍ତ୍ୱେ ଆତ୍ମୀୟମାନେ କେହି ସାମାନ୍ୟ କଷ୍ଟ ବା ତ୍ୟାଗ ସ୍ୱୀକାର କରି ମୋର ଦୁର୍ଦ୍ଦିନରେ ମୋ ପାଖରେ ଠିଆ ହୋଇନାହାନ୍ତି ; କେବଳ ଲୋକ ଦେଖାଣିଆ ଭାବରେ ସହାନୁଭୂତି ପ୍ରଦର୍ଶନ ଛଳନାରେ କେବଳ ମୋର ତଥାକଥିତ ପିତୃସୁଲଭ ଦୁର୍ବଳତା ସଂପର୍କରେ ଏକାଧିକବାର ଅଭିଯୋଗ କରି ମୋତେ ଆହତ ଓ ଅଯଥା ଉତ୍ତେଜିତ କରିବାକୁ ପଛାଇନାହାନ୍ତି ।

ଏହି ସମୟରେ ଷ୍ଟେଟ୍ ହାଉସିଂ ବୋର୍ଡ଼ ପକ୍ଷରୁ ବିଭିନ୍ନ ଟାଇପ୍‌ର ତିଆରି ଘର ବିକ୍ରିର ଯୋଜନା କାର୍ଯ୍ୟକାରୀ ହେଉଥାଏ । ମୁଁ ମଧ-ଆୟକାରୀ ବ୍ୟକ୍ତି (Middle Income Group) ବ୍ୟକ୍ତି ଭାବରେ ଭୁବନେଶ୍ୱରରେ ଗୋଟିଏ ଘର ପାଇଁ ଷ୍ଟେଟ୍‌ହାଉସିଂ ବୋର୍ଡ଼କୁ ଦରଖାସ୍ତ କରିଥିଲି । ଏଲ୍‌ଟମେଣ୍ଟ୍ ସଂପର୍କରେ ସେତେବେଳେ ବାରିପଦାର ବିଧାନସଭା ସଦସ୍ୟ (ରାଜ ପରିବାରର) ମୋତେ ସାହାଯ୍ୟ କରିଥିଲେ । ୧୭ନଂ ଘରଟି ମୋ ନାମରେ ଏଲ୍‌ଟମେଣ୍ଟ୍ ହୋଇଥିଲା । ମୁଁ ପ୍ରଥମ କିସ୍ତିର ଟଙ୍କା ଦାଖଲ କରିଥିଲି । କିନ୍ତୁ ଯାହା କଥା ରହିଛି : ଭାଗ୍ୟରେ ନଥିଲେ ଗୋ, ଭୂମି, କାଞ୍ଚନ କିଛି ଭୋଗହୁଏ ନାହିଁ; ସେଇଆ ହେଲା । କେତେକ ଲୋକ ଗୃହର ନିର୍ମାଣ-ମାନ ସଂପର୍କରେ ନାନା ଲଘୁମନ୍ତବ୍ୟ ପ୍ରକାଶ କରିବାରୁ କ୍ରମଶଃ ସେ ଘର ସଂପର୍କରେ ଆଗ୍ରହ ତୁଟିଗଲା । ଅମାନତ ସହ ଦାଖଲ କରିଥିବା ପ୍ରଥମ କିସ୍ତି ଟଙ୍କା ଫେରିପାଇବାକୁ ଦରଖାସ୍ତ କଲି । ଅମାନତରୁ ୨୫% ଟଙ୍କା କଟିଯାଇ ଅବଶିଷ୍ଟ ଟଙ୍କା ଫେରିପାଇଲି ।

ହେମ ପୂର୍ବରୁ ଥିଲା ଭୁବନେଶ୍ୱରର ଏକାମ୍ର କୋ ଅପରେଟିଭ୍ ସୋସାଇଟି ସଭ୍ୟା ତା'ର ଦେହାନ୍ତର ୧୪/୧୫ ଦିନ ପରେ ନୂଆପଲ୍ଲୀରେ ଗୋଟିଏ ପ୍ଲଟ୍ ଏଲ୍‌ଟ୍‌ମେଣ୍ଟ୍ ଆସିଲା, କିନ୍ତୁ ସେ ସ୍ୱର୍ଗଗାମୀ ଥିବାରୁ ଏଫିଡାଭିଟ୍ (ସତ୍ୟପାଠ) ହେଲା ଏକ ସମସ୍ୟା । ମୁଁ ମଧ ଭୁବନେଶ୍ୱରର ସରକାରୀ ସଭ୍ୟଙ୍କ ପାଇଁ ଉଦ୍ଦିଷ୍ଟ ଗୃହନିର୍ମାଣ ସମବାୟ ସମିତିର ସଭ୍ୟ ହେଲେ ମଧ ସମିତିରୁ କୌଣସି ପ୍ଲଟ୍ ଏଲ୍‌ଟମେଣ୍ଟ୍ ପାଇ ନାହିଁ ।

ରାଇରଙ୍ଗପୁର କଲେଜ୍‌ର ବାର୍ଷିକୋତ୍ସବରେ ନିମନ୍ତ୍ରିତ ହୋଇ ମେହେର ସାହିତ୍ୟ ସଂପର୍କରେ ଭାଷଣ ଦେଇଥିଲି । ଜାମସେଦ୍‌ପୁର କୋ-ଅପରେଟିଭ୍ କଲେଜ୍‌ର ଓଡ଼ିଆ ବିଭାଗର ରିଡ଼ର୍ ମୋର ପୂର୍ବତନ ସହପାଠୀ ଡଃ ଦୀନବନ୍ଧୁ ରଥଙ୍କ ନିମନ୍ତ୍ରଣକ୍ରମେ ଜାମସେଦ୍‌ପୁରରେ ବକ୍ତୃତା ଦେବାପାଇଁ ଯାତ୍ରା କରିଥିଲି । ସାଙ୍ଗରେ ବଡ଼ପୁଅ ଟୁକୁ ଏବଂ ସାନପୁଅ ବୁଲୁ ଯାଇଥିଲେ । ସଂଧ୍ୟାରେ ଭଞ୍ଜସାହିତ୍ୟ ସଂପର୍କରେ ଭାଷଣ ଦେଉଥିଲି । ଜାମସେଦ୍‌ପୁର ବହୁ ଓଡ଼ିଆବନ୍ଧୁ ସେଠାରେ ଉପସ୍ଥିତ ଥିଲେ । ସ୍ଥାନୀୟ ଶିକ୍ଷୀଙ୍କ ଉଦ୍ୟମରେ

ଆଦିବାସୀ ନୃତ୍ୟ ଓ ଓଡ଼ିଶୀ ନୃତ୍ୟର ବ୍ୟବସ୍ଥା ହୋଇଥିଲା । ପ୍ରତିବେଶୀ ପ୍ରଦେଶରେ ଓଡ଼ିଆ ସଂସ୍କୃତିର ସଂରକ୍ଷଣ ଓ ପ୍ରଚାର ପାଇଁ ଓଡ଼ିଆ ଭାଇମାନଙ୍କର ଏ ପ୍ରଚେଷ୍ଟା ଏକାନ୍ତ ପ୍ରଶଂସନୀୟ । ତହିଁ ଆରଦିନ ସକାଳେ ପ୍ରସିଦ୍ଧ ଗୋଲାପଫୁଲ ଉଦ୍ୟାନ ଓ କୃତ୍ରିମ ଝର ଦେଖି ଡିମ୍ନା କୃତ୍ରିମ ହ୍ରଦ ଦେଖିବା ପାଇଁ ଯାଇଥିଲୁଁ । ଦୁଇଟି ପାହାଡ଼ ମଝିରେ କୃତ୍ରିମ ହ୍ରଦଟି । ସେଠାରୁ ଫେରି ଟେଲ୍‌କୋ (ଟାଟା ଇଞ୍ଜିନିୟରିଂ ଏଣ୍ଡ୍ ଲୋକୋମୋଟିଭ୍ କଂପାନୀ) ଦେଖି ଫେରିଆସିଲୁଁ । ଲୁହା ଓ ଇସ୍ପାତ୍ କାରଖାନା (ଟିସ୍କୋ) ସେଦିନ ବନ୍ଦଥିଲା । ତହିଁ ଆରଦିନ ସକାଳୁ ବାରିପଦାକୁ ଫେରି ଆସିଲୁଁ ।

୧୯୭୧, ଫେବୃୟାରୀ ମାସରେ ଓଡ଼ିଆ ସାହିତ୍ୟ ସମାଜ ପକ୍ଷରୁ ଖିଚିଂକୁ ଏକ ଶିକ୍ଷାମୂଳକ ଭ୍ରମଣର ବ୍ୟବସ୍ଥା କରାଯାଇଥିଲା । ଛାତ୍ରଛାତ୍ରୀଙ୍କ ସହ ଅଧ୍ୟକ୍ଷ, ସାନପୁଅ ବୁଲୁ ମଧ୍ୟ ଯାଇଥିଲେ । ବାମନଘାଟିର ସର୍ପିଳ ଉଠାଣି ଓ ଶାଳବଣ ମଧ୍ୟସ୍ଥ ପିଚ୍‌ରାସ୍ତାରେ ଆମର ବସ୍ ଲକ୍ଷ୍ୟସ୍ଥଳକୁ ଛୁଟିଥିଲା । ବାମନଘାଟିରୁ ଉନ୍ନତତର ପ୍ରଦେଶରୁ ପୂର୍ବ ଦିଗର ନିମ୍ନଭାଗକୁ ଚାହିଁଲେ ଯେଉଁ ରମଣୀୟ ଦୃଶ୍ୟ ଆମର ନେତ୍ରାତିଥି ହୁଏ ତାହା ଅବିସ୍ମରଣୀୟ । ଶିମୁଳିପାଳ ପାହାଡ଼ର ପାଦଦେଶରେ ଲମ୍ବିଥିବା ରାସ୍ତାରେ ବସ୍ ଯେତେବେଳେ ଛୁଟୁଥିଲା, ଉଭୟ ପାର୍ଶ୍ୱସ୍ଥ ଅରଣ୍ୟରୁ ପକ୍ଷୀମାନଙ୍କର ମଧୁର କାକଳି ନୈସର୍ଗିକ ସଂଗୀତର ମଧୁମୂର୍ଚ୍ଛନା ସୃଷ୍ଟି କରିଥିଲା । ବାମପାର୍ଶ୍ୱସ୍ଥ ଅରଣ୍ୟର ଶାଳବୀଥିରେ ଗୟଳ ଓ ହରିଣମାନଙ୍କର ବିହାର ବୟସ୍କ ଓ ଶିଶୁମାନଙ୍କର କୌତୁକ ଦୃଷ୍ଟି ଆକର୍ଷଣ କରୁଥିଲା ।

କୁଶଳନଦୀ ପାରିହୋଇ ଶେଷରେ ପହଞ୍ଚୁ ଖିଚିଂରେ । ଖିଚିଂ ମନ୍ଦିରର ଚାମୁଣ୍ଡା ମୂର୍ତ୍ତି, ମନ୍ଦିର ଗାତ୍ରର କାରୁକାର୍ଯ୍ୟ ଓ ସଂଗ୍ରହାଳୟ (museum) ଦର୍ଶନ କରି ନିକଟସ୍ଥ ଏକ ପାହାଡ଼ିଆ ନଦୀ ତୀରସ୍ଥ ବଙ୍ଗଳାରେ ଭୋଜିର ଆୟୋଜନ ଚାଲେ । ଭୋଜି ସରୁ ସରୁ ରାତି ୯ଟା ବାଜିଯାଏ, ତା'ପରେ ବାରିପଦା ପ୍ରତ୍ୟାବର୍ତ୍ତନ ।

ବାରିପଦାରେ ଶୀତକାଳରେ ଯେପରି ଅତିଶୟ ଥଣ୍ଡା, ଗ୍ରୀଷ୍ମକାଳରେ ସେହିପରି ଅତ୍ୟଧିକ ଗରମ । ଶୀତକାଳରେ ଘରକାନ୍ଥ, ଚଟାଣ, ଜିନିଷପତ୍ର, ବହିପତ୍ର ଥଣ୍ଡା ହେବାପରି ଗ୍ରୀଷ୍ମକାଳରେ ସବୁ ତାତି ଯାଏ । ବାରିପଦାରେ ପୁଣି ଟିଣ ଓ ଖପରିଲି ଘରର ସଂଖ୍ୟା ବେଶି । ଏ଼ଇ ଛୋଟ ସହରରେ ରଥଯାତ୍ରା, ଦଶହରା, କାଳୀପୂଜା ଓ ଅନ୍ୟାନ୍ୟ ପର୍ବପର୍ବାଣି ଦେଖ ଉପଭୋଗ୍ୟ । ଦଶହରା ସମୟରେ ବିଭିନ୍ନ ଆକର୍ଷଣୀୟ ବସ୍ତୁ ସହିତ କୃତ୍ରିମ ଯାନ୍ତ୍ରିକ କୌଶଳ ପ୍ରୟୋଗରେ ମୂର୍ତ୍ତିଗୁଡ଼ିକର ନୃତ୍ୟ ବିଶେଷ ଆକର୍ଷଣୀୟ । ଚଇତ୍ର ମାସରେ ବାରିପଦାର ବିଖ୍ୟାତ ଛଉନୃତ୍ୟ ଦୀର୍ଘକାଳ ହେଲା ଅନୁଷ୍ଠିତ ହୋଇଆସୁଛି । ରାଜ ପୃଷ୍ଠପୋଷକତା ଲୋପ ହେବାପରେ ବର୍ତ୍ତମାନ ଓଡ଼ିଶା ସରକାରଙ୍କର ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ଆର୍ଥିକ ଅନୁଦାନ ଦିଆଯାଇଛି । ଛଉନୃତ୍ୟ ସହ ବାରିପଦାର ସ୍ୱନାମଧନ୍ୟ ସଂଗୀତଜ୍ଞ ରାଧାକୃଷ୍ଣ ଭଞ୍ଜ, ଆଲୋକଚିତ୍ର ଶିଳ୍ପୀ ପୂର୍ଣ୍ଣଚନ୍ଦ୍ର ବିନ୍ଧାଣୀ ଏବଂ ନାଟ୍ୟକାର ଆନନ୍ଦଶଙ୍କର ଦାସଙ୍କ ନାମ ସ୍ମରଣକୁ ଆସେ ।

ମ୍ୟାଟ୍ରିକ୍ ପରୀକ୍ଷା ଯେତିକି ନିକଟବର୍ତ୍ତୀ ହେଉଥାଏ, ଟୁକୁର ପରିଶ୍ରମ ଓ ଏକାଗ୍ରତା ସେତିକି ବଢୁଥାଏ । ଦୁଇ ତିନି ଜାଗାରେ ଟିଉସନ କରୁଥିବାରୁ ଶୀତଦିନେ ବଡ଼ିଭୋରୁ ଉଠି ହାତରେ ଗ୍ଲୋଭସ୍ ପିନ୍ଧି ସାଇକେଲ୍‌ରେ ବିଭିନ୍ନ ଶିକ୍ଷକଙ୍କ ନିକଟକୁ ପଢ଼ିବା ପାଇଁ ଯାଏ । ଅରୁଣ ଓ ତପନର ପଢ଼ା-ତତ୍ତ୍ୱ ନିଜେ ନେଉଥାଏଁ । ମ୍ୟାଟ୍ରିକ୍ ପରୀକ୍ଷା ସୁରୁଖୁରୁରେ ହୋଇଗଲା । ଟୁକୁ ବି ପରୀକ୍ଷାରେ ଭଲ କରିଥିଲା ।

ଜୁନ୍ ମାସରେ ଟୁକୁର ପରୀକ୍ଷାଫଳ ପ୍ରକାଶ ପାଏ । ଶତକଡ଼ା ୭୮ ରଖି ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥାଏ । ବାରିପଦା, ଭଦ୍ରକ, ବି.ଜେ.ବି. କଲେଜ୍‌ର ପ୍ରାକ୍ ବିଶ୍ୱବିଦ୍ୟାଳୟ ବିଜ୍ଞାନ ଶ୍ରେଣୀରେ ନାମ ଲେଖାପାଇଁ ଦରଖାସ୍ତ କରାଯାଏଁ ।

୧୯୭୧, ଜୁଲାଇ ଆରମ୍ଭରେ ମୋତେ ଡି.ଏଫ୍.ଓ. ଙ୍କ ପାଖ କ୍ୱାର୍ଟରସ୍‌ଟି ଦିଆଯାଏ । କ୍ୱାର୍ଟରସ୍‌କୁ ଯିବାପାଇଁ ଆଗ୍ରହ ନଥିଲେ ମଧ୍ୟ ବାଧ୍ୟହୋଇ ଶେଷକୁ ପୂଜାଟିଏ କରି ଗଲି । କ୍ୱାର୍ଟରସ୍ ଖୁବ୍ ବଡ଼, କିନ୍ତୁ ଉଇମାନଙ୍କର ପ୍ରାଦୁର୍ଭାବ କମ ନୁହେଁ । ମୋର ପଶ୍ଚିମପାଖକୁ ଥାଆନ୍ତି ପ୍ରାଣୀବିଜ୍ଞାନ ଅଧ୍ୟାପକ ଜାଫୁଲା ଖାଁ । ଅଗଣାରେ ଟଗର ଫୁଲଗଛ ଥିବାରୁ ସକାଳୁ ଗଛମୂଳରେ ଫୁଲ ଗଦା ହୋଇଥାଏ ।

ବଦଳି ଆଦେଶ ଆସିବାକୁ ଡେରି ହେବାରୁ ଏମ୍.ପି.ସି. କଲେଜ୍‌ରେ ଟୁକୁର ନାମ ଲେଖା ହୋଇଯାଏ; କିନ୍ତୁ ଭଦ୍ରକ କଲେଜ୍ ସହ ଯୋଗାଯୋଗ ରଖିଥାଏଁ । ଅଗଷ୍ଟ ମାସରେ ଭଦ୍ରକ କଲେଜକୁ ବଦଳି ଆଦେଶ ଆସେ । ଆଦେଶ ପାଇଲାମାତ୍ରେ ଭଦ୍ରକ ଯାଇ ଅଧ୍ୟକ୍ଷ ଓ ପୁରାତନ ବନ୍ଧୁମାନଙ୍କ ସହ କଥାବାର୍ତ୍ତା କରି ଫେରିଆସେ । ଅଗଷ୍ଟ ୭ ତାରିଖରେ ଦାୟିତ୍ୱମୁକ୍ତ ହୋଇ ଟୁକୁର ସି.ଏଲ୍.ସି. ନେଇ ରବିବାର ଦିନ ଭଦ୍ରକ ଚାଲିଯାଏଁ । ସନାତନ ମହାନ୍ତି ସେତେବେଳେ ଉତ୍ତର ଛାତ୍ରାବାସର ତତ୍ତ୍ୱାବଧାରକ । ଅଧ୍ୟକ୍ଷ ଓ ସନାତନ ବାବୁଙ୍କର ଅନୁମତି ନେଇ ଟୁକୁକୁ ହଷ୍ଟେଲ୍‌ରେ ରଖାଇବାର ବ୍ୟବସ୍ଥା କରେଁ ।

ଅଗଷ୍ଟ ୯ (ସୋମବାର) ପୂର୍ବାହ୍ଣରେ କଲେଜ୍‌ରେ ଯୋଗଦାନ କରି କଲେଜ୍ ଗେଷ୍ଟ ହାଉସ୍‌ରେ ସପ୍ତାହେ ରହିଲି । ତା'ପରେ ଅଧ୍ୟକ୍ଷ ୟୁ.ଜି.ସି.ର ଆର୍ଥିକ ଅନୁଦାନରେ ନିର୍ମିତ ହୋଇଥିବା ୧୭ନଂ କ୍ୱାର୍ଟରସଟି ମୋ ନାମରେ ଆଲଟ କରନ୍ତି । କ୍ୱାର୍ଟରସ୍‌ଟି ଦକ୍ଷିଣମୁହାଁ ହରିଜନ ସାଇର ନିକଟବର୍ତ୍ତୀ । ପୂର୍ବକୁ ଆମ୍ବତୋଟା; ଦକ୍ଷିଣ ପୂର୍ବରେ ବାଉଁଶ ଓ ତାଳଗଛ । ଦକ୍ଷିଣ ଓ ପୂର୍ବରେ ଖୋଲାସ୍ଥାନ ଥିବାରୁ ଏବଂ କ୍ୱାର୍ଟରସ୍‌ଟି ଏକପାଖିଆ ହୋଇଥିବାରୁ ମୋର ରୁଚି ଅନୁକୂଳ ହୋଇଥିଲା । ଏଥିରେ ପୂର୍ବରୁ ଥିଲେ ମୋର ପୁରାତନ ସହପାଠୀ ଅଧ୍ୟାପକ ନରେନ୍ଦ୍ର ମୋହନ ବେହେରା । ତାଙ୍କର ସେତେବେଳେ ବରଗଡ଼ କଲେଜକୁ ବଦଳି ହୋଇ ଯାଇଥାଏ । ନରେନ୍ଦ୍ର ବେହେରା ସହଜେ ସାଧୁ ପ୍ରକୃତର ଲୋକ । ପ୍ରକୃତି-ସୌନ୍ଦର୍ଯ୍ୟ ପ୍ରେମୀ ଓ ପରିଶ୍ରମୀ ହୋଇଥିବାରୁ ଘର ଅଗଣା ମଧ୍ୟରେ ନାନା ପ୍ରକାର ଗଛ ସଜ୍ଜିତ ଭାବରେ ଲଗାଇଥାନ୍ତି । ଅଗଣାରେ ଛୋଟ ଓ ବଡ଼ ଲେମ୍ବୁଗଛର ସଂଖ୍ୟା କମ୍ ନୁହେଁ ।

ଘରଟିକୁ ପରିଷ୍କାର ପରିଚ୍ଛନ୍ନ ଓ ଚୂନ ଧୂଲେଇ କରି କିଛି ଖଟ ପକାଇ ଟ୍ରଙ୍କକୁ ରଖାଇ ଦେଲି । ତା'ପରେ ବାରିପଦାରୁ ଜିନିଷପତ୍ର ଆଣି ବାଗୁରାଇ ହାଇସ୍କୁଲ୍‌ରେ ତପନ ଓ ଅରୁଣର ନାମ ଲେଖାଇଦେଲି ।

## ॥ ଛଅ ॥

### ପୁନଶ୍ଚ ଭଦ୍ରକ କଲେଜରେ ଯୋଗଦାନ :

୧୯୪୮ରୁ ଭଦ୍ରକ କଲେଜ୍ ଘରୋଇ ପରିଚାଳନାଧୀନ ଥିଲା । ବିନୟ ରଂଜନ ରକ୍ଷିତ୍‌ଙ୍କ ପରେ ସରକାରୀ ଡେପୁଟେସନ୍‌ରେ ଡଃ ଶ୍ରୀନିବାସ ସାହୁ ଭଦ୍ରକ କଲେଜ୍‌ର ଅଧକ୍ଷ ହେଲେ । ଡଃ ସାହୁଙ୍କ ପରେ ବଳରାମ ସାହୁ କିଛିଦିନ ଅଧକ୍ଷ ଦାୟିତ୍ୱରେ ରହି ତା'ପରେ ହେଲେ ଅଧକ୍ଷ । ମଝିରେ ପରିଚାଳନା ବୋର୍ଡ଼ର ସଭ୍ୟମାନଙ୍କ ମଧ୍ୟରେ ମତଭେଦ ଦେଖାଗଲା । ଦୀର୍ଘକାଳ ଧରି ସେକ୍ରେଟେରୀ ଦାୟିତ୍ୱ ବହନ କରିଥିବା ଶ୍ରୀ ନରେନ୍ଦ୍ର ପ୍ରସାଦ ଦାସଙ୍କୁ ଆତ୍ମ-ସମ୍ମାନ ଦୃଷ୍ଟିରୁ ଇସ୍ତଫା ଦେବାକୁ ପଡ଼ିଲା । ତା'ପରେ କଲେଜ୍ ସେକ୍ରେଟେରୀ ହେଲେ ଆଡ୍‌ଭୋକେଟ୍ ଶ୍ରୀ ଦେବ ମହାପାତ୍ର । ଏହାଙ୍କ ସମୟରେ ପରିଚାଳନାଗତ ମତଭେଦ ହେତୁ କଲେଜ୍‌ରେ ଅଧକ୍ଷ ଓ ଅଧ୍ୟାପକମାନଙ୍କ ମଧ୍ୟରେ ବିଭେଦ, ମତବୈଷମ୍ୟ ଦେଖାଗଲା । କଲେଜରେ ଦୀର୍ଘକାଳ ଧରି ଅଶାନ୍ତ ବାତାବରଣ ଲାଗି ରହିବାରୁ ଶେଷରେ ପରିଚାଳନା ବୋର୍ଡ଼ ଏହାକୁ ସରକାରୀ ନିୟନ୍ତ୍ରଣରେ ଛାଡ଼ିବାକୁ ବାଧ ହୋଇଥିଲେ । ସରକାର ୧୯୭୧ ମସିହା ମାର୍ଚ୍ଚ ମାସରେ ଏହାକୁ ହାତକୁ ନେଲେ । ସେ ସମୟ ପର୍ଯ୍ୟନ୍ତ ଯେଉଁମାନେ ଘରୋଇ ପରିଚାଳନା ଅଧୀନରେ ରିଡ଼ର୍ ଥିଲେ ସେମାନଙ୍କର ରିଡ଼ର୍‌ସିପ୍ ସରକାର ଗ୍ରହଣ କରିନେଲେ । ସରକାରୀ ପରିଚାଳନାଧୀନରେ ପ୍ରଥମ ଅଧକ୍ଷ ହେଲେ ଶ୍ରୀ ତ୍ରିଲୋଚନ ମିଶ୍ର ।

ଶ୍ରୀଯୁକ୍ତ ମିଶ୍ର ଓଡ଼ିଶା ସରକାରଙ୍କର ଶିକ୍ଷା ବିଭାଗରେ ଜଣେ ସୁଦକ୍ଷ ଇଂରାଜୀ ଅଧ୍ୟାପକ ଭାବରେ ସୁନାମ ଅର୍ଜନ କରିଥିଲେ । ସେ ଜଣେ ବହୁପାଠୀ ଦୃଢ଼ବ୍ୟକ୍ତିତ୍ୱ ସଂପନ୍ନ ପ୍ରବୀଣ ଅଧ୍ୟାପକ ଥିବାରୁ ଉଭୟ ସଂସ୍କୃତ ଓ ଇଂରାଜୀ ସାହିତ୍ୟରେ ଗଭୀର ପ୍ରବେଶ ଥିବାରୁ ସ୍ୱଳ୍ପକାଳ ମଧ୍ୟରେ କଲେଜ୍‌ରେ ସୁସ୍ଥ ଶିକ୍ଷାର ବାତାବରଣ ଫେରାଇ ଆଣିଥିଲେ । ଘରୋଇ ପରିଚାଳନାଧୀନ ସମୟର କେତେଜଣ ଅଧ୍ୟାପକଙ୍କୁ ବରଗଡ଼, ଖଲିକୋଟ ପ୍ରଭୃତି କଲେଜକୁ ବଦଳି କରାଯାଇ ସରକାରୀ କଲେଜରୁ କେତେକ ଅଧ୍ୟାପକଙ୍କୁ ବଦଳି ସୂତ୍ରରେ ଅଣାଗଲା । ଶ୍ରୀ ମିଶ୍ର ତାଙ୍କର ଅଧକ୍ଷ ପଦକୁ ଏକ ଚାଲେଞ୍ଜ ଭାବରେ ଗ୍ରହଣ କରି ଏକ ମିସନାରୀ ମନୋଭାବ ନେଇ ଅଧ୍ୟାପନା, ଲାଇବ୍ରେରୀ, ଅଫିସ୍ ଓ ହଷ୍ଟେଲ୍ ପରିଚାଳନା କ୍ଷେତ୍ରରେ ଶୃଙ୍ଖଳିତ ବାତାବରଣ ସୃଷ୍ଟି କରିବାରେ ପ୍ରୟାସୀ ହେଲେ । ଦୀର୍ଘକାଳର ଘରୋଇ ପରିଚାଳନା-କାଳୀନ ଯେଉଁ କେତୋଟି ସ୍ଥାନୀୟ ଅସୁସ୍ଥ ପରଂପରା ଥିଲା, ଧୀରେଧୀରେ

ତା'ର ମୁକାବିଲା କରିବାକୁ ଶ୍ରୀଯୁକ୍ତ ମିଶ୍ରଙ୍କୁ ସାହସର ସହ କମ ଆୟାସ କରିବାକୁ ହୋଇନାହିଁ । କଲେଜ୍‌ରେ ଅଧ୍ୟାପନା ଓ ଅଫିସ୍ ପରିଚାଳନା କ୍ଷେତ୍ରରେ ସୁସ୍ଥ ବାତାବରଣ ସତ୍ତ୍ୱେ କେତେକ ରାଜନୈତିକ ଦଳ ପ୍ରଭାବିତ ଛାତ୍ର କଲେଜ୍‌ରେ ନିର୍ବାଚନ ମାଧ୍ୟମରେ ନିଜ ନିଜର କର୍ତ୍ତୃତ୍ୱ ଜାହିର କରିବାକୁ ଏବଂ କେତେକ ଅଯୌକ୍ତିକ କାରଣ ନେଇ ଆନ୍ଦୋଳନ ଜରିଆରେ ବିଶୃଙ୍ଖଳା ସୃଷ୍ଟି କରିବାକୁ ଦୁଇଥର ଚେଷ୍ଟା କରିଥିଲେ, ଏପରିକି ଥରେ କେତେକ ଉଦ୍ଧତ ଉଚ୍ଛୃଙ୍ଖଳ ଛାତ୍ର ଅଫିସ୍ ମଧ୍ୟରେ ଦଳବଦ୍ଧ ହୋଇ ତାଙ୍କୁ ଆକ୍ରମଣ କରିବା ପାଇଁ ତାଙ୍କ ଉପରକୁ ଏକ ବାଲ୍ଟି ଫୋପାଡ଼ି ଥିଲେ । ପୁଣି ଆଉଥରେ ଷ୍ଟାଫ୍ କମନ୍‌ରୁମ୍ ମଧ୍ୟରେ ଅଧ୍ୟକ୍ଷ ଓ ଅଧ୍ୟାପକମାନେ ଉପସ୍ଥିତ ଥିବା ସମୟରେ କେତେକ ଉଚ୍ଛୃଙ୍ଖଳ ଛାତ୍ର କବାଟକୁ ବାରମ୍ବାର ଧକ୍କା ଦେଇ ଟେଲିଫୋନ ଲାଇନ୍ କାଟି ସ୍କାଇଲାଇଟ୍‌ର କାଚ ଭାଙ୍ଗି ଜଣେ ଦୁଇଜଣ ଅଧ୍ୟାପକଙ୍କୁ ଆହତ କରିଥିଲେ । କିନ୍ତୁ ଏଇ କେତୋଟି ଛାତ୍ରାନ୍ଦୋଳନ ସତ୍ତ୍ୱେ ଶ୍ରୀ ମିଶ୍ରଙ୍କର ଅଧ୍ୟକ୍ଷତା କାଳରେ ଅଧ୍ୟାପନାର ମାନ ଉନ୍ନତ ହୋଇଥିଲା । କଲେଜ୍‌ର ପରୀକ୍ଷାର୍ଥୀମାନେ ବିଶ୍ୱବିଦ୍ୟାଳୟରେ ବିଭିନ୍ନ ବର୍ଷରେ ପୋଜିସନ୍ ରଖି କଲେଜ୍‌ର ମର୍ଯ୍ୟାଦା ବଢ଼େଇଥିଲେ ।

ତାଙ୍କ ସମୟରେ ବିଭିନ୍ନ ଫାକଲ୍‌ଟିରେ ନିୟମିତ ସେମିନାର୍ ହେବା ସଂଗେ ସଂଗେ ଅର୍ଥନୀତି, ଦର୍ଶନ ଓ ବାଣିଜ୍ୟ ବିଭାଗ ପକ୍ଷରୁ ରାଜ୍ୟସ୍ତରୀୟ ସମ୍ମିଳନୀମାନ ଅନୁଷ୍ଠିତ ହୋଇଥିଲା । ଏଥିରେ ଓଡ଼ିଶା ଓ ଓଡ଼ିଶା ବାହାରୁ ବହୁ ପ୍ରବୀଣ ଅଧ୍ୟାପକ ଓ ଗବେଷକ ଯୋଗଦେଇ ସନ୍ଦର୍ଭମାନ ଉପସ୍ଥାପନ କରିଥିଲେ ଏବଂ ସ୍ୱତନ୍ତ୍ର ସ୍ମରଣିକା (Souvenir) ମାନ ପ୍ରକାଶିତ ହୋଇଥିଲା । ୧୯୭୫ ମସିହାରେ କଲେଜ୍‌ର ରଜତଜୟନ୍ତୀ ଉତ୍ସବ ମହା-ସମାରୋହରେ ଅନୁଷ୍ଠିତ ହୋଇଥିଲା ଏବଂ ସେହି ଉଦ୍ଦେଶ୍ୟରେ କଲେଜ୍ ମୁଖପତ୍ର 'ପଲ୍ଲୀଭାରତୀ'ର ବହୁ ଆଲୋକଚିତ୍ର ସମ୍ବଳିତ ଏକ ବିଶେଷ ସ୍ମରଣିକା ସଂଖ୍ୟା ପ୍ରକାଶିତ ହୋଇଥିଲା । ଏଥିରେ କଲେଜ୍ ଓ ଭଦ୍ରକ ସଂପର୍କରେ ବହୁ ଉପାଦେୟ ଲେଖା ସ୍ଥାନପାଇଥିଲା ।

କଲେଜ୍ ଓ ହଷ୍ଟେଲ୍‌ର ବାର୍ଷିକୋତ୍ସବମାନଙ୍କରେ ଓ ଅନ୍ୟାନ୍ୟ ସମୟରେ ବହୁ ପ୍ରବୀଣ ପ୍ରଶାସକ, ଗବେଷକ, ସାହିତ୍ୟିକ, କବି ଓ ନାଟ୍ୟକାର କଲେଜ୍‌ରେ ଭାବଗର୍ଭକ ଭାଷଣ ପ୍ରଦାନ କରିଥିଲେ । ଏମାନଙ୍କ ମଧ୍ୟରେ ଓଡ଼ିଶାର ରାଜ୍ୟପାଳ ବି.ଡ଼ି. ଜତ୍ତି, ଡଃ ହରେକୃଷ୍ଣ ମହତାବ, ଡଃ ସଦାଶିବ ମିଶ୍ର, ମନମୋହନ ମିଶ୍ର, ମଧୁ ଦଣ୍ଡବତେ, ଜଷ୍ଟିସ୍ ହରିହର ମହାପାତ୍ର, ଜଷ୍ଟିସ୍ ରଂଗନାଥ ମିଶ୍ର, ନିତ୍ୟାନନ୍ଦ ମହାପାତ୍ର, ମନୋରଂଜନ ଦାସ, ସୁରେନ୍ଦ୍ର ମହାନ୍ତି, ହୃଦାନନ୍ଦ ରାୟ, କାଙ୍ଗାଳି ଚରଣ ପତି (ପ୍ରପତ୍ତି), ନନ୍ଦିନୀ ଶତପଥୀ, କବି ଚିନ୍ତାମଣି ବେହେରା ଓ ରବି ନାରାୟଣ ବରାଳ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଅଧ୍ୟକ୍ଷ ମହୋଦୟ କେବଳ କଲେଜ୍ ପ୍ରଶାସନ ମଧ୍ୟରେ ନିଜକୁ ଆବଦ୍ଧ ନ କରି ଅଧ୍ୟାପନା, ସେମିନାର ଓ ସାଧାରଣ ସଭାମାନଙ୍କରେ ବିଭିନ୍ନ ବିଷୟରେ ଭାଷଣମାନ ପ୍ରଦାନ କରି କଲେଜ୍‌ରେ ଅଧ୍ୟାପକ ଓ ଛାତ୍ରଙ୍କ ମଧ୍ୟରେ ନିଜର ଉଚ୍ଚ ଭାବମୂର୍ତ୍ତି ପ୍ରତିଷ୍ଠିତ କରିଥିଲେ ।

ସେ ଯେପରି ଥିଲେ ଜଣେ ଦକ୍ଷ ପ୍ରଶାସନ ସେହିପରି ଥିଲେ ପ୍ରବୀଣ ଶିକ୍ଷକ। ସେ ଅନ୍ୟମାନଙ୍କ ପରି ଶିକ୍ଷକ ଓ ଛାତ୍ରଙ୍କ ନିକଟରେ ନିଜର ଅଧକ୍ଷ ସୁଲଭ କୃତ୍ରିମ ଗାମ୍ଭୀର୍ଯ୍ୟ ପ୍ରକାଶ ନ କରି ସେମାନଙ୍କ ସହ ମିଶିଯାଉଥିଲେ। ନିଜର ମଧୁର ଆଳାପ ଓ ସ୍ନେହ କୋମଳ ବ୍ୟବହାରରେ ସେ ସମସ୍ତଙ୍କୁ ଆପଣାର କରି ପାରିଥିଲେ। ହେଡ୍‌କ୍ଲର୍କ ସରିଫ୍ ବାବୁଙ୍କ ସହ ବେଳେବେଳେ ପରିହାସ କରି ଉର୍ଦ୍ଦୁରେ ଗୋଟିଏ ଗୋଟିଏ ଗଜଲ ଆବୃତ୍ତି କରୁଥିଲେ। ଗୁଣର ପ୍ରଶଂସା କରିବା ସହ ଅଧ୍ୟାପକ ଜଣଜଣଙ୍କର ବକ୍ତୃତାଭଙ୍ଗୀକୁ ନେଇ ଚମତ୍କାର ହାସ୍ୟରସ ସୃଷ୍ଟି କରୁଥିଲେ, କିନ୍ତୁ ତାଙ୍କର ଭାବପ୍ରବଣ ମୁହୂର୍ତ୍ତର ମଧୁର ଭର୍ତ୍ସନା ଅଧ୍ୟାପକ ଓ ଛାତ୍ରଙ୍କ ମଧ୍ୟରେ ସାମାନ୍ୟ ଭୀତି ସଞ୍ଚାର କରୁଥିଲା।

ଅଳ୍ପସମୟ ମଧ୍ୟରେ ଛାତ୍ରମାନେ ମୋର ଅଧ୍ୟାପନା ପଦ୍ଧତି ପ୍ରତି ଆକୃଷ୍ଟ ହେବାର ଲକ୍ଷ୍ୟ କରୁଥାଏ। ସେତେବେଳେ ଅନର୍ସ କ୍ଲାସରେ ଯେଉଁ ଛାତ୍ରମାନେ ଥିଲେ, ସେମାନେ ଉଭୟ ପାଠ୍ୟ ଓ ବାହ୍ୟ ବିଷୟରେ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ। ମୋର ଛାତ୍ର ଖଗେନ୍ଦ୍ର ନାଥ ମଲ୍ଲିକ, ଶଶଧର ଦାସ (ବର୍ତ୍ତମାନ ଦୁହେଁ ବରିଷ୍ଠ ଅଧ୍ୟାପକ) ସେମିନାର ପାଠଚକ୍ର ଆୟୋଜନରେ ବିଶେଷ ତତ୍ପର ଥିଲେ।

## ଅଧ୍ୟାପକମାନଙ୍କ ପ୍ରତି ମୋର ସୂଚନା :

ପ୍ରବନ୍ଧ, ଗଳ୍ପ, ଉପନ୍ୟାସ, ନାଟକ, ଏକାଙ୍କିକା, କବିତା ଓ କାବ୍ୟ : ସାହିତ୍ୟର ଏଇ ବିଭିନ୍ନ ବିଷୟର ଶିକ୍ଷା ପ୍ରଦାନ ସଂପର୍କରେ ମୁଁ ବେଳେବେଳେ ଅଧ୍ୟାପକମାନଙ୍କୁ ଆବଶ୍ୟକୀୟ ସୂଚନା ଦେଉଥିଲି। କେତେକ ଅଧ୍ୟାପକ ନିର୍ଦ୍ଦିଷ୍ଟ ଗୋଟିଏ ଦିଓଟି ବିଷୟ ପଢ଼େଇବାରେ କେବଳ ଆଗ୍ରହ ପ୍ରକାଶ କରି ଅନ୍ୟଗୁଡ଼ିକ ପ୍ରତି ଉପେକ୍ଷା କରୁଥିବାରୁ ସେମାନଙ୍କୁ ବୁଝାଇ କହେଁ : ବିଶେଷଜ୍ଞ ସୁଲଭଜ୍ଞାନ ଓ ଶିକ୍ଷା ପ୍ରଦାନ ଅବଶ୍ୟ ଆବଶ୍ୟକ କିନ୍ତୁ ଇଣ୍ଟରମିଡ଼ିଏଟ୍ ଶ୍ରେଣୀରୁ ଆରମ୍ଭ କରି ସ୍ନାତକ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟାପନା କରିବା ଆବଶ୍ୟକ ହେଉଥିବାରୁ ବିଭିନ୍ନ ବିଷୟର ଅଧ୍ୟୟନ, ଜ୍ଞାନାର୍ଜନ ଓ ପାଠ୍ୟ ପ୍ରସ୍ତୁତି ଏବଂ ପ୍ରାସଙ୍ଗିକ ନୋଟ୍ ଏକାନ୍ତ ଆବଶ୍ୟକ। କିଛିବର୍ଷ ବିଭିନ୍ନ ବିଷୟର ଅଧ୍ୟାପନା କରି ତା'ପରେ ବିଶେଷଜ୍ଞ ଭାବରେ କୌଣସି ଗୋଟିଏ ବିଷୟ ଅଧ୍ୟାପନା କରିବା ଉଚିତ। ତା'ଛଡ଼ା ବିଶେଷଜ୍ଞାନ ଅର୍ଜନ ଓ ତୁଳନାତ୍ମକ ଅଧ୍ୟୟନ ନ କରି ଗୋଟିଏ ଗୋଟିଏ କରି ବିଶେଷତଃ କାବ୍ୟ ପଢ଼ାଇବା ପାଇଁ ଜଣେ ଜଣେ ଜିଦ୍ ଧରନ୍ତି। ଏହାଦ୍ୱାରା ଅଧ୍ୟାପକଙ୍କର ଦୈନ୍ୟ ପ୍ରକାଶ ପାଏ; ଯଥାର୍ଥ ଭାବରେ ଅଧ୍ୟାପନା କରି ନପାରି ଛାତ୍ରଙ୍କ ନିକଟରେ ଉପହସିତ ହୁଅନ୍ତି। ଜଣେ ଅଧ୍ୟାପିକା ମେହେରଙ୍କ 'ତପସ୍ୱିନୀ' କାବ୍ୟ ପଢ଼ାଇବାକୁ ଏକାଧିକାବାର ଅନୁରୋଧ କଲେ। 'ତପସ୍ୱିନୀ' ପଢ଼ାଇବାକୁ ହେଲେ ରଘୁବଂଶ, ଉତ୍ତର ରାମଚରିତ, ବାଲ୍ମୀକି ରାମାୟଣର ପ୍ରାସଙ୍ଗିକ ଅଂଶ, ଶ୍ରୀମଦ୍ ଭଗବଦ୍‌ଗୀତା ପ୍ରଭୃତି ଅଧ୍ୟୟନ କରିବାକୁ ହେବ ଏବଂ ତପସ୍ୱିନୀରେ ଏପରି ଗୁଡ଼ିଏ

ପଦ ରହିଛି ଗଭୀର ଭାବରେ ଚିନ୍ତା ନ କଲେ ଠିକ୍ ବ୍ୟାଖ୍ୟା କରି ହୁଏ ନାହିଁ । ଏସବୁ ଅଧ୍ୟୟନ କରିଛନ୍ତି କି ବୋଲି ପ୍ରଶ୍ନ କରି ଗୋଟିଏ ଦିଓଟି ପଦ ବୁଝାଇବାକୁ କହିଲି । ସଂସ୍କୃତର ଉଦିଷ୍ଟ ଗ୍ରନ୍ଥ ତ ପଢ଼ି ନଥିଲେ; ପୁଣି ଯେଉଁ ପଦ ବୁଝାଇବା ପାଇଁ କହିଲି, ସେ ପାରିଲେ ନାହିଁ ।

ପ୍ରବନ୍ଧ, ଉପନ୍ୟାସ ପଢ଼ାଇବାର ପ୍ରଣାଳୀ କେତେକ ଜାଣନ୍ତି ନାହିଁ । ଘରେ ପ୍ରସ୍ତୁତ ନ ହୋଇ କେବଳ ଶ୍ରେଣୀରେ ପ୍ରବନ୍ଧ ବା ଉପନ୍ୟାସର ପୃଷ୍ଠା ପରେ ପୃଷ୍ଠା ପଢ଼ିଚାଲନ୍ତି । ଏହାଦ୍ୱାରା ପ୍ରବନ୍ଧ/ଉପନ୍ୟାସର ପଢ଼ା ତ ହୁଏନାହିଁ । ଛାତ୍ରମାନେ ଅଧ୍ୟାପକଙ୍କର ଅଧ୍ୟାପନା ରୀତିରେ ସନ୍ତୁଷ୍ଟ ନ ହୋଇ ଲଘୁ ଧାରଣା ପୋଷଣ କରନ୍ତି । ପ୍ରବନ୍ଧ ପଢ଼ାଇବାକୁ ହେଲେ ପ୍ରଥମତଃ ଅଧ୍ୟାପକଙ୍କର ସେଇଟିକୁ ପୂର୍ବରୁ ପଢ଼ି ତା'ର ମୁଖ୍ୟ ଚିନ୍ତାଧାରା ମନେ ରଖିବା ଉଚିତ । ଶ୍ରେଣୀରେ ପ୍ରଥମେ ସ୍ଥୂଳତଃ ପ୍ରବନ୍ଧର ଆଭିମୁଖ୍ୟ ସଂପର୍କରେ ସୂଚନା ଦେଇ ପ୍ରତ୍ୟେକ ପାରା କିମ୍ବା ଏକାଧିକ ପାରାରେ ଥିବା ଭାବ ବୁଝାଇ କହିବା ଉଚିତ । ଯେଉଁ ସ୍ଥଳରେ ପ୍ରୟୋଜନ ଅନୁଭବ କରାଯିବ ସେଠାରେ ବାକ୍ୟ ଅନୁଚ୍ଛେଦର ସରଳ ବ୍ୟାଖ୍ୟା କରିବା ଉଚିତ୍ ।

ଉପନ୍ୟାସ କ୍ଷେତ୍ରରେ ଶ୍ରେଣୀରେ ଅଧ୍ୟାୟ ପରେ ଅଧ୍ୟାୟ ପଢ଼ାଇବାର ଆବଶ୍ୟକତା ନାହିଁ । ଅଧ୍ୟାପକ ସମଗ୍ର ଉପନ୍ୟାସଟିକୁ ପୂର୍ବରୁ ପଢ଼ିନେଇ ବିଷୟବସ୍ତୁ, ପ୍ଲଟ୍, ଚରିତ୍ର, ସାମାଜିକ ଓ ବସ୍ତୁଗତ ସଂସ୍ଥାନ, ଗଠନଶୈଳୀ ଓ ଔପନ୍ୟାସିକଙ୍କର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ସଂପର୍କରେ ଆଲୋଚନା କରି ଦେଇ ଭାବ, ଭାଷା ଓ ପ୍ରକାଶଭଙ୍ଗୀ ଦୃଷ୍ଟିରୁ ଜଟିଳ ବାକ୍ୟଗୁଡ଼ିକର ବ୍ୟାଖ୍ୟା କରିବା ଉଚିତ । ସେହିପରି କ୍ଷୁଦ୍ରଗଳ୍ପ, ନାଟକ, ଏକାଙ୍କିକା, କାବ୍ୟ, କବିତା, ସଂଗୀତ, ରମ୍ୟରଚନା, ଜୀବନୀ ପ୍ରତ୍ୟେକଟିର ଅଧ୍ୟାପନାର ସ୍ୱତନ୍ତ୍ର ପଦ୍ଧତି ଜାଣି ଶ୍ରେଣୀରେ ତାହା ପ୍ରୟୋଗ କରିବା ଉଚିତ ।

ଆଜି ଯେପରି ସାହିତ୍ୟ ଓ ଜ୍ଞାନବିଜ୍ଞାନର ଅଚିନ୍ତନୀୟ ପ୍ରସାର ଘଟିଛି, ପାଠ୍ୟବସ୍ତୁ ବାହାରେ ଜ୍ଞାନର ବିଭିନ୍ନ ଶାଖାର ଉପାଦେୟ ପୁସ୍ତକ ଏବଂ ପତ୍ରପତ୍ରିକାର ନିୟମିତ ଅଧ୍ୟୟନ ତଥା ଆବଶ୍ୟକୀୟ ନୋଟ୍ ଯେ ଅଧ୍ୟାପକଙ୍କ ପକ୍ଷରେ ଅପରିହାର୍ଯ୍ୟ ଏହା ବହୁ ଅଧ୍ୟାପକ ଭୁଲିଯାଆନ୍ତି । ଏ ସବୁର ଅଧ୍ୟୟନ ତ ଦୂରର କଥା, କେବଳ ଆର୍ଥିକ ଲାଭ ସନ୍ଧାନରେ ବ୍ୟସ୍ତ ରହି ଅନ୍ୟର ଅଯଥା ତୋଷାମଦ କରି ନିଜ ସମୟର ଯେପରି ଅପଚୟ କରୁଛନ୍ତି, ଭାବିଲେ ବିଶେଷ ଦୁଃଖ ଲାଗେ । ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଅଧ୍ୟୟନ, ଗବେଷଣା ଓ ଲେଖା ଯେ ଅଧ୍ୟାପକଙ୍କର ଭୂଷଣ ପୁଣି ଏ ଶ୍ରେଣୀର ଅଧ୍ୟାପକ ଯେ ଛାତ୍ରଙ୍କର ନମସ୍ୟ, ଅଧ୍ୟାପକମାନଙ୍କରେ ଏ ଚେତନା ଠିକ୍ ସମୟରେ ହେବା ଉଚିତ ।

ଅଧ୍ୟାପନା ପ୍ରତି ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ରହିଥିଲେ ଅଧ୍ୟାପକ ନିଜର ସ୍ୱତନ୍ତ୍ର ରୀତି ଉଦ୍ଭାବନ କରି ଛାତ୍ରମାନଙ୍କୁ ଆକୃଷ୍ଟ କରିଥାନ୍ତି । କେତେକ ଅଧ୍ୟାପନାକୁ ଉପଲକ୍ଷ୍ୟ ମାତ୍ର କରି

ନିଜର ଆର୍ଥିକ ସମୃଦ୍ଧିର ବିଭିନ୍ନ ପନ୍ଥା (ନୋଟ୍ ବହି ଲେଖା, ଟିଉସନ ତୋଷାମୋଦି) ସନ୍ଧାନରେ ବ୍ୟସ୍ତ ରହନ୍ତି । ଛାତ୍ରମାନଙ୍କୁ ଯଥାର୍ଥ ଭାବରେ ଶିକ୍ଷା ଦେବା ଯେ ଅଧ୍ୟାପକର କର୍ତ୍ତବ୍ୟ ଓ ନୈତିକ ଦାୟିତ୍ୱ ଏଇଟା ଭୁଲିଯାଆନ୍ତି । ଫଳରେ ଛାତ୍ରମାନଙ୍କର ଅଧ୍ୟୟନ ବ୍ୟାହତ ହୁଏ । ସେମାନେ ଅଧ୍ୟାପକମାନଙ୍କ ସଂପର୍କରେ ଲଘୁଧାରଣା କରିବା ଫଳରେ ଛାତ୍ରଙ୍କ ନିକଟରେ ସେମାନଙ୍କ ଭାବମୂର୍ତ୍ତି ନଷ୍ଟ ହୋଇଯାଏ । ପୁଣି ଯେଉଁମାନେ ଛାତ୍ରମାନଙ୍କ ମଧ୍ୟରେ ଶସ୍ତା ଲୋକପ୍ରିୟତା ଅର୍ଜନ କରିବା ପାଇଁ ନିଜର ଅଧ୍ୟୟନ ଓ ଅଧ୍ୟାପନା ଉପରେ ଧ୍ୟାନ ନ ଦେଇ ନାନା ନିନ୍ଦନୀୟ ପନ୍ଥା ଗ୍ରହଣ କରନ୍ତି, ସେମାନେ ଛାତ୍ରଙ୍କ ଦ୍ୱାରା ସମୟକ୍ରମେ ନିନ୍ଦିତ ହୋଇଥାନ୍ତି । ଶିକ୍ଷାୟତନ, ବିଶ୍ୱବିଦ୍ୟାଳୟ ପ୍ରଭୃତିରେ ଆଜି ଯେଉଁ ଛାତ୍ର ଆନ୍ଦୋଳନ ଜନିତ ଚରମ ବିଶୃଙ୍ଖଳା ଓ ନୈତିକ ଅଧୋଗତି ଦେଖାଦେଇଛି, ଦଳଗତ ରାଜନୀତିକୁ ଛାଡ଼ିଦେଲେ ଏଗୁଡ଼ିକ ହେଉଛି ତା'ର ଅନ୍ୟତମ କାରଣ ।

କ୍ୱାର୍ଟରସ୍‌ଟି ମୋର ଏକପାଖିଆ ଓ ଦକ୍ଷିଣଦ୍ୱାରୀ ହୋଇଥିବାରୁ ଲେଖାପଢ଼ା ଦିଗରୁ ସୁବିଧା ହୋଇପାରିବ ବୋଲି ମନରେ ଆନନ୍ଦ ଥାଏ । କ୍ୱାର୍ଟରସ୍ ପୂର୍ବକୁ ଛୋଟ ତୋଟାଟିଏ । ଆମ୍ବ, ତାଳ, ନାରିକେଳ, ବୃକ୍ଷବୀଥି, ନୀଳ ଆକାଶ, ପାଖରେ ଛନ୍ଦମୟୀ ସାଳନ୍ଦୀ । ପ୍ରତ୍ୟୁଷରେ ଦୂର ତାଳ ତରୁଶିଖରେ ଉଜ୍ଜ୍ୱଳ ଶୁକ୍ରତାରା ପ୍ରାଣରେ ଅପୂର୍ବ ପ୍ରଶାନ୍ତି ଓ ଦିବ୍ୟଭାବର ଆଲୋଡ଼ନ ସୃଷ୍ଟିକରେ । ବିବିକ୍ତ ପ୍ରତ୍ୟୁଷର ଏ ପ୍ରଶାନ୍ତିରେ ପ୍ରାଣରେ ପତ୍ନୀ ବିଚ୍ଛେଦର ସ୍ମୃତି ଜାଗରୂକ ହୁଏ ଏବଂ ତାହା ଦୁଇ ତିନୋଟି ଉଚ୍ଚାଙ୍ଗ କବିତାର ପ୍ରସୂତି ହୋଇଥାଏ ।

## ୧୯୭୧ ର ଝଡ଼ବାତ୍ୟା :

୧୯୭୧ର ଦଶହରା ପରେ କାର୍ତ୍ତିକ ପୂର୍ଣ୍ଣିମାର ଅବ୍ୟବହିତ ପୂର୍ବରୁ ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରବଳ ଝଡ଼ ବତାସ ଦେଖାଦେଇଥିଲା । ରାତିରେ ବର୍ଷା ଓ ବତାସର ବେଗ କ୍ରମଶଃ ବୃଦ୍ଧି ପାଇ ତହିଁ ଆରଦିନ ସକାଳେ ଅତି ଭୟଙ୍କର ହୋଇ ଉଠିଥିଲା । ଏତେ ଜୋର୍‌ରେ ବତାସ ବହୁଥାଏ, କବାଟ, ଝରକା ବନ୍ଦ କରିବା କଷ୍ଟକର ହୋଇ ଉଠିଥାଏ । ବତାସରେ ଘର ଭିତରକୁ ପାଣି ପଶିଆସୁଥାଏ; ଛିନ୍ନ ତାଳପତ୍ର ଉଡ଼ିଆସି ଅଗଣା, ବାରଣ୍ଡା ଭର୍ତ୍ତି ହୋଇ ଯାଇଥାଏ । କଲେଜ୍ ପରିସରରେ ଥିବା ବହୁ ପୁରାତନ ଆମ୍ବଗଛ ସେତେବେଳେ ବତାସରେ ଉପୁଡ଼ି ପଡ଼େ । ଉତ୍ତର ଛାତ୍ରାବାସର ଆଜ୍‌ବେଷ୍ଟସ୍ ଛାତରେ କିଛି ଅଂଶ ଉଡ଼ିଯିବା ସଂଗେସଂଗେ ଗଛଡ଼ାଳ ପଡ଼ି କିଛି ଅଂଶ ଭାଙ୍ଗିଯାଏ । ଗଛ, ଡାଳ ଓ ପତ୍ରରେ କଲେଜ୍ ରାସ୍ତା ଦୁର୍ଗମ ହୋଇପଡ଼େ । ପ୍ରବଳ ଝଡ଼ ତୋଫାନରେ ମା' ବହୁ କଷ୍ଟରେ ମୁଠାଏ ଆମ ପାଇଁ ଫୁଟାଇ ଦିଏ । ଦିନ ୧୨ଟା ବେଳକୁ ଝଡ଼ ତୋଫାନର ବେଗ ଧୀରେ ଧୀରେ କମି ଆସେ । ଭଦ୍ରକ ରାସ୍ତାରେ ବିଭିନ୍ନ ଜାଗାରେ ଗଛପଡ଼ି ଦୁର୍ଗମ ହୋଇ ପଡ଼ିଥାଏ । ଇଲେକ୍‌ଟ୍ରିକ୍ ତାର ଓ ଫୋନ୍ ତାର ଅଧିକାଂଶ ଜାଗାରେ ଛିଡ଼ି ପଡ଼ିଥାଏ । ପରେ ନଦୀରେ ବନ୍ୟା ଆସି କଲେଜ୍ ତୋଟା ଜଳାର୍ଣ୍ଣବ କରିଦିଏ । ମୋ ବସା ଦ୍ୱାର ପର୍ଯ୍ୟନ୍ତ ମଧ୍ୟ ପାଣି ଆସିଯାଇଥାଏ ।

ଛାତ୍ର ଅଧ୍ୟାପକ ଡକାଡକି ହୋଇ ଚାଲିପାରିବା ମୁତାବକ ରାସ୍ତା କିଛି ସଫା କଲୁଁ । ୯ଡ଼ତୋଫାନ ଚାଲିଗଲା- କଲେଜ୍ ହତା ଏକପ୍ରକାର ଶ୍ରୀହୀନ ହୋଇପଡ଼ିଲା । କିଛିଦିନ ଧରି କଲେଜ୍ ଡୋଟାରେ କୁରାଢ଼ୀରେ ଚୋଟ ବସୁଥାଏ । ଅଳ୍ପଦିନ ଭିତରେ ଗଛ ନିଲାମ ଧରି ଲୋକେ ସଫାକରି ନେଲେ ।

ଆମ ବସା ସାମ୍‌ନାରେ ଦୁଇଟି ପଣସଗଛ । ବସା ଚାରିପାଖରେ ବାଡ଼ ନଥିବାରୁ ମୁଁ ବାଉଁଶ କଟାଇ ବାଡ଼ ଘେରାଇଲି ଏବଂ ଆଗାମୀ ଶୀତଦିନର ପନିପରିବା ପାଇଁ ବଗିଚା ପ୍ରସ୍ତୁତ କରିଦେଲି । ପ୍ରଥମବର୍ଷ ବଗିଚାରେ ବାଇଗଣ, ଲଙ୍କା, ବିନ୍, ଶାଗ ଓ ଅନ୍ୟାନ୍ୟ ଶାକ୍‌ସବ୍‌ଜି ଖୁବ୍ ଭଲ ହୋଇଥିଲା ।

ମାଆର (ବଡ଼ମାଇଁ) ଶ୍ୱାସ ଓ ପେଟରୋଗ ଥିଲା । ତା'ର ଦେହ କ୍ରମଶଃ ଖରାପ ହେବାରୁ ନଭେମ୍ବର ମାସରେ ଅରୁଣ ସାଙ୍ଗରେ ଭାଇ ଡାକ୍ତର ଗୋପବନ୍ଧୁ ଦ୍ୱାରା ଚିକିତ୍ସା ହେବା ପାଇଁ ଗାଁକୁ ପଠାଇ ଦେଲି । ସବୁ ଚିକିତ୍ସାକୁ ଫାଙ୍କି ଦେଇ ମାଆ ସବୁଦିନ ପାଇଁ ଆଖି ବୁଜିଲା । ସେ ଥିଲା କିଶୋରୀ ଅବସ୍ଥାରୁ ବିଧବା । ବଡ଼ମାମୁଁ (ପୋଷ୍ୟପିତା) ଛାତ୍ରାବସ୍ଥାରେ କଟକରେ ହଇଜାରେ ପଡ଼ି ଆଖି ବୁଜିଲେ । ଅଜା ମୋତେ ତାଙ୍କୁ ପୁଅ କରେଇ ଦେଇଥିଲେ । ପରିବାରର ନାନା ଜଞ୍ଜାଳ ମଧ୍ୟରେ ଜୀବନସାରା ସେ ପୁଅ, ନାତି ସମସ୍ତଙ୍କ ସେବାକରି ଶେଷରେ ରୋଗ ଭୋଗି ସଂସାରରୁ ବିଦାୟ ନେଲା । ଗାଁକୁ ଯାଇ ଅନ୍ତିମ ଅବସ୍ଥାରେ ତା'ର ଉପଯୁକ୍ତ ସେବା ମୁଁ କରିପାରି ନଥିବାରୁ ମନେମନେ ଅନୁତପ୍ତ । ପରଲୋକ ସମ୍ବାଦ ପାଇ ଫକୀରପୁର ବାଟେ ବୈତରଣୀ ବାଲିରେ ତା'ର ଚିତାଭସ୍ମ ମୁଣ୍ଡରେ ମାରି ଚକ୍ଷୁ ଅଶ୍ରୁ ଛଳଛଳ କରି ମନକୁ ବୁଝାଇଲି । ମା'ର ଦେହାନ୍ତର ତିନିବର୍ଷ ପରେ ମୋର ଜନ୍ମଦାତା ପିତା କିଛିଦିନ ଅଙ୍ଗର ଅଚଳ ଅବସ୍ଥା ଭୋଗି ସଂସାରରୁ ବିଦାୟ ନେଲେ । ଭଦ୍ରକ ବସାରେ ପିଲାଙ୍କ ଦ୍ୱାରା ସ୍ୱର୍ଗୀୟା ପତ୍ନୀ ହେମର ପ୍ରଥମ ଶ୍ରାଦ୍ଧ ଆରମ୍ଭ କରାଇଥିଲି ।

## ଭଦ୍ରକର ସାରସ୍ୱତ ପରଂପରା ଓ ସାହିତ୍ୟ ସଭା :

ବହୁ ପୂର୍ବରୁ ଭଦ୍ରକର ଭୌଗୋଳିକ, ଐତିହାସିକ ଓ ସାଂସ୍କୃତିକ ପ୍ରସିଦ୍ଧି ଥିବାରୁ ଏଠାରେ କବି ଓ ସାହିତ୍ୟିକମାନଙ୍କର ଆବିର୍ଭାବ ଘଟିଆସିଛି । ନଳାଙ୍ଗର ଜଗନ୍ନାଥ ପାଣି, ଭଦ୍ରକର ବଂଶୀବଲ୍ଲଭ ଗୋସ୍ୱାମୀ, କବି ଶେଖର ଚିନ୍ତାମଣି, କାନ୍ତକବି ଲକ୍ଷ୍ମୀକାନ୍ତ, ଜାତୀୟ କବି ବାଞ୍ଛାନିଧି, ସାଂପ୍ରତିକ କାଳରେ ଡଃ ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ ମହାପାତ୍ର ପ୍ରଭୃତି ନିଜ ନିଜର ସାଧନାରେ ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିଛନ୍ତି ।

ସାହିତ୍ୟ ଓ ସଂସ୍କୃତିର ବିକାଶ ନିମିତ୍ତ ଏଠାରେ ଚିନ୍ତାମଣି ସାହିତ୍ୟ ପରିଷଦ, ସାଇନ୍ଧୀ ସାହିତ୍ୟ ସଂସଦ, ଭଦ୍ରକ ସାହିତ୍ୟ ପରିଷଦ ଗଠିତ ହୋଇଛି । ମୋର ଭଦ୍ରକ ଆଗମନର

କିଛିକାଳ ଧରି ଭଦ୍ରକ ସାହିତ୍ୟ ପରିଷଦ ଆନୁକୂଲ୍ୟରେ ପ୍ରତ୍ୟେକ ରବିବାର ଦିନ ରୋଟାରି କ୍ଲବରେ ବିଭିନ୍ନ ସାହିତ୍ୟିକ-ସମସ୍ୟା ସଂପର୍କରେ ଆଲୋଚନା ଓ ବେଳେବେଳେ କବିତାପାଠ ଅନୁଷ୍ଠିତ ହେଉଥିଲା । କଲେଜ୍ ଓ କଲେଜ୍ ବାହାରର ବହୁ ସାହିତ୍ୟିକ ଯୋଗଦାନ କରି ଆଲୋଚନାରେ ଭାଗ ନେଉଥିଲେ । କିନ୍ତୁ କାଳକ୍ରମେ ନାନା କାରଣରୁ ଏହା ଧିମେଇ ଆସିଲା । ଏକ ଅଧିବେଶନରେ ମୁଁ ସଭାପତିତ୍ୱ କରି ଥିବାବେଳେ ପ୍ରସ୍ତାବ ହେଲା ଯେ ଭଦ୍ରକ ସାହିତ୍ୟ ପରିଷଦକୁ ରେଜିଷ୍ଟାର୍ଡ଼ ଅନୁଷ୍ଠାନ କରାଯାଉ । ପ୍ରସ୍ତାବ ଗୃହୀତ ହେଲେ ମଧ ପରବର୍ତ୍ତୀ ଅଧିବେଶନମାନଙ୍କରେ ଏ ସଂପର୍କରେ କୌଣସି କାର୍ଯ୍ୟାନୁଷ୍ଠାନ ହେଲା ନାହିଁ । କେତେକ ବ୍ୟକ୍ତି ରେଜିଷ୍ଟ୍ରେଶନ୍ ସପକ୍ଷରେ ନଥିବାରୁ ଏହା ହୋଇପାରିଲା ନାହିଁ ।

ଭଦ୍ରକରେ ବାଲେଶ୍ୱର ଜିଲା ଲେଖକ ସମ୍ମିଳନୀ ଅନୁଷ୍ଠିତ ହୋଇଗଲା । ଲେଖକ ସମ୍ମିଳନୀର ପ୍ରସ୍ତୁତି ପାଇଁ ଯେଉଁ ପ୍ରାରମ୍ଭିକ ସଭା ବସିଥିଲା, ଭଦ୍ରକ ସାହିତ୍ୟ ପରିଷଦର ରେଜିଷ୍ଟ୍ରେଶନ୍ ସଂପର୍କରେ ବିରୋଧ ହେବାରୁ ମୋ ସହିତ କେତେକ ସାହିତ୍ୟିକ ବନ୍ଧୁ ଏକ ରେଜିଷ୍ଟାର୍ଡ ଅନୁଷ୍ଠାନ ଗଠନ ଦିଗରେ ପ୍ରୟାସୀ ହେଲୁଁ ।

## ସାହିତ୍ୟ ସଂସ୍କୃତି ପରିଷଦ :

୧୯୮୦ ମସିହାରେ ଆମ୍ଭମାନଙ୍କ ଉଦ୍ୟମରେ ଭଦ୍ରକରେ ବିଷୁବ ଉତ୍ସବ ଅନୁଷ୍ଠିତ ହେଲା । ଭଦ୍ରକ ହାଇସ୍କୁଲ୍ ହଲ୍‌ରେ ଏହାର ଅଧିବେଶନ ବସିଲା । ଉତ୍ସବରେ ସାହିତ୍ୟିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ସଫଳ ହେବାରୁ ଆମ୍ଭେମାନେ ଉତ୍ସାହିତ ହୋଇ ୧୯୮୦, ରଥଯାତ୍ରା ସମୟରେ 'ସାହିତ୍ୟ ସଂସ୍କୃତି ପରିଷଦ' ନାମରେ ଏକ ଅନୁଷ୍ଠାନ ଗଠନ କଲୁଁ । ଏହି ଉଦ୍ଦେଶ୍ୟରେ ଭଦ୍ରକ ମହତାବ-କୋଠିରେ ଏକ ସଭାର ଆୟୋଜନ ହୋଇଥିଲା । ଏ ପରିଷଦର ସଂଗଠନ ସଂପାଦକ ରହିଲେ ହିନ୍ଦୁସ୍ଥାନ ସମାଚାର ପ୍ରତିନିଧି ସାମ୍ବାଦିକ ସୁବଳ ଜେନା, ସାଧାରଣ ସଂପାଦକ ରହିଲେ ଅଧ୍ୟାପକ ପୀତାମ୍ବର ସ୍ୱାଇଁ, ଯୁଗ୍ମ ସଂପାଦକ ରହିଲେ ଶ୍ରୀ ସଦାଶିବ ନାୟକ ଓ ଅଧ୍ୟାପକ ସୁଦର୍ଶନ ତରେଇ । ସର୍ବସମ୍ମତି କ୍ରମେ ମୋତେ ସଭାପତି କରାଗଲା । ଉପସଭାପତି ରହିଲେ ସ୍ୱାଧୀନତା ସଂଗ୍ରାମୀ ଗୌରଚନ୍ଦ୍ର ମହାପାତ୍ର । ଡଃ ହରେକୃଷ୍ଣ ମହତାବ, ମନ୍ତ୍ରୀ ଯୁଗଳ କିଶୋର ପଟ୍ଟନାୟକ, ଡଃ ମହେନ୍ଦ୍ର କୁମାର ରାଉତ, ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କୁ ଏହାର ପରାମର୍ଶଦାତା ରଖାଗଲା । ୧୯୮୧ ମସିହାରେ ଏହାର ସମ୍ବିଧାନ ତିଆରି ହୋଇ ରେଜିଷ୍ଟ୍ରେଶନ୍ ହୋଇଯାଇଛି । ଏ ଦିଗରେ ବିଶେଷ ସାହାଯ୍ୟ କରିଥିଲେ ସିଭିଲ୍ ଏସ୍.ଡି.ଓ ଶ୍ରୀ ବ୍ରହ୍ମାନନ୍ଦ ରାଉତ, କଲେଜ୍ ଅଧ୍ୟକ୍ଷ ଡଃ ଗଙ୍ଗାଧର ସାହୁ । ଶ୍ରୀଯୁକ୍ତ ରାଉତ, ଡକ୍ଟର ସାହୁ ଭଦ୍ରକ ଆସିବା ପରଠାରୁ ସାହିତ୍ୟ ସଂସ୍କୃତି ପରିଷଦର ବିଭିନ୍ନ କାର୍ଯ୍ୟକଳାପ ପ୍ରତି ଆକୃଷ୍ଟ ହୋଇ ପୂର୍ଣ୍ଣପ୍ରାଣରେ ସହଯୋଗ କରିଆସିଛନ୍ତି । ଏ କ୍ଷେତ୍ରରେ ଆଡ୍‌ଭୋକେଟ୍ ନବୀନକୃଷ୍ଣ ଚାନ୍ଦଙ୍କ ସକ୍ରିୟ ସହଯୋଗ ଅବିସ୍ମରଣୀୟ । କେବଳ ସେ ନୁହେଁ

ଭଦ୍ରକର ବହୁ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ, ଇଞ୍ଜିନିୟର, ଡାକ୍ତର, ଅଧ୍ୟାପକ, ଆଡ୍‌ଭୋକେଟ୍ ଓ ସାଧାରଣ ବ୍ୟକ୍ତି ବର୍ଷସାରା ପରିଷଦର ବିଭିନ୍ନ କାର୍ଯ୍ୟକ୍ରମରେ ସକ୍ରିୟ ସହଯୋଗ କରି ଭଦ୍ରକ ଓ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଶିକ୍ଷିତ ଓ ସର୍ବସାଧାରଣଙ୍କ ମଧ୍ୟରେ ଏହାକୁ ଲୋକପ୍ରିୟ କରିଥିଲେ । ଫଳରେ ତିହିଡ଼ି, ରାନ୍ଦିଆ, ଉତ୍ତର ବାହିନୀ, ଧାମନଗର, ଗଡି ସାମନ୍ତରାୟପୁର ପ୍ରଭୃତିରେ ଏହାର ଶାଖା ଅନୁଷ୍ଠାନମାନ ଗଠିତ ହୋଇଥିଲା । ଏହାର ବାର୍ଷିକୋତ୍ସବରେ ଶାଖା ଅନୁଷ୍ଠାନର ସଭ୍ୟମାନେ ନିୟମିତଭାବେ ଯୋଗଦାନ କରି ଆସୁଛନ୍ତି । ଏହାକୁ ପ୍ରାଣବନ୍ତ କରିବା ଦିଗରେ ଏସ୍.ଡ଼ି.ଓ. ଶ୍ରୀଯୁକ୍ତ ରାଉତ ଓ ଅଧକ୍ଷ ଡଃ ସାହୁ ଆନ୍ତରିକ ସହଯୋଗ କରିଥିବାରୁ ପରିଷଦର ଅନ୍ୟତମ ପରାମର୍ଶଦାତା ରୂପେ ନିଆଯାଇଛି । ଏସ୍.ଡ଼ି.ଓ. ଶ୍ରୀ ରାଉତଙ୍କ ସହୃଦୟତା ଓ ଆନ୍ତରିକତା ହେତୁ ପରିଷଦର ସଭ୍ୟମାନେ ଶହିଦ୍ ସ୍ମୃତି ଭବନର ତଳମହଲାର ଗୋଟିଏ କ୍ଷୁଦ୍ରକକ୍ଷରେ ବସି ଆଲୋଚନା କରିବାର ସୁଯୋଗ ପାଇଆସୁଛନ୍ତି । କାର୍ଯ୍ୟତଃ ଏହା ସାହିତ୍ୟ ସଂସଦ ପରିଷଦର ଏକ ଅସ୍ଥାୟୀ ଅଫିସ୍ । କାନ୍ଥରେ ମଧ ପରିଷଦର ନାମ ଉତ୍କୀର୍ଣ୍ଣ । ପରିଷଦର ଆଭିମୁଖ୍ୟ ଅତି ଉଚ୍ଚକୋଟୀର । ଓଡ଼ିଶାର ବିଭିନ୍ନ ସ୍ଥାନରୁ ନଷ୍ଟପୋଥି ଓ ମୂଲ୍ୟବାନ୍ ଲେଖା ଉଦ୍ଧାର, ଐତିହାସିକ ଗୁରୁତ୍ୱ ଥିବା ମୂର୍ତ୍ତି, ମୁଦ୍ରା, ସିଲ୍ ଓ ସନନ୍ଦ ଇତ୍ୟାଦିର ଆବିଷ୍କାର; ଏକ ସଂଗ୍ରହାଳୟ ଓ ଗବେଷଣାନୁଷ୍ଠାନ ସ୍ଥାପନ ଏବଂ ଆବିଷ୍କୃତ ବସ୍ତୁ ଉପରେ ଗବେଷଣାମୂଳକ ସନ୍ଦର୍ଭ ପ୍ରକାଶ, ପରିଷଦର ମୁଖପତ୍ର ପ୍ରକାଶ; ଭଦ୍ରକ ତଥା ଓଡ଼ିଶାର ପ୍ରଖ୍ୟାତ ପ୍ରତିଭାଶାଳୀ ସନ୍ତାନମାନଙ୍କର (କବି, ଲେଖକ, ସ୍ୱାଧୀନତା ସଂଗ୍ରାମୀ, ଐତିହାସିକ, ନାଟ୍ୟକାର, ଅଭିନେତା, ସମାଜସେବୀ, ଆଦର୍ଶ ପ୍ରଶାସକ), ଜୟନ୍ତୀ ଓ ଶ୍ରାଦ୍ଧୋତ୍ସବ ପାଳନ; ଶିଶୁ ଓ ସର୍ବସାଧାରଣଙ୍କୁ ସାହିତ୍ୟ ଓ ସଂସ୍କୃତି ପ୍ରତି ଆକର୍ଷଣ : ଏହିପରି ବହୁ ଉଚ୍ଚାଙ୍ଗ ଆଭିମୁଖ୍ୟ ଗ୍ରହଣ କରାଯାଇଛି । 'ତ୍ରିକାଳ' ନାମକ ଏକ ମୁଖପତ୍ର ପ୍ରକାଶର ଯୋଜନା ରହିଛି, କିନ୍ତୁ ଅର୍ଥ ଓ ଉପଯୁକ୍ତ ଲେଖା ଅଭାବରେ ଏହା ବାସ୍ତବ ରୂପ ଗ୍ରହଣ କରିପାରି ନାହିଁ ।

ପରିଷଦ ଆରମ୍ଭରୁ ଏ ପର୍ଯ୍ୟନ୍ତ ବହୁ ସଭାସମିତିର ଆୟୋଜନ ସଫଳଭାବରେ ହୋଇଯାଇଛି, ଯଥା- ଗାନ୍ଧୀ ଜୟନ୍ତୀ, କୁଳବୃଦ୍ଧ ମଧୁସୂଦନ ଦାସ ଜୟନ୍ତୀ, ମେହେର ଜୟନ୍ତୀ, ଫକୀର ମୋହନ ଜୟନ୍ତୀ, ଶିଶୁଦିବସ, କାନ୍ତକବି ଶ୍ରାଦ୍ଧୋତ୍ସବ; ବାଞ୍ଛାନିଧି ଓ ଗୋକୁଳାନନ୍ଦ ଶ୍ରାଦ୍ଧୋତ୍ସବ, ମହତାବ ଜୟନ୍ତୀ; ଶିଶୁ ସାହିତ୍ୟ, ସାହିତ୍ୟ ଓ ସଂସ୍କୃତି ସଂପର୍କରେ ପାଠଚକ୍ର, ନବବର୍ଷୋତ୍ସବ, ଗୀତାଜ୍ଞାନ ଯଜ୍ଞ, ବିଷୁବୋତ୍ସବ, ରଜୋତ୍ସବ । ବିଭିନ୍ନ ଉତ୍ସବରେ ସାହିତ୍ୟର ବିଭିନ୍ନ ଦିଗ ଉପରେ ଆଲୋଚନା ହେବା ସଙ୍ଗେ ସଙ୍ଗେ କବିତା ପାଠୋତ୍ସବ ଓ ତା'ର ସମୀକ୍ଷା କରାଯାଇଥାଏ । ତା୧୪/୧୧/୧୯୮୧ରେ ଭଦ୍ରକ ଶିଶୁପାର୍କରେ ବିପୁଳ ଉତ୍ସାହ ସହ ଶିଶୁଦିବସ ପାଳିତ ହୋଇଥିଲା । ମୁଖ୍ୟ ଅତିଥି ଏସ୍.ଡ଼ି.ଓ. ବ୍ରହ୍ମାନନ୍ଦ ରାଉତ, ମୁଖ୍ୟବକ୍ତା ସଦାଶିବ ନାୟକ ଶିଶୁପାର୍କର ନବୀକରଣ ସଂପର୍କରେ କହିଥିଲେ ଏବଂ ପ୍ରତିଯୋଗୀ

ଶିଶୁମାନଙ୍କ ମଧ୍ୟରେ ପୁରସ୍କାର ବିତରଣ କରାଯାଇଥିଲା । ଗାନ୍ଧୀ ଜୟନ୍ତୀରେ ସ୍କୁଲ୍ ଛାତ୍ରଙ୍କ ମଧ୍ୟରେ ବକ୍ତୃତା ପ୍ରତିଯୋଗିତା ଓ ସଂଗୀତ ପ୍ରତିଯୋଗିତା କରାଯାଇ ପୁରସ୍କାର ବିତରିତ ହୋଇଥିଲା । ଏତଦ୍‌ବ୍ୟତୀତ ଉତ୍ସବ ଶେଷରେ ସାଂସ୍କୃତିକ କାର୍ଯ୍ୟକ୍ରମ (ସଂଗୀତ, ନୃତ୍ୟ, ଗୀତିନାଟ୍ୟ) ପରିବେଷଣ କରାଯାଇଥିଲା । ବିଗତ କେତେବର୍ଷ ହେଲା ନଳାଙ୍ଗରେ ଯାତ୍ରା ଓ ଛୀନାର କବି ଜଗନ୍ନାଥ ପାଣିଙ୍କର ଜୟନ୍ତୀ ପରିଷଦ ଉଦ୍ୟମରେ ପାଣି ସ୍ମୃତି କମିଟି ସହଯୋଗରେ ଅନୁଷ୍ଠିତ ହୋଇଆସିଛି ।

ପରିଷଦର ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ଅର୍ଥ ସଂପର୍କରେ ଚିନ୍ତାକରି ପରିଷଦର କର୍ମକର୍ତ୍ତାଙ୍କୁ ଅଯଥା ମୁଣ୍ଡ ଭାରାକ୍ରାନ୍ତ କରିବାକୁ ପଡ଼େ ନାହିଁ । ଆର୍ଥିକ ସାହାଯ୍ୟ ପାଇଁ ସାହିତ୍ୟ ଏକାଡ଼େମୀ କିମ୍ବା ସାଂସ୍କୃତିକ ବ୍ୟାପାର ବିଭାଗକୁ ଏ ପର୍ଯ୍ୟନ୍ତ ଆବେଦନ କରାଯାଇ ନାହିଁ । ବିଭିନ୍ନ ସମୟରେ ବିଭିନ୍ନ କାର୍ଯ୍ୟସୂଚୀ ଗ୍ରହଣ ସଂପର୍କରେ ପୂର୍ବରୁ ପରିଷଦର ଏକ ସଭାରେ ଆଲୋଚନା କରାଯାଇଥାଏ । ବିଭିନ୍ନ ବ୍ୟକ୍ତି କାର୍ଯ୍ୟର ଦାୟିତ୍ୱ ଆଗ୍ରହ ସହକାରେ ବହନ କରିନିଅନ୍ତି; ଫଳରେ କାର୍ଯ୍ୟ ସୂଚାରୁ ରୂପେ ସଂପନ୍ନ ହୁଏ । ପରିଷଦ ଏକ ନିଃସ୍ୱାର୍ଥପର ଲୋକ ହିତକର ଭୂମିକା ମୂଳରୁ ଗ୍ରହଣ କରିଥିବାରୁ ଏବଂ ଏହାର ସଫଳ କାର୍ଯ୍ୟକ୍ରମରେ ଲୋକେ ସନ୍ତୁଷ୍ଟ ଥିବାରୁ ପରିଷଦ ତା' ଆଭିମୁଖ୍ୟ ସ୍ଥିର ରଖି ଆଗେଇଚାଲିଛି । ଯେ କୌଣସି ମହତ୍ ଅନୁଷ୍ଠାନ ମୂଳରେ ନାନା ବାଧାବିଘ୍ନ ରହିଥିଲା ପରି ପରିଷଦ ଯେ ଏଥିରୁ ମୁକ୍ତ, ତାହା ନୁହେଁ । କେତେକ ଅସୂୟା-ପରବଶ ଶିକ୍ଷିତ ବ୍ୟକ୍ତି ଏହାର ଲୋକପ୍ରିୟତା ସହ୍ୟ କରି ନପାରି ଉଦ୍ଦେଶ୍ୟମୂଳକ ଭାବରେ ଏହାର ନାନା ସମାଲୋଚନା କରନ୍ତି ।

ମୁଁ ବିଭିନ୍ନ ସମୟରେ କଲେଜ୍ ମୁଖପତ୍ର 'ପଲ୍ଲୀଭାରତୀ'ର ମୁଖ୍ୟ ସଂପାଦକ ହୋଇ ଆସିଛି । କଲେଜ୍ ଓଡ଼ିଆ ସାହିତ୍ୟ ସମାଜ ପକ୍ଷରୁ 'ଅର୍ଘ୍ୟ' ପତ୍ରିକା ସଂପାଦନା କରିଛି । କଲେଜ୍ ପରିଚାଳନା ବୋର୍ଡ଼ର ଶିକ୍ଷକ- ପ୍ରତିନିଧି ହେବା ସଙ୍ଗେସଙ୍ଗେ ଅଧ୍ୟକ୍ଷ ଶଶାଙ୍କ ଶେଖର ପଟ୍ଟନାୟକଙ୍କର ଆକସ୍ମିକ ମୃତ୍ୟୁପରେ ଅର୍ଥନୈତିକ କ୍ଷମତା ସହ କଲେଜ୍ ଅଧ୍ୟକ୍ଷ ଦାୟିତ୍ୱ କିଛିକାଳ ବହନ କରିଛି । ତା'ପରେ ଅଧ୍ୟକ୍ଷ ହୋଇ ଆସନ୍ତି ଡଃ ଗଙ୍ଗାଧର ସାହୁ ।

## ଲେଖା ଓ ଗବେଷଣା :

ଭଦ୍ରକ କଲେଜ୍‌ରେ ଦୀର୍ଘ ଅବସ୍ଥାନ କାଳ ମଧ୍ୟରେ ମୁଁ ବହୁ ଗବେଷଣାମୂଳକ ପ୍ରବନ୍ଧ ରଚନା କରିବା ସଙ୍ଗେ ସଙ୍ଗେ ଭଦ୍ରକ ଓ ଭଦ୍ରକ ବାହାରେ ବିଭିନ୍ନ ଶିକ୍ଷାୟତନ, ସାଧାରଣ ଅନୁଷ୍ଠାନ ଓ ଉତ୍ସବମାନଙ୍କରେ ଯୋଗଦାନ କରି ସ୍ୱରଚିତ ସନ୍ଦର୍ଭ ଉପସ୍ଥାପନ କରିଛି । ସାହିତ୍ୟଶାସ୍ତ୍ର (Poetics) ସଂପର୍କରେ ସଂସ୍କୃତ, ଇଂରାଜୀ, ବଙ୍ଗଳା ଓ ହିନ୍ଦୀରେ ଭାରତର ଆଳଙ୍କାରିକ ଓ ପଣ୍ଡିତମାନଙ୍କର ଉଚ୍ଚାଙ୍ଗ ଗ୍ରନ୍ଥ ଅଧ୍ୟୟନ ଫଳରେ ଓଡ଼ିଆରେ ଗୁଡ଼ିଏ ସନ୍ଦର୍ଭ ରଚନା କରିବାର ମୋର ବଳବତୀ ବାସନା ହେଲା, ଫଳରେ ରସ, ରୀତି,

ବକ୍ରୋକ୍ତି, ଧ୍ୱନି, ଔଚିତ୍ୟ ଓ ଅଳଙ୍କାର ଆଦି ସାହିତ୍ୟର ବିଭିନ୍ନ ବିଭାବ ଉପରେ ମୁଁ ପ୍ରାୟ ୨୧ଟି ଉଚ୍ଚାଙ୍ଗ ସନ୍ଦର୍ଭ ଭାରତର ବିଖ୍ୟାତ ସାହିତ୍ୟ ତତ୍ତ୍ୱବିତ୍‌ମାନଙ୍କର ସନ୍ଦର୍ଭ ଛାୟାରେ ରଚନା କରିଥିଲି । ପ୍ରବନ୍ଧ ଗୁଡ଼ିକରୁ ଅଧିକାଂଶ ପ୍ରବନ୍ଧ ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟ ପତ୍ରିକା 'ଝଙ୍କାର'ରେ ପ୍ରକାଶ ପାଇଥିଲା । ସହକାର ଓ ଅନ୍ୟ ପତ୍ରିକମାନଙ୍କରେ ଅଳ୍ପ କେତୋଟି ପ୍ରକାଶ ପାଇଥିଲା । ସେଗୁଡ଼ିକ 'ସାହିତ୍ୟ ସମାଲୋଚନାର ଶାସ୍ତ୍ରୀୟ ଭୂମିକା' ଶିରୋନାମାରେ ବ୍ରହ୍ମପୁର 'ଆଶା ପୁସ୍ତକାଳୟ' ଦ୍ୱାରା ୧୯୯୮ରେ ପ୍ରକାଶିତ ହୋଇଛି । ସାହିତ୍ୟ ସଂପର୍କରେ ପ୍ରାଚ୍ୟ ଆଳଙ୍କାରିକମାନଙ୍କର ଚିନ୍ତାଧାରା ସହିତ ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱବିତ୍‌ମାନଙ୍କର ଚିନ୍ତାଧାରାର ତୁଳନାତ୍ମକ ଅଧ୍ୟୟନ ଥିବାରୁ ସନ୍ଦର୍ଭଗୁଡ଼ିକ ବର୍ତ୍ତମାନର ଗବେଷକ, ସାହିତ୍ୟପ୍ରେମୀ ଓ ଛାତ୍ରମାନଙ୍କ ପକ୍ଷରେ ଉପାଦେୟ ହେବ ବୋଲି ମୋର ଦୃଢ଼ ଧାରଣା । ଅଭିମନ୍ୟୁ ସାମନ୍ତସିଂହାରଙ୍କ ସଂପର୍କରେ ଗବେଷଣା କରିବାକୁ ଯାଇ ଉଭୟ ବୈଷ୍ଣବ ସାହିତ୍ୟ ଓ ଆଳଙ୍କାରିକ ସାହିତ୍ୟ ସଂପର୍କରେ ଏକ ଦୃଢ଼ ସଂସ୍କୃତ-ଭିତ୍ତି ଆଣିବାପାଇଁ ଯାଇ ଭଗବତ୍ ଆଶୀର୍ବାଦରୁ ମୁଁ ବାଲେଶ୍ୱର ରହଣିକାଳ ମଧ୍ୟରେ ସାହିତ୍ୟଶାସ୍ତ୍ର (Poetics) ସଂପର୍କରେ ଉଚ୍ଚାଙ୍ଗ ପୁସ୍ତକମାନ ସଂଗ୍ରହ ଓ ଅଧ୍ୟୟନ କରି ତା'ର ବିସ୍ତୃତ ପ୍ରାସଙ୍ଗିକ ନୋଟ୍ କରିଥିଲି । ସାହିତ୍ୟଶାସ୍ତ୍ରର ବ୍ୟାପକ ଓ ଗଭୀର ଅଧ୍ୟୟନ ଓ ଅନୁଶୀଳନ ଫଳରେ ମୋର ଏ ଧାରଣା ହେଲା : ଯେପରି ଆମ ସାହିତ୍ୟର ଅଧ୍ୟାପକ, କବି, ଲେଖକମାନେ ସାହିତ୍ୟ ସଂପର୍କରେ ବହୁ ଚିତ୍ତାକର୍ଷକ ମୌଳିକବସ୍ତୁ ସଂପର୍କରେ ଅନୁଶୀଳନ ନ କରି କେବଳ ଶଫରୀ ପରି ଅଗଭୀର ଜଳରେ ଫରଫର ହେଉଛନ୍ତି । ସାହିତ୍ୟର ସଂଜ୍ଞା ଓ ଲକ୍ଷ୍ୟ ସଂପର୍କରେ ଯଦି ଅଧ୍ୟାପକ, ଲେଖକ ଓ କବିମାନେ ଯଥାର୍ଥ ଭାବରେ ଅବହିତ ହୋଇ ପାରିବେ ତା'ହେଲେ ସାହିତ୍ୟର ବିଭିନ୍ନ ବିଭାଗର ଚମତ୍କାର ମୂଲ୍ୟାୟନ (assessment) କରିପାରିବେ । ସେମାନଙ୍କର ସାହିତ୍ୟ-ଚର୍ଚ୍ଚା କେବଳ ଆଞ୍ଚଳିକ ସ୍ତରରେ ଆବଦ୍ଧ ନ ହୋଇ ବିଶ୍ୱଜନୀନ ହୋଇପାରିବ । ସେତେବେଳେ ତୁଳନାତ୍ମକ ଅଧ୍ୟୟନ ପାଇଁ ମନରେ ସ୍ୱତଃ ପ୍ରେରଣା ଆସିବ । ସାହିତ୍ୟତତ୍ତ୍ୱ ଉପରେ ଧାରାବାହିକ ଭାବରେ ଲେଖିବା ଫଳରେ ଜଣେ ତାତ୍ତ୍ୱିକ-ନିବନ୍ଧକାର ଭାବରେ ସେତେବେଳେ ଓଡ଼ିଶାରେ ଆଦର ବଢ଼ିଥିଲା । କେତେକ ସଂସ୍କୃତ ଛାତ୍ର ଓ ଅଧ୍ୟାପକଙ୍କଠାରୁ ପ୍ରଶଂସା ସୂଚକ ପତ୍ର ପାଇଥିଲି ।

ବିଶ୍ୱଭାରତୀର ଓଡ଼ିଆ ବିଭାଗ ଦ୍ୱାରା ନିମନ୍ତ୍ରିତ ହୋଇ ବିଶ୍ୱଭାରତୀରେ 'ଆଧୁନିକ କାବ୍ୟ ପ୍ରତି ପ୍ରାଚୀନ ଓଡ଼ିଆ ସାହିତ୍ୟର ଦାନ' ସଂପର୍କରେ ଏକ ସନ୍ଦର୍ଭ ଉପସ୍ଥାପନ କରିଥିଲି (୧୧/୨/୧୯୭୩), ଯାହାକି ପରେ ଝଙ୍କାରର ଦୁଇଟି ସଂଖ୍ୟାରେ ପ୍ରକାଶ ପାଇଥିଲା । ୧୯୮୦ରେ ବାଲେଶ୍ୱର ଫକୀର ମୋହନ ସାହିତ୍ୟ ପରିଷଦ ଆନୁକୂଲ୍ୟରେ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ସହଯୋଗରେ ବାଲେଶ୍ୱରରେ ଏକ ସେମିନାର ଅନୁଷ୍ଠିତ ହୋଇଥିଲା । ମୁଁ ସେଠାକୁ ନିମନ୍ତ୍ରିତ ହୋଇ 'ଉତ୍କଳୀୟ ସଂସ୍କୃତିର ସଂସ୍କୃତ ସାହିତ୍ୟକୁ ଦାନ' ଶୀର୍ଷକ ଏକ

ସନ୍ଦର୍ଭ ଉପସ୍ଥାପନ କରିଥିଲି । ସଭାପତି ଡଃ ସଚ୍ଚିଦାନନ୍ଦ ରାଉତରାୟ, ଡଃ ହରେକୃଷ୍ଣ ମହତାବ ଓ ବାଲେଶ୍ୱରର ବହୁ ଅଧ୍ୟାପକ, ଶିକ୍ଷିତ ଗଣ୍ୟମାନ୍ୟ ବ୍ୟକ୍ତି ସେମିନାର୍‌ରେ ଉପସ୍ଥିତ ଥିଲେ । ତା' ବର୍ଷକ ପୂର୍ବରୁ ବାଲେଶ୍ୱର ଜିଲା ଶାସନସଂସ୍ଥା ପକ୍ଷରୁ ନିମନ୍ତ୍ରିତ ହୋଇ ସ୍ୱତନ୍ତ୍ର ଉତ୍କଳ ଦିବସ ସଂପର୍କରେ ଭାଷଣ ଦେଇଥିଲି ।

ମୁଁ କେନ୍ଦ୍ରସାହିତ୍ୟ ଏକାଡ଼େମୀ ଦ୍ୱାରା ଅନୁରୁଦ୍ଧ ହୋଇ ଓଡ଼ିଶାର ମଧ୍ୟଯୁଗର କେତେଜଣ କବି ଓ ସେମାନଙ୍କ ରଚନା ସଂପର୍କରେ ଇଂରାଜୀରେ ୯ଟି ଲେଖା ପ୍ରସ୍ତୁତ କରି ପ୍ରେରଣ କରିଥିଲି । ସେଗୁଡ଼ିକ Encyclopaedia of Indian Literature (E.I.L.) ରେ ପ୍ରକାଶ ପାଉଛି । ତା'ଛଡ଼ା ସାହିତ୍ୟ ଏକାଡ଼େମୀର Who's who ଯୋଜନାର ମୁଁ ଜଣେ ଲେଖକ ଭାବରେ ନିଯୁକ୍ତି ଲାଭ କରିଥିଲି । ଭଦ୍ରକ ରହଣିକାଳ ମଧ୍ୟରେ ମୁଁ ଇଂରାଜୀରେ ଆଉ କେତୋଟି ପ୍ରବନ୍ଧ ଲେଖିଥିଲି । ସେଗୁଡ଼ିକ ହେଲା : "Orissam Heritage : Her people and culture, Folkdramas of Krushnakanta (of Soro Mangalpur), Poets and Writers of Keonjhar, Contribution of Bhadrak to Oriya Literature." କେନ୍ଦୁଝର ସଂପର୍କିତ ଲେଖାଟି ସରକାରଙ୍କ ତରଫରୁ ଅନୁରୁଦ୍ଧ ହୋଇ ମୁଁ Keonjhar District Gazetter ପାଇଁ ପ୍ରେରଣ କରିଥିଲି । ପ୍ରଥମ ପ୍ରବନ୍ଧଟି ପ୍ରଫେସର ବାସୁଦେବ ସାହୁଙ୍କ ସଂପାଦିତ 'Vision' ପତ୍ରିକାରେ ପ୍ରକାଶିତ ହୋଇଥିଲା ।

୧୯୮୨, ମାର୍ଚ୍ଚରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଏକ ସାଂସ୍କୃତିକ ଭାବବିନିମୟ ଯୋଜନାନୁସାରେ ମୁଁ ପଶ୍ଚିମବଙ୍ଗ ଭ୍ରମଣ କରି କଲିକତା ଓ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ସଂପର୍କରେ ଭାଷଣ ଦେଇଥିଲି । କଲିକତାର ବିଭିନ୍ନ ସ୍ଥାନ ଭ୍ରମଣ ଓ ଅନୁଷ୍ଠାନ ସଂପର୍କରେ ଆସିବାରେ ମୋତେ ସାହାଯ୍ୟ କରିଥିଲେ ଶ୍ରୀ ଦୁର୍ଗାମାଧବ ମିଶ୍ର (I.P.S), ଆନନ୍ଦ ମୋହନ କଲେଜ୍‌ର ଅଧ୍ୟାପକ ଡଃ କୃଷ୍ଣଚନ୍ଦ୍ର ଭୂୟାଁ, କଲିକତା ଜାତୀୟ ଗ୍ରନ୍ଥାଗାରର ସହ ସଂପାଦକ ଶ୍ରୀ ଅବକାଶ ଜେନା, ମୋର ପୂର୍ବତନ ସହକର୍ମୀ ଶ୍ରୀ ପ୍ରଭାତ କୁମାର ଘୋଷ ଓ ମୋର ପୁରାତନ ଛାତ୍ର ଶ୍ରୀ ଧନେଶ୍ୱର ଦାସ । ପ୍ରଥମ ଦିନ ରବୀନ୍ଦ୍ର ସରଣିରେ ଥିବା ଭାରତୀୟ ଭାଷା ଭବନକେନ୍ଦ୍ରକୁ ଯାଇଥିଲି । ସେତେବେଳେ ସାହିତ୍ୟ ଏକାଡ଼େମୀର ପୂର୍ବାଞ୍ଚଳ କେନ୍ଦ୍ର ଦ୍ୱାରା ଉପନ୍ୟାସ ଉପରେ ଏକ ସେମିନାର୍ ଅନୁଷ୍ଠିତ ହେଉଥିଲା । ଏଥିରେ ଓଡ଼ିଶାରୁ ଅଧ୍ୟାପକ ପ୍ରଭାତ କୁମାର ଦାସ, ଜଗଦୀଶ ମହାନ୍ତି ଓ ଅଖିଳ ମୋହନ ପଟ୍ଟନାୟକ ଯୋଗ ଦେଇଥିଲେ । କେନ୍ଦ୍ରର ସଂପାଦକ ଶ୍ରୀ ପ୍ରଭାକର ମାଚ୍‌ୱେଙ୍କ ସହ ଆଲୋଚନା କରି ରହଣି ସ୍ଥାନ ଉତ୍କଳଭବନକୁ ଫେରିଥିଲି । ଦ୍ୱିତୀୟ ଦିନ ଜାତୀୟ ଗ୍ରନ୍ଥାଗାରକୁ ଯାଇ ସହ-ସଂପାଦକ ଅବକାଶ ଜେନାଙ୍କ ସହ ନାନା ବିଷୟରେ ଆଲୋଚନା କରିଥିଲି । ତୃତୀୟ ଦିବସରେ ଦକ୍ଷିଣ କଲିକତାରେ ରାମକୃଷ୍ଣ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ର କର୍ମକର୍ତ୍ତାଙ୍କ ସହ ଓଡ଼ିଶା ସାହିତ୍ୟ ଏକାଡ଼େମୀ ସଂପର୍କରେ ଆଲୋଚନା କରିଥିଲି । ତା'ପରେ

ଚୈତନ୍ୟ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌କୁ ଯାଇ ବିଭିନ୍ନ ଜ୍ଞାତବ୍ୟ ତଥ୍ୟ ସଂଗ୍ରହ କରିଥିଲି । ସେଠାରେ ବାରିପଦାର ଜଣେ ଅବସର ପ୍ରାପ୍ତ ପୁଲିସ୍ ଅଫିସର୍ କିପରି ବୈଷ୍ଣବ ଦୀକ୍ଷା ଗ୍ରହଣ କରି ଅବସ୍ଥାନ କରୁଛନ୍ତି ତାଙ୍କ ସଂପର୍କରେ ନାନା କଥା ପଚାରି ଫେରିଲି । ସେଦିନ ପୂର୍ବ ନିର୍ଦ୍ଧାରଣ ଅନୁସାରେ ଏସିଆଟିକ୍ ସୋସାଇଟି ହଲ୍‌ରେ ମୋର ଆଲୋଚନା କରିବାର କଥା, କିନ୍ତୁ ବିଳମ୍ବ ହେତୁ ଯଥା ସମୟରେ ଯୋଗ ଦେଇପାରିଲି ନାହିଁ ।

୨୮/୩/୮୨ରେ ବେଲୁଡ଼ମଠରୁ ଫେରି କଲିକତା ବିଶ୍ୱବିଦ୍ୟାଳୟ ବଙ୍ଗଳା ବିଭାଗରେ ବଙ୍ଗ ଓ ଓଡ଼ିଶାର ଭାଷା, ଧର୍ମ ଓ ସାଂସ୍କୃତିକ ସଂପର୍କ ଉପରେ ଏକ ଭାଷଣ ଦେଇଥିଲି । ବିଭାଗୀୟ ମୁଖ୍ୟ ପ୍ରଫେସର ଅସିତ କୁମାର ବନ୍ଦ୍ୟୋପାଧ୍ୟାୟ ସଭାପତିତ୍ୱ କରିଥିଲେ । ସଭା ଶେଷରେ କଲିକତା ବିଶ୍ୱବିଦ୍ୟାଳୟର ଭାରତୀୟ ଭାଷା ବିଭାଗର ସ୍ୱର୍ଣ୍ଣଜୟନ୍ତୀ ଉଦ୍ଦେଶ୍ୟରେ ପ୍ରକାଶିତ ପ୍ରାୟ ଏକ ହଜାର ପୃଷ୍ଠାର 'ସୁବର୍ଣ୍ଣ ଲେଖା' ଶୀର୍ଷକ ସ୍ମରଣିକା ଗ୍ରନ୍ଥ ସହ ବଙ୍ଗଳା ବିଭାଗର ପତ୍ରିକା ଡଃ ବନ୍ଦ୍ୟୋପାଧ୍ୟାୟ ଉପହାର ଦେଇଥିଲେ । ତା' ପୂର୍ବରୁ କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଆ ଲାଇବ୍ରେରୀୟାନ୍ ଗୋଲୋକ ପ୍ରସାଦ ବାରିକ ମୋତେ ବଙ୍ଗୀୟ ସାହିତ୍ୟ ପରିଷଦକୁ ନେଇଯାଇଥିଲେ । ସେଠାରେ ପରିଷଦର ସେକ୍ରେଟେରୀ ଦିଲୀପ କୁମାର ବିଶ୍ୱାସ ଆଗ୍ରହରେ ମୋତେ ପରିଷଦର ବିଭିନ୍ନ ହଲ୍ ଦେଖାଇ (ପୁସ୍ତକ ଓ ସଂଗୃହୀତ ମୂର୍ତ୍ତିର) ପରିଷଦ ପ୍ରକାଶିତ ନୂତନ ପୁସ୍ତକଗୁଡ଼ିକ ଦେଖାଇବା ସଙ୍ଗେସଙ୍ଗେ ପରିଷଦର ପତ୍ରିକା ଉପହାର ଦେଇଥିଲେ । ବୃହତ୍ତର କଲିକତା ଉତ୍କଳ ସମାଜ ପକ୍ଷରୁ ନିମନ୍ତ୍ରିତ ହୋଇ ପଣ୍ଡିତ ଆକୁଳି ମିଶ୍ରଙ୍କ ପ୍ରେସ୍ ଅଗଣାରେ ଅନୁଷ୍ଠିତ ଏକ ସଭାରେ ଭାଷଣ ଦେଇଥିଲି ।

୩୦/୩/୮୨ରେ ବିଶ୍ୱଭାରତୀ ଯାତ୍ରା କରି ଏପ୍ରିଲ୍ ପହିଲା ସକାଳେ ବଙ୍ଗଳା ବିଭାଗରେ "Orissam Heritage : Her people and culture" ଶୀର୍ଷକ ଏକ ପ୍ରବନ୍ଧ ପାଠ କରିଥିଲି । ବଙ୍ଗଳା ବିଭାଗର ପ୍ରଫେସର୍ ସଭାପତିତ୍ୱ କରିଥିଲେ ଏବଂ ଓଡ଼ିଆ ବିଭାଗର ରିଡ଼ର୍ ଡଃ ନରେନ୍ଦ୍ର ନାଥ ମିଶ୍ର ପରିଚିତ କରାଇ ଦେଇଥିଲେ । ଶାନ୍ତିନିକେତନରେ ଅବସରପ୍ରାପ୍ତ ବୃଦ୍ଧ ଅଧ୍ୟାପକ ହୀରେନ୍ ମୁଖର୍ଜୀଙ୍କ ସହ ଅଧ୍ୟାପକ ନୀଳାଦ୍ରିଭୂଷଣ ହରିଚନ୍ଦନଙ୍କ ସହ ଯାଇ ଆଲୋଚନା କରିଥିଲି । ସେତେବେଳେ ସାଂସ୍କୃତିକ ଭାବବିନିମୟ ଯୋଜନା ଅନୁଯାୟୀ ପଶ୍ଚିମବଙ୍ଗ ଭ୍ରମଣ ବିଶେଷ ଆନନ୍ଦଦାୟକ ହୋଇଥିଲା । ଏପ୍ରିଲ ୪ ତାରିଖରେ ଭଦ୍ରକ ପ୍ରତ୍ୟାବର୍ତ୍ତନ କରିଥିଲି ।

ଭଦ୍ରକ କଲେଜ୍ ଓଡ଼ିଆ ବିଭାଗରେ ସେତେବେଳେ ନୀଳାଦ୍ରିଭୂଷଣ ହରିଚନ୍ଦନ, ଗିରୀଶ ଚନ୍ଦ୍ର ମିଶ୍ର, ବାଉରୀବନ୍ଧୁ କର ଓ ପ୍ରହ୍ଲାଦ ଚରଣ ମହାନ୍ତି ପ୍ରଭୃତି ଅଧ୍ୟାପକମାନେ ଯୋଗ ଦେଲେ । ଏମାନଙ୍କର ଉତ୍ସାହ ଓ ସହଯୋଗ ଫଳରେ ଓଡ଼ିଆ ବିଭାଗର ସେମିନାର୍‌ଗୁଡ଼ିକ ଅଧିକ ପ୍ରାଣବନ୍ତ ହୋଇଥିଲା । ସ୍ୱଳ୍ପ ବ୍ୟୟରେ ଓଡ଼ିଆ ସାହିତ୍ୟ ସମାଜ ପକ୍ଷରୁ ପୂର୍ଣ୍ଣାଙ୍ଗ ଆଧୁନିକ ପରୀକ୍ଷାମୂଳକ ଓଡ଼ିଆ ନାଟକ (ମୃଗୟା) ଅଭିନୀତ ହୋଇଥିଲା ।

ଏଥିରେ ଛାତ୍ରୀ ରୁକ୍ମିଣୀ ସାହୁର (ପରେ ଭଦ୍ରକ ମହିଳା ମହାବିଦ୍ୟାଳୟର ଅଧାପିକା) ଆଗ୍ରହ ଥିଲା ଅସୀମ ।

## ୟୁ.ଜି.ସି. ଗବେଷଣା ଓ ମଙ୍ଗଳପୁର (ସୋରୋ) :

ଓଡ଼ିଆ ବିଭାଗ ପକ୍ଷରୁ ଛାତ୍ର ଓ ଅଧାପକମାନେ ୟୁ.ଜି.ସି.ର ଆର୍ଥିକ ସହାୟତାରେ ଏକ ଗବେଷଣା ଯୋଜନା (COHOSSIP) କାର୍ଯ୍ୟକାରୀ କରିଥିଲେ ଏବଂ କ୍ଷେତ୍ରକର୍ମ (field work) ପାଇଁ ଆମ୍ଭେମାନେ ଅଧାପକ ପ୍ରହ୍ଲାଦ ଚରଣ ମହାନ୍ତିଙ୍କ ଗ୍ରାମ ସୋରୋ ନିକଟବର୍ତ୍ତୀ ମଙ୍ଗଳପୁର ଯାତ୍ରା କରିଥିଲୁଁ । ମଙ୍ଗଳପୁର ଏକ ପାହାଡ଼ର ପୂର୍ବ ପାଖରେ ଅବସ୍ଥିତ; ପାହାଡ଼ିଆ ନଦୀଟିଏ ଗାଁ ମଧରେ ବହିଯାଉଛି । ପୂର୍ବରୁ ମଙ୍ଗଳପୁର ଏକ ଜମିଦାରଙ୍କ ଦ୍ୱାରା ଶାସିତ ହେଉଥିଲା ଯେ କି ରାଜା ଉପାଧି ଲାଭ କରିଥିଲେ । ଏହି ଗ୍ରାମର ବୈଶିଷ୍ଟ୍ୟ ହେଉଛି ଏହାର ବୈଷ୍ଣବ ମନ୍ଦିର । ପୂର୍ବରୁ ରାଜାଙ୍କ ପୃଷ୍ଠପୋଷକତାରେ ଗ୍ରାମର କବି କୃଷ୍ଣକାନ୍ତ ବହୁ ଲୀଳା ଓ ଯାତ୍ରା ରଚନା କରିଥିଲେ, ଯେଉଁଗୁଡ଼ିକ ଚନ୍ଦନଯାତ୍ରା ସମୟରେ ଗ୍ରାମରେ ଅଭିନୀତ ହେଉଥିଲା । ଅଭିନୟରେ ମୁଖା ବ୍ୟବହାର କରାଯାଉଥିଲା । ସାଙ୍ଗରେ ଟେପ୍ ରେକର୍ଡ଼ର ନିଆଯାଇଥିଲା । ସେଠାରେ ଆଦିବାସୀଙ୍କ ସମାଜ, ଧର୍ମ, ଚଳଣି ଓ ସଙ୍ଗୀତ ସଂପର୍କରେ ସେମାନଙ୍କ ସହ ଏକ ସାକ୍ଷାତ୍କାରର ବ୍ୟବସ୍ଥା କରିଥିଲୁଁ, ଯାହା ଆମେ ରେକର୍ଡିଂ କରି ଆଣିଥିଲୁଁ । ତା'ଛଡ଼ା ପୁରାତନ ଯାତ୍ରା-ଶିଳ୍ପୀମାନେ ପଖୋଜ ଓ ହାର୍ମୋନିୟମ୍ ସାହାଯ୍ୟରେ ମହୀରାବଣବଧର କିଛି ଅଂଶର ଅଭିନୟ କରିଥିଲେ, ଯା'ର ସଂଳାପ ଓ ସଂଗୀତ ରେକର୍ଡିଂ କରିଥିଲୁଁ । ତା'ପରେ ଗ୍ରାମବାସୀଙ୍କ ଉପସ୍ଥିତିରେ ଏକ ସାଧାରଣ ସଭା ହୋଇଥିଲା ଏବଂ ମଙ୍ଗଳପୁରରେ ଏକ ସାହିତ୍ୟ ପରିଷଦର ଭିତ୍ତିସ୍ଥାପନ କରାଯାଇଥିଲା ।

ଭଦ୍ରକ ରହଣିକାଳ ମଧରେ ଅଧାପକ ଫନୀନ୍ଦ୍ର ନାଥ ବାନାର୍ଜୀ, ସୁଧାଂଶୁ ଶେଖର ରାୟ ଅବସର ଗ୍ରହଣ କରିଥିଲେ । ସୁଧାଂଶୁ ବାବୁ ଭଦ୍ରକ ନିକଟବର୍ତ୍ତୀ ବିରିପଡ଼ା ହାଇସ୍କୁଲ୍‌ରେ କିଛିକାଳ ପ୍ରଧାନ ଶିକ୍ଷକତା କରି ପରେ ଚରମ୍ପା କଲେଜ୍‌ରେ ଅଧକ୍ଷ ହୋଇଥିଲେ । କଲେଜ୍‌ରେ ଦୀର୍ଘକାଳ ରହିଥିବାରୁ ବିଭିନ୍ନ ସମୟରେ ନାନା ଦାୟିତ୍ୱରେ ରହିଥିଲି । ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଡେପୁଟି ସେଣ୍ଟର-ସୁପରିନ୍‌ଟେଣ୍ଡେଣ୍ଟ ହେବାଠାରୁ ଆରମ୍ଭ କରି, ଓଡ଼ିଆ ପାଠ୍ୟ ସମିତିର (Board of Studies) ସଭ୍ୟ ହୋଇଛି ।

୧୯୮୧ ଶେଷ ଆଡ଼କୁ ଅଧକ୍ଷ ଶଶାଙ୍କ ଶେଖର ପଟ୍ଟନାୟକଙ୍କର ଆକସ୍ମିକ ମୃତ୍ୟୁପରେ ବରିଷ୍ଠତା ଦୃଷ୍ଟିରୁ ମୁଁ ଭଦ୍ରକ କଲେଜ୍‌ର ଅଧକ୍ଷ ଦାୟିତ୍ୱରେ ରହେଁ ଏବଂ ଅଫିସ୍ କାର୍ଯ୍ୟ ପରିଚାଳନା ପାଇଁ ଅର୍ଥନୈତିକ (Financial power) କ୍ଷମତା ପାଏଁ । କଲେଜ୍ ସଂପର୍କରେ ମୋର ଦୀର୍ଘକାଳର ଅଭିଜ୍ଞତା, ଭଦ୍ରକ ଓ ଆଖପାଖର ବହୁ ଜିଲ୍ଲାର ଛାତ୍ର ଭଦ୍ରକ କଲେଜକୁ ଆସୁଥିବାରୁ ବହୁ ଛାତ୍ର ଓ ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତିଙ୍କ ସହ ମୋର ପରିଚୟ

ଘଟିଥାଏ । ମୋର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣରେ ଅଫିସ୍ ଷ୍ଟାଫ୍ ଖୁସି ହୁଅନ୍ତି ଏବଂ ପୂର୍ଣ୍ଣପ୍ରାଣରେ ସହଯୋଗ କରନ୍ତି । ନିୟମିତ ଭାବରେ ନିଯୁକ୍ତ ଅଧ୍ୟକ୍ଷ ହୁଅନ୍ତୁ ବା ଅସ୍ଥାୟୀ ଭାବରେ ଦାୟିତ୍ୱ ଗ୍ରହଣକାରୀ ଅଧ୍ୟକ୍ଷ ହୁଅନ୍ତୁ ଦାୟିତ୍ୱ ସମାନ । ଘରୋଇ କଲେଜ୍‌ରେ ସ୍ଥାନୀୟ ଛାତ୍ରମାନଙ୍କର କଲେଜ୍‌ରେ ସିଟ୍ ପାଇବା ସଂପର୍କରେ ଅଘୋଷିତ ଅଧିକାର ଥିବାରୁ ଅଧ୍ୟକ୍ଷ ଉପରେ ଅନେକ ସମୟରେ ଅଯୌକ୍ତିକ ଚାପ ପଡ଼ିଥାଏ; କିନ୍ତୁ ଚାପକୁ ଅତିକ୍ରମ କରି ମୁଁ ଦାୟିତ୍ୱ ତୁଲାଇ ଚାଲିଥାଏଁ ।

ସ୍ୱଳ୍ପକାଳ ପାଇଁ ହେଲେ ମଧ୍ୟ କଲେଜ୍‌ରେ ଅଧ୍ୟକ୍ଷର ଦାୟିତ୍ୱ କେତେ ତା'ର ଉପଲବ୍ଧି ଛାଏଁ ଛାଏଁ ଆସିଥାଏ । ମନେ ହେଉଥାଏ କଲେଜ୍ ଯେପରି ତାଙ୍କ ମୁଣ୍ଡ ଉପରେ ଲଦି ହୋଇଛି, ତା'ର ଗୁରୁଭାର ସହି ଦାୟିତ୍ୱ ନିର୍ବାହ କରିବାକୁ ହେବ । ନିଜେ ନିୟମିତ, ଶୃଙ୍ଖଳିତ ଓ କର୍ମତତ୍ପର ରହି ସେଇ ଭାବରେ ସମସ୍ତଙ୍କୁ ନିୟନ୍ତ୍ରିତ ନ କଲେ ପରିଚାଳନାରେ ତ୍ରୁଟି ରହି ଛାତ୍ରଅଶାନ୍ତି ଦେଖାଯିବ । ମୋ ନିକଟରେ ଗୋଟିଏ ପ୍ରଶ୍ନ : ସମସ୍ତେ ନିୟମିତ ଓ ଶୃଙ୍ଖଳିତ ଭାବରେ ନିଜ ଦାୟିତ୍ୱ ସଂପାଦନ କରୁଛନ୍ତି କି ନାହିଁ ? ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କଠାରୁ ଆରମ୍ଭ କରି ଅଧ୍ୟାପକଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ କାର୍ଯ୍ୟକଳାପ ଲକ୍ଷ୍ୟ କରିବା ମୋର ଏକ ନିୟମିତ କର୍ତ୍ତବ୍ୟ ହୋଇଥାଏ । ଅଧ୍ୟକ୍ଷ ଦାୟିତ୍ୱ ତୁଲାଇବାକୁ ହେବାରୁ ମୋର କେତୋଟି କ୍ଲାସ୍ ଅନ୍ୟ ଅଧ୍ୟାପକଙ୍କ ମଧ୍ୟରେ ବାଣ୍ଟିଦିଏଁ । ଟେଷ୍ଟ୍ ପରୀକ୍ଷା ପରିଚାଳନା ନିମିତ୍ତ ପରୀକ୍ଷା କମିଟିର ଅଧ୍ୟାପକମାନଙ୍କୁ ଡକାଇ ତା'ର ବ୍ୟବସ୍ଥା କରେଁ । ଉପାଧିୁତ୍ତର ଶ୍ରେଣୀର ଆଡ୍‌ମିସନ୍ ପାଇଁ ବିଭିନ୍ନ ବିଭାଗର ମୁଖ୍ୟମାନଙ୍କୁ ନୋଟିସ୍ ଦିଏଁ । ଡିସିପ୍ଲିନ୍ କମିଟିର ସଭ୍ୟମାନଙ୍କୁ କଲେଜ୍‌ରେ ଏକ ନୈତିକ ବାତାବରଣ ସୃଷ୍ଟି କରିବାକୁ କଲେଜ୍ ଓ କଲେଜ୍ ସମ୍ମୁଖସ୍ଥ ପଡ଼ିଆରେ ସମୟେ ସମୟେ ଘୂରି ଲକ୍ଷ୍ୟ କରିବାକୁ ପରାମର୍ଶ ଦିଏଁ ।

ଛାତ୍ରମାନଙ୍କର ଅସୁବିଧା ଧୈର୍ଯ୍ୟର ସହ ଶୁଣି ତାହା ଦୂର କରିବାକୁ ଚେଷ୍ଟା କରେଁ । ହଷ୍ଟେଲ୍ ନିର୍ବାଚନ ଯେପରି ଶୃଙ୍ଖଳିତ ଭାବରେ ହୁଏ ସେଥିପ୍ରତି ଧ୍ୟାନ ଦିଏଁ । ଛାତ୍ରାବାସ ଓ କଲେଜ୍‌ରେ ଛାତ୍ରମାନେ ଯେପରି ଆମ କଲେଜ୍, ଆମ ଛାତ୍ରାବାସ, ତା'ର ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦା ରକ୍ଷା କରିବା ଦିଗରେ ଏକ ମମତ୍ୱବୋଧ ସୃଷ୍ଟି କରନ୍ତି, ସେଥିପ୍ରତି ଧ୍ୟାନଦେବାକୁ ଛାତ୍ର ଓ ତତ୍ତ୍ୱାବଧାରକଙ୍କୁ ସୂଚନା ଦିଏଁ । ହଷ୍ଟେଲ୍‌ରେ ଜାତି, ଧର୍ମ ନିର୍ବିଶେଷରେ ସକାଳେ ଓ ସନ୍ଧ୍ୟାରେ ସାର୍ବଜନୀନ ପ୍ରାର୍ଥନା କରିବାକୁ ସୂଚନା ଦିଏଁ ।

କଲେଜ୍‌ର ପି.ଟି. ଆଇଙ୍କ ସହ ବିଭିନ୍ନ ଛାତ୍ରାବାସ ସକାଳେ ଘୂରିବୁଲି ବିଭିନ୍ନ ବିଷୟ ପ୍ରତି ଧ୍ୟାନ ଦେବାପାଇଁ ପ୍ରେରଣା ଦିଏଁ, ଯଥା-

(କ) ରୁମ୍, ପୋଷାକ ଓ ଶଯ୍ୟାର ପରିଚ୍ଛନ୍ନତା;

(ଖ) ପ୍ରାତଃ କାଳୀନ ନିଦ୍ରା ଭଙ୍ଗ, ରାତି ୧୦ ଟା ସୁଦ୍ଧା ଶୟନର ଅଭ୍ୟାସ, ପ୍ରାତଃ, ସନ୍ଧ୍ୟା ଓ ଶୟନ କାଳରେ ପ୍ରାର୍ଥନା;

(ଗ) ତତ୍ତ୍ୱାବଧାରଙ୍କର ଛାତ୍ରାବାସ ନିୟମିତ ପରିଦର୍ଶନ;

(ଘ) ଛାତ୍ରମାନଙ୍କ ପାଇଁ କ୍ରୀଡ଼ା ଆଦିର ବ୍ୟବସ୍ଥା, ସେମାନଙ୍କ ମଧ୍ୟରେ ଟିମ୍‌ସ୍ପିରିଟ୍ ଓ ନେତୃତ୍ୱ-ବୋଧ ସୃଷ୍ଟି କରିବା;

(ଙ) ଛାତ୍ରାବାସର ବଗିଚାରେ ବିଭିନ୍ନ ପନିପରିବା ଉତ୍ପାଦନର ପ୍ରେରଣା ଦେବା, ସୌନ୍ଦର୍ଯ୍ୟ ବୋଧର ବିକାଶପାଇଁ ପୁଷ୍ପ ଉଦ୍ୟାନ ପ୍ରସ୍ତୁତି;

(ଚ) ଛାତ୍ରମାନଙ୍କର ମାନସିକ ତଥା ବୌଦ୍ଧିକ ବିକାଶପାଇଁ ବକ୍ତୃତା ପ୍ରତିଯୋଗିତା ସହ ବିଭିନ୍ନ ସଭାର ଆୟୋଜନ କରିବା ।

କଲେଜ୍‌ର ଅଧ୍ୟାପକମାନଙ୍କର ଦକ୍ଷତା ମୂଲ୍ୟାୟନ (assess) କରିବାକୁ ହେଲେ ସେମାନଙ୍କର ନିୟମାନୁବର୍ତ୍ତିତା, କର୍ତ୍ତବ୍ୟବୋଧ, ପାଠ୍ୟ-ଯୋଜନା, ସଫଳ ଅଧ୍ୟାପନା ଏବଂ ଛାତ୍ରମାନଙ୍କ ମଧ୍ୟରେ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟିପାଇଁ ସେମାନଙ୍କର ଆଗ୍ରହ ଓ ପ୍ରଚେଷ୍ଟା ଲକ୍ଷ୍ୟ କରିବାକୁ ହେବ । ବାର୍ଷିକ ଉତ୍ସବ ସମୟରେ ସୌଜନ୍ୟ-ସପ୍ତାହ ପାଳନ କରିବାକୁ ହେବ ଛାତ୍ର ଓ ସାଧାରଣଙ୍କ ମଧ୍ୟରେ ସଚେତନତା ସୃଷ୍ଟି ପାଇଁ ।

ବିଭିନ୍ନ ସମୟରେ ବିଭିନ୍ନ ବିଷୟରେ ବକ୍ତୃତା ପ୍ରଦାନ କରିବାକୁ ହେବ, ଯଥା- ସୌଜନ୍ୟ, ସାଧୁତା, କର୍ତ୍ତବ୍ୟବୋଧ, ପ୍ରବର୍ତ୍ତନା ବୋଧ (Sense of involvement),ମଣିଷର ନୈତିକ ଓ ଆଧ୍ୟାତ୍ମିକ ଭିତ୍ତି, ଶ୍ରମ-ମର୍ଯ୍ୟାଦା । ଜାତୀୟ ସେବାସଂସ୍ଥାର (National Service Core) ଦାୟିତ୍ୱରେ ଥିବା ଅଧ୍ୟାପକ ଏହାର ବ୍ୟବସ୍ଥା କରିବେ ।

ତା'ଛଡ଼ା କଲେଜ୍‌ର ଗୁଣାତ୍ମକ ବିକାଶ ପାଇଁ ବିଭିନ୍ନ ଯୋଜନା ହାତକୁ ନେବାକୁ ହେବ, ଯଥା- ଗ୍ରନ୍ଥାଗାର ସଂସ୍କାର, ରେଡକ୍ରସ ଓ ବ୍ୟାଙ୍କ ସୁବିଧା, ଛାତ୍ରୀମାନଙ୍କୁ ଆତ୍ମରକ୍ଷାର ତାଲିମ ପ୍ରଦାନ, ଯୋଗ୍ୟ, ବରିଷ୍ଠ ଅଧ୍ୟାପକଙ୍କୁ ପ୍ରଶାସନିକ ଓ ହିସାବ ଯାଞ୍ଚର ଦାୟିତ୍ୱପ୍ରଦାନ, ଶ୍ରେଣୀ ଅଧ୍ୟାପନା ପ୍ରତି ଧ୍ୟାନ (କାର୍ଯ୍ୟ ନିର୍ଘଣ୍ଟ ଅନୁଯାୟୀ ଅଧ୍ୟାପକମାନେ ଠିକ୍ ଭାବରେ ଅଧ୍ୟାପନା କରୁଛନ୍ତି କି ନାହିଁ), ପାଖରେ ପ୍ରତ୍ୟେକ ବିଭାଗର ରୁଟିନ୍ ରଖିବା; ଗ୍ରନ୍ଥାଗାର, ପାଠକକ୍ଷ (Reading room) ବୁଲି ଦେଖିବା; କର୍ମଚାରୀଙ୍କର ଉପସ୍ଥାନ; ସମସ୍ତଙ୍କର ସାମୟିକ ଛୁଟି (Casnal Leave) ଆଦି ବିଭିନ୍ନ ଛୁଟି ରେଜିଷ୍ଟର୍‌ରେ ସ୍ୱାକ୍ଷର; କର୍ତ୍ତବ୍ୟରେ ଶିଥିଳତା ତଥା ଅବହେଳାର ସଂପୃକ୍ତ ବ୍ୟକ୍ତିଙ୍କୁ କୈଫିୟତ ତଲବ ।

## ଛାତ୍ରଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ :

ଭାବୀଜୀବନ ପାଇଁ ନିଜକୁ ପ୍ରସ୍ତୁତ କରିବାପାଇଁ ପରିବାର, ସମାଜ, ଶିକ୍ଷାୟତନ, ଛାତ୍ରାବାସ ଓ କ୍ରୀଡ଼ା ପ୍ରାନ୍ତର ହେଉଛି ଶିକ୍ଷାକେନ୍ଦ୍ର ।

(କ) ନିୟମିତ ଅଧ୍ୟୟନ ଓ ମନନ, ପରିଶ୍ରମ ପ୍ରତି ଆନ୍ତରିକତା;

(ଖ) ଉତ୍ତମ ଆଚରଣ (conduct);

(ଗ) ଅଧୀତ ବସ୍ତୁର ଚରିତ୍ରରେ ପ୍ରତିଫଳନ;

(ଘ) ଚାରିତ୍ରିକ ଓ ବୌଦ୍ଧିକ ବିକାଶ କ୍ଷେତ୍ରରେ କ୍ରୀଡ଼ା, ସଂଯମ, ବ୍ୟାୟାମ ଓ ଯୋଗର ଭୂମିକା;

(ଙ) ମହାପୁରୁଷ, ମନୀଷୀ, କବି, ବୈଜ୍ଞାନିକ ଓ ଶିକ୍ଷକମାନଙ୍କର ଜୀବନୀ ଓ ଗ୍ରନ୍ଥ ଅଧ୍ୟୟନ ।

ଷ୍ଟାଫ୍ କାଉନ୍‌ସିଲ୍ ମିଟିଂରେ ସହଯୋଗ, କର୍ତ୍ତବ୍ୟବୋଧ, ଅନୁପ୍ରବର୍ତ୍ତନା (involvement) ନିଜର ବୃତ୍ତି ପ୍ରତି ଆନ୍ତରିକତା, ବ୍ୟକ୍ତିଗତ ଓ ସମଷ୍ଟିଗତ ଦାୟିତ୍ୱ ସଂପର୍କରେ ସୂଚନା ପ୍ରଦାନ କରିବାକୁ ହେବ ।

କଲେଜ୍‌ରେ ଅତିକମ୍‌ରେ ୪ ଘଣ୍ଟା ରହଣି; ଅନ୍ତତଃ ଦୁଇଦିନ ପୂର୍ବରୁ ସି.ଏଲ୍. ପାଇଁ ଦରଖାସ୍ତ କରି ନିଜ କ୍ଲାସର ପୂର୍ବ ବ୍ୟବସ୍ଥା କରାଇ ନେବା ଉଚିତ ।

କଲେଜ୍ ଗ୍ରନ୍ଥାଗାର ପାଇଁ ଜ୍ଞାନବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିଭିନ୍ନ ଶାଖାର ପ୍ରାଚୀନ ଓ ଆଧୁନିକ ପୁସ୍ତକ (ଶିକ୍ଷା, ସଂସ୍କୃତି, ସାହିତ୍ୟ, ବିଜ୍ଞାନ, ଦର୍ଶନ, ଆଧ୍ୟାତ୍ମିକତା ପ୍ରଯୁକ୍ତି ବିଦ୍ୟା ସଂପର୍କରେ) ସଂଗ୍ରହ ସହ ଉଚ୍ଚକୋଟୀର ଭାରତୀୟ ଓ ଆନ୍ତର୍ଜାତିକ ଜର୍ଣ୍ଣାଲ୍ ମଗାଯିବା ଆବଶ୍ୟକ ।

କଲେଜ୍ କାଲେଣ୍ଡର୍ ବା କଲେଜ୍ ମାଗାଜିନ୍‌ରେ ଛାତ୍ରଙ୍କର ସାଧାରଣ ଅଧ୍ୟୟନ ପାଇଁ ଉତ୍ତମ ପୁସ୍ତକ ଓ ବିଶ୍ୱର ଶ୍ରେଷ୍ଠ ଗ୍ରନ୍ଥର (World classics) ତାଲିକା ମୁଦ୍ରିତ ହେବା ଆବଶ୍ୟକ ।

୧୯୮୨ରେ ଅଧ୍ୟକ୍ଷ ଦାୟିତ୍ୱ ବହନ ବେଳେ କଲେଜ୍ ଶିକ୍ଷା, ଅଫିସ୍ ପରିଚାଳନା ଏବଂ କଲେଜ୍ ପରିସରରେ ନୈତିକ ତଥା ଆଧ୍ୟାତ୍ମିକ ଚେତନାର ସଞ୍ଚାର ପାଇଁ ମୁଁ ଏକ ଯୋଜନା କରିଥିଲି ଯାହାକି 'ମହାଦୀପ' ଶୀର୍ଷକ ଏକ ଲେଖାରେ ପ୍ରତିଫଳିତ ହୋଇଥିଲା । ଏହା ପ୍ରଜାତନ୍ତ୍ରର କୌଣସି ଏକ ରବିବାସରୀୟ ସଂଖ୍ୟାରେ ପ୍ରକାଶିତ ହୋଇ ଓଡ଼ିଶାର ବିଦଗ୍ଧ ପାଠକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା । ଗୁରୁକୁଳ ଆଦର୍ଶରେ ଅନୁପ୍ରାଣିତ ହୋଇ ମୁଁ କଲେଜ୍‌ର ବିଭିନ୍ନ ଅଂଶର (ରାସ୍ତା ସହ) ଔପନିଷଦୀୟ ନାମକରଣ କରିଥିଲି । (ପରିଶିଷ୍ଟରେ ଦ୍ରଷ୍ଟବ୍ୟ) ଏବଂ ଷ୍ଟାଫ୍ କାଉନ୍‌ସିଲ୍ ଓ ଛାତ୍ର ସଭାରେ କଲେଜ୍‌ର ଶିକ୍ଷା ଓ ଗବେଷଣାର ବିକାଶ ପାଇଁ ସମୟେ ସମୟେ ବକ୍ତୃତା ଦେଉଥିଲି ।

୧୯୭୪ ମସିହାରେ କଟକର ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ଅନୁଷ୍ଠିତ ପ୍ରସିଦ୍ଧ ବିଷୁବ ମିଳନ ସାହିତ୍ୟ ଉତ୍ସବର ପ୍ରଥମ ସାନ୍ଧ୍ୟ ଅଧିବେଶନରେ ସଭାପତି ଭାବରେ ଯୋଗଦାନ କରେଁ ଏବଂ ୧୯୭୭ ମସିହାର ବିଷୁବ ମିଳନରେ ଜଣେ ତାତ୍ତ୍ୱିକ ନିବନ୍ଧକାର ଭାବରେ ଏକହଜାର ଟଙ୍କା ପୁରସ୍କାର ସହ ମାନପତ୍ର ପ୍ରାପ୍ତ ହୁଏ ।

ମା'ର (ବଡ଼ମାଈଁ) ଦେହାନ୍ତ ପରେ ଘର ଭିତରେ ନାନା ବିଶୃଙ୍ଖଳା ଦେଖାଦିଏ । ଏକାଧିକ ସାହାଯ୍ୟକାରୀ ପିଲା ରହିଥିଲେ ମଧ୍ୟ ସେମାନଙ୍କର ଅବାଧତା ଓ ବିଶ୍ୱାସଘାତକତା

ଫଳରେ ଗୃହ ପରିଚାଳନାରେ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ । ସଂପର୍କୀୟା ମାମା (ଆଈ) ପ୍ରାୟ ତିନିବର୍ଷ ପର୍ଯ୍ୟନ୍ତ ରହିଥିଲେ ମଧ ତା'ର ଖାମଖିଆଲି ଢଙ୍ଗ ଏବଂ ପ୍ରଚ୍ଛନ୍ନ ଭାବରେ ଗୃହୋପକରଣ ହସ୍ତାନ୍ତର ମନରେ ଗଭୀର ଦୁଃଖ ଦିଏ । ଏହା ସତ୍ତ୍ୱେ ସହାୟକ ପିଲାର ଅନୁପସ୍ଥିତିରେ ଶ୍ରେଣୀରେ ଅଧାପନା, ସଭାସମିତିରେ ଯୋଗାଦାନ ପ୍ରଭୃତି କାର୍ଯ୍ୟଠାରୁ ଆରମ୍ଭ କରି ରୋଷେଇ ପର୍ଯ୍ୟନ୍ତ କରିବାକୁ ପଡୁଥିଲା । ଗୃହ ଯେ ଦିନକୁ ଦିନ ଶ୍ରୀହୀନ ହୋଇ ପଡୁଥାଏ, ଏହା ମୁଁ ଲକ୍ଷ୍ୟ କରି ମନେମନେ ଯନ୍ତ୍ରଣା ଅନୁଭବ କରୁଥାଏଁ । ସହାୟକ ପିଲାର ଜବାବ, ବିଶ୍ବାସଘାତକତା ଓ ଗୃହର ଅଚଳ ଅବସ୍ଥାରେ ପିଲାମାନେ ଅତିଷ୍ଠ ହୋଇପଡ଼ନ୍ତି ।

ଦୀର୍ଘ ପାଞ୍ଚବର୍ଷ କାଳର ମାନସିକ ଦ୍ୱନ୍ଦ୍ୱର ପୀଡ଼ନ ସହି ବହୁ ଚିନ୍ତା ଓ ତର୍କଣା ପରେ ଅନନ୍ୟୋପାୟ ହୋଇ ଶେଷରେ ଦ୍ୱିତୀୟ ସଂସାର ପାଇଁ ମନରେ ଭାବନା ଆସେ । ଶେଷରେ ୧୯୭୫, ଫେବୃୟାରୀ ୧୯ ତାରିଖରେ ଶାନ୍ତି ସହ ମୋର ପରିଣୟ ସଂପାଦିତ ହୁଏ । ଶାନ୍ତି ସେତେବେଳେ ଥାନ୍ତି ବାଲେଶ୍ୱର ମହିଳା କଲେଜ୍‌ର (ପରେ କୁନ୍ତଳା କୁମାରୀ ମହିଳା ମହାବିଦ୍ୟାଳୟ) ଇତିହାସ ଅଧାପିକା । ସାତ, ଆଠ ବର୍ଷ ହେଲା ସରକାରୀ ଚାକିରିରେ ପ୍ରବେଶ କରିଥାନ୍ତି । ସେତେବେଳକୁ ସେ ଜଣେ ଗାଳ୍ପିକ ଓ ଔପନ୍ୟାସିକା ଭାବରେ ପରିଚିତା ହୋଇସାରିଥାନ୍ତି । ଆମର ଏ ସଂପର୍କରେ ବହୁ ହିତାକାଂକ୍ଷୀ ବନ୍ଧୁ ଆନନ୍ଦ ପ୍ରକାଶ କରିବା ସହିତ କେତେକ ପ୍ରଚ୍ଛନ୍ନ ବ୍ୟଙ୍ଗ ପ୍ରକାଶ କରିଥିଲେ । ଅନ୍ୟ ସଂପର୍କରେ ଦାୟିତ୍ୱ ହୀନଭାବରେ ମନ୍ତବ୍ୟ ପ୍ରକାଶ କରିବା ସହଜ, କିନ୍ତୁ ଅନ୍ୟର ଦୁଃଖ ଓ ପ୍ରତିକୂଳ ପରିସ୍ଥିତିରେ ସମ୍ବେଦନା ପ୍ରକାଶ କରି ଜୀବନର ବନ୍ଧୁର ପଥରେ ଆଗେଇ ନେବାପାଇଁ କେତେଜଣ ସହୃଦୟ ଆନ୍ତରିକତାର ସହ ସାହସ ଓ ଭରସା ଦେଇଥାନ୍ତି ? ଶାନ୍ତିର ବଦଳି ହୁଏ ଭଦ୍ରକ କଲେଜକୁ ମେ, ୧୯୭୫ରେ ।

ଶାନ୍ତିର ଆଗମନରେ ତା'ର ସ୍ନେହସ୍ପର୍ଶରେ ଘରଟିର ଚେହେରା ବଦଳିଯାଏ । ପିଲାମାନେ ସୁସ୍ଥ ମନରେ ନୂତନ ପରିବେଶକୁ ସ୍ୱାଗତ କରି ନେଇଯାଆନ୍ତି । ମା' ପୁଅଙ୍କ ମମତା ସ୍ନିଗ୍ଧ ସଂପର୍କରେ ହିତାକାଂକ୍ଷୀମାନେ ଆନନ୍ଦ ପ୍ରକାଶ କରନ୍ତି । ବଡ଼ପୁଅ ଟୁକୁ (ମିହିର) ସଂପର୍କରେ ଶାନ୍ତି ମନରେ ବହୁ ଉଚ୍ଚ ଆଶା ପୋଷଣ କରେ । ଟୁକୁ ପଢୁଥାଏ ସେତେବେଳେ ବ୍ରହ୍ମପୁର ମେଡ଼ିକାଲ୍ କଲେଜ୍‌ରେ ।

ନିଜ ଘରକୁ ପିଲାଦିନରୁ ଛାଡ଼ିଛି, ଯେଉଁଠି ରହିଲି ସେଠି ଭବିଷ୍ୟତ କୁହେଳିକାଚ୍ଛନ୍ନ, ଅବାଞ୍ଛିତ କି ନା ! ଯେତେ ରୋଜଗାର କରୁଥିଲେ ମଧ ମନରେ ଭାବନା ଆସେ ମୁଁ ଗୃହଶୂନ୍ୟ । ଯା'ର ପାଣିପବନରେ ଶୈଶବ, ଯୌବନ ଅତିବାହିତ କରି ସଂସାର-ବନ୍ଧନରେ ବାନ୍ଧି ହେଲି ଆଶ୍ରୟ ପାଇଁ ସେଠି କୁଡ଼ିଆ ଖଣ୍ଡେ ମୋର ନାହିଁ । ତା'ର ପାଣିପବନ, ପଶୁପକ୍ଷୀ, ତା'ର ବୃକ୍ଷଲତା, ତା'ର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ, ତା'ର ନକ୍ଷତ୍ରଭରା ରଜନୀ, ତା'ର ଖରା ବର୍ଷା ସତେ ଯେପରି ମୋର ପ୍ରତିଟି ରକ୍ତକଣିକାରେ ଏବେ ମଧ ସଂଜୀବିତ ।

ନିର୍ଜନ ମଲ୍ଲୀମୂଳରେ 'ହେମ' ମୋର ପ୍ରସ୍ତରୀଭୂତା, ଏକାକିନୀ ସେ ସେଠି ଶିଶିର ବ୍ୟାଜରେ ଅଶ୍ରୁ ମୁଞ୍ଚନ କରୁଛି, କରୁଥିବ ଅନନ୍ତକାଳ ଧରି । ବୋହୂ ହୋଇ ଆସିଥିଲା ପରା ସେ ସେଠିକି ! କିନ୍ତୁ ମୋର ସ୍ଥାନ କେଉଁଠି ? ଉପରେ ଅନନ୍ତ ନୀଳ ଆକାଶ, ତଳେ ଦୂର୍ବାଚ୍ଛାଦିତ ଶ୍ୟାମ-ବସୁନ୍ଧରା ।

ସଂସାରରେ କିଛି ନ ହେଲେ ତ ମୁଣ୍ଡ ଗେଞ୍ଜିବା ପାଇଁ ଘର ଖଣ୍ଡେ ତ ଦରକାର । ୧୯୭୩ରେ ଭଦ୍ରକ ମହାଶୟ କୋଠିରେ ଜାଗା ଖଣ୍ଡେ କିଣେ । ୧୯୭୪, ଏପ୍ରିଲ ରାମନବମୀରେ ଏ ଅନଭିଜ୍ଞ ଲୋକ ଘର ତିଆରିରେ ମାତେ, ପୁଣି ମଝିରେ ମଝିରେ ଆଶଙ୍କା ବଦଳି ହୋଇଗଲେ ଘର ତିଆରି ସେତିକି । ଈଶ୍ୱରଙ୍କ ଦୟାରୁ ୧୯୭୬ରେ କୌଣସି ମତେ ତିଆରି କାମ ସରିଯାଏ । ମନରେ ଏତିକି ମାତ୍ର ଦମ୍ଭ ଆସେ ଯେ ମୁଣ୍ଡ ଗୁଞ୍ଜିବା ପାଇଁ କୁଡ଼ିଆଟିଏ କରିପାରିଛି, ପୁଣି ଏକାଏକା ଶ୍ରମଲାଘବ ପାଇଁ । କେହି ପାଖରେ ଟିକିଏ ଠିଆହୋଇ ନାହାନ୍ତି । ଗୃହ ନିର୍ମାଣ ଓ ପିଲାଙ୍କର ପାଠପଢ଼ା ଏକ ସମୟରେ ଚାଲିଥିବାରୁ ମୁଁ ବିଶେଷ ଆର୍ଥିକ ସଂକଟର ସମ୍ମୁଖୀନ ହୁଏଁ ।

୧୯୮୦ରେ କବି ଗୋପାଳ କୃଷ୍ଣଙ୍କ ସଂପର୍କରେ ମୋର ଡି.ଲିଟ୍. ଥିସିସ୍ ଲେଖା ସରିଯାଏ; ତତ୍ତ୍ୱାବଧାରକ ଥାନ୍ତି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ଡଃ କାହ୍ନୁଚରଣ ମିଶ୍ର । ଥିସିସ୍ ଉତ୍ତରା କାମ ସରିଯାଏ ଡିସେମ୍ବରରେ । ୧୯୮୧, ଜାନୁୟାରୀରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସନ୍ଦର୍ଭ ଦାଖଲ ହୋଇଯାଏ । ସେପ୍ଟେମ୍ବରରେ ମୌଖିକ ପରୀକ୍ଷା ହୋଇ ଡି.ଲିଟ୍. ଡିଗ୍ରୀ ଘୋଷଣା ହୋଇଯାଏ । ଏଇ ଡିଗ୍ରୀ ମୋ ପକ୍ଷରେ ଥିଲା ଈଶ୍ୱରଙ୍କର ପ୍ରଚ୍ଛନ୍ନ ଆଶୀର୍ବାଦ । ଏହାରି ବଳରେ ରେଭେନ୍ସା କଲେଜର ଓଡ଼ିଆ ବିଭାଗର ପ୍ରଫେସର୍ ଓ ମୁଖ୍ୟ ଅଧ୍ୟାପକ ହେବାର ସୁଯୋଗ ଲାଭ କରିଥିଲି ।

୧୯୮୨, ଅଗଷ୍ଟ ୪ ତାରିଖରେ ରେଭେନ୍ସା କଲେଜକୁ ମୋର ପ୍ରଫେସର୍ ପଦୋନ୍ନତି ସଂପର୍କରେ ସରକାରୀ ବିଜ୍ଞପ୍ତି ପ୍ରକାଶ ପାଏ । ଏ ପଦୋନ୍ନତି ଥିଲା ମୋ ପକ୍ଷରେ ଅପ୍ରତ୍ୟାଶିତ । ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣତି ବାଢ଼ି ଅଗଷ୍ଟ ୧୦ ତାରିଖରେ ଭଦ୍ରକ କଲେଜରୁ ଅବ୍ୟାହତି ନେଇ ୧୧ରେ ରେଭେନ୍ସା କଲେଜରେ ପୁନଶ୍ଚ ଯୋଗଦାନ କରେଁ । ଓଡ଼ିଶାର ଇତିହାସ ପ୍ରସିଦ୍ଧ ମହାବିଦ୍ୟାଳୟ ମୋର ଶିକ୍ଷାପୀଠରେ ପ୍ରଫେସର୍ ଓ ମୁଖ୍ୟ ଅଧ୍ୟାପକ ଭାବରେ ଯୋଗଦାନ କରିବାର ସୁଯୋଗ ମିଳିଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଥାଏଁ ।

ଭଦ୍ରକରେ ମୋ ଦ୍ୱାରା ଗଠିତ ସାହିତ୍ୟ ସଂସ୍କୃତି ପରିଷଦ ପକ୍ଷରୁ ୧୦ ତାରିଖ ସନ୍ଧ୍ୟାରେ ଏସ୍.ଡ଼ି.ଓ. ଶ୍ରୀ ବ୍ରହ୍ମାନନ୍ଦ ରାଉତଙ୍କ ସଭାପତିତ୍ୱରେ ସମ୍ବର୍ଦ୍ଧନା ସଭାର ଆୟୋଜନ କରାଯାଏ । ଏଥିରେ ପରିଷଦର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗଦାନ କରି ମୋତେ ସମ୍ମାନିତ କରିବା ସଙ୍ଗେସଙ୍ଗେ ମୋର ଭାବୀ କାର୍ଯ୍ୟକାଳ ସଂପର୍କରେ ଶ୍ରେୟଃ ଓ ସଦିଚ୍ଛା ପ୍ରକାଶ କରନ୍ତି ।

ପୁଅ ତପନ ମଧୁସୂଦନ ଲ' କଲେଜରୁ ଏଲ୍.ଏଲ୍.ବି ପାଶ୍ କରି ସି.ଆର୍.ପି.ଏଫ୍.ରେ ପୁଲିସ୍ ଅଫିସର ଭାବରେ ଯୋଗଦାନ କରିଥାଏ । ପୁଅ ଅରୁଣ ସେତେବେଳେ ଦିଲ୍ଲୀ ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ ଏମ୍.ଏ. ପଢୁଥାଏ । ଶାନ୍ତି ଷଡ଼ି ଲିଭ୍ ନେଇ ତାଙ୍କର ପି.ଏଚ୍.ଡ଼ି. ଗବେଷଣା ପାଇଁ କଟକରେ ସାମୟିକ ଭାବରେ ଅବସ୍ଥାନ କରୁଥାନ୍ତି । ମୁଁ ରେଭେନ୍ସାରେ ଯୋଗଦାନ କରି ମୋର ଆତ୍ମୀୟଠାରେ କିଛିକାଳ ରହେଁ । ପିଲାମାନେ ଭଦ୍ରକରେ ଥାଆନ୍ତି । ରେଭେନ୍ସା କଲେଜ୍ ପରିସର ମଧ୍ୟରେ ଷ୍ଟେସନ ପାଖ ପୁରୁଣା ଆଇ.ଇ.ଏସ୍. କ୍ୱାର୍ଟରଟି ପାଇବାରୁ ନଭେମ୍ବର ପହିଲାରୁ ପିଲାମାନଙ୍କୁ କଟକ ଘେନି ଆଣେ । ଦଶହରା ପୂର୍ବରୁ ସାନପୁଅ ବୁଲୁ (ଅଂଶୁମାନ) ଆଡ଼ମିସନ୍ ନେଇଥାଏ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲ୍‌ରେ ।

## ॥ ସାତ ॥

### ପୁନଶ୍ଚ ରେଭେନ୍ସା କଲେଜ୍‌ରେ ଅବସ୍ଥାପନ :

ରେଭେନ୍ସା କଲେଜ୍‌ର ପ୍ରଫେସର୍ ପଦରେ ଯୋଗଦାନ କରିବା ଫଳରେ ମନରେ ଏକ ଆତ୍ମସନ୍ତୋଷ ଜାଗେ । ଏ ସଂପର୍କରେ ପ୍ରଥମ କରି ଅଭିନନ୍ଦନ ପତ୍ର ପାଇଥିଲି ଅଧ୍ୟାପକ ଡଃ ବଂଶୀଧର ମହାନ୍ତିଙ୍କଠାରୁ, ତା'ପରେ ସଂସ୍କୃତ ଓ ଓଡ଼ିଆ ଭାଷା ପ୍ରବୀଣ ମୋର ପୂର୍ବତନ ସହକର୍ମୀ ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତାଙ୍କଠାରୁ । ଓଡ଼ିଶାର ସରକାରୀ କଲେଜ୍‌ମାନଙ୍କ ମଧ୍ୟରେ ଏକମାତ୍ର ରେଭେନ୍ସା କଲେଜ୍‌ରେ ଥିବା ଓଡ଼ିଆ ପ୍ରଫେସର୍ ପୋଷ୍ଟରେ ଯୋଗଦାନର ସୁଯୋଗ ଘଟିଥିବାରୁ ବନ୍ଧୁ ଗୋବିନ୍ଦ ବାବୁ ବିଶେଷ ଆନନ୍ଦ ପ୍ରକାଶ କରି ଲେଖିଥିଲେ- "ଯେଉଁ ବିଭାଗର ଭିତ୍ତିସ୍ଥାପନ କରିଯାଇଥିଲେ ରାୟବାହାଦୂର ପଦ୍ମଶ୍ରୀ ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ତାଙ୍କର ଯୋଗ୍ୟ ଦାୟାଦ ଡଃ କରୁଣାକର କର, ଡଃ କୁଞ୍ଜବିହାରୀ ତ୍ରିପାଠୀ, ଡଃ କୁଞ୍ଜବିହାରୀ ଦାଶ, ପ୍ରଫେସର୍ ଗୋଲୋକ ବିହାରୀ ଧଳ ଓ ଡଃ ଜାନକୀବଲ୍ଲଭ ମହାନ୍ତିଙ୍କ ପରେ ଆପଣ ସେ ବିଭାଗର ପ୍ରଫେସର୍ ଓ ମୁଖ୍ୟ ପଦବୀ ମଣ୍ଡନ କରିବା ବାସ୍ତବିକ୍ ଗୌରବର ବିଷୟ । ଆପଣଙ୍କର କାର୍ଯ୍ୟକାଳ ମଧ୍ୟରେ ବିଭାଗୀୟ ମର୍ଯ୍ୟାଦା ଆହୁରି ବଢ଼ିବା ବୋଲି ଆଶା ।"

ବନ୍ଧୁ ଗୋବିନ୍ଦ ବାବୁ ସହଜେ ସଂସ୍କୃତ ଭାଷା ଓ ସାହିତ୍ୟ ପ୍ରବୀଣ । ପାରଂପରିକ ମୂଲ୍ୟବୋଧର ଜଣେ ଗୁଣଗ୍ରାହୀ ବ୍ୟକ୍ତି ହୋଇଥିବାରୁ ତାଙ୍କର ଉତ୍ସାହ ବ୍ୟଞ୍ଜକ ଅଭିନନ୍ଦନ ପତ୍ର ମନରେ ମୋର ଅପୂର୍ବ ଆନନ୍ଦ ସଞ୍ଚାର କରେ । ସଂସ୍କୃତ ତଥା ଓଡ଼ିଆ ଭାଷା ଓ ସାହିତ୍ୟ ଏବଂ ଭାରତୀୟ ସଂସ୍କୃତି ଓ ଆଧ୍ୟାତ୍ମିକ ପରଂପରାରେ ମୋର ଗଭୀର ବିଶ୍ୱାସ

ଥିବାରୁ ବିଭାଗର ଭାବମୂର୍ତ୍ତି ଉନ୍ନତତର କରିବାର ସ୍ୱପ୍ନ ଦେଖିବା ମୋ ପକ୍ଷରେ ସ୍ୱାଭାବିକ । ଆଧୁନିକ ବିଶାଳ ଉତ୍କଳ ନିର୍ମାଣ ଦିଗରେ ଯେଉଁ ମହାବିଦ୍ୟାଳୟର ରହିଛି ମହାନ୍ ଭୂମିକା, ସେହି ମହାବିଦ୍ୟାଳୟର ଏକ ବିଭାଗୀୟ ମୁଖ୍ୟ ପଦବୀରେ ଅଧିଷ୍ଠିତ ରହି ନିଜକୁ କେତେଦୂର ତା'ର ଉପଯୁକ୍ତ କରିପାରିବି, ଅହରହ ସେଇ ପ୍ରଶ୍ନ ମନ ଭିତରେ ଉଙ୍କିମାରେ ।

ଛାତ୍ରାବସ୍ଥାରେ ଏଇ କଲେଜ୍‌ରେ ଦେଖିଥିଲି ସ୍ୱନାମଧନ୍ୟ ପ୍ରଥିତ ଯଶା ଅଧ୍ୟାପକମାନଙ୍କୁ, ଯଥା- ପ୍ରଫେସର ବିପିନ ବିହାରୀ ରାୟ, ପ୍ରଫେସର୍ ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରଫେସର୍ ରତ୍ନାକର ପତି, ପ୍ରଫେସର୍ ପାର୍ଥସାରଥି ସୁନ୍ଦରମ୍, ପ୍ରଫେସର୍ ବଳଭଦ୍ର ପ୍ରସାଦ, ରାୟସାହେବ ନାରାୟଣ ମିଶ୍ର, ପ୍ରଫେସର୍ କରୁଣାକର କର, ଭି.ଭି. ଜନ୍, ପ୍ରଫେସର୍ ରମାନାଥ ମହାନ୍ତି, ଡଃ ସଦାଶିବ ମିଶ୍ର, ଡଃ ଶ୍ରୀରାମଚନ୍ଦ୍ର ଦାଶ, ଡଃ ଦେବେନ୍ଦ୍ରନାଥ ମିଶ୍ର, ପ୍ରଫେସର୍ ବିଧୁଭୂଷଣ ଦାସ ପ୍ରଭୃତିଙ୍କୁ । ସେମାନଙ୍କର ଜ୍ଞାନ, ସାଧନା ଓ ଅଧ୍ୟାପନା ଆମ ମନରେ କେତେ ଆନନ୍ଦ ଓ ଉତ୍ସାହର ଉଦ୍ଦୀପନା ସୃଷ୍ଟି କରୁଥାଏ । ଶ୍ରେଣୀ ଓ ଶ୍ରେଣୀ ବାହାରେ ସେମାନଙ୍କର ଜ୍ଞାନଗର୍ଭକ ବାଗ୍ମୀତାପୂର୍ଣ୍ଣ ଭାଷଣ, ତର୍କସଭା ଓ କୃତ୍ରିମ ବିଧାନସଭାରେ (Mock Assembly) ସେମାନଙ୍କର ବାଗ୍ମୀତା ଗର୍ଭକ ଯୁକ୍ତିନିଷ୍ଠ ହାସ୍ୟୋଦ୍ଦୀପକ ଭାଷଣ ଶ୍ରବଣ ଆମ ପକ୍ଷରେ ଥିଲା ଉତ୍ସବତୁଲ୍ୟ ଶ୍ରେଣୀରେ, ଗ୍ରନ୍ଥାଗାରରେ ଓ ଶ୍ରେଣୀ ବାହାରେ ଶୃଙ୍ଖଳା ଓ ଅଧ୍ୟାପକମାନଙ୍କ ପ୍ରତି ସଂକୋଚ ଓ ସଂଭ୍ରମପୂର୍ଣ୍ଣ ଆଚରଣ ସମଗ୍ର ମହାବିଦ୍ୟାଳୟରେ ସୃଷ୍ଟି କରିଥିଲା ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ନୀରବତା । ଛାତ୍ରସଂଘର (Students' Union) ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲେ ମଧ ଛାତ୍ରମାନେ ଥିଲେ ପ୍ରତ୍ୟକ୍ଷ ରାଜନୀତିରୁ ବହୁ ଦୂରରେ । ଯେଉଁ ଛାତ୍ରମାନେ ସଂସଦର ନିର୍ବାଚନରେ ଭାଗ ନେଉଥିଲେ ସେମାନେ ଥିଲେ ଆଦର୍ଶ ଓ ଆଚରଣ ନିଷ୍ଠ ଛାତ୍ର । ସଂସଦୀୟ କାର୍ଯ୍ୟବିଧି ଓ ଗଣତନ୍ତ୍ର ସଂପର୍କରେ ପ୍ରାଥମିକ ଜ୍ଞାନାର୍ଜନ ଏବଂ ଏକାଡ଼େମିକ୍ ଆଗ୍ରହ ସୃଷ୍ଟି ଥିଲା ନିର୍ବାଚନର ଆଭିମୁଖ୍ୟ । ସେଥିପାଇଁ ନିର୍ବାଚନ ଥିଲା ଛାତ୍ରଙ୍କ ପକ୍ଷରେ ଏକ କୌତୁକ, ଏକ ଉତ୍ସବ । ନିର୍ବାଚନକୁ କେନ୍ଦ୍ର କରି କୌଣସି ପ୍ରକାର ବିଶୃଙ୍ଖଳା, ଅପ୍ରୀତିକର ଘଟଣା ଥିଲା ସ୍ୱପ୍ନର ବିଷୟ ।

କିନ୍ତୁ ଏଇ କେତେବର୍ଷ ମଧରେ ସବୁକିଛି ଓଲଟପାଲଟ ହୋଇଯାଇଛି । କେବଳ ରେଭେନ୍ସା କଲେଜ୍ କାହିଁକି, ଓଡ଼ିଶାର ପ୍ରାୟ ସବୁ ଛୋଟବଡ଼ କଲେଜମାନଙ୍କରେ ପ୍ରତ୍ୟକ୍ଷ ରାଜନୀତି ନେଇଛି ମୁଖ୍ୟ ଭୂମିକା । ଜ୍ଞାନାର୍ଜନ, ଅଧ୍ୟାପନା, ଅଧ୍ୟୟନ, ବିଜ୍ଞାନ ସମ୍ମତ ବୌଦ୍ଧିକ ଆଲୋଚନା ହୋଇଯାଇଛି ଗୌଣ । ରାଜ୍ୟରେ ଯେତୋଟି ରାଜନୈତିକ ଦଳ ଅଛି, ସେମାନଙ୍କର ପ୍ରତ୍ୟକ୍ଷ ସଂପର୍କ ରହିଛି ସ୍ୱ ସ୍ୱ ଦଳଭୁକ୍ତ ଛାତ୍ରମାନଙ୍କ ସହିତ । ତେଣୁ ନିର୍ବାଚନ ଲଢ଼ାଯାଉଛି ଦଳୀୟ ଭିତ୍ତିରେ, ପୁଣି ବିଭିନ୍ନ ରାଜନୈତିକ ଦଳର ସାହାଯ୍ୟ ଓ ସମର୍ଥନରେ । ତା' ନ ହେଉଥିଲେ ଛାତ୍ର ନିର୍ବାଚନମାନଙ୍କରେ ଏତେ ଆଡ଼ମ୍ବରପୂର୍ଣ୍ଣ ପ୍ରଚାର ହେଉନଥାନ୍ତା, ବିଧାନସଭା ଓ ଲୋକସଭା ନିର୍ବାଚନ ପରି ପ୍ରତ୍ୟକ୍ଷ ଓ ପରୋକ୍ଷ ହିଂସାକାଣ୍ଡମାନ

ଘଟୁ ନଥାନ୍ତା । ପୁଣି ବର୍ଷସାରା ଚାଲିଥିବା ପରୀକ୍ଷାମାନଙ୍କରେ କପି ସମସ୍ୟା ଏତେ ତୀବ୍ର ଓ ଅସମାହିତ ହେଉ ନଥାନ୍ତା ।

୧୧/୮/୮୨ରେ କାର୍ଯ୍ୟରେ ଯୋଗଦାନ କରି ଅତୀତର ପୁରାତନ ସହକାରୀ ଓ ଅଧ୍ୟାପକ ବନ୍ଧୁମାନଙ୍କୁ ଭେଟି ବିଶେଷ ଆନନ୍ଦ ପାଏଁ । ଅଧ୍ୟକ୍ଷ ଥାଆନ୍ତି ଡଃ କ୍ଷୀରୋଦ କୁମାର ପଟ୍ଟନାୟକ । କର୍ତ୍ତବ୍ୟ ପରାୟଣ, ନୀତିବାଦୀ ଅଧ୍ୟକ୍ଷଙ୍କ ପ୍ରଚେଷ୍ଟାରେ କଲେଜ୍ ବାତାବରଣରେ ଶୃଙ୍ଖଳା ଫେରି ଆସୁଥିବାର ପ୍ରଶଂସା ଶୁଣିବାକୁ ପାଉଥାଏଁ । ଚିରାଚରିତ ରୀତିରେ ଓଡ଼ିଆ ବିଭାଗର ଅନର୍ସ ଓ ଉପାଧ୍ୟୁତ୍ତର ଶ୍ରେଣୀର ଛାତ୍ର ଓ ଅଧ୍ୟାପକମାନଙ୍କ ପକ୍ଷରୁ ସ୍ୱାଗତ ସମ୍ବର୍ଦ୍ଧନା କରାଯାଏ । ଅଧ୍ୟାପକମାନଙ୍କ ମଧ୍ୟରେ ଥିଲେ ବୟୋଜ୍ୟେଷ୍ଠ ଭ୍ରାତୃପ୍ରତିମ ଶ୍ରୀ ଗୋପୀନାଥ ମିଶ୍ର (ବର୍ତ୍ତମାନ ସ୍ୱର୍ଗୀୟ), ଡଃ ହେମନ୍ତ କୁମାର ଦାସ, ଡଃ ବିଚିତ୍ରାନନ୍ଦ ମହାନ୍ତି, ଡଃ ଶ୍ୟାମସୁନ୍ଦର ମିଶ୍ର, ଡଃ ଗିରୀଶଚନ୍ଦ୍ର ମିଶ୍ର, ଡଃ ରତ୍ନାକର ଚଇନି, ଡଃ କ୍ଷେତ୍ରବାସୀ ନାୟକ, ସୁରେନ୍ଦ୍ରନାଥ ମହାରଣା, ଖଗେନ୍ଦ୍ର ନାଥ ମଲ୍ଲିକ୍, କିଶୋର ଚନ୍ଦ୍ର ଦାସ ଓ ବାଉରୀବନ୍ଧୁ କର । ପରେ ଆସି ଯୋଗ ଦିଅନ୍ତି ଡଃ ଅସିତ୍ କବି, ନିଶାମଣି ମିଶ୍ର ଓ ଆଶା ଦେବୀ । ପୁରାତନ ଆସେମ୍ବ୍ଲିହଲ୍‌ର ଉପର ମହଲା ବାରଣ୍ଡାରେ ଥିବା ବିଭାଗୀୟ କକ୍ଷରେ ପ୍ରବେଶ କଲାମାତ୍ରେ ଅତୀତର ସ୍ମୃତି ଜାଗ୍ରତ ହୁଏ । ମୋର ପୂଜ୍ୟ ଗୁରୁଦେବ ଡଃ କରୁଣାକର କରଙ୍କର ଆଲୋକ ଚିତ୍ର ସହ, କୁନ୍ତଳା କୁମାରୀ, ଭକ୍ତକବି ମଧୁସୂଦନ ଓ ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ତୈଳଚିତ୍ର କାଷ୍ଠ-ଭିତ୍ତିରେ ଝୁଲୁଥାଏ । ସେମାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ବିଭାଗର ରୁଟିନ୍, ସିଲାବସ୍ ଓ ପାଠ ଅଗ୍ରଗତି ସଂପର୍କରେ ଆନୁଷଙ୍ଗିକ ପ୍ରସଙ୍ଗ ବୁଝିନିଏଁ ।

ବିଭାଗରେ ଯୋଗଦାନ କରି ତା'ର ସୁପରିଚାଳନା ଓ ସମୁନ୍ନତି ପାଇଁ ସ୍ୱପ୍ନ ଦେଖିବା ସ୍ୱାଭାବିକ । ବିଖ୍ୟାତ ଇଞ୍ଜିନିୟର ଭାରତରତ୍ନ ସାର୍ ବିଶ୍ୱେଶ୍ୱରିୟା ବହୁ ପୂର୍ବରୁ ଭାରତର ଭାବୀ ବିକାଶ ସଂପର୍କରେ ଚେତାଇ ଦେଇ କହିଥିଲେ : "ଗୋଟିଏ ବଳିଷ୍ଠ ଜାତି ଗଠନ କରିବାକୁ ହେଲେ ଉନ୍ନତ ବ୍ୟକ୍ତି ସୃଷ୍ଟି କରିବାକୁ ହେବ, ଯେଉଁମାନଙ୍କର କେବଳ ଚରିତ୍ର ନୁହେଁ, ଉଚ୍ଚାଙ୍ଗ କର୍ତ୍ତବ୍ୟବୋଧ ରହିବା ଉଚିତ । ସେମାନେ ସେମାନଙ୍କର ସମୟର ସଦ୍‌ବ୍ୟବହାର କରିବା ସହିତ ନିଜ ନିଜ କ୍ଷେତ୍ରରେ କଠୋର ପରିଶ୍ରମ କରିବା ଉଚିତ ।" ପୁଣି ଭାରତର ସର୍ବବିଧ ବିକାଶ ମୂଳରେ ସେ ଶିକ୍ଷାର ସୁଯୋଗ ଉପରେ ବିଶେଷ ଗୁରୁତ୍ୱ ଦେଇ ଆସିଛନ୍ତି, ଯାହା ଭାରତର ତତ୍‌କାଳୀନ ଶିକ୍ଷାମନ୍ତ୍ରୀ କେ.ସି. ପନ୍ତଙ୍କର ନୂତନ ଶିକ୍ଷାନୀତି ପ୍ରବର୍ତ୍ତନ ଦିଗରେ ତାଙ୍କୁ ବିଶେଷ ପ୍ରଚୋଦିତ କରିଛି । ବିଭିନ୍ନ ସମୟରେ ଭାରତରେ ପ୍ରଚଳିତ ତ୍ରୁଟିପୂର୍ଣ୍ଣ ଶିକ୍ଷାନୀତିର ବୈପ୍ଳବିକ ପରିବର୍ତ୍ତନ ପାଇଁ ବହୁ ଶିକ୍ଷା କମିଶନ୍ (ଜାକିର୍ ହୋସେନ୍ କମିଶନ, ରାଧାକୃଷ୍ଣନ କମିଶନ, କୋଠାରୀ କମିଶନ ଆଦି) ବସିଆସିଛି; କିନ୍ତୁ କମିଶନ୍‌ଙ୍କର ଅନୁମୋଦନ କାର୍ଯ୍ୟକାରୀ ହେବା ଦିଗରେ ବହୁ ରାଜନୈତିକ ପ୍ରତିବନ୍ଧକ ବିଭିନ୍ନ ସମୟରେ ଦେଖାଦେଇଛି ।

ଜଣେ ଶିକ୍ଷକ ଭାବରେ ଦୀର୍ଘକାଳାବଧି ସାଂପ୍ରତିକ ଶିକ୍ଷା କ୍ଷେତ୍ରରେ ଯେଉଁ ଅଜସ୍ର ଦୋଷତ୍ରୁଟି ଦେଖାଦେଇଛି, ତା'ର ନିରାକରଣ ଦିଗରେ ମନରେ ନାନା ଯୋଜନା ଉଙ୍କି ମାରିଛି । ସ୍ୱାଗତ ସମ୍ବର୍ଦ୍ଧନା ଦିନ ମୁଁ ବିଭାଗର ଛାତ୍ର ଓ ଅଧ୍ୟାପକମାନଙ୍କୁ କହିଥିଲି : ଅଧ୍ୟାପନା ଅଧ୍ୟାପକମାନଙ୍କ ପକ୍ଷରେ ଏକ ବୃତ୍ତି ସତ, କିନ୍ତୁ ସେମାନଙ୍କର ଚିନ୍ତା, ଧ୍ୟାନ ଧାରଣା ଯଦି ବୃତ୍ତି ସ୍ତରରେ ଆବଦ୍ଧ ହୋଇଯାଏ ତା'ହେଲେ ସେମାନଙ୍କର ଶିକ୍ଷକ ଜୀବନ ବ୍ୟର୍ଥ ହୋଇଯିବ । ସମାଜ ସେବା ଓ ଶିକ୍ଷାଦାନ ମୂଳରେ ସେବକ ଓ ଶିକ୍ଷକଙ୍କର ଅନ୍ତରର ବ୍ୟାକୁଳତା, ଅନ୍ତରର ଆବେଗ, ଆକୁତି ଆବଶ୍ୟକ । ବୃତ୍ତି ତା'ର ଯେତେବେଳେ ମାଧୁର୍ଯ୍ୟ ମଣ୍ଡିତ ହୋଇ ବ୍ରତରେ ରୂପାନ୍ତରିତ ହୁଏ (ଏକ ମିଶନାରୀ ଅନୁପ୍ରେରଣା ନେଇ) ସେତେବେଳେ ସେ ଯେଉଁ ଆନନ୍ଦ ପାଏ ତାହା ହୋଇଉଠେ ଅନିର୍ବଚନୀୟ । ଆଜି ଶିକ୍ଷା-ବୃତ୍ତିରେ ଏଇ ବ୍ରତର ମହିମା, ମିଶନାରୀ ଚେତନାର ଅଭାବ ହେତୁ ତାହା କୃତ୍ରିମ ଓ ଅନ୍ତଃସାର ଶୂନ୍ୟ ହୋଇପଡ଼ିଛି ।

ବିଭିନ୍ନ ବିଭାଗରେ ଯାହା ତ୍ରୁଟି ବିଚ୍ୟୁତି ଥାଉ କିନ୍ତୁ ଓଡ଼ିଶାରେ ଓଡ଼ିଆ ବିଭାଗର ବଦନାମ ସବୁଠୁ ବେଶି । ସମସ୍ତଙ୍କର ବିଶେଷତଃ ଛାତ୍ରଙ୍କର ଧାରଣା : ଏ ବିଭାଗରେ ପାଠପଢ଼ା ହୁଏ ନାହିଁ । ଅଧ୍ୟାପକମାନେ ପ୍ରସ୍ତୁତ ହୋଇଆସନ୍ତି ନାହିଁ କି, ଶ୍ରେଣୀକୁ ଯାଆନ୍ତି ନାହିଁ; ନିଜର କର୍ତ୍ତବ୍ୟ ଓ ଦାୟିତ୍ୱ ଗୌଣ ହୋଇଯାଏ, ମୁଖ୍ୟ ହୁଏ ଗୁଡ଼ାଏ ଅର୍ଥକରୀ ତୁଚ୍ଛା ବୃତ୍ତିର ଅନୁସନ୍ଧାନ; ଛୁଟି ନ ନେଇ ଗୃହ ବା ଅନ୍ୟତ୍ର ଅଲକ୍ଷ୍ୟରେ ପଳାୟନ, ପୁଣି ଅନ୍ୟର କୁତ୍ସାରଟନା । ବିଭାଗର ଏ ଦୁର୍ନାମ ଶୁଣି ଶୁଣି ମୁଁ ଅତିଷ୍ଠ ହୋଇପଡ଼େ ।

ଓଡ଼ିଆ ବିଭାଗ ସଂପର୍କରେ ଏ ପ୍ରକାର ଦୁର୍ନାମ ଯେ ସଂପୂର୍ଣ୍ଣ ଅମୂଳକ, ତାହା ନୁହେଁ, ତେବେ ସମାଲୋଚନାରେ ଟିକିଏ ଅତିରଂଜନ ରହିଯିବା ସ୍ୱାଭାବିକ । ବିଭାଗୀୟ ମୁଖ୍ୟଭାବରେ ଯୋଗଦାନ କରି ନିଜର ନୀତି ଓ ଆଭିମୁଖ୍ୟ ସଂପର୍କରେ ସହକର୍ମୀମାନଙ୍କୁ ପଦେଅଧେ କହିବା ଉଚିତ ମନେ କରେଁ । ପ୍ରଥମ ବିଭାଗୀୟ ମିଟିଂରେ ମୁଁ ଯେଉଁ ଯେଉଁ ବିଷୟରେ ଗୁରୁତ୍ୱ ଦେଇ ଆଲୋଚନା କରିଥିଲି ତାହା ଏହିପରି :-

## ଅଧ୍ୟାପକମାନଙ୍କର ମୁଖ୍ୟ କର୍ତ୍ତବ୍ୟ ଓ ଦାୟିତ୍ୱ :

ଅଧ୍ୟାପନା ଯେ ଶିକ୍ଷକମାନଙ୍କର ଗୁରୁ ଦାୟିତ୍ୱ ଏବଂ ମୁଖ୍ୟ ଓ ମୌଳିକ କର୍ତ୍ତବ୍ୟ : ଏହା ଉପରେ କେତେକ ଗୁରୁତ୍ୱ ଦାନ ନ କଲାପରି ମୋର ମନେହୁଏ । କେତେକ ନିଜର ପାଠ୍ୟ ବିଷୟ ସଂପର୍କରେ ଆରମ୍ଭରୁ କିଛି ଯୋଜନା ନ କରି ଶ୍ରେଣୀକୁ ଯିବା ପୂର୍ବରୁ ଠିକ୍ ଭାବରେ ପ୍ରସ୍ତୁତ ନ ହୋଇ ଅଧ୍ୟାପନା କରୁଥିବାରୁ ସେଥିରେ ଛାତ୍ରମାନେ ଅସନ୍ତୁଷ୍ଟ ହୁଅନ୍ତି । ଜୀବନରେ ଯେତେ ପ୍ରକାର ବୃତ୍ତି ବା ଧନ୍ଦା ରହିଛି, ସେଗୁଡ଼ିକ ମଧ୍ୟରେ ଶିକ୍ଷାପ୍ରଦାନ ହେଉଛି ଏକ ଆଦର୍ଶ ଓ ମହାନ ବୃତ୍ତି । ଭାରତୀୟ ସଂସ୍କୃତିରେ ଗୁରୁକୁଳ ଶିକ୍ଷାଦାନ ପଦ୍ଧତି ଏବଂ ଗୁରୁ ଓ ଶିଷ୍ୟଙ୍କର ପବିତ୍ର ସଂପର୍କ ସମ୍ବନ୍ଧରେ କିପରି ଉଚ୍ଚାଙ୍ଗ କାହାଣୀମାନ ପ୍ରଚଳିତ ଅଛି, ଏ

ସଂପର୍କରେ ଅଳ୍ପ ବହୁତେ ଅଧିକାଂଶ ଜାଣନ୍ତି । ଗୁରୁକୁଳ ପ୍ରତି ରାଜାମାନଙ୍କର କିପରି ସମ୍ମାନ ଥିଲା, ନିବେଦିତ ପ୍ରାଣ ନେଇ ଶିଷ୍ୟମାନେ କଠୋର ପରୀକ୍ଷା ପରେ କିପରି ଗୁରୁଙ୍କ ଦ୍ୱାରା ଗୃହୀତ ହେଉଥିଲେ ଉପନିଷଦ ଯୁଗର ଏବଂ ନାଳନ୍ଦା ଓ ତକ୍ଷଶୀଳା ବିଶ୍ୱବିଦ୍ୟାଳୟର ପୁରାତନ କାହାଣୀମାନ ଆମ ଆଗରେ ଥୁଆ ହୋଇଛି । ଜୀବନଧାରଣ ପାଇଁ ଯେତେବେଳେ ଏ ପ୍ରକାର ପବିତ୍ର ଓ ମହାନ ବୃତ୍ତି ଅବଲମ୍ବନ କରାଯାଇଛି, ନିଜକୁ ଯଦି ସେ ବୃତ୍ତିପାଇଁ ଉପଯୁକ୍ତ କରା ନଯାଏ, ତା'ହେଲେ ତା'ଠାରୁ ବଳି ଦୁର୍ଭାଗ୍ୟର ବିଷୟ ଆଉ କିଛି ନାହିଁ । ଛାତ୍ରମାନଙ୍କୁ ଗଢ଼ିବାର ଦାୟିତ୍ୱ ଯେତେବେଳେ ଆମେ ଗ୍ରହଣ କରିଛୁଁ, ସେ ଦାୟିତ୍ୱରେ ଶିଥିଳତା ଆମ୍ଭମାନଙ୍କ ପକ୍ଷରେ ଏକ ଅକ୍ଷମଣୀୟ ଅପରାଧ । ଆମର ଆଚରଣ, ଗତିବିଧି, କଥାବାର୍ତ୍ତା, ଆଦର୍ଶ, ପ୍ରଜ୍ଞା ତଥା ବିବେକସମ୍ମତ ହେବା ଉଚିତ ବୋଲି ଚେତେଇ ଦେବାକୁ ଲଜ୍ଜା ଲାଗେ ।

ଅଧ୍ୟାପକମାନେ ନିଜ ନିଜର ଜ୍ଞାନ, ଚିତ୍ତାକର୍ଷକ ସ୍ୱକୀୟ ଅଧ୍ୟାପନାଭଙ୍ଗୀ, ଆନ୍ତରିକତା, ସମୟାନୁବର୍ତ୍ତିତା ଓ ବ୍ୟକ୍ତିତ୍ୱ ଦ୍ୱାରା ଛାତ୍ରମାନଙ୍କର ହୃଦୟ ଜୟ କରିପାରିବେ । ଛାତ୍ରମାନେ ଅନ୍ତର ମଧ୍ୟରେ ଉପଲବ୍ଧି କରିବେ ଯେ ସେମାନେ ଜଣେ ଉପଯୁକ୍ତ ଶିକ୍ଷକ ପାଇଛନ୍ତି । ଏ ପ୍ରକାର ଶିକ୍ଷକଙ୍କ ପ୍ରତି ଛାତ୍ରମାନଙ୍କର ସମ୍ମାନ ଓ ଭକ୍ତି ଯେପରି ସ୍ୱତଃସ୍ଫୂର୍ତ୍ତ, ସେହିପରି ଚିରନ୍ତନ । ଶ୍ରେଣୀରେ ନିୟମିତ ଉତ୍ତମ ଅଧ୍ୟାପନା ହେଲେ ଛାତ୍ର ବିଶୃଙ୍ଖଳାର ପ୍ରଶ୍ନ ଉଠିବ ନାହିଁ ।

ବିଭାଗରେ ଶିକ୍ଷକମାନଙ୍କର ଯେପରି ବ୍ୟକ୍ତିଗତ ଦାୟିତ୍ୱ ରହିଛି, ସେହିପରି ସାମୂହିକ ଦାୟିତ୍ୱ (Collective responsibility ) ମଧ୍ୟ ରହିଛି । କୌଣସି କୌଣସି ବିଷୟରେ ମତାନୈକ୍ୟ ପ୍ରକାଶ ପାଇପାରେ, କିନ୍ତୁ ତାହା ଯେପରି ବ୍ୟକ୍ତିଗତ ବିଦ୍ୱେଷ ଓ ବ୍ୟକ୍ତିଗତ କୁତ୍ସାରେ ପରିଣତ ନ ହୁଏ । ବିଭାଗରେ ଛାତ୍ର ବା ଅଧ୍ୟାପକମାନଙ୍କର କୌଣସି ସମସ୍ୟା ଦେଖାଗଲେ ବିଭାଗୀୟ ସଭାରେ ଏକ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣରେ ତା'ର ସନ୍ତୋଷଜନକ ସମାଧାନ ହୋଇଯିବା ଦରକାର । ବିଭାଗୀୟ ସଭାରେ ଖୋଲାଖୋଲି ଭାବରେ କିଛି ନ କହି ପଛରେ ନିନ୍ଦା, ଆକ୍ରମଣ କରିବା, ପ୍ରତାରଣା କରିବା, ଶସ୍ତା ଲୋକପ୍ରିୟତା ଅର୍ଜନ କରିବା ପାଇଁ ଛାତ୍ର ଛାତ୍ର, ଅଧ୍ୟାପକ ଅଧ୍ୟାପକଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବାଠାରୁ ହୀନ, ଆତ୍ମଘାତୀ ନୀତି କିଛି ନାହିଁ । ବିଭାଗର ମର୍ଯ୍ୟାଦା, ସଂହତି ଓ ଦୃଢ଼ତା ରକ୍ଷାପାଇଁ ବିଭାଗ ପ୍ରତି ବଳିଷ୍ଠ ଆନୁଗତ୍ୟ (Loyality) ସମ୍ମାନବୋଧ ଓ ଉଚ୍ଚାଙ୍ଗ କର୍ତ୍ତବ୍ୟବୋଧ ଯେ ଏକାନ୍ତ ଆବଶ୍ୟକ ଏହା ବୁଝାଇବାକୁ ପଡ଼ିବ ନାହିଁ । ପାଠ୍ୟ ବହିର୍ଭୂତ କ୍ରିୟାକଳାପରେ ଭାଗ ନେବାକୁ ଯାଇ ଯେପରି ବିଭାଗୀୟ କାର୍ଯ୍ୟସୂଚୀ ଓ ଅଧ୍ୟାପନା ଅବହେଳିତ ହୁଏ ।

ସାମୟିକ ଛୁଟି (Casual leave) ଓ ଇଚ୍ଛାଧୀନ ଛୁଟି ପାଇଁ ପୂର୍ବରୁ ଆବେଦନ ପତ୍ର ଉପସ୍ଥାପନ କରାଗଲେ ବିଭିନ୍ନ ଅଧ୍ୟାପକଙ୍କର ଶ୍ରେଣୀର ବିକଳ୍ପ ବ୍ୟବସ୍ଥା ଶୃଙ୍ଖଳିତ ଭାବରେ ଠିକ୍ ସମୟରେ ହୋଇପାରିବ, ଫଳରେ କୌଣସି ଶ୍ରେଣୀରେ ଅଧ୍ୟାପନା ହେଉନାହିଁ

ବୋଲି ଛାତ୍ରମାନଙ୍କ ପକ୍ଷରୁ ଯେପରି ଅଭିଯୋଗ ଶୁଣା ନଯାଏ । ପୁଣି ଯେଉଁ ଅଧ୍ୟାପକମାନେ ଛୁଟିପାଇଁ ଆବେଦନ କରୁଛନ୍ତି, ସେମାନେ ତାଙ୍କ ଶ୍ରେଣୀର ବିକଳ୍ପ ଅଧ୍ୟାପନାର ବ୍ୟବସ୍ଥା କରାଇନେବା ସେମାନଙ୍କର ନୈତିକ ଦାୟିତ୍ୱ । ଏଥିପ୍ରତି ଧ୍ୟାନ ନଦେଇ ଠିକ୍ ସମୟରେ ଆବେଦନପତ୍ର ଉପସ୍ଥାପନ ନ କରି ସହସା ବା ନିଜ ଶ୍ରେଣୀର ଅଧ୍ୟାପନା-ସମୟ ଅତିକ୍ରାନ୍ତ ହେବାପରେ ଆବେଦନ ପତ୍ର ପଠାଇବା ଦ୍ୱାରା ବିଭାଗୀୟ କାର୍ଯ୍ୟ ଓ ଶ୍ରେଣୀର ଅଧ୍ୟାପନାରେ କିପରି ବିଶୃଙ୍ଖଳା ସୃଷ୍ଟି ହୁଏ, ଏ ସଂପର୍କରେ ଅଧ୍ୟାପକମାନେ ସଚେତ ହେବା ଉଚିତ । ଏଥିପାଇଁ ଛାତ୍ରଙ୍କ ପକ୍ଷରୁ ଅଯଥା ଅଭିଯୋଗ ଏବଂ କର୍ତ୍ତୃପକ୍ଷଙ୍କ ତରଫରୁ ଅପ୍ରୀତିକର ଗୋପନୀୟ ପତ୍ର (Confidential letter) ଆସିବା ଦ୍ୱାରା ବିଭାଗର ସମ୍ମାନ ଉପରେ ଆଞ୍ଚ ଆସେ । ନିଜର ଦାୟିତ୍ୱ ଅନ୍ୟ ଉପରେ ଖସେଇ ଦେବାର ମନୋବୃତ୍ତି (Shifting responsibility) ଅଧ୍ୟାପକଙ୍କ ପକ୍ଷରେ ଆଦୌ ସ୍ପୃହଣୀୟ ଓ ଶୋଭନୀୟ ନୁହେଁ ।

କ୍ଲାସ୍ ଥାଉ ବା ନ ଥାଉ ଅଧ୍ୟାପକମାନେ ପ୍ରତ୍ୟହ କଲେଜ୍‌ରେ କିଛି ସମୟ ଅନ୍ୟୂନ୍ ଚାରିଘଣ୍ଟା ରହିବା ଦ୍ୱାରା ବିଭାଗୀୟ କାର୍ଯ୍ୟ ଓ ଅଧ୍ୟାପନାରେ ଅନେକ ସୁବିଧା ହୁଏ । ବିଭାଗରେ ଯାହାଙ୍କ ଉପରେ ଯେଉଁ କାର୍ଯ୍ୟର ଦାୟିତ୍ୱ ଦିଆଯାଇଥାଏ (ରୁଟିନ୍, ପରୀକ୍ଷା, ଉପସ୍ଥାନ, ଯୋଗାଯୋଗ, ସେମିନାର ଇତ୍ୟାଦି) ସେଥିପ୍ରତି ସମୟୋଚିତ ଧ୍ୟାନ ଦିଆଯାଉଥିଲେ କାର୍ଯ୍ୟରେ ବିଶୃଙ୍ଖଳା ଘଟେ ନାହିଁ ।

ଅଧ୍ୟାପକମାନେ ସେମାନଙ୍କ ପାଠ୍ୟ-ଯୋଜନା (Lesson Plan) ଓ ପାଠ୍ୟ-ଅଗ୍ରଗତି-ରେଜିଷ୍ଟର ସମୟୋଚିତ ଭାବେ ପ୍ରସ୍ତୁତ ରଖି ଯଥାସମୟରେ ଶ୍ରେଣୀ ପାଠ୍ୟବସ୍ତୁ ଶେଷ କରିବା ଉଚିତ ।

ସେମିନାର ପାଇଁ ଛାତ୍ରମାନଙ୍କଠାରୁ ସଂଗୃହୀତ ଅର୍ଥର ଉପଯୁକ୍ତ ବିନିଯୋଗ ହେବା ସଙ୍ଗେସଙ୍ଗେ ଆୟବ୍ୟୟର ସଠିକ୍ ହିସାବ ହେବା ସଙ୍ଗେସଙ୍ଗେ ତା'ର ସମୀକ୍ଷଣ ହେବା ଉଚିତ ।

ବିଭାଗଟି ହେଉଛି ଗୋଟିଏ ପରିବାର ପରି । ପରିବାରର ଲୋକଙ୍କ ପରି ପାରସ୍ପରିକ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ରହିଲେ (ମତାନୈକ୍ୟ ସତ୍ତ୍ୱେ) ବିଭାଗର ସମ୍ମାନ, ତା'ର ଭାବମୂର୍ତ୍ତି ଉନ୍ନତ ତଥା ଅକ୍ଷୁଣ୍ଣ ରହେ । ସମସ୍ତେ ଶିକ୍ଷାବିଭାଗର ଦାୟିତ୍ୱ ସଂପନ୍ନ ସରକାରୀ ଅଧିକାରୀ ହୋଇଥିବାରୁ ପାରସ୍ପରିକ ସହଯୋଗ, ଗଠନମୂଳକ ଦୃଷ୍ଟିଭଙ୍ଗୀ ଓ ବଳିଷ୍ଠ କର୍ତ୍ତବ୍ୟବୋଧ ଆଶା କରାଯିବା ସ୍ୱାଭାବିକ । ବିଭାଗର ସମ୍ମାନ, ତା'ର ଭାବମୂର୍ତ୍ତି ଅକ୍ଷୁଣ୍ଣ ରଖିବା ପ୍ରତ୍ୟେକ ଅଧ୍ୟାପକଙ୍କର ଏକ ନୈତିକ ଦାୟିତ୍ୱ ।

**ସେମିନାର :**

ଶ୍ରେଣୀରେ ବିଭିନ୍ନ ବିଷୟର ଅଧ୍ୟାପନା ସହ ମୁଁ ସାପ୍ତାହିକ ସେମିନାର କାର୍ଯ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରେଁ । ସେମିନାରରେ ବିଭିନ୍ନ ସମୟରେ ଅଧ୍ୟାପକ ଓ ଛାତ୍ରମାନେ ଗୋଟିଏ ଗୋଟିଏ ବିଷୟରେ ସନ୍ଦର୍ଭ ଉପସ୍ଥାପନ କରିବା ସହିତ ତା'ର ଯଥାଯଥ ଆଲୋଚନା

ହେବା ଉଚିତ । ମୁଁ ପ୍ରଥମତଃ 'ସାହିତ୍ୟରେ ରୋମାଣ୍ଟିସିଜିମ୍' ଉପରେ ଗୋଟିଏ ସନ୍ଦର୍ଭ ଉପସ୍ଥାପନ କରିଥିଲି । ଛାତ୍ର ଓ ଅଧ୍ୟାପକମାନେ ଆଲୋଚନାରେ ଭାଗ ନେଇଥିଲେ । ବିଭିନ୍ନ ସମୟରେ ଛାତ୍ରମାନେ ପାଠଚକ୍ରରେ ପ୍ରବନ୍ଧ ପାଠକରି ଆଲୋଚନା କରିଛନ୍ତି । ବିଶିଷ୍ଟ ସାହିତ୍ୟିକ, ଗବେଷକ ଓ ନାଟ୍ୟକାରଙ୍କୁ ନିମନ୍ତ୍ରଣ କରି ସେମିନାରରେ ବିଭିନ୍ନ ବିଷୟରେ ଭାଷଣ ଓ ସମୀକ୍ଷାର ବ୍ୟବସ୍ଥା କରାଇଥିଲି । ଅତିଥିମାନଙ୍କ ମଧ୍ୟରେ ଶ୍ରୀ ମନୋରଂଜନ ଦାସ (ଆଧୁନିକ ନାଟ୍ୟ ସାହିତ୍ୟ); ଡଃ ଫନୀ ମହାନ୍ତି, ଅଧ୍ୟାପକ ସୌରୀନ୍ଦ୍ର ବାରିକ (ଆଧୁନିକ କବିତା), ଶ୍ରୀ ଦୁଃଖୀଶ୍ୟାମ ପଟ୍ଟନାୟକ, ଡଃ କୃଷ୍ଣଚରଣ ସାହୁ (ପାଣ୍ଡୁଲିପି ସଂପାଦନା), ଅଧ୍ୟାପକ ଗୌରୀକୁମାର ବ୍ରହ୍ମା (ଭଞ୍ଜ ସାହିତ୍ୟ), ଡଃ ସଦାନନ୍ଦ ମିଶ୍ର (ଆଧୁନିକ ସମୀକ୍ଷା ରୀତି), ଶ୍ରୀ ଅନାଦି ସାହୁ (ଗୋଇନ୍ଦା ଗଳ୍ପ ଓ ଉପନ୍ୟାସ) ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ମୋର ତିନିବର୍ଷ କାର୍ଯ୍ୟକାଳ ମଧ୍ୟରେ ପ୍ରତିବର୍ଷ ଏପ୍ରିଲ ମାସରେ ଆର୍ତ୍ତବଲ୍ଲଭ ଓଡ଼ିଆ ପାଠଚକ୍ର ପକ୍ଷରୁ ଆନ୍ତର୍ବିଶ୍ୱବିଦ୍ୟାଳୟ ପାଠଚକ୍ରମାନ ଅନୁଷ୍ଠିତ କରାଇଥିଲି । ପ୍ରଥମବର୍ଷ ହାସ୍ୟରସ, ଦ୍ୱିତୀୟବର୍ଷ ଗଳ୍ପ ସାହିତ୍ୟ ଓ ତୃତୀୟବର୍ଷ ସମାଲୋଚନା ସାହିତ୍ୟ ଉପରେ ପାଠଚକ୍ରମାନ ସଫଳତାର ସହ ଅନୁଷ୍ଠିତ ହୋଇଥିଲା । ବିଭିନ୍ନ ପାଠଚକ୍ରମାନଙ୍କରେ ତିନୋଟି ବିଶ୍ୱବିଦ୍ୟାଳୟର କେତେକ ପ୍ରଫେସର, ଅଧ୍ୟାପକ ଓ ଅନ୍ୟ ସାହିତ୍ୟିକ ସ୍ୱ ସ୍ୱ ସନ୍ଦର୍ଭ ଉପସ୍ଥାପନ କରିଥିଲେ । ସେମାନଙ୍କ ମଧ୍ୟରେ ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଡଃ ଶ୍ରୀନିବାସ ମିଶ୍ର, ଡଃ ନୀଳାଦ୍ରିଭୂଷଣ ହରିଚନ୍ଦନ, ଅଧ୍ୟାପକ ରାମଚନ୍ଦ୍ର ତ୍ରିପାଠୀ, ଶ୍ରୀ ରବି ପଟ୍ଟନାୟକ, ଡଃ ବାଉରୀବନ୍ଧୁ କର, ଅଧ୍ୟାପକ ବିଭୁଦତ୍ତ ମିଶ୍ର, ଅଧ୍ୟାପକ ବୈଷ୍ଣବଚରଣ ସାମଲ, ଅଧ୍ୟାପକ ବେଣୁଧର ରାଉତଙ୍କ ନାମ ଉଲ୍ଲେଖଯୋଗ୍ୟ । ବିଭିନ୍ନ ପାଠଚକ୍ରମାନଙ୍କରେ କୁଳପତି ଡଃ ମହେନ୍ଦ୍ର କୁମାର ରାଉତ, ଜଷ୍ଟିସ୍ ହରିହର ମହାପାତ୍ର, ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ର, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଡଃ କୁଞ୍ଜବିହାରୀ ତ୍ରିପାଠୀ, ଡଃ କୁଞ୍ଜବିହାରୀ ଦାଶ ପ୍ରମୁଖ ମୁଖ୍ୟଅତିଥି ଓ ମୁଖ୍ୟବକ୍ତା ଭାବରେ ଯୋଗଦାନ କରିଥିଲେ ।

ପାଠଚକ୍ର ପ୍ରବନ୍ଧାବଳୀ ପ୍ରକାଶ ପାଇଁ ଇଚ୍ଛାଥିଲେ ମଧ୍ୟ ଆର୍ଥିକ ଅସ୍ୱଚ୍ଛଳତା ହେଲା ମୁଖ୍ୟ ପ୍ରତିବନ୍ଧକ । କେବଳ ନାଟ୍ୟ ସାହିତ୍ୟ ଉପରେ ପୂର୍ବରୁ ହୋଇଥିବା ଗୋଟିଏ ବାର୍ଷିକ ସେମିନାରର ସନ୍ଦର୍ଭଗୁଡ଼ିକ ପୁସ୍ତକାକାରରେ ପ୍ରକାଶ କରିଥିଲି । ୟୁ.ଜି.ସି. ଓ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଯେଉଁ ଅନୁଦାନ ମିଳୁଥିଲା ତାହା ନ ମିଳିବାରୁ ସନ୍ଦର୍ଭ ପ୍ରକାଶନ ଆଉ ସମ୍ଭବପର ହେଲା ନାହିଁ । ପାଠଚକ୍ର ପକ୍ଷରୁ ପ୍ରଫେସର୍ ଡଃ କୁଞ୍ଜବିହାରୀ ତ୍ରିପାଠୀ, ପ୍ରଫେସର ଗୋଲୋକ ବିହାରୀ ଧଳ, ପ୍ରଫେସର୍ ଡଃ କୁଞ୍ଜବିହାରୀ ଦାଶ ଏବଂ ପ୍ରଫେସର୍ ଡଃ ଜାନକୀ ବଲ୍ଲଭ ମହାନ୍ତିଙ୍କ (ଭରଦ୍ୱାଜ) ପ୍ରତିକୃତି ଉନ୍ମୋଚନ କରାଯାଇ ବିଭାଗରେ ସୁରକ୍ଷିତ କରି ରଖାଗଲା । ଓଡ଼ିଆ ବିଭାଗ ଓ ରେଭେନ୍ସା କଲେଜ୍ ଛାତ୍ର ସଂସଦ ସହଯୋଗରେ ୧୯୮୪ରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଶତବାର୍ଷିକୀ ଉତ୍ସବ ପାଳିତ ହୋଇଥିଲା ।

ସେମିନାର ପାଠାଗାରର ପୁସ୍ତକ ବୃଦ୍ଧି, ସେମିନାର୍ ବ୍ୟାଙ୍କ ଏକାଉଣ୍ଟ ଉନ୍ମୋଚନ, ନିୟମିତ ହିସାବ ସଂରକ୍ଷଣ, ବିଜ୍ଞପ୍ତି ପୁସ୍ତିକା, ପାଠ୍ୟ ନିର୍ଘଣ୍ଟ ଓ ବିଭାଗୀୟ କାର୍ଯ୍ୟାବଳୀ ବଣ୍ଟନ ପୁସ୍ତିକାର ବ୍ୟବସ୍ଥା ସହ ଅନ୍ୟାନ୍ୟ ବିଭିନ୍ନ ରେକର୍ଡ଼ପତ୍ର ସଂରକ୍ଷଣକୁ ମୁଁ ଶୃଙ୍ଖଳିତ କରିଥିଲି । ବିଭାଗର ବିଭିନ୍ନ କାର୍ଯ୍ୟରେ ଶ୍ରଦ୍ଧା, ଆନ୍ତରିକତା ଓ ଆନୁଗତ୍ୟ ସହ ସମୟ ବିନିଯୋଗ କରି ଅଧିକାଂଶ ଅଧ୍ୟାପକ ମୋତେ ସାହାଯ୍ୟ ସହଯୋଗ କରିଥିଲେ । ବିଶେଷତଃ ଜ୍ୟେଷ୍ଠଭ୍ରାତୃ ପ୍ରତିମ ଅଧ୍ୟାପକ ଗୋପୀନାଥ ମିଶ୍ରଙ୍କର ନିରଭିମାନ ସ୍ନେହସ୍ନିଗ୍ଧ ଆନୁଗତ୍ୟ ମୋ ପକ୍ଷରେ ଅବିସ୍ମରଣୀୟ ।

ରେଭେନ୍ସା କଲେଜ୍‌ର ମୁଖପତ୍ର Ravenshavian ର ମୁଖ୍ୟ ସଂପାଦକଭାବେ ମୁଁ ୧୯୮୪ ଓ ୧୯୮୫ର ଦୁଇଟି ସଂଖ୍ୟା ପ୍ରକାଶ କରାଇଥିଲି ।

## ପୂର୍ବ ଓ ପରର ରେଭେନ୍ସା କଲେଜ :

କିନ୍ତୁ ମୋର ଛାତ୍ରାବସ୍ଥା, ପୂର୍ବର ଅଧ୍ୟାପନାକାଳୀନ ରେଭେନ୍ସା ଏବଂ ବର୍ତ୍ତମାନର ରେଭେନ୍ସା ମଧ୍ୟରେ ମୁଁ ଆକାଶ ପାତାଳ ପ୍ରଭେଦ ଲକ୍ଷ୍ୟକରି ଯେତିକି ବିସ୍ମିତ ହୋଇଛି, ସେତିକି ଦୁଃଖିତ ଓ ଆହତ ହୋଇଛି । କେତେକ ଛାତ୍ରଙ୍କ ପକ୍ଷରେ କଲେଜ୍ ନିର୍ବାଚନକୁ କେନ୍ଦ୍ରକରି କଲେଜ୍‌ରେ ଦଳୀୟଭିତ୍ତିରେ ରାଜନୈତିକ କାର୍ଯ୍ୟକ୍ରମ ମୁଖ୍ୟ ହୋଇଥିବାରୁ ବିଭିନ୍ନ ସମୟ ବିଶେଷତଃ ନିର୍ବାଚନ ସମୟରେ ବିଶୃଙ୍ଖଳ ବାତାବରଣ ବିଶେଷତଃ ଦଙ୍ଗାହେଙ୍ଗାମା ଆଜି କଲେଜ୍ କର୍ତ୍ତୃପକ୍ଷ, ଅଧ୍ୟାପକ ଓ ଶାନ୍ତିକାମୀ ଛାତ୍ରଙ୍କ ପକ୍ଷରେ ବିଶେଷ ଚିନ୍ତାର ବିଷୟ ହୋଇଛି । ଦଳୀୟ ଭିତ୍ତିରେ ବିଭିନ୍ନ କାର୍ଯ୍ୟକଳାପକୁ କେନ୍ଦ୍ର କରି ସାମୟିକ ଅଶାନ୍ତି, ଅସାମାଜିକ ବେକାର ଯୁବକମାନଙ୍କର କଲେଜ୍ ଓ ଛାତ୍ରାବାସରେ ବଳାତ୍କାର ପ୍ରବେଶ ଓ ଅପରାଧମୂଳକ କାର୍ଯ୍ୟ ଶିକ୍ଷାର ବାତାବରଣକୁ ଦୂଷିତ କରିବା ସଙ୍ଗେସଙ୍ଗେ ନିରାପତ୍ତା ଏକ ସମସ୍ୟା ହୋଇଉଠିଛି । ଛାତ୍ରସଂସଦର ଉଦ୍‌ଘାଟନ୍ ଉତ୍ସବରେ ବକ୍ତୃତା ମଞ୍ଚରେ ପୂରୀଷ ପତନ, ଜୀବନ୍ତ ସର୍ପ ନିକ୍ଷେପ : ଛାତ୍ରୀନିବାସରେ ନିଶାର୍ଦ୍ଧରେ ଅସାମାଜିକ ଯୁବକର ଦୌରାତ୍ମ୍ୟ, ଅଧ୍ୟକ୍ଷଙ୍କ ସରକାରୀ ବାସଗୃହ ପ୍ରତି ବୋମା ନିକ୍ଷେପ ଏହିପରି ବିଭିନ୍ନ ସମୟରେ ଘଟିଯାଇଥିବା ବହୁ ଲଜ୍ଜାକର ଘଟଣାର ଉଲ୍ଲେଖ କରାଯାଇପାରେ ।

ବର୍ତ୍ତମାନ ବର୍ଷରେ ଥରେ ଅଧେ ଛାତ୍ରସଂସଦ ଓ ବିଭିନ୍ନ ବିଭାଗର ବାର୍ଷିକ ଉତ୍ସବ ଉପଲକ୍ଷେ ବିଭିନ୍ନ ପ୍ରତିଯୋଗିତାର ବ୍ୟବସ୍ଥା କରାଯାଇଛି । କେବଳ ପୁରସ୍କାର ବ୍ୟବସ୍ଥା ରହିଥିବାରୁ କଲେଜ୍ ଓ ଛାତ୍ରାବାସର ଏ ବାର୍ଷିକ ଉତ୍ସବର ପ୍ରତିଯୋଗିତା ମାନଙ୍କରେ ଛାତ୍ରମାନେ ଭାଗ ନେଉଛନ୍ତି । କିନ୍ତୁ ଛାତ୍ରଛାତ୍ରୀଙ୍କର ପ୍ରତିଭାର ଭୂୟୋବିକାଶ ପାଇଁ ଯେପରି ବର୍ଷସାରା ପ୍ରବନ୍ଧ, ତର୍କ ପ୍ରତିଯୋଗିତା, ବହିର୍କକ୍ଷ ବକ୍ତୃତାର (Exramural lecture) ବ୍ୟବସ୍ଥା ରହୁଥିଲା ତାହା ଦେଖାଯାଉନାହିଁ । କଲେଜ୍‌ରେ ଏକାଙ୍କିକା ପ୍ରତିଯୋଗିତା ଓ ବାର୍ଷିକ ନାଟ୍ୟ ପରିବେଷଣକୁ

କେନ୍ଦ୍ରକରି ଯେପରି ନାଟ୍ୟସଂସଦ କର୍ମକର୍ତ୍ତାଙ୍କର ଆଦାୟ ଅର୍ଥର ଅପବ୍ୟୟ ଚାଲେ ନାଟ୍ୟସଂସଦର ଉପସଭାପତି ଓ ଶିକ୍ଷକ-ସଭ୍ୟ ସେ ତିକ୍ତ ଅଭିଜ୍ଞତାର ଜ୍ୱଳନ୍ତ ସାକ୍ଷୀ। ବର୍ଷେ (୧୯୮୨) ନାଟ୍ୟ-ସଂସଦର ଉପସଭାପତି ହେବାର ଦୁର୍ଭାଗ୍ୟ ହୋଇଥିଲା । ବିଭିନ୍ନ ସମିତି ପାଇଁ ଛାତ୍ରଙ୍କଠାରୁ ସଂଗୃହୀତ ଅର୍ଥର କିପରି ସଦୁପଯୋଗ ହେବ, ସେଥିପ୍ରତି ନିର୍ବାଚିତ ପ୍ରତିନିଧିମାନଙ୍କର ଆଉ ଧ୍ୟାନ ନାହିଁ । କେବଳ ରେଭେନ୍ସା କଲେଜ୍ କାହିଁକି ଓଡ଼ିଶାର ସବୁ କଲେଜ୍‌ର ଅବସ୍ଥା ଏଇଆ । ଏସବୁ ଦେଖିଲେ ମନେହୁଏ : ମହାବିଦ୍ୟାଳୟଗୁଡ଼ିକ ଆଉ ତ ଜ୍ଞାନାର୍ଜନର ପୀଠ ହୋଇ ରହିନାହିଁ, ଭାବୀ ଜୀବନରେ ସାଧାରଣ ଦୁର୍ନୀତିମୂଳକ କାର୍ଯ୍ୟ ପାଇଁ ସତେ ଯେପରି ଏଗୁଡ଼ିକ ତାଲିମ କେନ୍ଦ୍ର ହୋଇଯାଇଛି ।

ସେଥିପାଇଁ କେବଳ ଛାତ୍ରମାନଙ୍କ ଉପରେ ଦୋଷ ଲଦିଦେଲେ ଚଳିବ ନାହିଁ। ଛାତ୍ରମାନେ ଶିକ୍ଷାୟତନ ମଧ୍ୟରେ ବର୍ତ୍ତମାନ ଯାହା କରିବାକୁ ତିଳେମାତ୍ର କୁଣ୍ଠିତ ବା ସଂକୁଚିତ ନୁହଁନ୍ତି; ତା' ମୂଳରେ ରହିଛି ବର୍ତ୍ତମାନର ରାଜନୀତି, ଶାସନ ଓ ସାମାଜିକ ଜୀବନର ପ୍ରଭାବ । ଆଜି ଆମର ଜାତୀୟ ଚରିତ୍ର କିପରି କଳଙ୍କିତ, ନୀତିଭ୍ରଷ୍ଟ ଶତ ଶତ ଦୃଷ୍ଟାନ୍ତ ଦିଆଯାଇପାରେ । ସାଧାରଣ ଜୀବନରେ ନ୍ୟାୟ ନାହିଁ, ନୀତିବୋଧ ନାହିଁ । ସାଧାରଣ ସେବା କ୍ଷେତ୍ରରେ ଦାୟିତ୍ୱବୋଧ, ଆନୁଗତ୍ୟବୋଧ, କଠୋର ପରିଶ୍ରମ, ସମୟାନୁବର୍ତ୍ତିତା ଓ ଦକ୍ଷତା, ନୈତିକ ବିଚାରବୋଧ : ଏ କେବଳ ପୋଥିର କଥା ହୋଇ ରହିଯାଇଛି । ସଂକୀର୍ଣ୍ଣ ବ୍ୟକ୍ତି ସ୍ୱାର୍ଥ, ଆତ୍ମକୈନ୍ଦ୍ରିକତା ଓ ଭୌତିକ ସୁଖବାଦୀ ଦୃଷ୍ଟିଭଙ୍ଗୀ (Materialistic attitude) ଏତେ ପ୍ରବଳ ହୋଇଯାଇଛି ଯେ, ସମାଜ ଓ ଦେଶପ୍ରତି ନିଜର କିଛି କର୍ତ୍ତବ୍ୟ, କିଛି ଆନୁଗତ୍ୟ ରହିଛି ବୋଲି ସେମାନେ ଭାବୁନାହାନ୍ତି । ଫଳରେ ଦୁର୍ନୀତି, ଭ୍ରଷ୍ଟାଚାର ସତେ ଯେପରି ଆମର ଜାତୀୟ ଚରିତ୍ରର ଏକ ବିଲକ୍ଷଣ ବୈଶିଷ୍ଟ୍ୟ, ଏକ ବିଲକ୍ଷଣ ଭୂଷଣ ହୋଇଗଲାଣି । ବହୁ ଦୁର୍ନୀତି ପରାୟଣ ନେତା, ଅଧିକାରୀ, ଶିଳ୍ପପତି, ବ୍ୟବସାୟୀ ସମାଜ ଓ ରାଷ୍ଟ୍ରରେ ବେଶ ନିରାପଦରେ ଘୂରି ବୁଲୁଛନ୍ତି । ସମ୍ବାଦପତ୍ରମାନଙ୍କରେ ସେମାନଙ୍କର ଭ୍ରଷ୍ଟାଚାର ସଂପର୍କରେ ବହୁ ଲଜ୍ଜାକର ସମ୍ବାଦ ପ୍ରକାଶ ପାଇଲେ ମଧ୍ୟ ସେମାନଙ୍କ ପ୍ରତି ରାଷ୍ଟ୍ରର କାଳୋପଯୋଗୀ ଦୃଷ୍ଟାନ୍ତମୂଳକ ବିହିତ ଦଣ୍ଡ ବ୍ୟବସ୍ଥା ନାହିଁ କି ସାଧାରଣ ନାଗରିକ ଓ ଭୋଟଦାତାଙ୍କର ଘୃଣା ନାହିଁ । କେତେକ ରାଜ୍ୟର ଶାସକ ରାଷ୍ଟ୍ର ଓ ସମାଜର ବିଭିନ୍ନ ସ୍ତରରେ ନିଜର ପ୍ରଭାବ ବିସ୍ତାର କରି ଆସନକୁ ଦୃଢ଼ ରଖିବାପାଇଁ ଦୁର୍ଦ୍ଦାନ୍ତ ଅପରାଧୀ ଓ ଗୁଣ୍ଡାମାନଙ୍କୁ ରୀତିମତ ନାନାପ୍ରକାର ସୁବିଧା ଦେଇ ପୋଷୁଛନ୍ତି । ଏପରି ଅବସ୍ଥାରେ ଚିକିତ୍ସକ ସାଧାରଣ ସେବାର ଶପଥ ନେଇଥିଲେ ମଧ୍ୟ ଅସଲ ବେଳରେ ଆର୍ତ୍ତ ରୋଗଗ୍ରସ୍ତ ବ୍ୟକ୍ତିକୁ ଶୋଷଣ କରି ଚାଲିଛି; ଇଂଜିନିୟର୍ ନିରାପଦରେ ତା'ର ଦେଣ ନେଣ କରିଚାଲିଛି ; ସାଧାରଣ କାମ ହେଲା କେତେ, ନ ହେଲା କେତେ, ବା କାମରେ ଖଇଚା ହେଲା କେତେ । ଆବେଦନ ପତ୍ର ପକାଇ ଏକାଧିକବାର ଫାଇଲ୍ ପଛରେ ନ ଗୋଡ଼ାଇଲେ ପୁଣି ବିଭିନ୍ନ ସ୍ତରରେ ଆଖିଦୃଶିଆ ଭୋଗ ନ ଦେଲେ ପତ୍ର ସେଇମିତି ଫାଇଲ୍ ଭିତରେ କୁମ୍ଭକର୍ଣ୍ଣ

ନିଦ୍ରାରେ ଶୋଇଯାଉଛି । ଚାକିରି ସ୍ତର ଓ ସ୍ଥାନର ଗୁରୁତ୍ୱ ନେଇ ଆନୁପାତିକ ଭୋଗର ବ୍ୟବସ୍ଥା ନ ହେଲେ ଚାକିରି କିମ୍ବା ସ୍ଥାନର ଯୋଗ ହେଉନାହିଁ । ଯୁବକ ଛାତ୍ରମାନଙ୍କ ଉପରେ ଏହାର ଯେ କୁପ୍ରଭାବ ପଡୁଛି, ଏ ସଂପର୍କରେ ସମସ୍ତେ ଆଖିବୁଜି ଦେଲାପରି ମନେ ହେଉଛି ।

ଏଇପ୍ରକାର ଯେତେବେଳେ ଜାତୀୟ ଚରିତ୍ର ସେଠି ଶିକ୍ଷାୟତନମାନଙ୍କରେ କି ଅଧ୍ୟାପକ, କି ଛାତ୍ର, କି ସାଧାରଣ କର୍ମଚାରୀ ସେମାନଙ୍କଠାରୁ ଶୃଙ୍ଖଳା, କର୍ତ୍ତବ୍ୟ ପରାୟଣତା, ଚରିତ୍ରବତ୍ତା ଆଶା କରିବା ଏକ ଦୁରାଶାମାତ୍ର । ଫଳରେ ଅତୀତର ସଂସ୍କାର ବଶତଃ ମୁଁ ଯେଉଁ ଉଚ୍ଚ ଆଶା, ଅଭୀପ୍‌ସା ପୋଷଣ କରି ଆସିଛି, ମୁଁ ଯେଉଁ ସ୍ୱପ୍ନ ଦେଖିଆସିଛି, ସେଇ ଆଶା, ସେଇ ସ୍ୱପ୍ନ ଯେ ବ୍ୟାହତ ହେବ, ଏଥିରେ ସନ୍ଦେହ ନ ଥିଲେ ମଧ୍ୟ ମୁଁ ଅନ୍ତରରେ ବିଶେଷ ଆହତ ହୋଇଛି । ଆହତ ହେବାର କାରଣ : ଯେଉଁ ଉଚ୍ଚସଂସ୍କାର, ଯେଉଁ ପାରଂପରିକ ଅଭୀପ୍‌ସାରେ ମୋର ଆତ୍ମା ସଂକଳ୍ପନିଷ୍ଠ, ବର୍ତ୍ତମାନର ଅବାଞ୍ଛିତ ଅଧୋଗତି ପରିପ୍ରେକ୍ଷୀରେ ତା'ର ବ୍ୟତିକ୍ରମ ଘଟିବ କିପରି ? ବ୍ୟତିକ୍ରମକୁ ସହଜ ଚିତ୍ତରେ ଗ୍ରହଣ କରି ନେବି କିପରି ? ଅବଶ୍ୟ କେତେକଙ୍କର ଯୁକ୍ତି : ଯୁଗ ସହିତ ତାଳ ଦେଇ ଚାଲିବାକୁ ହେବ; କିନ୍ତୁ ମୋ ବିଚାରରେ ଏହା ଏକପ୍ରକାର କାପୁରୁଷୋଚିତ ଦୁର୍ବଳତା । ଆମେ ଶିକ୍ଷିତ, ଆମର ଚରିତ୍ର ମୂଳରେ ରହିଛି ଦୀର୍ଘକାଳର ଉର୍ଦ୍ଧ୍ୱସ୍ୱଳ ଆଧ୍ୟାତ୍ମିକ ସଂସ୍କୃତି, ପୌରୁଷୋଚିତ ସଂସ୍କାର; ତା'ର ବ୍ୟତିକ୍ରମ ଘଟାଇ ଯୁଗ ସହିତ ତାଳ ଦେବା ଅର୍ଥ ସ୍ରୁଅ ମୁହଁରେ ଭାସିଯିବା । ପ୍ରତ୍ୟେକ ସଂକଳ୍ପବଦ୍ଧ ଉଚ୍ଚାଙ୍ଗ ସଂସ୍କୃତି ସଂପନ୍ନ ଶିକ୍ଷିତ ବ୍ୟକ୍ତିର ସାଂପ୍ରତିକ ପରିପ୍ରେକ୍ଷୀରେ ଯଦି ଏ ଦୁର୍ବଳ ଦୃଷ୍ଟିଭଙ୍ଗୀ ଦେଖାଦିଏ, ତା'ହେଲେ ବର୍ତ୍ତମାନର ଆମ କାପୁରୁଷତା ପାଇଁ ରାଷ୍ଟ୍ର, ସମାଜ ଓ ଜୀବନକୁ ବିପନ୍ନ କରି ଆମେ ଯେଉଁ ନିର୍ଲଜ୍ଜ ଉଦାସୀନତା ପ୍ରକାଶ କରିଯିବା ଉତ୍ତର ପୁରୁଷମାନେ ଆମକୁ କେବେ କ୍ଷମା ଦେବେ ନାହିଁ । ଆଜି ଆମେରିକାର ନେତା ମାର୍ଟିନ୍ ଲୁଥର କିଙ୍ଗ୍‌ଙ୍କର ଚେତାବନୀ ସ୍ମରଣକୁ ଆସିଯାଏ । ସେ କହିଥିଲେ- ''ଦୁର୍ଜନ ଓ ଦୁଷ୍ଟମାନେ ଯେଉଁସବୁ ଘୃଣ୍ୟକଥା କହିଛନ୍ତି ବା ଘୃଣ୍ୟ କାର୍ଯ୍ୟ କରିଛନ୍ତି, ଏ ଯୁଗରେ ଆମକୁ କେବଳ ସେଇଥିଲାଗି ନୁହେଁ, ଶିଷ୍ଟ ଓ ସଜ୍ଜନମାନେ ଯେପରି ଅଦ୍ଭୁତ ଭାବରେ ମୁହଁ ବନ୍ଦ କରି ବସିଛନ୍ତି ଓ ନୀରବ ରହିବାକୁ ନିରାପଦ ବୋଲି ଭାବିଛନ୍ତି, ସେଥିଲାଗି ମଧ୍ୟ ଦିନେ ନା ଦିନେ ଗଭୀର ଅନୁତାପ କରିବାକୁ ପଡ଼ିବ ।'' (ନବରବି, ପୂଜାସଂଖ୍ୟା, ୧୯୭୩, 'ଯୁଦ୍ଧ ରହିତ ପୃଥିବୀ ଓ ମଣିଷ ସମାଜର ଶିକ୍ଷା', ଅଧ୍ୟାପକ ଚିତ୍ତରଂଜନ ଦାସ) ସ୍ରୋତର ପ୍ରତିକୂଳରେ ଯିବାର ଦୃଢ଼ସଂକଳ୍ପ ରହିଥିଲେ ମଧ୍ୟ ଆଜିର ନିଃସଙ୍ଗ ଜୀବନରେ ସମଧର୍ମା, ସଂକଳ୍ପ ଓ ସତ୍ୟନିଷ୍ଠ ସଂସ୍କୃତି ସଂପନ୍ନ ସହୃଦୟର ଅଭାବରେ ଜୀବନର ଆସନ୍ନ ଚତୁର୍ଥାବସ୍ଥାରେ ଆଗେଇବାକୁ କାହିଁକି ପାଦ ଶିଥିଳ ହୋଇଯାଏ ।

ସାଧାରଣ ଜୀବନର ବିଭିନ୍ନ ସ୍ତରରେ ନ୍ୟାୟ ଓ ସଦାଚରଣର ଅଭାବ ଲକ୍ଷ୍ୟକଲେ ହା ହତୋସ୍ମି ହେବାକୁ ପଡ଼େ । ଛଳନା, କଥା ଓ କାର୍ଯ୍ୟରେ ନିବିଡ଼ ଅସାମଞ୍ଜସ୍ୟ, ପ୍ରିୟାପ୍ରୀତି ତୋଷଣ, ଅସତ୍ୟ ଆଚରଣ ଯେପରି ଆମ ଚରିତ୍ରର ସାଧାରଣ ସହନୀୟ ରୂପ ହୋଇପଡ଼ିଛି ।

'ଯୋର ଯା'ର ମୁଲକ ତା'ର' ଅତୀତରେ ଯେପରି ଥିଲା, ଆଜି ବି ସେହିପରି ରହିଛି, କେବଳ ଚେହେରା ଓ ପୋଷାକର ପରିବର୍ତ୍ତନ ମାତ୍ର । ସବୁଠାରୁ ଦୁର୍ନୀତି ପରାୟଣ, ନୀତିଭ୍ରଷ୍ଟ ବ୍ୟକ୍ତି ନିଜେ କଇଁଚ ପରି ନିରାପତ୍ତାର ଖୋଳ ଭିତରେ ଆତ୍ମରକ୍ଷା କରି ସମାଜକୁ ସତ୍ୟ ଓ ଆଦର୍ଶର ବାଣୀ ଶୁଣାଇ ଚରମ ଛଳନାର ଅଭିନୟ କରିଚାଲିଛି । ସମାଜରେ ଯାହାର ଯା' ନ୍ୟାଯ୍ୟମୂଲ୍ୟ, ନ୍ୟାଯ୍ୟ ସମ୍ମାନ, ଆମେ ଦେବାକୁ ଘୋର କୁଣ୍ଠିତ । ପୂର୍ବରୁ ମଣିଷ ଚରିତ୍ରର ଥିଲା ଯେଉଁ ପୌରୁଷୋଚିତ ଅଭିମାନ, ତାହା ଯେପରି ଶୋଚନୀୟ ଭାବରେ କ୍ଷୟରୋଗଗ୍ରସ୍ତ । ଆଜି ମଣିଷ କଥାର କିଛି ମୂଲ୍ୟ ନାହିଁ, ଅଥଚ ଏଇ ଦେଶର ମଣିଷ ନିଜର ବଚନ ରକ୍ଷା କରିବା ପାଇଁ, ସତ୍ୟରକ୍ଷା କରିବାପାଇଁ ତ୍ୟାଗବରଣରେ ଏପରିକି ଜୀବନ ଦେବାରେ କୁଣ୍ଠାବୋଧ କରୁ ନଥିଲା । ଏଇ ଦେଶର ସଂସ୍କୃତି ଉଦାତ୍ତ କଣ୍ଠରେ ଘୋଷଣା କରି ଆସୁଥିଲା : ଆମର ଜୀବନଧାରଣ କେବଳ ନିଜ ପାଇଁ ନୁହେଁ, ମାନବ ସମାଜର କଲ୍ୟାଣ ପାଇଁ । ଅଥଚ କଥା କଥାକେ ବିଶ୍ୱାସଘାତକତା ହୋଇଛି ଆଜି ତଥାକଥିତ ଶିକ୍ଷିତ ବ୍ୟକ୍ତିର ଚାରିତ୍ରିକ ଭୂଷଣ ! ଶତାବ୍ଦୀ ଶତାବ୍ଦୀର ପରାଧୀନତା, କୁସଂସ୍କାର, ଅନ୍ଧବିଶ୍ୱାସର କୁକ୍ଷିଗର୍ଭରୁ ଆମକୁ ଉଠାଇଲେ ଏଇ ଶତକର ଯେଉଁ ମହାତ୍ମା, ତାଙ୍କର ଦେଶ, ତାଙ୍କର ଦାୟାଦମାନଙ୍କର ଏଇ ଶୋଚନୀୟ ଅଧୋଗତି ଲକ୍ଷ୍ୟକଲେ ମରିଗଲା ପରି ଲାଗେ ।

ନିଜ ବିଭାଗରେ, ବିଶ୍ୱବିଦ୍ୟାଳୟର ବିଭିନ୍ନ ସ୍ତରରେ ଏଇ ନୀତିଭ୍ରଷ୍ଟତା, ସ୍ୱାର୍ଥପରତା, ଚରମ ପ୍ରବଞ୍ଚନା ଯେପରି ଆମ ଶିକ୍ଷକମାନଙ୍କର ଯୋଗ୍ୟତାର ମାପକାଠି ହୋଇଛି । ଧୂର୍ତ୍ତତା, ଚତୁରତା ଓ ପ୍ରବଞ୍ଚନାକୁ ଆମେ ମୂଲ୍ୟ ଦେଇଚାଲିଛୁଁ । ସତ୍ୟ କଥା କହିବା ପାଇଁ, ନ୍ୟାୟରେ ପଦେ କହିବା ପାଇଁ ଆମର ସତ୍‌ସାହସ ନାହିଁ । ଆମର ଶିକ୍ଷା, ଆମର ଉଚ୍ଚସଂସ୍କାର ଆମର ନିନ୍ଦନୀୟ ଆଚରଣରେ ଯେପରି ହାର ମାନିଛି । ପରୀକ୍ଷାର୍ଥୀଙ୍କର ଉତ୍ତର ପତ୍ର ମୂଲ୍ୟାୟନ କ୍ଷେତ୍ରରେ, ପାଠ୍ୟ ପୁସ୍ତକ ନିର୍ବାଚନ କ୍ଷେତ୍ରରେ ଆମର ନ୍ୟାୟବୋଧ, ଆମର ବିଚାରବୋଧ ଆମର ଘୃଣ୍ୟ ସ୍ୱାର୍ଥ ହେତୁ କ୍ରମଶଃ ଲୋପ ପାଇଯାଉଛି । ନିଜର ସାମୟିକ ପ୍ରତିପତ୍ତି ଜୋରରେ ଆମର ଅଯୋଗ୍ୟତାକୁ ଅଯଥା ମୂଲ୍ୟ ଦେଇ ଦେଶର ଭାବୀ ବଂଶଧରମାନଙ୍କ ଭାଗ୍ୟକୁ କୁହେଳିକାଚ୍ଛନ୍ନ କରୁଛୁଁ । ନିଜେ ନ୍ୟାୟଧୀଶ ହୋଇ ଅନ୍ୟାୟର ସ୍ତାବକ ହୋଇଛୁଁ; ରକ୍ଷକ ହୋଇ ଭକ୍ଷକ ପାଲଟିଛୁଁ । ଏଇ ଭ୍ରଷ୍ଟାଚରଣ, ଏଇ ନୈତିକ ଅଧୋଗତି, ଏଇ ସ୍ଖଳିତ ଚରିତ୍ର ନେଇ ଆମେ ଦେଶର ଭବିଷ୍ୟତ ଗଢ଼ିବା ? ଆମର ସେଥିପାଇଁ ବିବେକ ଦଂଶନ ନାହିଁ । ଶିକ୍ଷା ଓ ଗବେଷଣା ନାମରେ ଆମେ ବ୍ୟବସାୟ ଚଳାଇଛୁଁ; ଛାତ୍ରଙ୍କ ଜୀବନ ନେଇ ଆମେ ଖେଳ ଖେଳୁଛୁଁ ।

## ଅସୁସ୍ଥତା :

୧୯୮୩, ଫେବୃୟାରୀ ୨ ତାରିଖ ସକାଳେ ହଠାତ୍ ମୁଁ ଅସୁସ୍ଥ ହୋଇପଡ଼େଁ । ମାନସିକ ପରିଶ୍ରମର ଆଧିକ୍ୟ ଓ ଅନ୍ୟ କେତେକ କାରଣରୁ ମୋର ମସ୍ତିଷ୍କ ଭାରାକ୍ରାନ୍ତ

ହୋଇପଡ଼େ । ଏକାନ୍ତ ଅସ୍ୱସ୍ତିବୋଧ କରିବାରୁ ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜ୍‌ର ହୃଦ୍‌ରୋଗ ବିଭାଗର (Intensive Care Unit) ରେ ମୋର ଚିକିତ୍ସା ଚାଲେ । ଡାକ୍ତରଙ୍କ ମତରେ ମୋର ଅସୁସ୍ଥତାର କାରଣ ଥିଲା Peripherical Circulation Failure । ଏଥିରେ ମୋର ରକ୍ତଚାପ ନିମ୍ନଗାମୀ ହୋଇଯାଇଥିଲା । ହୃଦ୍‌ରୋଗ ବିଭାଗର ପ୍ରଫେସର୍ ଯଦୁନାଥ ପ୍ରସାଦ ଦାସ, ଅନ୍ୟ ଡାକ୍ତର (ଡଃ ମୃତ୍ୟୁଞ୍ଜୟ ଶତପଥୀ, ଡଃ ହୃଦାନନ୍ଦ ମିଶ୍ର, ଡଃ ଚିତ୍ତରଂଜନ ନାୟକ, ଡଃ ରବି କୁମାର ମିଶ୍ର), ଷ୍ଟାଫ୍ ନର୍ସ ପ୍ରଭୃତିଙ୍କ ସଯତ୍ନ ଚିକିତ୍ସା, ଓଡ଼ିଶାର ବହୁ ସହୃଦୟ ବଂଧୁ, ଆତ୍ମୀୟ ଏବଂ ମୋର ପତ୍ନୀ ଓ ପୁତ୍ରଙ୍କର ଅବିଶ୍ରାନ୍ତ ସେବା ଓ ସଦିଚ୍ଛା ହେତୁ ମୁଁ ଆରୋଗ୍ୟ ଲାଭ କରେଁ । ଅସୁସ୍ଥତା ପାଇଁ ମୋତେ ଦୁଇମାସ ମେଡ଼ିକାଲ ଛୁଟି ନେବାକୁ ହୋଇଥିଲା । ଏହି ସମୟରେ ଡାକ୍ତରଖାନା ବେଡ୍‌ରେ କେତୋଟି ପ୍ରବନ୍ଧ, କବିତା ଓ ଆତ୍ମଲିପିର କିଛି ଅଂଶ ଲେଖା ହୋଇଥିଲା । ମାର୍ଚ୍ଚ ୩୧ ତାରିଖରେ ମୁଁ କାର୍ଯ୍ୟରେ ଯୋଗଦାନ କରେଁ ।

ଅସୁସ୍ଥତା ପୂର୍ବରୁ ଡ଼ିସେମ୍ବର ମାସରେ ଲେଖକ-ସାମ୍ମୁଖ୍ୟର ବାର୍ଷିକୋତ୍ସବର ଏକ ଅଧିବେଶନରେ ମୁଖ୍ୟବକ୍ତା ଭାବରେ ଯୋଗଦାନ କରିବା ପାଇଁ ମୁଁ ସାମ୍ମୁଖ୍ୟର ଅନ୍ୟ ପ୍ରତିନିଧିଙ୍କ ସହ ରାଉରକେଲା ଯାତ୍ରା କରେଁ । ସେଠାରେ ଇସ୍ପାତ ହୋଟେଲ୍‌ରେ ଅନ୍ୟମାନଙ୍କ ସହ ମୁଁ ରହେଁ । ମୋର ଗୁରୁ ଅଧ୍ୟାପକ ରାଜକିଶୋର ରାୟ ଏବଂ ମାତୃଭୂମିର ସଂପାଦକ ମୋର ବନ୍ଧୁ ବିଚିତ୍ରାନନ୍ଦ କର ଉତ୍ସବରେ ଯୋଗ ଦେଇଥାନ୍ତି । ଦୁଇଦିନ କାଳ ବେଶ ଜାକଯକମରେ ଉତ୍ସବ ଚାଲେ । ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଉତ୍ସବ ଉଦ୍‌ଘାଟନ କରନ୍ତି । ଶିଶୁ ସାହିତ୍ୟ, ଓଡ଼ିଆ କବିତା ଓ ସାହିତ୍ୟରେ ଜାତୀୟତା ସଂପର୍କରେ ବିଭିନ୍ନ ପାଠଚକ୍ର ଓ କବିତା ପାଠୋତ୍ସବ ଅନୁଷ୍ଠିତ ହୁଏ । ରାଉରକେଲା ଇସ୍ପାତ କାରଖାନା ମଧ ଦେଖିବାର ସୁଯୋଗ ମିଳେ ।

୧୯୮୩, ଡିସେମ୍ବରରେ ମଧ ବାଲେଶ୍ୱର ସମ୍ମିଳନୀରେ ଓଡ଼ିଆ ଭାଷା ସେମିନାରରେ ମୁଖ୍ୟବକ୍ତା ଭାବରେ ଯୋଗ ଦେବାର ସୁଯୋଗ ହୋଇଥିଲା । ଏଥିରେ ଉଦ୍‌ଘାଟକ ଥିଲେ ମୁଖ୍ୟମନ୍ତ୍ରୀ ଏବଂ ରାଜ୍ୟପାଳ ବିଶ୍ୱମ୍ଭରନାଥ ପାଣ୍ଡେ ମୁଖ୍ୟ ଅତିଥି ଭାବରେ ଉପାଦେୟ ଭାଷଣ ପ୍ରଦାନ କରିଥିଲେ ।

୧୯୮୩, ଜାନୁୟାରୀରେ ପ୍ରଫେସର୍ ଡଃ କାହ୍ନୁଚରଣ ମିଶ୍ରଙ୍କର ଷଷ୍ଟିପୂର୍ତ୍ତି ଉପଲକ୍ଷେ ମୋର ସଭାପତିତ୍ୱରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ଏକ ଗ୍ରନ୍ଥ ଉଦ୍‌ଘାଟିତ ହୋଇଥିଲା । ପୁସ୍ତକଟି ପ୍ରକାଶ କରିଥିଲେ ତାରାତାରିଣୀ ବୁକ୍‌ଷ୍ଟୋର । ମୁଁ ଅଭିନନ୍ଦନ କମିଟିର ସଭାପତି ଥିବା ସଙ୍ଗେସଙ୍ଗେ ପୁସ୍ତକଟିର ଥିଲି ମୁଖ୍ୟ ସଂପାଦକ । ଏଥିରେ ଡଃ ମିଶ୍ରଙ୍କର ଜୀବନୀ ଓ ସାହିତ୍ୟ ସାଧନା ସହ ଓଡ଼ିଶା ଓ ପଶ୍ଚିମବଙ୍ଗର ପ୍ରଖ୍ୟାତ ସାହିତ୍ୟିକମାନଙ୍କ ଦ୍ୱାରା ଲିଖିତ ଉଚ୍ଚକୋଟୀର ପ୍ରବନ୍ଧମାନ ପ୍ରକାଶ ପାଇଥିଲା ।

୧୯୮୨ ରୁ ୧୯୮୫ ମଧ୍ୟରେ କଟକ, ପୁରୀ, ଚୌଦ୍ୱାର, କେନ୍ଦୁଝର, ବାରିପଦା, ଭଦ୍ରକ, ଭୁବନେଶ୍ୱରରେ ଓ ସମ୍ବଲପୁର ପ୍ରଭୃତି ସ୍ଥାନରେ ମୁଁ ସାହିତ୍ୟତତ୍ତ୍ୱ, ସଂସ୍କୃତି ଓ ଶିକ୍ଷା

ସଂପର୍କରେ ଭାଷଣମାନ ଦେଇଛି । ଏଥିରେ ପୁରୀ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ସମ୍ମୁଖରେ ରାମଦୟା ପରିଷଦ ପକ୍ଷରୁ ରାମସାହିତ୍ୟ, ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ୍‌ରେ, ଭୁବନେଶ୍ୱର ଶିକ୍ଷା ସଂପର୍କିତ ଆଞ୍ଚଳିକ ମହାବିଦ୍ୟାଳୟରେ ସାହିତ୍ୟତତ୍ତ୍ୱ ସଂପର୍କିତ ଭାଷଣ ଉଲ୍ଲେଖଯୋଗ୍ୟ (୧୯୮୩-୮୪ ମସିହା) ମହିମା ସୋସାଇଟି ପକ୍ଷରୁ ଭୁବନେଶ୍ୱରରେ ଶୂନ୍ୟବାଦ ଏବଂ ସମ୍ବଲପୁର ଗଙ୍ଗାଧର ମେହେର କଲେଜ୍‌ରେ ମେହେର ସାହିତ୍ୟ ସଂପର୍କରେ ଭାଷଣ ଦେଇଥିଲି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗଦ୍ୱାରା ଆୟୋଜିତ ଇତିହାସର ଗ୍ରୀଷ୍ମକାଳୀନ ଅନୁଷ୍ଠାନରେ ମୁଁ ସମାଜ ଓ ଧର୍ମୀୟ ସଂସ୍କାରମୂଳକ ଆନ୍ଦୋଳନ ସଂପର୍କରେ ୨୯/୫/୮୪ ରେ ଦୁଇଟି ଭାଷଣ ଦେଇଥିଲି; ଶାନ୍ତି ମଧ Orissam Vaisnavism ସଂପର୍କରେ ଏକ ସନ୍ଦର୍ଭ ଉପସ୍ଥାପନ କରିଥିଲେ । ଏହାର ଆୟୋଜକ ଥିଲେ ପ୍ରଫେସର୍ ଡଃ କୃଷ୍ଣଚନ୍ଦ୍ର ଜେନା ଏବଂ ଅଧ୍ୟାପକ ଜୟକୃଷ୍ଣ ସାମଲ । ୧୯୮୪, ନଭେମ୍ବରରେ ପ୍ରଫେସର ଡଃ ଗୋପାଳଚନ୍ଦ୍ର ମିଶ୍ରଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଜୁନିୟର୍ ରିସର୍ଚ୍ଚ ଫେଲୋଙ୍କ ପାଇଁ ଉଦ୍ଦିଷ୍ଟ ସିଲାବସ୍ ଏବଂ ତତ୍‌ସଂପର୍କିତ ଆଦର୍ଶ ପ୍ରଶ୍ନ ଘଟିତ ଏକ କର୍ମଶାଳାରେ (Workshop) ଯୋଗଦାନ କରିଥିଲି ଏବଂ ଓଡ଼ିଆ ବିଭାଗରେ ସାହିତ୍ୟତତ୍ତ୍ୱ ସଂପର୍କରେ ଭାଷଣ ଦେଇଥିଲି ।

ପୂର୍ବପରି ଏହି ତିନିବର୍ଷ ମଧ୍ୟରେ 'ଝଙ୍କାର', 'ସହକାର', 'କୋଣାର୍କ', 'ତଗର', 'ଆସନ୍ତାକାଲି', 'ପ୍ରତିବେଶୀ' ଓ 'visson' ପ୍ରଭୃତି ସାହିତ୍ୟ ପତ୍ରିକାମାନଙ୍କରେ ମୋର ବହୁ ପ୍ରବନ୍ଧ ପ୍ରକାଶିତ ହୋଇଛି । ବିଭିନ୍ନ ସମୟରେ ଆକାଶବାଣୀ ଓ ଦୂରଦର୍ଶନ ପ୍ରୋଗ୍ରାମମାନ ପାଇ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଉପରେ ଆଲୋଚନା କରିଛି । ଏହି ସମୟରେ ବିଦ୍ୟାପୁରୀ ମୋର ବୈଷ୍ଣବ ସାହିତ୍ୟର ତାତ୍ତ୍ୱିକ ଭୂମିକା, ନିଉଷ୍ଟୁଡେଣ୍ଟସ୍ ଷ୍ଟୋର ମୋର ସାହିତ୍ୟିକ ବିଚାର ବିମର୍ଶ; ଛାତ୍ରସାଥୀ ମେହେର ସୃଷ୍ଟି ସମୀକ୍ଷା, କଟକ ପବ୍ଲିଶିଂ ହାଉସ୍ କଥାକଳିକା (୨ୟ ସଂସ୍କରଣ), ଓଡ଼ିଶା ବୁକ୍‌ଷ୍ଟୋର ମୋର ସାହିତ୍ୟ ଜିଜ୍ଞାସାର ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ ଏବଂ ଗ୍ରନ୍ଥମନ୍ଦିର ଗୋପାଳକୃଷ୍ଣ ସୃଷ୍ଟି ସମୀକ୍ଷା (ଡି.ଲିଟ୍. ସନ୍ଦର୍ଭ) ପ୍ରକାଶ କରିଥିଲେ । ପରେପରେ ସାହିତ୍ୟତତ୍ତ୍ୱ ଓ ସାହିତ୍ୟ ସମୀକ୍ଷା (ନାଳନ୍ଦା), ସାହିତ୍ୟ ସମାଲୋଚନାର ଶାସ୍ତ୍ରୀୟ ଭୂମିକା (ଆଶା ପୁସ୍ତକାଳୟ, ବ୍ରହ୍ମପୁର), ସମୀକ୍ଷା ଦ୍ୱାଦଶୀ (ଆର୍ଯ୍ୟ ପ୍ରକାଶନୀ), ଶ୍ରୀମଦ୍‌ଭାଗବତ : ଏକ ଅଧ୍ୟୟନ, ଆମର ଆଧ୍ୟାତ୍ମିକ ଐତିହ୍ୟ (ନାରାୟଣ ବୈରିଶଲ୍ୟ ସ୍ମୃତି ପରିଷଦ, ଭୁବନେଶ୍ୱର) ପ୍ରକାଶିତ ହୋଇଛି ।

ଏହି ସମୟରେ ମୁଁ ଓଡ଼ିଶା ସାହିତ୍ୟ ଏକାଡେମୀ, ରାଜା ରାମମୋହନ ରାୟ ଲାଇବ୍ରେରୀ ଫାଉଣ୍ଡେସନ୍ କମିଟି, ସରକାରୀ ପୁସ୍ତକ କ୍ରୟ କମିଟି, ପାଣ୍ଡୁଲିପି ନିର୍ବାଚନ ସବ୍‌କମିଟିର ସଭ୍ୟ ଥିଲି ଏବଂ ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନ, ବିଶ୍ୱଭାରତୀ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ସଂଗୀତ ମହାବିଦ୍ୟାଳୟର (ସାଂସ୍କୃତିକ ବ୍ୟାପାର ବିଭାଗ,

ଭୁବନେଶ୍ୱର), ଅଧ୍ୟାପକ ରିଡ଼ର୍ ଓ ପ୍ରଫେସର ନିର୍ବାଚନ ବୋର୍ଡ଼ର ବିଷୟ-ବିଶେଷଜ୍ଞ (Subject Expert) ଥିଲି ।

ପୁଅ ଅରୁଣ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ (ଦିଲ୍ଲୀ)ରେ (School of International Study)ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍.ଏ. ପାଶ୍ କଲା; ସେଠାରେ M.Phil. କଲା (୧୯୮୪); Ph.D. ପାଇଁ ରେଜିଷ୍ଟ୍ରେଶନ୍ କରିଥିଲା । ପରେପରେ ସିଭିଲ୍ ସର୍ଭିସ୍ ପରୀକ୍ଷା ଦେଇ ପ୍ରଥମ ବର୍ଷ Allied service ରେ ପରବର୍ଷ (I.A.S)ରେ ନିର୍ବାଚିତ ହୋଇଗଲା ।

ବଡ଼ପୁଅ ମିହିର ୩/୪ ବର୍ଷ ହେଲା ଚକ୍ଷୁରୋଗରେ (Ophtholomology) M.S. କରି ଦୀପ୍ତିପୁର ହସ୍‌ପିଟାଲ୍‌ର ଚକ୍ଷୁ ବିଶେଷଜ୍ଞ ଥିଲା । ପରେ ସରକାରୀ ଚାକିରିରେ ପ୍ରବେଶ କରି ତାହା ଛାଡ଼ି ବର୍ତ୍ତମାନ ବ୍ରହ୍ମପୁର (ECOS EYE HOSPITAL) ର ନିର୍ଦ୍ଦେଶକ ଅଛି । ଦ୍ୱିତୀୟ ପୁଅ ତପନ LL.B ପରେ CRPFରେ ଏକ ପୁଲିସ୍ ଅଫିସର୍ ଅଛି । ଚତୁର୍ଥ ଅଂଶୁମାନ ବି.ଏସ୍.ସି. (ଅନର୍ସ) ପରେ Chartered Accountacy ଓ P.G.D.C.A. କରି U.S.A. ର New Jersey ରେ ଏକ ପ୍ରତିଷ୍ଠିତ କଂପାନୀରେ Software Technologist ଅଛି । ସାନପୁଅ ପିନାକୀ ରେଭେନ୍ସା କଲେଜ୍‌ରେ ଏମ୍.ଏ. ପାଶ୍ କରି IPSAR ରୁ MBA ପାଶ୍ କରି ବର୍ତ୍ତମାନ କର୍ପୋରେସନ୍ ବ୍ୟାଙ୍କର ମାର୍କେଟିଂ ଅଫିସ୍‌ର ଏବଂ ଝିଅ ମହାତପା ସଂସ୍କୃତରେ ଏମ୍.ଏ. (ପ୍ରଥମ ଶ୍ରେଣୀ) ପାଶ୍ କରି କଲିକତା ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗରେ M.Phil କରିଛି । ପରେ କବି ଜୟଦେବଙ୍କ ଗୀତଗୋବିନ୍ଦ ଉପରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ Ph.D. ଡ଼ିଗ୍ରୀ ଲାଭ କରିଛି । ଈଶ୍ୱରଙ୍କ ଆଶୀର୍ବାଦରୁ ସୁସ୍ଥ ଶରୀରରେ ଅଛି । ୧୯୮୫, ମାର୍ଚ୍ଚ ୧୦ରେ ପୁଅ ତପନର ବିଭାଘର ହୁଏ ଯାଜପୁର କୁଆଁସରପୁର ଗ୍ରାମର ନଗେନ୍ଦ୍ର ନାରାୟଣ ବରାଳଙ୍କ କନ୍ୟା ଶ୍ରଦ୍ଧାଞ୍ଜଳି ସହ; ପୁଅ ଅରୁଣର ବିଭାଘର ହୁଏ ୨୭/୧୧/୯୭ରେ ଦୁର୍ଗାପ୍ରସାଦ ସିଂହଙ୍କର କନ୍ୟା ନିବେଦିତା ସହ ଏବଂ ଅଂଶୁମାନର (ବୁଲୁ) ବିଭାଘର ହୁଏ ୨୦୦୦ ଏପ୍ରିଲ ୯ ତାରିଖରେ ପତିତପାବନ ନାୟକଙ୍କ କନ୍ୟା ଲିପିକା ସହ ।

ରେଭେନ୍ସା କଲେଜ୍ ଓ ଅନ୍ୟ ସ୍ଥାନର ୧୫/୧୬ ଜଣ ପର୍ଯ୍ୟନ୍ତ ଗବେଷକ ଛାତ୍ର ଓ ଅଧ୍ୟାପକ ମୋ ତତ୍ତ୍ୱାବଧାନରେ ପି.ଏଚ୍.ଡ଼ି ଓ ଡି.ଲିଟ୍ ପାଇଁ ଗବେଷଣା କରନ୍ତି । ଏ ପର୍ଯ୍ୟନ୍ତ ୫ଜଣ ପି.ଏଚ୍.ଡ଼ି. (ଡଃ ବାଇଧର ସାହୁ, ଡଃ ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର, ଡଃ ବନବାଳା ମହାନ୍ତି, ଡଃ ଅକାମ୍ବର ମଲ୍ଲ, ଡଃ କ୍ଷୀରୋଦ କୁମାର ସାମଲ) ଓ ଦୁଇଜଣ ଡି.ଲିଟ୍ (ଡଃ ରତ୍ନାକର ସାହୁ, ଡଃ ବାଇଧର ସାହୁ) ଡିଗ୍ରୀ ଲାଭ କରିଛନ୍ତି । ଅଧ୍ୟାପକ ଚିନ୍ତାମଣି ଭାରତୀ, ଡଃ ଖଗେନ୍ଦ୍ର ନାଥ ମଲ୍ଲିକଙ୍କ (ଡି.ଲିଟ୍) ଗବେଷଣା ସନ୍ଦର୍ଭ ସମାପ୍ତ ହେବା ଉପରେ । ବର୍ତ୍ତମାନ କେତେକ ତତ୍ତ୍ୱାବଧାରକ ଦାୟିତ୍ୱହୀନ ଭାବରେ ନିଜ ନିଜର ସମର୍ଥକ ବ୍ୟକ୍ତିମାନଙ୍କୁ

କୌଶଳରେ ପରୀକ୍ଷକ ଭାବରେ ନିଯୁକ୍ତ କରାଇ ଯେପରି ମୌଳିକତାହୀନ ତୃତୀୟ ଶ୍ରେଣୀର ନାନା ଅଶୁଦ୍ଧିପୂର୍ଣ୍ଣ ସନ୍ଦର୍ଭକାରମାନଙ୍କର ସନ୍ଦର୍ଭ ପି.ଏଚ୍.ଡି. ପାଇଁ ସୁପାରିଶ କରାଇ ଦେଇଛନ୍ତି, ତା' ଦ୍ୱାରା ଓଡ଼ିଆ ଭାଷା ଓ ସାହିତ୍ୟ ଗବେଷଣାର ମାନ ତଳକୁ କରିଦେବା ସଙ୍ଗେ ସଙ୍ଗେ ଏକ ନିନ୍ଦନୀୟ ପରଂପରା ସୃଷ୍ଟି କରି ଚାଲିଛନ୍ତି । ପି.ଏଚ୍.ଡି. ଓ ଡି.ଲିଟ୍ ସନ୍ଦର୍ଭ ତତ୍ତ୍ୱାବଧାନ ନାମରେ ଏକପ୍ରକାର ବ୍ୟବସାୟର ଅସୁସ୍ଥ ପରଂପରା ଗଢ଼ିଚାଲିଛି ।

## ଅବସର ଗ୍ରହଣ :

୩୧/୮/୮୫ରେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିବାପାଇଁ ବହୁ ପୂର୍ବରୁ ସରକାରଙ୍କଠାରୁ ବିଜ୍ଞପ୍ତି ଚାଲିଆସେ ଏବଂ ପେନ୍‌ସନ୍ ସଂକ୍ରାନ୍ତ ସମସ୍ତ କାଗଜପତ୍ର ମେ ମାସରେ (୧୯୮୫) ପଠାଯାଏ । ବିଭାଗର ସହକର୍ମୀମାନଙ୍କର ଆନୁଗତ୍ୟ ଓ ସହଯୋଗରେ ସୂଚାରୁରୂପେ ବିଭାଗର କାର୍ଯ୍ୟ ତୁଲାଇ ଥିବାରୁ ମନରେ ତୃପ୍ତି ଆସେ ।

୩୧/୮/୮୫ ଅପରାହ୍ନରେ ରେଭେନ୍ସା କଲେଜ୍‌ରେ ସରକାରୀ ଚାକିରିରୁ ଅବସର ଗ୍ରହଣ କଲି । ପଞ୍ଚମ ଓ ଷଷ୍ଠ ବର୍ଷର ଏମ୍.ଏ. ଛାତ୍ରମାନେ ଅଧ୍ୟାପକ ଡଃ ଖଗେନ୍ଦ୍ରନାଥ ମଲ୍ଲିକ ଓ ଅଧ୍ୟାପକ କିଶୋରଚନ୍ଦ୍ର ଦାସଙ୍କ ନେତୃତ୍ୱରେ ବିଦାୟ ସମ୍ବର୍ଦ୍ଧନା ଉତ୍ସବ ଆୟୋଜନରେ ପୂର୍ବରୁ (୨୯/୮/୮୫) ଲାଗିଯାଇଥାନ୍ତି । ୩୦/୮/୮୫ ଥିଲା ଝୁଲଣ ପୂର୍ଣ୍ଣିମା । ମୁଁ ଆବଶ୍ୟକୀୟ କାଗଜପତ୍ର ପ୍ରସ୍ତୁତିରେ ଲାଗିଯାଇଥିଲି । ଡଃ ଅସିତ୍ କବିଙ୍କୁ (ସିନିୟର ରିଡ଼ର୍) ଦାୟିତ୍ୱ ହସ୍ତାନ୍ତର କରିବାକୁ ଅଧ୍ୟକ୍ଷଙ୍କର ନିର୍ଦ୍ଦେଶ ଥିଲା । ୩୧/୮ ରେ ସେ ଅନୁପସ୍ଥିତ ଥିବାରୁ ଦାୟିତ୍ୱ ହସ୍ତାନ୍ତର କରି ହେଲା ନାହିଁ । ଅନ୍ୟତମ ରିଡ଼ର୍ ଡଃ ଦାଶରଥି ଦାସ ଆନ୍ତରିକତାର ସହ ଲାଗିପଡ଼ିଥିଲେ କିପରି ବିଦାୟ ଉତ୍ସବ ସଫଳତାର ସହ ଅନୁଷ୍ଠିତ ହେବ । ବିଦାୟ ଉତ୍ସବରେ ଯୋଗ ଦେବାପାଇଁ ଛାତ୍ର ଓ ଅଧ୍ୟାପକମାନେ ପୂର୍ବରୁ ସଂସ୍କୃତ, ହିନ୍ଦୀ, ଗଣିତ ଓ ଅନ୍ୟ ବିଭାଗର ବିଶିଷ୍ଟ ଅଧ୍ୟାପକମାନଙ୍କୁ ନିମନ୍ତ୍ରଣ କରିଥିଲେ ।

୩୧/୮, ଅପରାହ୍ନ ୪ଟାରେ ସମ୍ବର୍ଦ୍ଧନା ସଭାର କାର୍ଯ୍ୟକ୍ରମ ଆରମ୍ଭ ହେଲା । ହିନ୍ଦୀ ବିଭାଗର ରିଡ଼ର୍ ଓ ମୁଖ୍ୟ ଅଧ୍ୟାପକ ଡଃ ତାରିଣୀଚରଣ ଦାସ ଉତ୍ସବରେ ସଭାପତିତ୍ୱ କରିଥିଲେ । ଉତ୍ସବରେ କଲେଜ୍ ଉପାଧ୍ୟକ୍ଷ ଡଃ ଦେବକାନ୍ତ ମିଶ୍ର, ସଂସ୍କୃତ ବିଭାଗ ରିଡ଼ର୍ ଶ୍ରୀମତୀ ଅଳକାନନ୍ଦା ମିଶ୍ର, ଅଧ୍ୟାପକ ରାମଚନ୍ଦ୍ର ତ୍ରିପାଠୀ, ହିନ୍ଦୀ ବିଭାଗର ଡଃ ଅଜୟ କୁମାର ପଟ୍ଟନାୟକ ଯୋଗଦାନ କରିଥିଲେ ।

ପ୍ରାରମ୍ଭରେ ସଂସ୍କୃତ ଅଧ୍ୟାପକ ଶ୍ରୀ ରାମଚନ୍ଦ୍ର ତ୍ରିପାଠୀ ବୈଦିକସୂକ୍ତ ପାଠ କରିଥିଲେ । ପରେପରେ ଛାତ୍ରୀମାନେ ଏକ ପ୍ରାଣସ୍ପର୍ଶୀ ବିଦାୟ ସଂଗୀତ ଗାନ କରିଥିଲେ । ସଂଗୀତ ଗାନ କାଳରେ ପ୍ରିୟ ଛାତ୍ର ଖଗେନ୍ଦ୍ର ଓ ଅନ୍ୟମାନଙ୍କର ଚକ୍ଷୁ ଲୋତକ ସଜଳ ହୋଇ ଉଠିଥିଲା ।

ତତ୍‌ପରେ ସଭାପତିଙ୍କ ସୂଚନାକ୍ରମେ ଷଷ୍ଠ ଓ ସପ୍ତମ ବାର୍ଷିକ ଶ୍ରେଣୀର (ପରୀକ୍ଷାର୍ଥୀ) ଛାତ୍ରମାନେ ବହୁ ସଂଖ୍ୟାରେ ନିଜର ବିଦାୟୀ ପ୍ରଫେସରଙ୍କର ଗୁଣାବଳୀର ଆଲୋଚନା କରିବା ସଂଗେ ଅତୀତର ଦୋଷତ୍ରୁଟି ପାଇଁ କ୍ଷମାପ୍ରାର୍ଥନା କରିଥିଲେ ।

ଅଧ୍ୟାପକମାନଙ୍କ ମଧ୍ୟରୁ ଡଃ ଦେବକାନ୍ତ ମିଶ୍ର (ଉପାଧ୍ୟକ୍ଷ) ପ୍ରଫେସରଙ୍କ ସହ ତାଙ୍କର ବିଭିନ୍ନ ସାହିତ୍ୟ ଆସରରେ ପରିଚିତି, ବିବିନ୍ନ ସମୟରେ ତାଙ୍କର ବିଭିନ୍ନ ପ୍ରବନ୍ଧ ପାଠ ଜନିତ ଅନୁଭୂତି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟର ତାତ୍ତ୍ୱିକ ତୁଳନାତ୍ମକ ଆଲୋଚନା ଅବସର କାଳରେ କରିବା ପାଇଁ ଅନୁରୋଧ କରିଥିଲେ ।

ଅଧ୍ୟାପକ ଡଃ ଶ୍ୟାମସୁନ୍ଦର ମିଶ୍ର ପ୍ରଫେସର୍‌ଙ୍କର ସାହିତ୍ୟ କୃତି ସଂପର୍କରେ ସୂଚନା ଦେବା ସଂଗେ ସଂଗେ ତାଙ୍କର ନମ୍ର, ସରଳ ସ୍ୱଭାବ ଉପରେ ଆଲୋକପାତ କରି କିପରି ସରଳତା ଓ ସହୃଦୟତା ଦ୍ୱାରା ବିଭାଗରେ ଅଧ୍ୟାପକମାନଙ୍କୁ ନିଜର କରି ନେଇ ଛାତ୍ରମାନଙ୍କର ବିଭିନ୍ନ ସମସ୍ୟାର ପ୍ରୀତିକର ସମାଧାନ କରିପାରୁଥିଲେ, ସେ ସଂପର୍କରେ ସୂଚନା ଦେଇଥିଲେ ।

ଅର୍ଥନୀତି ପ୍ରଫେସର୍ ଡକ୍ଟର ବାସୁଦେବ ସାହୁ ନିଜର ବ୍ୟକ୍ତିଗତ ଅନୁଭୂତି ବର୍ଣ୍ଣନା କରି ପ୍ରଫେସର୍‌ଙ୍କର ନିରବଚ୍ଛିନ୍ନ ସାହିତ୍ୟ ସାଧନା ସଂପର୍କରେ ସୂଚନା ଦେଇଥିଲେ ଏବଂ ତାଙ୍କର ଦୀର୍ଘାୟୁ କାମନା କରିବା ସହ ଉତ୍କଳ ଭାରତୀଙ୍କ ସେବା ଅବ୍ୟାହତ ରହୁ ବୋଲି କାମନା କରିଥିଲେ ।

ଡଃ ବାଉରୀବନ୍ଧୁ କର ପ୍ରଫେସର୍‌ଙ୍କର ସାହିତ୍ୟକୃତିର ବିଭିନ୍ନ ଦିଗ, ସାହିତ୍ୟତତ୍ତ୍ୱ, ବୈଷ୍ଣବ ସାହିତ୍ୟ ଓ ମଧ୍ୟଯୁଗୀୟ ରୀତି ସାହିତ୍ୟ ଉପରେ ଗଭୀର ଜ୍ଞାନର ଉଲ୍ଲେଖ କରି ଭଦ୍ରକ କଲେଜ୍‌ଠାରୁ ଆରମ୍ଭ କରି ବିଭିନ୍ନ କ୍ଷେତ୍ରରେ କିପରି ତାଙ୍କର ଲେଖା ଓ ବ୍ୟକ୍ତିତ୍ୱର ଯାଦୁକରୀ ପ୍ରଭାବ ସଂପର୍କରେ ଆସି ତାଙ୍କର ଜ୍ଞାନ ଓ ପ୍ରତିଭାର ମୁଗ୍ଧପୂଜାରୀ ହୋଇ ପଡ଼ିଥିଲେ ସେ ସଂପର୍କରେ ବର୍ଣ୍ଣନା କରିଥିଲେ । ଡଃ କ୍ଷେତ୍ରବାସୀ ନାୟକ ଛାତ୍ର ଓ ସହକର୍ମୀ ଭାବରେ ନିଜ ଜୀବନ କାଳର ଅନୁଭୂତି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସାହିତ୍ୟ ସାଧନା ପ୍ରତି ତାଙ୍କର ଅନୁପ୍ରାଣତାର କିପରି ତାଙ୍କର ପ୍ରଫେସର୍ ନିୟାମକ, ତା'ର ସୂଚନା ଦେଇଥିଲେ ।

ଡଃ ଦାଶରଥି ଦାଶ ପ୍ରଫେସର୍‌ଙ୍କ ସଂପର୍କରେ ତାଙ୍କର ବ୍ୟକ୍ତିଗତ ଅନୁଭୂତି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବିଭାଗ ପରିଚାଳନା ସଂପର୍କରେ ତାଙ୍କର ଶାନ୍ତ, ସହୃଦୟ ଦୃଷ୍ଟିଭଙ୍ଗୀ, ସହିଷ୍ଣୁତା ଓ କ୍ଷମାଶୀଳତାର ଆଲୋଚନା କରି ବିଭାଗର ଛାତ୍ର ଓ ଅଧ୍ୟାପକମାନଙ୍କୁ କିପରି ସ୍ନେହ ଓ ମୈତ୍ରୀ ସୂତ୍ରରେ ଆବଦ୍ଧ କରିଥିଲେ, ତା'ର ସୂଚନା ଦେଇଥିଲେ । ଅବସର କାଳ ତାଙ୍କର ଅଧ୍ୟୟନ ଓ ସାହିତ୍ୟ ଚର୍ଚ୍ଚାରେ ଅତିବାହିତ ହେବ ବୋଲି ଆଶାପୋଷଣ କରିଥିଲେ । ପ୍ରସଙ୍ଗକ୍ରମେ ସେ ପୁଣି କହିଥିଲେ : ପରଶୁରାମ ଏକୋଇଶିବାର ପୃଥିବୀ ନିକ୍ଷତ୍ର କରିଥିଲେ; କିନ୍ତୁ ରାମବାଣ ନିକଟରେ ସେ ହୋଇଥିଲେ ହତବୀର୍ଯ୍ୟ । ସେହିପରି କେତେ କ୍ଷମତାଧୀଶ ଅବସର ପରେ ଅସହାୟ ଭାବରେ ଦିନାତିପାତ କରୁଥିଲେ, କିନ୍ତୁ ଜଣେ ସାହିତ୍ୟିକ ତା'ର ଜ୍ଞାନ ଓ ସାଧନାରେ ଶେଷ ପର୍ଯ୍ୟନ୍ତ ଲୋକଚିତ୍ତ ଆକର୍ଷଣ କରୁଥିବ ।

ତା'ପରେ ପାଠଚକ୍ର ପକ୍ଷରୁ ତାଙ୍କ ଉଦ୍ଦେଶ୍ୟରେ ପ୍ରସ୍ତୁତ ଏକ ମାନପତ୍ର ଡଃ ଖଗେନ୍ଦ୍ରନାଥ ମଲ୍ଲିକ ଅତି ଧୀର ଓ ମନ୍ଦ୍ରକଣ୍ଠରେ ପାଠକରି ସଭାପତିଙ୍କ ହସ୍ତରେ ପ୍ରଫେସର୍‌ଙ୍କୁ ପ୍ରଦାନ କରିଥିଲେ । ଦୁଇଜଣ ଛାତ୍ର ତାଙ୍କ ଉଦ୍ଦେଶ୍ୟରେ ରଚିତ ଏକ ଭାବଗମ୍ଭୀର ଆବେଗପୂର୍ଣ୍ଣ କବିତା ପାଠକରି ଅର୍ପଣ କରିଥିଲେ । ପ୍ରଫେସର୍‌ଙ୍କୁ ଏକ ଶାଲ ଉପହାରସ୍ୱରୂପ ପ୍ରଦାନ କରାଯାଇଥିଲା ।

ପ୍ରଫେସର୍ ସମ୍ବର୍ଦ୍ଧନାର ଉତ୍ତରରେ କହିଥିଲେ ଯେ ଆଜି ବିଦାୟ ସମ୍ବର୍ଦ୍ଧନା ଦିଆଯାଉଥିଲେ ମଧ୍ୟ ସେ ଯେ ବିଦାୟ ନେଉଛନ୍ତି, ଏ ସଂପର୍କରେ ତାଙ୍କର ପ୍ରତୀତି ଜାତ ହେଉ ନଥାଏ । ବିଦାୟ ସମ୍ବର୍ଦ୍ଧନାକୁ ସେ ସ୍ୱାଗତ ଉତ୍ସବ ବୋଲି ମନେ କରିଥିଲେ । ସେ ଛାତ୍ର ଓ ଅଧ୍ୟାପକମାନଙ୍କୁ ଆବେଗଜନିତ କଣ୍ଠରେ କହିଥିଲେ ଯେ ଛାତ୍ର ଓ ଅଧ୍ୟାପକମାନେ ସାହିତ୍ୟ ସାଧନାକୁ ଜୀବନର କେବଳ ଏକ ଜୀବିକା ଭାବରେ ଗ୍ରହଣ ନ କରି ଏକ ବ୍ରତ ଭାବରେ ଗ୍ରହଣ କରିବା ଉଚିତ । କ୍ଷମତା, ପ୍ରତିପତ୍ତି, ଅଯଥା ମୋହ ଓ ଆର୍ଥିକ ଲାଭ ଉଦ୍ଦେଶ୍ୟଭିତ୍ତିକ ସାହିତ୍ୟ ଚର୍ଚ୍ଚା ଜଣେ ସାହିତ୍ୟିକ ପକ୍ଷରେ ମୃତ୍ୟୁ ସଙ୍ଗେ ସମାନ । ଜ୍ଞାନାର୍ଜନ ଓ ସାହିତ୍ୟ ସାଧନା ପ୍ରତି ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ନ ରହିଲେ ଜୀବନରେ କିଛି ଶିଖି ହୁଏନାହିଁ କି ଆତ୍ମିକ ଉତ୍କର୍ଷ ସାଧିତ ହୁଏ ନାହିଁ । ଜ୍ଞାନ ହେଉଛି ଏକ ଅନନ୍ତ ସମୁଦ୍ର- ଏହା ଯେପରି ଦିଗନ୍ତବିସ୍ତାରୀ, ସେହିପରି ଗଭୀର । ସୀମିତ ଜୀବନ କାଳ ମଧ୍ୟରେ ଜ୍ଞାନ-ସାଗରର ଏକ ବିନ୍ଦୁ ମଧ୍ୟ ଆୟତ୍ତ କରିହୁଏ ନାହିଁ । ପ୍ରକୃତ ଜ୍ଞାନ-ସାଧକ, ଜ୍ଞାନ-ପିପାସୁ ଅନନ୍ତ ଜ୍ଞାନ-ସାଗରର କେବଳ ଗୋଟିଏ ଗୋଟିଏ ବିନ୍ଦୁ ସଂପର୍କରେ ଚର୍ଚ୍ଚା କରୁଥିଲେ ମଧ୍ୟ ତାକୁ ଅସରନ୍ତି ଓ ଅନାୟତ ବୋଲି ବୋଧ ହୋଇଥାଏ । ଜ୍ଞାନସାଗର ନିକଟରେ ସେ ନିଜର ତୁଚ୍ଛତା, ଅପୂର୍ଣ୍ଣତା ସଂପର୍କରେ ସଚେତ ହୋଇ ନିଜକୁ କେଡ଼େ କ୍ଷୁଦ୍ର, କେତେ ଦୀନ ମନେ କରେ । ଜ୍ଞାନାର୍ଜନ କ୍ଷେତ୍ରରେ ଅହଂମ୍ମନ୍ୟତା ତା'ର ଘୋର ପ୍ରତିବନ୍ଧକ ହୋଇ ଠିଆହୁଏ । ଆମେରିକାର ମନୀଷୀ ଇମର୍ଶନଙ୍କର (Emerson) ଉକ୍ତି ଉଦ୍ଧାର କରି ତାହା କିପରି ତାଙ୍କ ଜୀବନର, ତାଙ୍କ ସାଧନାର ଏକ ମଟୋ, ତା'ର ସୂଚନା ଦେଇଥିଲେ । ଇମର୍ଶନ କହିଥିଲେ- "Whom ever I meet, is my superior in someway, in that I learn of him." ଶିକ୍ଷାର ଏ ଆଦର୍ଶ ନ ରହିଲେ ମଣିଷ ଜୀବନରେ କିଛି ଶିଖିପାରେ ନାହିଁ । ସେ କହିଥିଲେ : ଜୀବନର ଅସ୍ତରାଗ ଲିଭି ଯିବା ପର୍ଯ୍ୟନ୍ତ ଏଇ ହେଉଛି ତାଙ୍କର ସାଧନାର ଆଦର୍ଶ । ଛାତ୍ର, ଅଧ୍ୟାପକମାନେ ଜୀବନରେ ଏଇ ଆଦର୍ଶର ଅନୁସରଣ କଲେ ଜୀବନରେ କିଛି ଶିଖି ପାରିବେ । କ୍ଷମତା, ପ୍ରତିପତ୍ତିର ମୋହ ରହିଲେ ତାହାହିଁ ହେବ ସେମାନଙ୍କର ମୃତ୍ୟୁ । ମଣିଷ ସଂଗରେ ଏସବୁ କିଛି ଯିବ ନାହିଁ, ଯିବ ତା'ର କର୍ମ-

ଧନାନି ଭୂମୌ ପଶବଶ୍ଚ ଗୋଷ୍ଠେ
ଭାର୍ଯ୍ୟା ଗୃହଦ୍ୱାରୀ ସୁତଃ ଶ୍ମଶାନେ

ଦେହଷ୍ଥିତାୟାଂ ପରଲୋକ -ମାର୍ଗଂ
କର୍ମାନୁଗୋ ଗଚ୍ଛତି ଜୀବଃ ଏକଃ ।

ସବୁକିଛି ପଡ଼ିରହିବ, ନିଜର କର୍ମ ହେବ ସମ୍ବଳ, ପାଥେୟ । ଅଧ୍ୟାପକ ବନ୍ଧୁ ଓ ଛାତ୍ରଛାତ୍ରୀଙ୍କର ସ୍ନେହ ସଦିଚ୍ଛାକୁ ପାଥେୟ କରି ତାଙ୍କର ଅବସର-ଜୀବନ ଅତିବାହିତ କରିବେ ବୋଲି ଆଶା ।

ସଭାପତି ଡଃ ଦାସ ପ୍ରଫେସର୍‌ଙ୍କ ସହ ତାଙ୍କର ବ୍ୟକ୍ତିଗତ ଅନୁଭୂତି ବର୍ଣ୍ଣନା କରିବା ସଂଗେ ସଂଗେ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ତାଙ୍କର ଗଭୀର ଅଧ୍ୟୟନ ଓ ଗଭୀର ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥିଲେ ଏବଂ ତାଙ୍କର ନିରବଚ୍ଛିନ୍ନ ସାହିତ୍ୟ-ସାଧନା କାମନା କରିଥିଲେ । ପାଠଚକ୍ରର ସଂପାଦକଙ୍କ ଧନ୍ୟବାଦ ଅର୍ପଣ ପରେ ଉତ୍ସବ ସାଂଗ ହୋଇଥିଲା ଏବଂ କଲେଜ୍ ହଲ୍‌ରେ ସମସ୍ତେ ମହାପ୍ରସାଦ ସେବନ କରିଥିଲେ ।

## ରେଭେନ୍ସା ମହାବିଦ୍ୟାଳୟ ପକ୍ଷରୁ ବିଦାୟ ସମ୍ବର୍ଦ୍ଧନା :

ତା୨/୯/୮୫ ଅପରାହ୍ନ ଗୋଟାକରେ ପ୍ରଫେସର୍‌ଙ୍କୁ କଲେଜ୍ ଅଧ୍ୟକ୍ଷ, ଅଧ୍ୟାପକ ଓ ଛାତ୍ରଙ୍କ ପକ୍ଷରୁ ବିଦାୟ ସମ୍ବର୍ଦ୍ଧନା ଦିଆଯାଇଥିଲା; ସେଥିପାଇଁ କଲେଜ୍ କ୍ଲାସ ୧ଟାରୁ ୧.୪୫ ସାଧାରଣ ବିଜ୍ଞପ୍ତି ଦ୍ୱାରା ବନ୍ଦ ରଖାଯାଇଥିଲା । ଅଧ୍ୟକ୍ଷଙ୍କର ମୋତେ ଚିଠି-

Dear Dr. Bal,

All members of the teaching staff including myself are desirous of having you in their midst in physics lecture theatre on 2/9/85 from 1pm to 1.45 pm to bid farewell to you.

I shall be very happy of you can make it convenient to attend the get together at 1pm in P.L.T.

With regards.
Yours Sincerely,
Sd/- Dr. Misra
Principal
Ravenshaw College, Cuttack

ସମ୍ବର୍ଦ୍ଧନା ସଭାରେ ଅଧ୍ୟକ୍ଷ ଡଃ ଦୀନବନ୍ଧୁ ମିଶ୍ର, ଉପାଧ୍ୟକ୍ଷ ଡଃ ଦେବକାନ୍ତ ମିଶ୍ର, ଛାତ୍ରସଂଘର ଉପଦେଷ୍ଟା ଡଃ କମରୁଦ୍ଦିନ ଖାଁ, ଓଡ଼ିଆ ବିଭାଗର ଅଧ୍ୟାପକ, ଅନ୍ୟ ବିଭାଗର ପ୍ରଫେସର, ପ୍ରାଧ୍ୟାପକ, ଅଧ୍ୟାପକ, ଅଧ୍ୟାପିକା ଓ ଛାତ୍ରମାନେ ଉପସ୍ଥିତ ଥିଲେ । ଅଧ୍ୟକ୍ଷ ମହୋଦୟ ସଭାପତିତ୍ୱ କରିଥିଲେ ।

ଅଧ୍ୟକ୍ଷଙ୍କର ପ୍ରାରମ୍ଭିକ ସୂଚନା ପରେ ଡଃ ଅସିତ କବି ପ୍ରଫେସର୍‌ଙ୍କ (ଡଃ ବଳ) ସଂପର୍କରେ ବିଭିନ୍ନ କଲେଜ୍‌ରେ ବିଭାଗୀୟ ସହକର୍ମୀ ଭାବରେ ନିଜର ଅନୁଭୂତି ବର୍ଣ୍ଣନା କରିଥିଲେ । ସେ ଅଧ୍ୟାପକ ଓ ସାହିତ୍ୟିକ ଭାବରେ ତାଙ୍କର କୃତିତ୍ୱର ସୂଚନା ଦେବାସଙ୍ଗେ

ଅତୀତ ପରି ଭବିଷ୍ୟତରେ ତାଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ଭକ୍ତି ଅକ୍ଷୁଣ୍ଣ ରହିବ ବୋଲି କହିଥିଲେ ।

ତା'ପରେ ଡଃ କମରୁଦ୍ଦିନ ଖାଁ ପ୍ରଫେସରଙ୍କ ସହ ତାଙ୍କର ଦୀର୍ଘକାଳର ସଂପର୍କ ଓ ବିଭିନ୍ନ ମହାବିଦ୍ୟାଳୟରେ ତାଙ୍କର ଅଧ୍ୟାପନା ଓ ପଦୋନ୍ନତି ସଂପର୍କରେ ସୂଚନା ଦେବା ସଙ୍ଗେ ସଙ୍ଗେ ତାଙ୍କର ସାହିତ୍ୟିକ କୃତିତ୍ୱ ସଂପର୍କରେ ଆଲୋଚନା କରିଥିଲେ । ସେ କିପରି ଜ୍ଞାନ-ପିପାସୁ, ଏପରିକି ତୁଳନାତ୍ମକ ସମୀକ୍ଷା ପାଇଁ ଇଂରାଜୀରେ ଉଲ୍ଲେଖଯୋଗ୍ୟ ପ୍ରାସଙ୍ଗିକ ପୁସ୍ତକ ପାଠ କରିବା ପାଇଁ ଏକାଧିକବାର ତାଙ୍କ ଗୃହକୁ ଯାଇ ପୁସ୍ତକ ଆଣିବା କଥା ଉଲ୍ଲେଖ କରିଥିଲେ । ତାଙ୍କ ପରି ଜ୍ଞାନ-ପିପାସୁ ସାଂପ୍ରତିକ କାଳରେ ଏକକ ଓ ଅନନ୍ୟ । ସେ ଏଇ କଲେଜ୍ ପରିସରରେ ରହିବେ ଏବଂ ତାଙ୍କ ସାନ୍ନିଧ୍ୟ ଲାଭର ସୁଯୋଗ ପାଇପାରିବେ । ତାଙ୍କର ଅବସର ଜୀବନ ସାରସ୍ୱତ ସାଧନା ଓ ଶାନ୍ତିରେ ଅତିବାହିତ ହେଉ ବୋଲି କାମନା କରିଥିଲେ ।

ପ୍ରାଣୀବିଜ୍ଞାନ ବିଭାଗର ପ୍ରଫେସର୍ ଜାଫୁଲ୍ଲା ଖାଁ ବାରିପଦା ଓ ଭଦ୍ରକରେ ତାଙ୍କର ବ୍ୟକ୍ତିଗତ ଅନୁଭୂତି ବର୍ଣ୍ଣନା କରି ପତ୍ନୀ-ବିୟୋଗ ହେତୁ ଶିଶୁମାନଙ୍କୁ ଧରି କିପରି ଜୀବନ ଯାପନ କରୁଥିଲେ ଏବଂ ଜୀବନରେ ବହୁ ସଂଘର୍ଷର ମୁକାବିଲା କରିବା ସଂଗେ ସଂଗେ ଆଗେଇ ଚାଲିଥିଲେ ତା'ର ସୂଚନା ଦେଇଥଲେ ।

ଡଃ ଶ୍ୟାମସୁନ୍ଦର ମିଶ୍ର ବିଭାଗର ପ୍ରଫେସର୍‌ଙ୍କର ବିଭାଗୀୟ ପରିଚାଳନାରେ ସ୍ୱକୀୟ ଉଦାର ନୀତିର ସୂଚନା ଦେବା ସଙ୍ଗେସଙ୍ଗେ ସାହିତ୍ୟ ସାଧନା କ୍ଷେତ୍ରରେ ତାଙ୍କର ନିରବଚ୍ଛିନ୍ନ ସାଧନା ସଂପର୍କରେ ବର୍ଣ୍ଣନା କରିଥିଲେ । ସେ କିପରି 'ଡଗର' ପତ୍ରିକା ସହ ଦୀର୍ଘକାଳ ଧରି ସଂପୃକ୍ତ ଥିଲେ ଏବଂ ପତ୍ନୀ ବିୟୋଗ ପରେପରେ କେତୋଟି ଉଚ୍ଚକୋଟିର କବିତା ରଚନା କରି ନିଜର କବି ହୃଦୟର ପରିଚୟ ଦେଇଥିଲେ ତା'ର ସୂଚନା ଦେଇଥିଲେ ।

ରେଭେନ୍ସା ସାନ୍ଧ୍ୟ କଲେଜ୍‌ର ସଂସ୍କୃତ ପ୍ରାଧ୍ୟାପକ ଡଃ ସଦାଶିବ ପ୍ରହରାଜ ଡଃ ବଳଙ୍କ ସହ ତାଙ୍କର ବ୍ୟକ୍ତିଗତ ପରିଚୟ ସୂଚନା ଦେବା ସଂଗେ ସଂଗେ ଓଡ଼ିଆ ସାହିତ୍ୟ ସହ ତାଙ୍କର ସଂସ୍କୃତ ସାହିତ୍ୟ ପ୍ରତି ଗଭୀର ଅନୁରାଗ ସଂପର୍କରେ ସୂଚେଇ ଥିଲେ ଏବଂ ବହୁବାର ସଂସ୍କୃତ ପାଠଚକ୍ରରେ ଯୋଗଦାନ କରି କିପରି କାଳିଦାସ ଓ ଅନ୍ୟ ସଂସ୍କୃତ କବିଙ୍କ ସହିତ ଓଡ଼ିଆ କବିଙ୍କର ତୁଳନାତ୍ମକ ଆଲୋଚନା କରୁଥିଲେ ତା'ର ସୂଚନା ଦେଇଥିଲେ ।

ଶେଷରେ କଲେଜ୍ ତରଫରୁ ପ୍ରଫେସର୍‌ଙ୍କୁ ସ୍ନେହୋପହାର ଅର୍ପଣ କରାଯାଇଥିଲା । ପ୍ରଫେସର୍ (ବଳ) ନିଜ ଅଧ୍ୟାପକ ଜୀବନର ଆଦର୍ଶ ଆଭିମୁଖ୍ୟ ସଂପର୍କରେ ସୂଚନା ଦେଇ (Emersonଙ୍କ ପୂର୍ବୋକ୍ତ ଉକ୍ତି ଉଦ୍ଧାର କରି) ଅଧ୍ୟକ୍ଷ ମହୋଦୟ କିପରି ଐତିହାସିକ ଖ୍ୟାତି ସଂପନ୍ନ ଏହି ମହାବିଦ୍ୟାଳୟର ଉନ୍ନତ ପରଂପରାର ଶିଖା ପ୍ରଜ୍ଜ୍ୱଳିତ ରଖିଛନ୍ତି ତା'ର ସୂଚନା ଦେଇଥିଲେ । ସେ ପୁଣି କହିଥିଲେ ଯେ ସମସ୍ତଙ୍କର ସ୍ନେହ, ଶୁଭେଚ୍ଛା ତାଙ୍କର ଭାବୀ ଜୀବନର ପାଥେୟ । ବିଦାୟ ସମ୍ବର୍ଦ୍ଧନା ପ୍ରକାରାନ୍ତରେ କିପରି ସ୍ୱାଗତ ସମ୍ବର୍ଦ୍ଧନା ଏବଂ

ଭାରତୀୟ ପରଂପରା ଏବଂ ତାହା କିପରି ପୁନରାଗମନର (ପୁନରାଗମନାୟତ) ସଙ୍କେତ ବହନ କରିଥାଏ ତା'ର ସୂଚନା ଦେଇ ଏଇ ଅନୁଷ୍ଠାନର ବିଖ୍ୟାତ ଗ୍ରନ୍ଥାଗାର ପ୍ରତି ତାଙ୍କର ପ୍ରଲୋଭନ ଓ ଭବିଷ୍ୟତରେ କିପରି ତା'ର ଉପଯୋଗ କରିବେ, ତା'ର ସୂଚନା ଦେଇଥିଲେ ।

ସଭାପତି ଅଧକ୍ଷ ଡଃ ମିଶ୍ର ନିଜର ଅନୁଭୂତି ବର୍ଣ୍ଣନା କରି କହିଥିଲେ ଅତୀତରେ ଆମେ ଥିଲୁଁ ସହକର୍ମୀ, ଆଜି ତାଙ୍କୁ ବିଦାୟ ଦେବାପାଇଁ ସେ ଉପସ୍ଥିତ । ଡଃ କର ଜୀବନସାରା ବହୁ ପ୍ରତିବନ୍ଧକର ସମ୍ମୁଖୀନ ହୋଇ ନିଜର ସାଧନାର ପ୍ରସୂନ ଫୁଟାଇ ପାରିଛନ୍ତି । ସେ ଅବସର କାଳରେ ତାଙ୍କର ସାଧନା ନିରବଚ୍ଛିନ୍ନ ରଖିବା ସଂଗେ ସଂଗେ ଶାନ୍ତି ଓ ଆନନ୍ଦ ଲାଭ କରିବେ ଏବଂ ତାଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଓ ସମ୍ମାନ ପ୍ରଦର୍ଶନ କରିବା ପାଇଁ ରେଭେନ୍ସା କଲେଜ୍‌ର ଦ୍ୱାର ମୁକ୍ତ ବୋଲି ସୂଚନା ଦେଇଥିଲେ । ଉଚ୍ଚମନା ହୋଇଥିବାରୁ ସେ ନିଶ୍ଚିତ ଭାବରେ ଅବସର କାଳରେ ସାଧନାର ଅମୃତ ଆସ୍ୱାଦନ କରିବେ । ସଂସ୍କୃତ ବିଭାଗର ଅଧ୍ୟାପକ ଡଃ ହରେକୃଷ୍ଣ ଶତପଥୀଙ୍କ ଧନ୍ୟବାଦ ପ୍ରଦାନ ପରେ ଉତ୍ସବର ସମାପ୍ତି ଘଟିଥିଲା ।

ଶ୍ରଦ୍ଧେୟ ଅଧାପକ ବାଉରୀବନ୍ଧୁ କର ଶ୍ରଦ୍ଧା ଓ ସମ୍ମାନର ନିଦର୍ଶନ ସ୍ୱରୂପ ଅତି ବିନୀତ ଭାବରେ ଦାମିକା କଲମଟିଏ ଉପହାର ଦେଇଥିଲେ । ବିଦାୟକାଳୀନ ମାନପତ୍ର ଓ ଉପଢୌକନ ମୋର ଜୀବନର ଅନ୍ତିମ ପର୍ଯ୍ୟାୟରେ ମଧୁର ସ୍ମୃତି ହୋଇ ରହିଥିବ ।

କିନ୍ତୁ ମଧୁରତା ସହ ଅନାକାଂକ୍ଷିତ ତିକ୍ତତାର ସ୍ୱାଦ ମୋତେ ଆସ୍ୱାଦନ କରିବାକୁ ଯେ ନ ହୋଇଛି ତା' ନୁହେଁ । ବିଭାଗୀୟ ଅଧାପକଙ୍କ ଉପରେ ଶାସନର ମନୋବୃତ୍ତି ରହିଲେ, କଠୋରତା ଆଚରଣ କଲେ ଏବଂ କ୍ରୋଧ ପ୍ରକାଶ କଲେ ଅଯଥା ଉତ୍ତେଜିତ ହେବାକୁ ହୁଏ । ତାହା ଦେହ ଓ ମନ ପକ୍ଷରେ କ୍ଷତିକାରକ । ପାରଂପରିକ ଜୀବନ ଓ କର୍ମକ୍ଷେତ୍ରରେ ଏ ଅନୁଭୂତି ମୋର ହୋଇଛି । ସମସ୍ତଙ୍କ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ଭାବରେ ଚଳିବା ମୋର ସହଜାତ ସ୍ୱଭାବ । ରେଭେନ୍ସା କଲେଜ୍ ଓଡ଼ିଆ ବିଭାଗରେ ଜଣକୁ ଛାଡ଼ିଦେଲେ ସମସ୍ତଙ୍କଠାରୁ ଶ୍ରଦ୍ଧା, ଆନୁଗତ୍ୟ, ସମ୍ମାନ ଓ ପୂର୍ଣ୍ଣ ସହଯୋଗ ପାଇଛି । ମୋର ସଦିଚ୍ଛା ସତ୍ତ୍ୱେ ଛଳନା ଓ କପଟତା ଆଚରଣ କରି ଜଣେ ଅଧାପକ ମନରେ ପୀଡ଼ା ଦେଇଥିଲେ ମଧ ଏବଂ ସାମୟିକ ଭାବରେ ଉତ୍ତ୍ୟକ୍ତ ହୋଇଥିଲେ ମଧ ତାଙ୍କୁ କ୍ଷମା ଦେଇଚାଲିଛି । ମଣିଷର ଏ ଦ୍ୱୈତ ପ୍ରକୃତି ସଂପର୍କରେ ମନରେ ସମୟେ ସମୟେ ଦ୍ୱନ୍ଦ୍ୱ ଦେଖାଦିଏ । ମଣିଷ ଯଦି କଥା ଅନୁସାରେ ଆଚରଣ କରୁଥାନ୍ତା, ତା'ହେଲେ ଘର, ପରିବାର, କର୍ମକ୍ଷେତ୍ର ଓ ସମାଜ କେଡ଼େ ସୁନ୍ଦର ହୁଅନ୍ତା ।

ମଣିଷର ଏ ଛଳନାପୂର୍ଣ୍ଣ ପରସ୍ପର ବିରୋଧୀ ପ୍ରକୃତି, ନୀଚତା, ସ୍ୱାର୍ଥପରତା ମନରେ ଦାରୁଣ କଷ୍ଟ ଦିଏ । ବେଳେବେଳେ ମନେହୁଏ : ଶ୍ୱାପଦ ଅପେକ୍ଷା ଏମାନେ ଅତି ଭୟଙ୍କର ।

ମୋ ବିଭାଗର ଜଣେ ଉଦ୍ଧତ, ଆତ୍ମମ୍ମନ୍ୟ, ସ୍ୱାର୍ଥପର, ଅର୍ଥଲୋଲୁପ ଓ ନାନା ଦୁର୍ନୀତି ପରାୟଣ ଖଳବ୍ୟକ୍ତି ଯୋଗୁଁ ମୁଁ ଯେ ସ୍ଥଳବିଶେଷରେ ଅପଦସ୍ଥ ଓ ଅସମ୍ମାନିତ

ହୋଇଛି କେବଳ ତା' ନୁହେଁ, ସମୟେ ସମୟେ ସେ ଏତେ ତଳକୁ ଯାଇଛି, ତାହା ଭାବିଲେ ଓ ଲେଖିଲେ ସେ ଲୋକ ଚରିତ୍ର ପ୍ରତି ଘୃଣା ଜାତହୁଏ । ଏ ପ୍ରକାର ବ୍ୟକ୍ତିର ଅଧମ ଆଚରଣ, ଅଶାଳୀନ ବ୍ୟବହାର ଓ ନୀଚ ସ୍ୱାର୍ଥପରତାରେ ଯେ ମୁଁ କେବଳ କ୍ଷୁବ୍ଧ ତା' ନୁହେଁ, ବହୁ ଅଧ୍ୟାପକ, ଛାତ୍ର ଓ ସାଧାରଣ ବ୍ୟକ୍ତି ତା'ର ଆଚରଣରେ ଅତିଷ୍ଠ । ସେ କେବଳ ଶିକ୍ଷାବିଭାଗ ନୁହେଁ, ସମଗ୍ର ମାନବ ସମାଜ ପ୍ରତି ଏକ ପାରାସାଇଟ୍, କ୍ଷମତା ଓ ଦାୟିତ୍ୱ ବହନ କରିବାପାଇଁ ଏକାନ୍ତ ଅଯୋଗ୍ୟ ଓ ବିପଜ୍ଜନକ । ଏ ପ୍ରକାର ବ୍ୟକ୍ତି ଶିକ୍ଷା କ୍ଷେତ୍ରରେ ଯେଉଁ ବିଷାକ୍ତ ବାତାବରଣ ସୃଷ୍ଟି କରୁଛନ୍ତି, ସେମାନେ ପବିତ୍ର ଶିକ୍ଷା ବୃତ୍ତି ପାଇଁ ଏକାନ୍ତ ଅଯୋଗ୍ୟ ।

## ଅରୁଣର ଚିଠି :

ଦୀର୍ଘକାଳ ଧରି ଅଧ୍ୟାପନାରତ ପିତାଙ୍କର ଅବସର ଗ୍ରହଣକାଳୀନ ମାନସିକ ଅବସ୍ଥାକୁ ଲକ୍ଷ୍ୟକରି ଅରୁଣ ଯେଉଁ ମର୍ମଗ୍ରାହୀ ପତ୍ର ଦେଇଥିଲା ତାହା ହେଉଛି-

ପୂଜନୀୟ ବାପା,

ପ୍ରଣାମ ଗ୍ରହଣ କରିବେ । ଆଶାକରେଁ ମୋ ପୂର୍ବ ଚିଠିମାନ ପାଇଥିବେ । ଆପଣଙ୍କ ଚିଠି ପାଇଛି । ଅବଶ୍ୟ କର୍ମମୁଖର ଜୀବନରେ ହଠାତ୍ ଭଟ୍ଟା ପଡ଼ିଗଲେ ଅଡୁଆ ଲାଗିବା ସ୍ୱାଭାବିକ । ଆପଣଙ୍କ କର୍ମମୁଖରତା କେବଳ ଆପଣଙ୍କର ଚାକିରି ନଥିଲା, ତେଣୁ ଚାକିରିରୁ ଅବସର ନେବାଟା ଏକ ବିରାଟ ଶୂନ୍ୟତା ଆପଣଙ୍କ ପାଇଁ ଯେ ଆଣିଦେବ, ସେ ବିଶ୍ୱାସ ମୋର ନାହିଁ । ଓଡ଼ିଆ ସାହିତ୍ୟକୁ ଆପଣଙ୍କର ଆହୁରି ଅନେକ ଦାନ କରିବାକୁ ଅଛି । ଆଗାମୀ ଦିନଗୁଡ଼ିକରେ ସେ ସବୁ ଲକ୍ଷ୍ୟସାଧନ ଆପଣଙ୍କ ଜୀବନକୁ ଅଧିକ କର୍ମମୁଖର କରୁ, ଏହାହିଁ ଆଜି ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ।

ଏ ନୂତନ ଜୀବନରେ ମୁଁ ଆପଣଙ୍କ ପାଖରେ ସଦାବେଳେ ଅଛି ଓ ସଦାବେଳେ ରହିବି ମଧ୍ୟ । ମୁଁ ବି ଆଜି ଯାହା କିଛି, ତାହା ସବୁ ଆପଣମାନଙ୍କର ଦାନ । ଭବିଷ୍ୟତରେ ସମସ୍ତ କ୍ଷେତ୍ରରେ ମୁଁ ଆପଣଙ୍କ ପାଖରେ ରହିବି, ଏ ବିଶ୍ୱାସ ଆପଣଙ୍କୁ ଦେଉଛି । ସମସ୍ତ ଚିନ୍ତା ମୋତେ ଦେଇ ଆପଣ ନିଜ ଲକ୍ଷ୍ୟସାଧନାରେ ଲାଗି ପଡ଼ନ୍ତୁ, ଏହାହିଁ ଏ ଅବସରରେ କାମନା । କେତେ ଅଭାବ ଅସୁବିଧା ତଥା ବାଧାବିଘ୍ନ ଆପଣ ମୁକାବିଲା କରିଛନ୍ତି- ସେ ପରିପ୍ରେକ୍ଷୀରେ ଏ ସାମାନ୍ୟ ଶୂନ୍ୟତା ଆପଣଙ୍କୁ କେବେ ହତୋତ୍ସାହ କରିବନି, ସେ ବିଶ୍ୱାସ ମୋର ଅଛି ।

୨୮/୮/୧୯୮୫ ସ୍ନେହ କାମନା କରି

ଅରୁଣ



## ।। ପଞ୍ଚମ ଅଧ୍ୟାୟ ।।

### ଅବସର ପର୍ଯ୍ୟାୟ :

ଦୀର୍ଘକାଳର ଛାତ୍ରଜୀବନ ଓ ଅଧ୍ୟାପନା ପରେ କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରିବାରେ କେତେକ ମାତ୍ରାରେ ଅସ୍ୱସ୍ତି ଲାଗିବା ସ୍ୱାଭାବିକ, କାରଣ ଯେଉଁ ଅଗଣିତ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କ ସଂସ୍ପର୍ଶରେ ପ୍ରତିଦିନ ଆସିବାକୁ ହେଉଥିଲା, ବିଭାଗୀୟ ଓ ବିଶ୍ୱବିଦ୍ୟାଳୟର ନାନା କାର୍ଯ୍ୟସୂଚୀରେ ଯେପରି ସର୍ବଦା କାର୍ଯ୍ୟବ୍ୟସ୍ତ ରହିବାକୁ ପଡୁଥିଲା ସେ ପ୍ରକାର ପରିସ୍ଥିତି ଆଉ ନାହିଁ । ଏହାର ଅର୍ଥ ନୁହେଁ ଯେ ବିଭିନ୍ନ ବିଶ୍ୱବିଦ୍ୟାଳୟରୁ, ସାହିତ୍ୟ ଏକାଡ଼େମୀ, ସାଂସ୍କୃତିକ ବ୍ୟାପାର ବିଭାଗ ଏବଂ ବିଭିନ୍ନ ସାମାଜିକ, ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନମାନଙ୍କରୁ ବିଭିନ୍ନ ସମୟରେ ବିଭିନ୍ନ କାର୍ଯ୍ୟର ଡାଗିଦା ନ ଆସିଛି ବା ବିଭିନ୍ନ ପତ୍ରପତ୍ରିକାର ସଂପାଦକମାନଙ୍କ ଠାରୁ ଲେଖାର ଡାଗିଦା ନ ଆସିଛି ।

ଅବସର ଗ୍ରହଣଠାରୁ (୩୧/୮/୧୯୮୫) ବିଭିନ୍ନ କାର୍ଯ୍ୟର ବରାଦ ଆସିଛି । ବିଶ୍ୱବିଦ୍ୟାଳୟମାନଙ୍କର ପରୀକ୍ଷା ସଂକ୍ରାନ୍ତ କାର୍ଯ୍ୟରୁ ମୁକ୍ତି ମିଳିନାହିଁ । ପ୍ରଶ୍ନପତ୍ର ପ୍ରସ୍ତୁତି, ପ୍ରଶ୍ନକର୍ତ୍ତା ବୋର୍ଡ଼ର ସଭ୍ୟ, ଅଧ୍ୟକ୍ଷ, ଗବେଷଣା ସନ୍ଦର୍ଭର ପରୀକ୍ଷା ଏ ଦାୟିତ୍ୱ ଆସୁଛି । ପୁଣି ସାହିତ୍ୟ ଏକାଡ଼େମୀ ପକ୍ଷରୁ 'Orissan Heritage Series' ରେ Vaisnavism in Orissa ଶିରୋନାମାରେ ଦେଢ଼ଶହ ପୃଷ୍ଠା ମଧ୍ୟରେ ଇଂରାଜୀରେ ଖଣ୍ଡିଏ ଉଚ୍ଚମାନର ପୁସ୍ତକ ପ୍ରଣୟନ ନିମିତ୍ତ ପତ୍ର ଆସିଛି । ବିଭିନ୍ନ ଘରୋଇ କଲେଜ୍‌ମାନଙ୍କରେ (ଖିଚିଂ କଲେଜ, ବେତନଟି କଲେଜ୍, ନୂଆବଜାର କଲେଜ୍ ଆଦି) ଅଧ୍ୟକ୍ଷତା ନିମିତ୍ତ ପରୋକ୍ଷ ପ୍ରସ୍ତାବ ଆସି ପହଞ୍ଚିଛି, କିନ୍ତୁ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଘରୋଇ କଲେଜ୍‌ରେ ଅଧ୍ୟକ୍ଷତା ପାଇଁ ସ୍ୱୀକୃତି ଦେଇନାହିଁ ।

ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C.) ଙ୍କ ମଞ୍ଜୁରିରେ ଦୁଇଟି Major Research Project ହାତକୁ ନେଇ ତା'ର ଅନ୍ତିମ ରିପୋର୍ଟ ଦାଖଲ କରିଛି, ତନ୍ମଧ୍ୟରୁ ପ୍ରଥମଟି ହେଲା "Rupagosvami and Krusnadasa Kaviraja and their impact on Oriya Vaisnarite Literature and Society. (୧୯୮୭ ଠାରୁ ୧୯୮୯ ପର୍ଯ୍ୟନ୍ତ); ଦ୍ୱିତୀୟଟି ହେଲା Impact of Kalidasa on Medieval Oriya poetry and Society. (୧୯୯୨ ଠାରୁ ୧୯୯୪ ପର୍ଯ୍ୟନ୍ତ) । ରିପୋର୍ଟଗୁଡ଼ିକ ଓଡ଼ିଶାର ପ୍ରତିଷ୍ଠିତ ପତ୍ରିକା 'ଝଙ୍କାର', 'ସହକାର' ଏବଂ 'ସହଯୋଗୀ'ରେ ମଧ୍ୟ ବିଭିନ୍ନ ସମୟରେ ପ୍ରକାଶ ପାଇଛି ।

## ଜ୍ଞାନ ଓ ଦକ୍ଷତା :

ଜଣେ ସୁପରିଚିତ ତଥା ପ୍ରତିଷ୍ଠିତ ଅଧ୍ୟାପକ ଓ ବକ୍ତା ଭାବରେ ଛାତ୍ର, ଅଧ୍ୟାପକ ଓ ସଂସ୍କୃତି ସଂପନ୍ନ ବ୍ୟକ୍ତିଙ୍କଠାରୁ ଶ୍ରଦ୍ଧା ଓ ସମ୍ମାନ ପାଇଛି । ଉଭୟ ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ଗଭୀର ଅଧ୍ୟୟନ, ସାହିତ୍ୟଶାସ୍ତ୍ର (Poetics), ପ୍ରାଚୀନ, ମଧ୍ୟଯୁଗୀୟ ଓ ରାଧାନାଥ ଯୁଗୀୟ କାବ୍ୟ, ରୀତି ସାହିତ୍ୟ ଓ ବୈଷ୍ଣବ ସାହିତ୍ୟରେ ବିଶେଷଜ୍ଞ ସୁଲଭ ଜ୍ଞାନ ଅର୍ଜନ କରିବାରେ ଆନନ୍ଦ ପାଇଛି ।

ତୁଳନାତ୍ମକ ସମାଲୋଚନା, ଅନ୍ତର୍ବିଦ୍ୟା ଭିତ୍ତିକ ଆଲୋଚନା (Inter disciplinary study) ପାଇଁ ସଂସ୍କୃତ ସାହିତ୍ୟ, ଭାରତୀୟ ପ୍ରାଦେଶିକ ସାହିତ୍ୟ, ଇଂରାଜୀ ସାହିତ୍ୟ; ବେଦ, ଉପନିଷଦ, ବେଦାନ୍ତ, ସ୍ମୃତି (ଧର୍ମଶାସ୍ତ୍ର), ଭଗବଦ୍‌ଗୀତା, ଶ୍ରୀମଦ୍ ଭାଗବତ, ପୌରାଣିକ ସାହିତ୍ୟ, ଦର୍ଶନ, ନନ୍ଦନତତ୍ତ୍ୱ (Aesthetics), ସମାଜତତ୍ତ୍ୱ, ସଂସ୍କୃତି, ଇତିହାସ, ପ୍ରାଚ୍ୟ ପାଶ୍ଚାତ୍ୟ ସାହିତ୍ୟତତ୍ତ୍ୱ ଏବଂ ଉଚ୍ଚାଙ୍ଗ ଗବେଷଣା ସନ୍ଦର୍ଭମାନ ଅଧ୍ୟୟନ କରିବାର ସୁଯୋଗ ପାଇଛି । ବିଭିନ୍ନ ଆଧ୍ୟାତ୍ମିକ ଗ୍ରନ୍ଥ, ମହାପୁରୁଷ, ଭକ୍ତ ଓ ଦାର୍ଶନିକମାନଙ୍କର ଜୀବନୀ ଓ ରଚନାବଳୀ ଏବଂ ସର୍ବୋଦୟ ସାହିତ୍ୟ ଅଧ୍ୟୟନରେ ଆନନ୍ଦ ପାଇଛି ।

## ଗବେଷଣା :

ଓଡ଼ିଶାର ଖ୍ୟାତନାମା ଗୀତିକବି ଗୋପାଳକୃଷ୍ଣଙ୍କ ସଂପର୍କରେ ଗବେଷଣା ସନ୍ଦର୍ଭ ରଚନା କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ୧୯୮୧ ମସିହାରେ ଡ଼ି.ଲିଟ୍ ଡିଗ୍ରୀ (Doctor of Literature) ଲାଭ କରିଛି । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ଯୋଜନା ଅନୁସାରେ ଦୁଇଟି (Major Research Project) ରେ କାମ କରିଥିବା ସଂପର୍କରେ ପୂର୍ବରୁ ସୂଚନା ଦେଇଛି ।

## ଗବେଷଣା ତତ୍ତ୍ୱାବଧାନ :

ମୋର ତତ୍ତ୍ୱାବଧାନରେ ଚଉଦଜଣ ଅଧ୍ୟାପକ ଓ ଅଧ୍ୟାପିକା ଗବେଷଣାରତ ଥିଲେ । ତନ୍ମଧ୍ୟରୁ ସାତଜଣ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ (Ph.D.) ଡିଗ୍ରୀ ଲାଭ କରିଛନ୍ତି । ତିନିଜଣ ବରିଷ୍ଠ ଅଧ୍ୟାପକ ଡଃ ରତ୍ନାକର ସାହୁ, ଡଃ ଖଗେନ୍ଦ୍ରନାଥ ମଲ୍ଲିକ ଓ ଡଃ ବାଇଧର ସାହୁ ଡ଼ି.ଲିଟ୍, ଉପାଧିପାଇଁ ଗବେଷଣା କରୁଥିଲେ । ତନ୍ମଧ୍ୟରୁ ଡଃ ରତ୍ନାକର ସାହୁ ଓ ଡଃ ବାଇଧର ସାହୁ ଡି.ଲିଟ୍ ଡିଗ୍ରୀ ଲାଭ କରିସାରିଛନ୍ତି ।

## ବିଭିନ୍ନ ପୁରସ୍କାର ପାଇଁ ରେଫରୀ :

କେନ୍ଦ୍ରସାହିତ୍ୟ ଏକାଡ଼େମୀ, ଜ୍ଞାନପୀଠ, କବୀର ସମ୍ମାନ, ସରସ୍ୱତୀ ସମ୍ମାନ, ସାରଳା ପୁରସ୍କାର ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଁ ଦୀର୍ଘକାଳ ଧରି ଜଣେ ରେଫରୀ

ଭାବରେ ନିଯୁକ୍ତ ହୋଇଆସୁଛି । କେନ୍ଦୁଝରର ତାରିଣୀ ଫାଉଣ୍ଡେସନ୍ ଟ୍ରଷ୍ଟ ଆନୁକୂଲ୍ୟରେ ପ୍ରଦତ୍ତ 'ତାରିଣୀ ସମ୍ମାନ' ପାଇଁ ମନୋନୟନ କମିଟିର ଅଧ୍ୟକ୍ଷ ରହିଛି ।

## ଅଭିଜ୍ଞତା :

ମହାବିଦ୍ୟାଳୟମାନଙ୍କରେ ଅନର୍ସ, ସ୍ନାତକୋତ୍ତର ଶ୍ରେଣୀ ଓ ଏମ୍.ଫିଲ୍ ଶ୍ରେଣୀରେ ଦୀର୍ଘ ୩୩ ବର୍ଷକାଳ ଅଧ୍ୟାପନା କରିଆସିଛି । ବିଭାଗୀୟ ମୁଖ୍ୟ ଓ ଅନ୍ୟ ଦାୟିତ୍ୱ ସହ ଅଧ୍ୟକ୍ଷ ଦାୟିତ୍ୱ (ଭଦ୍ରକ କଲେଜ) ବହନ କରିଆସିଛି ଏବଂ ବିଶ୍ୱବିଦ୍ୟାଳୟମାନଙ୍କର ପ୍ରଶ୍ନକର୍ତ୍ତା, ପରୀକ୍ଷକ ବିଷୟ ବିଶେଷଜ୍ଞ (subject expert) ଭାବରେ ଅଭିଜ୍ଞତା ଅର୍ଜନ କରିଛି ।

## ସାହିତ୍ୟିକ ଓ ସାଂସ୍କୃତିକ ଭାବବିନିମୟ ଯୋଜନା :

ଓଡ଼ିଶା ସାହିତ୍ୟ ଏକାଡ଼େମୀର ସାହିତ୍ୟିକ ଓ ସାଂସ୍କୃତିକ ଭାବବିନିମୟ ଯୋଜନା ଅନୁସାରେ ୨୪/୩/୧୯୮୨ ଠାରୁ ୪/୪/୧୯୮୨ ପର୍ଯ୍ୟନ୍ତ ପଶ୍ଚିମବଙ୍ଗର କଲିକତା ଓ ଶାନ୍ତିନିକେତନ ଭ୍ରମଣ କରିଥିଲି । କଲିକତା ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ବଙ୍ଗଳା ବିଭାଗରେ ଓଡ଼ିଆ ଓ ବଙ୍ଗଳା ସାହିତ୍ୟର ପାରସ୍ପରିକ ପ୍ରଭାବ ଏବଂ ଓଡ଼ିଶାର ଐତିହ୍ୟ ସଂପର୍କରେ ବଙ୍ଗଳା, ଓଡ଼ିଆ ଓ ଇଂରାଜୀରେ ଭାଷଣ ପ୍ରଦାନ କରିଥିଲି । ଏହାଛଡ଼ା ବଙ୍ଗୀୟ ସାହିତ୍ୟ ପରିଷଦର ସେକ୍ରେଟେରୀ ଓ ଅନ୍ୟ କର୍ମକର୍ତ୍ତାଙ୍କ ସହ : Ramakrishna Research Institute, Chaitanya Research Institute, ଜାତୀୟ ଗ୍ରନ୍ଥାଗାର (National Literary) ଭାରତୀୟ ଭାଷା ପରିଷଦର ସଂପାଦକ, ଅନ୍ୟ କର୍ମକର୍ତ୍ତା ଏବଂ ବିଶ୍ୱଭାରତୀର ବିଭିନ୍ନ ସାହିତ୍ୟିକ ଓ ପଣ୍ଡିତମାନଙ୍କ ସହ ବଙ୍ଗ ଓ ଓଡ଼ିଶାର ସଂସ୍କୃତି, ଭାଷା ଓ ସାହିତ୍ୟ ସଂପର୍କରେ ଆଲୋଚନା କରିଥିଲି । (ପୂର୍ବରୁ ବିଶଦ ଭାବରେ ସୂଚିତ)

## ଭ୍ରମଣ ଓ କ୍ଷେତ୍ରାଧ୍ୟୟନ :

ଗବେଷଣା ଓ ବିଭିନ୍ନ ବିଷୟରେ ଜ୍ଞାନ ଓ ଅନୁଭୂତି ସଞ୍ଚୟ ଉପଲକ୍ଷେ ୧୯୮୬ ରେ ଉତ୍ତର ଭାରତରେ ଦିଲ୍ଲୀ, ହରଦ୍ୱାର, ଋଷିକେଶ, ମଥୁରା, ଆଗ୍ରା ମାର୍ଚ୍ଚ ୩ ତାରିଖଠାରୁ ୨୦ ପର୍ଯ୍ୟନ୍ତ ଭ୍ରମଣ କରି ବିଭିନ୍ନ ସାହିତ୍ୟ, ସଂସ୍କୃତି ଓ ଧର୍ମୀୟ ଅନୁଷ୍ଠାନ ଏବଂ ସେଗୁଡ଼ିକର କର୍ମକର୍ତ୍ତାଙ୍କ ସଂପର୍କରେ ଆସିଥିଲି ।

୧୯୮୮ରେ ୟୁ.ଜି.ସି.ର ବୃହତ୍ତର ଗବେଷଣା ଯୋଜନା ଅନୁସାରେ ପୁନଶ୍ଚ ହରଦ୍ୱାରର ବିଭିନ୍ନ ଅନୁଷ୍ଠାନ ଓ ଋଷିକେଶର (ମୁନିକିରେତି) ସ୍ୱାମୀ ଶିବାନନ୍ଦଙ୍କ ଆଶ୍ରମରୁ ଗବେଷଣା ସଂପର୍କରେ ପ୍ରୟୋଜନୀୟ ତଥ୍ୟ ସଂଗ୍ରହ କରିଥିଲି । ତା'ପରେ ଦିଲ୍ଲୀ ହୋଇ ମଥୁରା ଓ ବୃନ୍ଦାବନ ଯାତ୍ରା କରିଥିଲି । ବୃନ୍ଦାବନର ବିଭିନ୍ନ ମନ୍ଦିର, କୁଞ୍ଜ ଓ ବୈଷ୍ଣବ ଗୋସ୍ୱାମୀମାନଙ୍କର ସମାଧିପୀଠ ଦର୍ଶନ ସହ ପ୍ରୟୋଜନୀୟ ପୁସ୍ତକ ସଂଗ୍ରହ କରିଥିଲି ଏବଂ

ବୈଷ୍ଣବ କାବ୍ୟ ଓ ନାଟକ ବର୍ଣ୍ଣିତ ରାଧାକୃଷ୍ଣ ଓ ଗୋପୀଙ୍କର ବିଭିନ୍ନ ଲୀଳାସ୍ଥଳୀ ଯଥା ନନ୍ଦଗ୍ରାମ, ବର୍ଷାଣ (ରାଧାଙ୍କର ପିତୃଗୃହ) ସଙ୍କେତବଟ, ନିମ୍ବାର୍କାଶ୍ରମ, କୁସୁମ ସରୋବର, ବ୍ରହ୍ମକୁଣ୍ଡ, ଗିରିଗୋବର୍ଦ୍ଧନ, ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡ ଦର୍ଶନ କରି ତଥ୍ୟାବଳୀ ସଂଗ୍ରହ କରିଥିଲି ।

ପୁନଶ୍ଚ ୧୯୮୯, ଫେବୃୟାରୀରେ ୟୁ.ଜି.ସି. ଯୋଜନା ଅନୁସାରେ ପଶ୍ଚିମବଙ୍ଗର କାଟୋୟା, ଝମଟ୍‌ପୁର (ଚୈତନ୍ୟ ଚରିତାମୃତର ଲେଖକ କୃଷ୍ଣଦାସ କବିରାଜଙ୍କ ଜନ୍ମସ୍ଥାନ), ଗଙ୍ଗାକୂଳସ୍ଥ ବ୍ରହ୍ମାନନ୍ଦ ଆଶ୍ରମ, ଶ୍ରୀପାଟସ୍ଥ ଭକ୍ତ ନରହରି ସରକାର ଠାକୁରଙ୍କର ମଠ, ମନ୍ଦିର ଓ ସ୍ଥାନୀୟ ପାଠାଗାର, ନବଦ୍ୱୀପ ଓ ମାୟାପୁରର ବିଭିନ୍ନ ମନ୍ଦିର ଓ ପାଠାଗାର ପରିଦର୍ଶନ କରି ଆବଶ୍ୟକୀୟ ତଥ୍ୟ ସଂଗ୍ରହ କରି ଶାନ୍ତିନିକେତନ ଯାତ୍ରା କରିଥିଲି । ସେଠାରେ ଲୋକ ସାହିତ୍ୟ ସଂପର୍କରେ ଅନୁଷ୍ଠିତ ଏକ ଆନ୍ତର୍ଜାତିକ ସେମିନାର୍‌ରେ ଯୋଗାଦାନ କରି ବିଶ୍ୱଭାରତୀ ଗ୍ରନ୍ଥାଗାରରୁ ଗବେଷଣା ସଂପର୍କରେ ତଥ୍ୟ ସଂଗ୍ରହ କରି କଲିକତାର ଜାତୀୟ ଗ୍ରନ୍ଥାଗାରରେ ଅଧ୍ୟୟନ ଓ ନୋଟ୍ କରିଥିଲି ।

## ବୃତ୍ତି ଓ ବ୍ରତ :

ଅବସର ଗ୍ରହଣ ପରେ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦର (Secondary Board of Education) ସଭ୍ୟ ଭାବରେ ନିଯୁକ୍ତି ପାଇଛି ଏବଂ ପରିଷଦ ପକ୍ଷରୁ ଅନୁଷ୍ଠିତ ହୋଇଥିବା ଅଧିବେଶନରେ ଶିକ୍ଷାର ଆହ୍ୱାନ (Challenge of Education) ଶୀର୍ଷକ ଭାରତ ସରକାରଙ୍କର ଭାବୀ ଶିକ୍ଷାନୀତିର ଚିଠା ଉପରେ ଅନୁଷ୍ଠିତ ଆଲୋଚନାରେ ଯୋଗଦାନ କରି ମୋର ମତାମତ ପ୍ରକାଶ କରିଛି । ଭାବୀ ଶିକ୍ଷାନୀତିର ଆଲୋଚନା ସଂପର୍କରେ ବହୁ ସଭ୍ୟ ସରକାରଙ୍କର ଆର୍ଥିକ ଅସ୍ୱଚ୍ଛଳତା ଦୃଷ୍ଟିରୁ ଏହାର କାର୍ଯ୍ୟକାରିତା ସଂପର୍କରେ ଆଶଙ୍କା ପ୍ରକାଶ କରିବାର ଲକ୍ଷ୍ୟ କରିଛି । ସାଂପ୍ରତିକ ପରିପ୍ରେକ୍ଷୀରେ ଶିକ୍ଷାକ୍ଷେତ୍ରରେ ଶିକ୍ଷାର ମାନ, ପାରମ୍ପରିକ ମୂଲ୍ୟବୋଧ ତଥା ନୈତିକ ଚରିତ୍ରର ଅଧୋଗତି ଏବଂ ରାଜନୈତିକ ହସ୍ତକ୍ଷେପ ଉପରେ କଟାକ୍ଷପାତ କରିବା ସଂଗେସଂଗେ ଦେଶର ଭାବୀ ନାଗରିକମାନଙ୍କର ବୌଦ୍ଧିକ, ମାନସିକ ତଥା ଆତ୍ମିକ ଉତ୍କର୍ଷ ପ୍ରତି ଦୃଷ୍ଟିରଖି ପ୍ରଚଳିତ ଶିକ୍ଷାନୀତିର ଚୁମ୍ବକ ସଂସ୍କାରମୂଳକ ପରିବର୍ତ୍ତନ ଦିଗରେ ଯେପରି ଉଲ୍ଲାସପୂର୍ଣ୍ଣ ବଳିଷ୍ଠ ମତ ପ୍ରକାଶ କରିଛନ୍ତି ସେଥିରେ ଆନନ୍ଦିତ ଓ ଉତ୍ସାହିତ ହେବାର ଯେପରି ପ୍ରେରଣା ରହିଛି, ନାନା କାରଣରୁ ତା'ର ଭାବୀ କାର୍ଯ୍ୟକାରିତା ସଂପର୍କରେ ସେତିକି ମଧ୍ୟ ସଂଶୟ ରହିଛି ।

ଦେଶରେ ସମ୍ବିଧାନ, ଆଇନ୍‌କାନୁନ୍, ବିଭିନ୍ନ ଅନୁଷ୍ଠାନର ଶୃଙ୍ଖଳାଗତ ବିଧାନ ଓ ସାଧାରଣ ସେବା ସଂପର୍କିତ ଆଚରଣ ବିଧିର ଅଭାବ ନାହିଁ; କିନ୍ତୁ ଆଜି ବ୍ୟକ୍ତି, ସମାଜ ତଥା ଜାତୀୟ ଜୀବନରେ କଥା ଓ ଆଚରଣ ମଧ୍ୟରେ ଯେଉଁ ବିରାଟ ଫାଙ୍କ ଦେଖାଯାଉଛି, କର୍ତ୍ତବ୍ୟବୋଧ ଓ କର୍ମଦକ୍ଷତା ସ୍ଥାନରେ ଆପାତ ମଧୁର ତୋଷାମୋଦ ତଥା ପ୍ରଶସ୍ତିକୁ

ଯେପରି ଅବାଞ୍ଛିତ ମୂଲ୍ୟ ଦିଆଯାଉଛି, ଏପରି ଅବସ୍ଥାରେ ବିଭିନ୍ନ କ୍ଷେତ୍ରରେ ଦକ୍ଷତା, ନ୍ୟାୟବୋଧ ଓ ନିରପେକ୍ଷତା କେବେ ଆଶା କରାଯାଇ ନ ପାରେ ।

ସାଂପ୍ରତିକ ଆଣବିକ ଯୁଗରେ ପୃଥିବୀ ଆମ ନିକଟରେ ଅତି ଛୋଟ ହୋଇଯାଇଛି । ସମୟ ଥିଲା ଯେତେବେଳେ ପରିବାର, ଗ୍ରାମ, ଗୋଷ୍ଠୀ ଓ ଜାତିର ସୀମିତ ପରିସର ମଧ୍ୟରେ ନିଜ ନିଜକୁ ଆବଦ୍ଧ କରି ଆମେ ଆମର ବିକାଶ ଲୋଡୁଥିଲୁଁ; କିନ୍ତୁ ଆଜି ଏଭ ସଂକୀର୍ଣ୍ଣ ପରିସର ମଧ୍ୟରେ ନିଜକୁ ଆବଦ୍ଧ କରି ଆମେ କେବେ ଆମର ବିକାଶ ଓ ବିଶ୍ୱରେ ଶାନ୍ତି ସହାବସ୍ଥାନର ସମ୍ଭାବନାକୁ ନିକଟତର କରି ଦେଖିପାରିବା ନାହିଁ । ଆମେ ନିଜ ନିଜ ଆୟତନ ମଧ୍ୟରେ ନିଜକୁ ଆବଦ୍ଧ କରି ପରସ୍ପରକୁ ସନ୍ଦେହ ଦୃଷ୍ଟିରେ ଦେଖି ଚାଲିଛୁଁ । ବର୍ତ୍ତମାନର ପରିସ୍ଥିତିରେ ମଣିଷ ପରି ବଞ୍ଚି ରହିବାକୁ ହେଲେ ଆମକୁ ଜାତି ଓ ଦେଶର ସଂକୀର୍ଣ୍ଣ ଗଣ୍ଡି ଅତିକ୍ରମ କରିବାକୁ ହେବ । ଆମ ଭାରତୀୟ ଆର୍ଷ ସଂସ୍କୃତିର ଉଦାର ଆଦର୍ଶର ଅନୁସରଣରେ ସମଗ୍ର ବିଶ୍ୱକୁ ଏକ ପରିବାର ବୋଲି ସ୍ୱାଗତ କରିବାକୁ ହେବ । ଭାରତ ତଥା ବିଶ୍ୱର ଋଷି, ଚିନ୍ତାଶୀଳ ଦାର୍ଶନିକ ଓ ମନୀଷୀମାନେ ସେଇକଥା ବାରମ୍ବାର ଚେତାଇ ଦେଇ ଆମକୁ କହି ଆସିଛନ୍ତି । ସେମାନଙ୍କ ଲେଖାରେ ବିଶ୍ୱମାନବ ଓ ବିଶ୍ୱତୋମୁଖୀ ଚିନ୍ତାଧାରାର ବାରମ୍ବାର ପ୍ରତିଫଳନ ଘଟିଆସିଛି । ଏହା କେବଳ ସମ୍ଭବ ହୋଇପାରିବ ଦେଶରେ ନୈତିକ ତଥା ଆଧ୍ୟାତ୍ମିକ ସଂସ୍କୃତିଭିତ୍ତିକ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥାର ପ୍ରବର୍ତ୍ତନ ଦ୍ୱାରା, ତା'ର ଆନ୍ତରିକ ପ୍ରୟୋଗ ତଥା ଆଚରଣ ଦ୍ୱାରା ।

କିନ୍ତୁ ଦୀର୍ଘକାଳ ଧରି ଏ ଦେଶ ପରାଧୀନ ରହିବା ଫଳରେ ଏ ଦେଶରେ ଯେଉଁ ପ୍ରକାର ଶିକ୍ଷାବ୍ୟବସ୍ଥା ପ୍ରଚଳିତ ଓ ନିୟନ୍ତ୍ରିତ ହୋଇଆସିଛି, ସେଥିରେ ପୂର୍ଣ୍ଣାଙ୍ଗ ମଣିଷ, ବିଶ୍ୱମାନବ ଓ ବିଶ୍ୱତୋମୁଖୀ ଚିନ୍ତାଧାରା ଆଶା କରିବା ବିଡ଼ମ୍ବନା ମାତ୍ର । ଏଥିରେ ମାନବ ଶିଶୁର ଅନ୍ତର୍ନିହିତ ଗୁଣର ସୁସ୍ଥ ବିକାଶ ଘଟିବା ଦୂରେ ଥାଉ ବରଂ ଦାସତ୍ୱ ମନୋବୃତ୍ତି ଅଧିକ ବଢ଼ିଛି; ନିଜର ସ୍ୱାଧୀନ ଚିନ୍ତାଧାରାର, ବିବେକର ବିକାଶ ଦୂରେ ଥାଉ, ବରଂ ନିଜକୁ ତାତ୍କାଳିକ ପରିସ୍ଥିତିରେ ନିରାପଦ ରଖିବାକୁ ହୀନ ସ୍ତୁତି ସ୍ତାବକତାକୁ ଫଳପ୍ରଦ ଆୟୁଧ ମନେ କରିଛି । ଯେଉଁ ଶିକ୍ଷା ଦ୍ୱାରା ମାନବଶିଶୁର ବୌଦ୍ଧିକ ଓ ଆତ୍ମିକ ବିକାଶ ଘଟିବା ସଂଗେସଂଗେ ଅନ୍ତରରେ ବିଶ୍ୱପ୍ରକୃତି ଓ ମାନବ ଜୀବନ ପ୍ରତି ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ଓ ପ୍ରେରଣାର ସଞ୍ଚାର ହୋଇପାରନ୍ତା, ତାହା ହୋଇପାରୁନାହିଁ ।

ଶିକ୍ଷକ ଛାତ୍ର ଦେଶର ମେରୁଦଣ୍ଡ ହେଲେ ମଧ୍ୟ ଶିକ୍ଷାୟତନ ଓ ବିଶ୍ୱବିଦ୍ୟାଳୟ ଗୁଡ଼ିକ ଦେଶର ଭାବୀ ନାଗରିକମାନଙ୍କର ଶୃଙ୍ଖଳାବୋଧ ଓ ଚରିତ୍ର ଗଠନର ଆଦ୍ୟ ଦେହଳି ହେଲେ ମଧ୍ୟ, ସେଗୁଡ଼ିକ ଆଜି ନାନା କାରଣରୁ ଦୂଷିତ ଓ ବିକଳାଙ୍ଗ, ଜ୍ଞାନାର୍ଜନ, ମାନବିକ ମୂଲ୍ୟବୋଧ, ଚରିତ୍ର ଗଠନ ଓ ଶୃଙ୍ଖଳାବୋଧ ସ୍ଥାନରେ କେବଳ ଡିଗ୍ରୀ ଲାଭକୁ ଯଦି ଭାବୀ ଜୀବନ-ନିର୍ବାହର ମାନଦଣ୍ଡ ଧରାଯାଏ, ତା'ର ପରିଣତି ଯାହା ହେବାର କଥା, ଆଜି ସମସ୍ତେ ତାହା ଅଙ୍ଗେ ଅଙ୍ଗେ ନିଭାଉଛନ୍ତି ।

ଆଜି ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ଶିକ୍ଷାୟତନମାନଙ୍କରେ ଘଟୁଥିବା ଶିକ୍ଷାଗତ ତଥା ପରୀକ୍ଷା ପରିଚାଳନାଗତ ବିଶୃଙ୍ଖଳା ଓ ଦୁର୍ନୀତି ବର୍ତ୍ତମାନ ତୀବ୍ର ସମାଲୋଚନାର ବିଷୟ ହୋଇପଡ଼ିଛି । ଶିକ୍ଷାର ସଂସ୍କାର ପାଇଁ ସ୍ୱାଧୀନତା ପ୍ରାପ୍ତି ପରଠାରୁ ବହୁ କମିଶନ ବସି ଆସିଛି, ତଥାପି ଏ ଦେଶରେ ଏ ପର୍ଯ୍ୟନ୍ତ ଦେଶର ସମସ୍ୟା ଓ ଆବଶ୍ୟକତାକୁ ଚାହିଁ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇପାରି ନାହିଁ । ଶିକ୍ଷାର ମାନ ଦିନକୁ ଦିନ ନିମ୍ନଗାମୀ ହେବା ସଂଗେ ସଂଗେ ବହୁ ଅନୁପଯୁକ୍ତ ବ୍ୟକ୍ତି ଓ ଶିକ୍ଷକଙ୍କ ହାତରେ ଯେପରି ଶିକ୍ଷାର ଦାୟିତ୍ୱ ଲଦି ଦିଆଯାଉଛି, ତା'ର କୁପରିଣତି ଚିନ୍ତାଶୀଳ ଦେଶବାସୀ ମନେମନେ ଉପଲବ୍ଧି କରୁଛନ୍ତି ।

ଦେଶରେ ଜନସଂଖ୍ୟାର ବିସ୍ଫୋରଣ ସହ ଅଶିକ୍ଷା, ଦାରିଦ୍ର୍ୟ ଓ ବେକାରି ବଢ଼ିଚାଲିଛି । ଶାସନଠାରୁ ଆରମ୍ଭ କରି ବିଭିନ୍ନ କ୍ଷେତ୍ରରେ ଯେପରି ଦୁର୍ନୀତି, ପ୍ରିୟାପ୍ରୀତିତୋଷଣ, ଜାତିଆଣ ଭାବ, ଅନ୍ୟାୟ ଓ ଭ୍ରଷ୍ଟାଚାର ବଢ଼ିଚାଲିଛି, ବିଶ୍ୱବିଦ୍ୟାଳୟ ଓ ଶିକ୍ଷାୟତନଗୁଡ଼ିକ ଯେପରି ନିମ୍ନସ୍ତରର ରାଜନୀତିର ବୀଭତ୍ସ ସମରାଙ୍ଗଣ ହୋଇପଡ଼ିଛି, ଏଥିରେ ଏ ଦେଶର ଭାବୀ ନାଗରିକମାନଙ୍କର ଜୀବନ କିପରି ଅନ୍ଧକାରଚ୍ଛନ୍ନ, ତାହା ପ୍ରତ୍ୟେକ ବିବେକୀ ଚିନ୍ତାଶୀଳ ବ୍ୟକ୍ତି ହତାଶ ଭାବରେ ଲକ୍ଷ୍ୟ କରୁଛନ୍ତି । ଏ ପ୍ରକାର ବାତାବରଣରେ ସ୍ୱାଧୀନ, ଚିନ୍ତାଶୀଳ, ସାହସୀ, ଜୀବନ ପ୍ରତି ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧାଶୀଳ ବ୍ୟକ୍ତିର ବିକାଶ ବିଡ଼ମ୍ବନା ମାତ୍ର ।

ଏ ପରିସ୍ଥିତିରେ ପ୍ରତ୍ୟେକ ନାଗରିକର ଆତ୍ମସମୀକ୍ଷାର ସମୟ ଜରୁରି ହୋଇପଡୁଛି । ଭାରତ ଇତିହାସର ପୃଷ୍ଠା ଭାରତୀୟଙ୍କର ଅନୈକ୍ୟତା, ପାରସ୍ପରିକ ବିଦ୍ୱେଷ ଓ ବିଶ୍ୱାସ ଘାତକତା ହେତୁ କଳଙ୍କିତ ହୋଇ ଆସିଛି । ଫଳରେ ଶତାବ୍ଦୀ ଶତାବ୍ଦୀ ଧରି ଭାରତକୁ ବିଦେଶୀ ଶାସକଙ୍କର ଅତ୍ୟାଚାର, ପୀଡ଼ନ ଓ ପରାଧୀନତାର ଶିକାର ହେବାକୁ ହୋଇଛି । ଇତିହାସର ନିର୍ମମ ଶିକ୍ଷା ସତ୍ତ୍ୱେ ସ୍ୱାଧୀନ ଭାରତରେ ସେଇ ହଳାହଳର ପ୍ରକୋପ ପ୍ରଶମିତ ହୋଇ ନାହିଁ । ଶତାବ୍ଦୀ ଶତାବ୍ଦୀର ପରାଧୀନତା ପରେ ବହୁ କଷ୍ଟାର୍ଜିତ ସ୍ୱାଧୀନତା ଦେଶର ସଂହତି ସଂରକ୍ଷଣ କେବଳ ଆମର କର୍ତ୍ତବ୍ୟ ନୁହେଁ, ବ୍ରତ ହେବା ଉଚିତ । ଯେଉଁ ଜାତୀୟ ବୀରମାନେ ଜୀବନର ସମସ୍ତ ସ୍ୱାର୍ଥରେ ଜଳାଞ୍ଜଳି ଦେଇ ଆତ୍ମବଳି ଦେଇଯାଇଛନ୍ତି, ସେମାନଙ୍କର ଜୀବନର ଆଦର୍ଶ, ତ୍ୟାଗର ମହତ୍ତ୍ୱର ଅନୁଶୀଳନ ତଥା ଆଚରଣ ଆମର ପରମ କର୍ତ୍ତବ୍ୟ । ଏ ଦେଶରେ ବିବେକାନନ୍ଦ, ମହାତ୍ମାଗାନ୍ଧୀ, ଯୋଗୀ ଅରବିନ୍ଦଙ୍କ ପରି ପରମ ସାଧକ ଓ ମହାପୁରୁଷମାନଙ୍କର ଅଭାବ ନାହିଁ । ଦେଶ ଓ ସ୍ୱାଧୀନ ନାଗରିକ ଜୀବନର ଗଠନ ପାଇଁ ସେମାନେ ଯେଉଁ ମହାନ୍‌ବାଣୀ ଶୁଣାଇ ଯାଇଛନ୍ତି, ତାହା ଭାରତର ଆକାଶ ବତାସରେ ଅନୁରଣିତ ହେଉଛି । ତେଣୁ ଶିଶୁଠାରୁ ଆରମ୍ଭ କରି ପ୍ରତ୍ୟେକ ଯୁବକ ଓ ବର୍ଷୀୟାନ୍‌ଙ୍କ ଚିନ୍ତାରେ ଏହା (ସ୍ୱାଧୀନତା ଓ ଜାତୀୟ ସଂହତି) ମନ୍ତ୍ର ପରି ସଂକ୍ରମିତ ହେଲେ ଦେଶର ସ୍ୱାଧୀନତା ଓ ସାର୍ବଭୌମତ୍ୱ ଅଖଣ୍ଡ ରହିବା ସଂଗେସଂଗେ ବିଶ୍ୱର ଏକ ଶକ୍ତିଶାଳୀ ରାଷ୍ଟ୍ରଭାବରେ

ଭାରତର ସମ୍ମାନ ଅକ୍ଷୁଣ୍ଣ ରହିବ ଏବଂ ବ୍ୟକ୍ତିଗତ ତଥା ଜାତୀୟ ଜୀବନ କ୍ଷେତ୍ରରେ ଯେଉଁ ଅନୈକ୍ୟତା, ପକ୍ଷପାତିତା, କର୍ତ୍ତବ୍ୟ-ଶିଥିଳତା, ସଂକୀର୍ଣ୍ଣ ବ୍ୟକ୍ତି ସ୍ୱାର୍ଥ ଓ ବିଶୃଙ୍ଖଳ ଆଚରଣ ଲକ୍ଷିତ ହେଉଛି, ତାହା ଦୂରୀଭୂତ ହୋଇପାରିବ ।

ଭାରତର ଅବସ୍ଥାକୁ ଚାହିଁ ଏହାର ବୈଷୟିକ (ବିଜ୍ଞାନ ଓ କାରିଗରି କୌଶଳ) ବିକାଶ ସହ ପାରଂପରିକ ନୈତିକ ତଥା ଆଧ୍ୟାତ୍ମିକ ମାନଦଣ୍ଡ ପ୍ରତି ଯଥୋଚିତ ଧ୍ୟାନ ନ ଦେଲେ ସ୍ୱାଧୀନ, ସାର୍ବଭୌମ ଏ ଗଣତନ୍ତ୍ର ତଥା ସମାଜବାଦୀ ରାଷ୍ଟ୍ରର ପରିପୂର୍ଣ୍ଣ ବିକାଶ କେବେ ସମ୍ଭବ ନୁହେଁ । ଧନତାନ୍ତ୍ରିକ ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକର ବୈଷୟିକ ସମୃଦ୍ଧି ସତ୍ତ୍ୱେ ସେଗୁଡ଼ିକର ସାମାଜିକ ଜୀବନ କିପରି ନଷ୍ଟଭ୍ରଷ୍ଟ, ମାନବ ଜୀବନ କିପରି ପ୍ରାଚୁର୍ଯ୍ୟ ମଧ୍ୟରେ ହତାଶ, ବିଚ୍ଛିନ୍ନତା ବୋଧ ଓ ଅଶାନ୍ତିର କଟାହ ମଧ୍ୟରେ ବିକଳାଙ୍ଗ ତାହା ସମସ୍ତେ ଲକ୍ଷ୍ୟ କରୁଛନ୍ତି । ଗୁଡ଼ାଏ କାରଖାନା, ଗୁଡ଼ାଏ ଶିଳ୍ପ, ଗୁଡ଼ାଏ ନଭଶ୍ଚୁମ୍ବୀ ପଞ୍ଚତାରକା ହୋଟେଲ୍ ପ୍ରତିଷ୍ଠା କଲେ ଭାରତର ଭାଗ୍ୟ ବଦଳି ଯିବନାହିଁ । ନୂତନ ଶିକ୍ଷାନୀତିରେ ଭାରତର ପାରଂପରିକ ମୂଲ୍ୟବୋଧ ପ୍ରତି ଦୃଷ୍ଟିରଖି ବୈଷୟିକ ସମୃଦ୍ଧି ସହ ଏହାର ନାଗରିକମାନଙ୍କର ବୌଦ୍ଧିକ ତଥା ଆତ୍ମିକ ଶ୍ରେୟ ପ୍ରତି ଯେ ବିଶେଷ ଧ୍ୟାନ ଦେବାକୁ ହେବ, ଶିକ୍ଷାଦାନ କ୍ଷେତ୍ରରେ ବ୍ୟବସାୟ ମନୋବୃତ୍ତି ପରିହାର କରି ଏହାକୁ ଜୀବନର ଏକ ବୃତ୍ତି ସହ ବ୍ରତ ଭାବରେ ଯେପରି ଗ୍ରହଣ କରିବାକୁ ହେବ, ସେ ସଂପର୍କରେ ମୋର ସ୍ପଷ୍ଟ ମତପ୍ରକାଶ କରିଥିଲି ।

## ୟୁ.ଜି.ସି.ର କୋହସିପ୍ ଯୋଜନା ଓ ବିଭିନ୍ନ ସ୍ଥାନରେ ଭାଷଣ :

୧୯୮୬, ଡିସେମ୍ବର ୬ ତାରିଖରେ ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟର ଓଡ଼ିଆ ସେମିନାର୍‌ରେ ୟୁ.ଜି.ସି. ର କୋହସିରା ଯୋଜନା ଅନୁସାରେ 'ଭାରତୀୟ ସାହିତ୍ୟ ଶାସ୍ତ୍ର' ଉପରେ ବକ୍ତୃତା ପ୍ରଦାନ କରିଥିଲି । ସଭାରେ ବହୁ ଛାତ୍ରଛାତ୍ରୀ ଓ ବିଭିନ୍ନ ବିଭାଗର ଅଧ୍ୟାପକମାନେ ଉପସ୍ଥିତ ଥିଲେ ।

କଟକର ଅଧ୍ୟାପକ ଡଃ ଦୋଳଗୋବିନ୍ଦ ଶାସ୍ତ୍ରୀଙ୍କ ବାସଭବନରେ ଭଂ ଗୁଣନିଧି ତ୍ରିପାଠୀଙ୍କ 'ସତ୍‌ସଙ୍ଗର ପ୍ରଭାବ' ଶୀର୍ଷକ ପୁସ୍ତକ ଉଦ୍‌ଘାଟନ କରିଥିଲି ମୁଖ୍ୟ ଅତିଥି ଭାବରେ । ଏଥିରେ ମାତୃଭୂମିର ସଂପାଦକ ଚିଚ୍ଚିଦ୍ରାନନ୍ଦ କର (ବର୍ତ୍ତମାନ ସ୍ୱର୍ଗୀୟ) ସଭାପତିତ୍ୱ କରିଥିଲେ । ଅଧ୍ୟାପକ ଗୋପୀନାଥ ମିଶ୍ର, ଲେଖକ ଓ ଅନ୍ୟ ଦୁଇଜଣ ଅଧ୍ୟାପକ ପୁସ୍ତକ ସଂପର୍କରେ ଆଲୋଚନା କରିଥିଲେ । ଉତ୍ସବଟିର ଆୟୋଜନ କରିଥିଲେ ପରମାନନ୍ଦ ଅଧିକାରୀ (ବର୍ତ୍ତମାନ ସ୍ୱର୍ଗୀୟ) ।

ଏକ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣରେ ସ୍ୱଳ୍ପ ସମଧର୍ମା ବ୍ୟକ୍ତିଙ୍କୁ ନେଇ ଏକ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଅନୁଷ୍ଠାନ ଗଠନ ପାଇଁ ପ୍ରସ୍ତାବ ହୋଇଥିଲା ଏବଂ ବିଭିନ୍ନ ବନ୍ଧୁଙ୍କ ବାସଭବନରେ ଅନୁଷ୍ଠାନଟିର ଏକ ଏକ ସଭା ହେବାର ସ୍ଥିରୀକୃତ ହୋଇଥିଲା ।

କିଛିବର୍ଷ ଧରି ଭୁବନେଶ୍ୱର ଲେଖକ ସାମ୍ମୁଖ୍ୟ ପକ୍ଷରୁ ଓଡ଼ିଶାର ବିଭିନ୍ନ ସ୍ଥାନରେ (ରାଉରକେଲା, ପାରଳାଖେମୁଣ୍ଡି, କେନ୍ଦୁଝର) ବାର୍ଷିକ ସାହିତ୍ୟୋତ୍ସବମାନ ଅନୁଷ୍ଠିତ ହୋଇଥିଲା । ସେଥିରେ ଅନ୍ୟମାନଙ୍କ ସହ ଯୋଗଦାନ କରି ସଭାର ବିଭିନ୍ନ ଅଧିବେଶନ ମାନଙ୍କରେ ଭାଷଣ ପ୍ରଦାନ କରିଥିଲି ।

ବିଭିନ୍ନ ସମୟରେ କଟକ ଆକାଶବାଣୀ ପକ୍ଷରୁ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବ ସଂପର୍କରେ ଭାଷଣମାନ ଦେଇଥିଲି । ୧୪/୧/୮୬ ମକର ସଂକ୍ରାନ୍ତିରେ ଫକୀର ମୋହନଙ୍କ ସାହିତ୍ୟକୃତି ଉପରେ ଭାଷଣ ଏବଂ ନିକଟ ଅତୀତରେ 'ଭାଷା ଶିକ୍ଷାରେ ବର୍ଣ୍ଣବୋଧ' ଶୀର୍ଷକ ଭାଷଣ ତା'ର ଦୃଷ୍ଟାନ୍ତ ।

୮/୨/୮୬ ରେ କଟକ ବାରବାଟୀ ଲଜ୍‌ରେ ଥିଓସୋଫିକାଲ୍ ସୋସାଇଟିରେ 'ବସ୍ତୁ ତାତ୍ତ୍ୱିକତା ବନାମ ଆଧ୍ୟାତ୍ମିକତା' ସଂପର୍କରେ ଭାଷଣ ପ୍ରଦାନ କରିଥିଲି । ପରେ 'ସାର୍ବଜନୀନ ଧର୍ମ' ସଂପର୍କରେ ଏକ ଭାଷଣ ପ୍ରଦାନ କରିବାକୁ ଅନୁରୁଦ୍ଧ ହୋଇଥିଲି ।

୧୩/୨/୮୬ ରେ ମହାନଦୀ ବିହାର ମହିଳା ମହାବିଦ୍ୟାଳୟରେ ବିଶିଷ୍ଟ ଶିଳ୍ପପତି ଶ୍ରୀ ବୀରଭଦ୍ର ପ୍ରସାଦ ନନ୍ଦ ତାଙ୍କର ସ୍ୱର୍ଗୀୟ ପତ୍ନୀ ବନଲତା ଦେବୀଙ୍କ ଉଦ୍ଦେଶ୍ୟରେ ଏକ ପାଠାଗାର (ପୁସ୍ତକ ସହ) ଦାନ କରିଥିଲେ । ମୁଖ୍ୟଅତିଥି ଭାବରେ ଯୋଗଦାନ କରି ଭାରତୀୟ ସାଂସ୍କୃତିକ ପରଂପରାରେ ଦାନ ଓ ତ୍ୟାଗର ମହତ୍ତ୍ୱ ସଂପର୍କରେ ଆଲୋଚନା କରିଥିଲି ଏବଂ ପାଠାଗାର ଉଦ୍‌ଘାଟନ କରିଥିଲି ।

୧୬/୨/୮୬ ଦିନ ତିର୍ତ୍ତୋଲ ଆଦିକବି ସାରଳା ଦାସ ମହାବିଦ୍ୟାଳୟରେ ମୁଖ୍ୟଅତିଥି ଭାବରେ ଯୋଗଦାନ କରି ସାରଳା ଦାସଙ୍କ କବିତ୍ୱ ଏବଂ ବର୍ତ୍ତମାନ ପରିପ୍ରେକ୍ଷୀରେ ସାରଳା ସାହିତ୍ୟର ପୁନର୍ମୂଲ୍ୟାୟନ ଓ ଉପଯୋଗିତା ଉପରେ ଆଲୋକପାତ କରିଥିଲି । ୧୭/୨/୮୬ରେ ସାରଳା ମନ୍ଦିର ସମ୍ମୁଖରେ ମହାକବି ସାରଳା ଦାସ ଶ୍ରାଦ୍ଧୋତ୍ସବରେ (ମାଘ ସପ୍ତମୀ) ସାରଳା ସାହିତ୍ୟ ସଂପର୍କରେ ଆଲୋଚନା କରିଥିଲି । ସଭାପତିତ୍ୱ କରିଥିଲେ ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ । ଝଙ୍କଡ଼ ନିକଟବର୍ତ୍ତୀ 'ଗନାଇଲୋ' ରେ ୨୧/୪/୯୬ ରେ ଭାଗବତ ମେଳନରେ ରାମାୟଣ ଉପରେ ଭାଷଣ ଦେଇଥିଲି ।

ଆଖପାଖ ଗାଁର ଭାଗବତ ଟୁଙ୍ଗିବାଲା ବିମାନରେ ଭାଗବତ ମେଳନ ପାଇଁ ଆସିଥିଲେ । ପ୍ରତ୍ୟେକ ବିମାନ ଆଗରେ ପତିତପାବନ ମୂର୍ତ୍ତି ଏବଂ ପଛରେ ଭାଗବତ ଗାଦି । କେହି କେହି ପୋଥି କେହି କେହି ବହି ଆଣିଥିଲେ । ପତିତପାବନ ମୂର୍ତ୍ତି ନଥିଲେ କେହି କେହି ରାଧାକୃଷ୍ଣ ଛବି ଆଣିଥିଲେ ।

୩୫ ବର୍ଷ ହେଲା ଗ୍ରାମବାସୀ ଭାଗବତ ମେଳନ କରି ଆସୁଛନ୍ତି ହଂସୁଆ ନଦୀ କୂଳରେ । ଏହାଥିଲା ପ୍ରକୃତ କାଡଯୋଡ଼ୀ, ଏଠାରେ ତା'ର ଅନ୍ୟ ନାମ ହଂସୁଆ । ହଂସୁଆରୁ ପ୍ରାଚୀ ନଦୀ ବାହାରି ଥିଲା । ଏଥିରେ ପୂର୍ବରୁ ପାଲଟଣା ବୋଇତ ଆସୁଥିଲା । ଓଡ଼ିଶାରେ ଏଇ ସ୍ଥାନରେ କେବଳ ଭାଗବତ ମେଳଣ ଦେଖାଯାଏ । ଅଧ୍ୟାପକ ରାମଚନ୍ଦ୍ର ତ୍ରିପାଠୀ ସ୍ଥାନ

ଓ ମେନକାର ସୂଚନା ଦିଅନ୍ତି । ବିଚିତ୍ରାନନ୍ଦ କର, ରାମଚରିତ୍ର ଓ ମୁଁ ବିଶ୍ୱର ସାଂପ୍ରତିକ ପରିପ୍ରେକ୍ଷୀରେ ରାମାୟଣ ଓ ଭାଗବତର ପ୍ରାସଙ୍ଗିକତା ସଂପର୍କରେ କହିଥିଲି ।

୨୨/୨/୮୬ରେ ଉତ୍କଳ ସାହିତ୍ୟ ସମାଜ ଗୃହ ଶ୍ରୀରାମଚନ୍ଦ୍ର ଭବନରେ ପୂଜ୍ୟପୂଜା ଏକାଡେ଼ମୀର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଅନୁଷ୍ଠାନର ଉଦ୍‌ଘାଟକ ଥିଲେ ତତ୍‌କାଳୀନ ସିକିମ ହାଇକୋର୍ଟର ମୁଖ୍ୟ ବିଚାରପତି ମାନ୍ୟବର ଯୁଗଳ କିଶୋର ମହାନ୍ତି । ଏଥିରେ ହିନ୍ଦ ସେନକ ସଂଘର ସଭାପତି ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ରୋଟାରୀ ଜିଲ୍ଲାର ଗଭର୍ଣ୍ଣର ଶ୍ରୀ ଗୋବିନ୍ଦଚନ୍ଦ୍ର ସେନାପତିଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା । ଜଣେ ଆଲୋଚକ ଭାବରେ ଯୋଗଦାନ କରି ପୂଜ୍ୟପୂଜାର ପରଂପରା ଏବଂ ସାଂପ୍ରତିକ ପରିପ୍ରେକ୍ଷୀରେ ପୂଜ୍ୟପୂଜାର ତ୍ରୁଟି ସଂପର୍କରେ ଆଲୋଚନା କରି ନିରପେକ୍ଷତା, ଶ୍ରଦ୍ଧା, ଆନ୍ତରିକତା ସଂପର୍କରେ ଆଲୋଚନା କରିଥିଲି ଏବଂ ପୂଜ୍ୟ ସମ୍ମାନିତ ବ୍ୟକ୍ତିଙ୍କ ପକ୍ଷରେ ଦେଶ ଓ ଜାତିର ଅନାସକ୍ତ ନିଃସ୍ୱାର୍ଥ ସେବା, ଦେଶପ୍ରୀତିର ଭୂମିକା ସଂପର୍କରେ ସୂଚନା ଦେଇଥିଲି ।

## ଉତ୍ତର ଭାରତ ଭ୍ରମଣ :

ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ (ନିଉ ଦିଲ୍ଲୀ) ଅରୁଣର (ବର୍ତ୍ତମାନ ବରିଷ୍ଠ ଆଇ.ଏ.ଏସ୍. ଅଫିସର୍) ଅଧ୍ୟୟନ କାଳରେ ଦିଲ୍ଲୀ ଯିବାପାଇଁ ସେ ବହୁବାର ପତ୍ର ଦେଇଛି, କିନ୍ତୁ ନାନା କାରଣରୁ ଦୀର୍ଘ ଯାତ୍ରାପାଇଁ ମାନସିକ ପ୍ରସ୍ତୁତି ହୋଇନଥାଏ । ଯାହାହେଉ ୩/୩/୮୬ରେ ନୂଆଦିଲ୍ଲୀ ଯିବାପାଇଁ ପୂର୍ବରୁ ସିଟ୍ ରିଜର୍ଭେସନ୍ କରିଦେଲି ।

ମାର୍ଚ୍ଚ ୩ ତାରିଖରେ ଶାନ୍ତି ଓ ମୁଁ ପ୍ରସ୍ତୁତ ହୋଇଗଲୁଁ, ସଙ୍ଗରେ ଗଲେ କକ (ଝିଅ ମହାତପା) ଓ ପିନୁ (ପିନାକୀ) । ଷ୍ଟେସନ୍‌ରେ ପହଞ୍ଚି ଶୁଣିଲୁଁ ଯେ ବାରଙ୍ଗଠାରେ ଏକ ରେଲଡ଼ବା ଲାଇନ୍ ଚ୍ୟୁତ ହୋଇଥିବାରୁ ନୂଆଦିଲ୍ଲୀଗାମୀ ସୁପର୍‌ଫାଷ୍ଟ ନୀଳାଚଳ ଏକ୍ସପ୍ରେସ୍ ଭୁବନେଶ୍ୱରରୁ ସିଧା କଟକ ନ ଆସି ଅନ୍ୟ ବାଟରେ କପିଳାସ ରୋଡ଼ରେ ଅପେକ୍ଷା କରିଥିବ । ତେଣୁ କଟକରୁ ସ୍ୱତନ୍ତ୍ର ଏକ ଟ୍ରେନ୍‌ରେ ଆମେ ଦିନ ୧୨.୩୦ ରେ କପିଳାସ ରୋଡ଼ ଯାତ୍ରା କଲୁଁ । ତପନ, କୈଳାସ, ସେବା (ଛାତ୍ର) କଟକ ଷ୍ଟେସନରେ ଆମକୁ ବିଦାୟ ଦେଇଥିଲେ । ସାଙ୍ଗରେ ଭାଇ ଶମ୍ଭୁ କପିଳାସ ରୋଡ଼ ପର୍ଯ୍ୟନ୍ତ ଯାଇଥିଲା ।

କପିଳାସ ରୋଡ଼ରେ ଶମ୍ଭୁ ଆମ୍ଭମାନଙ୍କୁ ନୀଳାଚଳର ଇ କୋଚରେ ବସାଇ ନେଇ କଟକ ଫେରିଗଲା । ଆମର ୩୩, ୩୪, ଓ ୩୫ ନଂ ବର୍ଥ ରିଜର୍ଭ ହୋଇଥାଏ । ତେଣୁ ସୁବିଧାରେ ଆମର ଜିନିଷପତ୍ର ଆମେ ଅପର ବର୍ଥରେ ରଖିଲୁଁ । ଲୋଅର ବର୍ଥରେ ଆମେ ବସିଲୁଁ ।

ଆମ ସାମନାପାଖ ତିନୋଟି ସିଟ୍‌ରେ ଢେ଼ଙ୍କାନାଳର ଦୁଇଜଣ ମାରଆଡ଼ି ରିଜର୍ଭ କରି ନୂଆଦିଲ୍ଲୀ ଯାଉଥାନ୍ତି, ରାଜସ୍ଥାନ ଯିବାପାଇଁ । ସାଙ୍ଗରେ ତାଙ୍କର ତିନିଜଣ ସ୍ତ୍ରୀ ଲୋକ,

ଓ ତିନୋଟି ଛୁଆ । ଜିନିଷପତ୍ର ଗୁଡ଼ାଏ । ସେମାନଙ୍କ ସିଟ୍‌ତଳେ ଚାରିଟା ବଡ଼ ବଡ଼ ଟ୍ରଙ୍କ ରଖିଦେବାରୁ ଏବଂ ଆମ ସିଟ୍‌ତଳେ ଓ ଅପର ବର୍ଥରେ ତାଙ୍କର ଅନ୍ୟ ଜିନିଷ ରଖିଦେବାରୁ ଆମକୁ ଦିଲ୍ଲୀରେ ପହଞ୍ଚିବା ପର୍ଯ୍ୟନ୍ତ ନାନା ଅସୁବିଧା ହୋଇଥିଲା । ସେମାନେ ଘରୁ ତିଆରି କରି ଆଣିଥିବା ପୁରି, ଗଜା, ଚଟଣିରେ ତାଙ୍କର ମଧ୍ୟାହ୍ନ ଭୋଜନ, ଜଳଖିଆ, ରାତ୍ରିଭୋଜନ ଓ ତହିଁ ଆରଦିନ ଦିବାଭୋଜନ (ଦିଲ୍ଲୀ ପର୍ଯ୍ୟନ୍ତ) ଚଳାଇଥିଲେ । ଦୀର୍ଘ ୩୦ ଘଣ୍ଟାକାଳ ସେମାନଙ୍କ ସହ ଏ ଅନୁଭୂତି ହେଲା ଯେ ସେମାନେ ନିଜର ଅର୍ଥ ଓ ବ୍ୟକ୍ତିଗତ ସ୍ୱାର୍ଥ ସୁବିଧା ଛଡ଼ା ପ୍ରତିବେଶୀ/ସହଯାତ୍ରୀର ସୁବିଧା ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ, ଅଥଚ ମୌଖିକ ଭଦ୍ରତା ଓ ଅଯଥା କ୍ଷମା ପ୍ରାର୍ଥନାର ଅନ୍ତ ନଥାଏ । ସେମାନଙ୍କ ସ୍ତ୍ରୀଲୋକମାନଙ୍କ ଆଚରଣରେ ସେଇ ସଂକୀର୍ଣ୍ଣ ସ୍ୱାର୍ଥ ଆତ୍ମକୈନ୍ଦ୍ରିକତା ବ୍ୟତୀତ ଅନ୍ୟ କିଛି ଲକ୍ଷ୍ୟ କରି ନାହିଁ, ଏପରିକି କେତେକ ସାଧାରଣ ସୌଜନ୍ୟ ଓ ଶିଷ୍ଟାଚାରର ଅଭାବ ଲକ୍ଷ୍ୟ କଲି ।

ଘରୁ ତିଆରି ହୋଇ ଆସିଥିବା ରୁଟି, ତରକାରିରେ ରାତ୍ରିଭୋଜନ କୌଣସିମତେ ସନ୍ଧ୍ୟା ୭.୩୦ରେ ସାରିଦିଆଗଲା । ଖଡ଼୍‌ଗପୁରରେ ମାରୁଆଡ଼ି ସହଯାତ୍ରୀମାନେ ଯେପରି ଶୋଇବାର ଆୟୋଜନରେ ଲାଗିଗଲେ, ପୁଣି ତଳ ଦୁଇ ବର୍ଥର ମଝିଫାଙ୍କ ଜାଗାରେ ଟ୍ରଙ୍କ ଯୋଡ଼ି ବିଛଣା ପାରି ରାତି ଶେଷ ପର୍ଯ୍ୟନ୍ତ ଘୁଙ୍ଗୁଡ଼ି ମାରି ଚାଲିଲେ ସେଥିରେ କି ନିଦହୁଏ ? ଶାନ୍ତି ଓ ପିନୁ ମଝି ବର୍ଥରେ ଶୋଇଲେ, ମୁଁ ଓ କକ ତଳ ବର୍ଥରେ । ଅଧା ନିଦ ଅଧା ଅନିଦ୍ରାରେ କୌଣସି ମତେ ରାତି ପାହିଲା, ବିଶେଷତଃ ଚୋରି ଓ ଜିନିଷ ଉଠେଇ ଦେବା ଭୟ ହେତୁ ଅର୍ଦ୍ଧ ନିଦ୍ରିତ ଓ ଅର୍ଦ୍ଧ ଜାଗରିତ ଅବସ୍ଥାରେ ରହିବାକୁ ହେଉଥାଏ ।

ବିହାର ଓ ଉତ୍ତର ପ୍ରଦେଶରେ ଗାଡ଼ି ଚାଲୁଥିବା ସମୟରେ ଶୀତ ଲାଗିବାରୁ ଶାଲ ବାହାର କରି ଘୋଡ଼େଇ ହେଲୁଁ । ମୋଗଲ ସରେଇ ଷ୍ଟେସନ୍‌ରେ ଗାଡ଼ି ପହଞ୍ଚିଲାବେଳକୁ ଅନ୍ଧାର ଥାଏ, କିନ୍ତୁ ପାହାନ୍ତା ହୋଇଯାଇଥାଏ । ଅନ୍ୟ ଷ୍ଟେସନ୍‌ଗୁଡ଼ିକ ଜାଣିବାରେ କୌଣସି ଅସୁବିଧା ହୋଇନାହିଁ । ମୀର୍ଜାପୁର, ଏଲାହାବାଦ, କାନପୁର, ଆଲିଗଡ଼ ପ୍ରଭୃତି ବଡ଼ ବଡ଼ ଷ୍ଟେସନ୍‌ମାନଙ୍କରେ ଖାଦ୍ୟ ଓ ଫଳର ଦରଦାମ ଖୁବ ବେଶି । ବଡ଼ ବଡ଼ ଷ୍ଟେସନମାନଙ୍କରେ ଲୋକଭିଡ଼ ଟିକିଏ ଟିକିଏ ବଢୁଥାଏ । କିନ୍ତୁ ସହଯାତ୍ରୀକୃତ ଅସ୍ୱସ୍ତିକୁ ଛାଡ଼ିଦେଲେ ଆମର କିଛି ଅସୁବିଧା ହୋଇନାହିଁ । ଦିନ ୧.୩୦ରେ ରେଲବାଇ ଡାଇନିଂ କୋଚରୁ ଆସିଥିବା ମିଲ୍‌ରେ ମଧ୍ୟାହ୍ନ ଭୋଜନ ଅଗାଧିଆ ସାରିବାକୁ ହେଲା । ସେଥିରେ କି ଭୋକ ମରେ ? ଟଙ୍କା ଖର୍ଚ୍ଚର ସୀମା ନାହିଁ, ଅଥଚ ଅର୍ଦ୍ଧଭୁକ୍ତ ଅବସ୍ଥାରେ ରହିବାକୁ ହେଉଥାଏ । ଏଇ ହେଉଛି ଆମ ଭାରତର ଅବସ୍ଥା । ସବୁଠି ବ୍ୟବସାୟୀ- ନୀତି; ଯାତ୍ରୀର ଅସୁବିଧା ବୁଝିବାକୁ କେହି ନାହିଁ ।

କଟକରୁ ପଦାର୍ଥ ବିଜ୍ଞାନର ଅବସର ପ୍ରାପ୍ତ ପ୍ରାଧ୍ୟାପକ ହିମାଂଶୁ ଶେଖର ପଟ୍ଟନାୟକ ଓ ତାଙ୍କର ସ୍ତ୍ରୀ ପୁଣ୍ୟପ୍ରଭା ଦେବୀ ଆମ ପାଖ ବର୍ଥରେ ଦିଲ୍ଲୀ ଯାଉଥାନ୍ତି । ପ୍ରଫେସର୍

ବାମାଚରଣ ଦାସଙ୍କ ବଡ଼ ଝିଅ ମଧ୍ୟ ତାଙ୍କ ସ୍ୱାମୀଙ୍କ ସହ ଆମ ସାଙ୍ଗରେ ଦିଲ୍ଲୀ ଯାଉଥାନ୍ତି । ପୁଣ୍ୟପ୍ରଭା ଦେବୀଙ୍କ ସହ ଶାଚିର ନାନା ବିଷୟରେ ଆଲୋଚନା ଚାଲେ । ଦୁଃଖର ବିଷୟ ଶ୍ରୀ ପଟ୍ଟନାୟକ ବାଲେଶ୍ୱର ଷ୍ଟେସନରେ ଦିନ ୩.୩୦ରେ ପ୍ଲାଟ୍‌ଫର୍ମକୁ ଚା' ଆଣିବା ପାଇଁ ଯାଇ ତାଙ୍କର ସୁଟ୍‌କେଶ୍‌ଟିକୁ ହରାନ୍ତି, ସେଥିରେ ତାଙ୍କର ଗୁଡ଼ିଏ ପେଣ୍ଟ ସାର୍ଟ, ସ୍ତ୍ରୀଙ୍କର ଶାଢ଼ୀ, କେତୋଟି ଟ୍ରାଭେଲର୍‌ସ ଚେକ୍ ଓ ୧୨୦୦ ଟଙ୍କା ଥିଲା । ଏ ଘଟଣାରେ ଆମେ ବିଶେଷ ଦୁଃଖିତ ହୋଇ ପଡ଼ିଲୁଁ । ଶ୍ରୀ ପଟ୍ଟନାୟକ ଖଡ଼ଗ୍‌ପୁର ଷ୍ଟେସନ୍‌ରେ ଅବଶ୍ୟ F.I.R. କରିଥିଲେ, କିନ୍ତୁ ସେଥିରେ କ'ଣ ଜିନିଷ ମିଳେ ? ଏ ଘଟଣାର ପ୍ରତିକ୍ରିୟା ସ୍ୱରୂପ ଆମକୁ ରାତିସାରା ଅର୍ଦ୍ଧନିଦ୍ରିତ ଅବସ୍ଥାରେ ଯାତ୍ରା କରିବାକୁ ହେଲା ।

ସଂଧ୍ୟା ୭ଟାରେ (୪-୩-୮୬) ନୀଳାଚଳ ନିଉଦିଲ୍ଲୀ ଷ୍ଟେସନ୍‌ରେ ପହଞ୍ଚେ ୯ ନଂ ପ୍ଲାଟ ଫର୍ମରେ । ଜିନିଷପତ୍ର ଓହ୍ଲେଇ ପ୍ଲାର୍ଟ ଫର୍ମରେ ପିଲାମାନଙ୍କ ସହ ଅରୁଣକୁ ଅପେକ୍ଷା କରୁଁ । ମାରବାଡ଼ି ଯାତ୍ରୀ ତାଙ୍କର ତଥାକଥିତ ଭଦ୍ରତା ଜଣାଇ ତାଙ୍କର ବିପୁଳ ମାଲ ସହ ଯାତ୍ରା କରନ୍ତି । ପ୍ଲାର୍ଟଫର୍ମ କ୍ରମଶଃ ଯାତ୍ରାଶୂନ୍ୟ ହେବାକୁ ଯାଉଥାଏ । ପ୍ରାୟ ୧୫ ମିନିଟ୍‌ରେ ଅରୁଣ ବ୍ୟସ୍ତ ହୋଇ ଆମ ଆଡ଼କୁ ଦୌଡୁଛି । ପିଲାମାନଙ୍କ ଖୁସି କହିଲେ ନ ସରେ । ଶ୍ରବାରେ ପିଲାମାନଙ୍କୁ କୋଳେଇ କାଖେଇ ନେଇଯାଏ । ପ୍ରତ୍ୟେକ କିଛି କିଛି ଜିନିଷ ଧରି ଓଭର୍ ବ୍ରିଜ୍‌ରେ ଷ୍ଟେସନ୍ ବାହାରକୁ ଗଲୁଁ । ଗୋଟିଏ ଟାକ୍ସି ରିଜର୍ଭ କରି ଅରୁଣର ଜେ.ଏନ୍.ୟୁ. ବସାରେ ରାତି ୮ଟାରେ ପହଞ୍ଚିଲୁଁ । ଅରୁଣର ସାଙ୍ଗମାନେ ଆସି ଦେଖାକରି ଖୁସି ହୋଇ ଯାଆନ୍ତି । ଦିଲ୍ଲୀ ରହଣି ସମୟରେ ଆମେ ଦିଲ୍ଲୀର ବିଭିନ୍ନ ଦର୍ଶନୀୟ ସ୍ଥାନ, ପରେ ଆଗ୍ରା, ତାଜମହଲ, ଫତେପୁରସିକ୍ରୀ, ସିକନ୍ଦର ଆଗ୍ରା, ହରଦ୍ୱାର, ଋଷିକେଶ ଆଦି ଭ୍ରମଣ କଲୁଁ ।

## ଜୟପୁର ଓ ଉଦୟପୁର :

ଅରୁଣ ସହ ଆମେ ସମସ୍ତେ ରାଜସ୍ଥାନର ଜୟପୁର ଓ ଉଦୟପୁର ଯାତ୍ରା କରୁଁ । ଅରୁଣର ସହପାଠୀ ଅଜୟ ଶର୍ମା ର ସହାୟତାରେ ଆମେ ଜୟପୁର ସର୍କିଟ ହାଉସ୍‌ରେ ରହି ବିଭିନ୍ନ ସ୍ଥାନ ଦର୍ଶନ କରୁଁ । ଜୟପୁରର ସୁଦୃଶ୍ୟ କାରୁକାର୍ଯ୍ୟ ଶୋଭିତ ରାଜପ୍ରସାଦ ସହ ପାର୍ବତ୍ୟ ଉପତ୍ୟକାରେ ପୁରାତନ ହାଓଆ ମହଲ ଅମ୍ବର ରାଜପ୍ରସାଦ ଦେଖିଆସୁଁ । ଜୟପୁରରେ ବିରଳା ମନ୍ଦିର, ଶିଶୋଦୀୟ ଭବନ, ସୂର୍ଯ୍ୟଘଡ଼ି ଦର୍ଶନ ସହ ହସ୍ତୀପୃଷ୍ଠରେ ବସିବାର ଅନୁଭୂତି ହୁଏ ।

ଦୁଇଦିନ ପରେ ମିଟର୍‌ଗଜ ରେଳରେ ଉଦୟପୁର ଯାତ୍ରା ଚାଲେ । ଉଦୟପୁରରେ ପହଞ୍ଚିବା ପୂର୍ବରୁ ଦୂରରୁ ପ୍ରାଚୀରର ଶୋଭାସହ ଆରାବଳୀ ପର୍ବତର ଦୃଶ୍ୟ ଆମର ଦୃଷ୍ଟି ଆକର୍ଷଣ କରେ । ସେଠାରେ ମଧ୍ୟ ଗେଷ୍ଟ ହାଉସ୍‌ରେ ରହିବାର ବ୍ୟବସ୍ଥା ହୋଇଥାଏ । ଉଦୟପୁର ରହଣି ସମୟରେ ଉଦୟପୁର ରାଜପ୍ରାସାଦ, ମୀରାବାଈଙ୍କ ଭଜନ ମନ୍ଦିର, ପ୍ରକାଣ୍ଡ

ପିଚୁଳା ହ୍ରଦରେ ଏକ ପ୍ରାସାଦ, ସହେଲିବାଗାନ୍ ଏବଂ ହ୍ରଦ ତୀରରେ ରାଣା ପ୍ରତାପଙ୍କର ବିରାଟ ମୂର୍ତ୍ତି ଦର୍ଶନ କଲୁଁ । ଉଦୟପୁରରେ ହଳଦୀଘାଟ ଦର୍ଶନ କରି (ରାଣା ପ୍ରତାପଙ୍କ ବ୍ୟବହୃତ ଘୋଟକ ଚେତକ ମୂର୍ତ୍ତି ସହ) ଏକନାଥ ଶିବଙ୍କୁ ଦର୍ଶନ କଲୁଁ, ଯେଉଁଠି ହରିଜନ ଭକ୍ତଙ୍କର ଦର୍ଶନ ନିଷେଧ ନଥିଲା । କେତେକ ଟୁରିଷ୍ଟ୍ ଗାଇଡ୍ ପୁସ୍ତିକା ସଂଗ୍ରହ କରି ଦୁଇଦିନ ପରେ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ କରୁଁ ।

## ମାୟାପୁର ଯାତ୍ରା :

ଅରୁଣ ଉତ୍ତର ଚବିଶିପ୍ରଗଣାରେ ଏ.ଡ଼ି.ଏମ୍. ଥିଲାବେଳେ ଆମେ ଶାନ୍ତି ଓ ପୀନୁ ସହ ୨୭/୧୨/୯୨ରେ ମାୟାପୁର ଯାତ୍ରା କରିଥିଲୁଁ । ସେଠାରେ ଚୈତନ୍ୟ ମଠ ଓ ଚୈତନ୍ୟଙ୍କ ଜନ୍ମସ୍ଥାନ ଦେଖିଲୁଁ । ଚୈତନ୍ୟ ମଠରୁ 'ହରିନାମାମୃତ ବ୍ୟାକରଣ' ଓ 'ଶ୍ରୀ ଶ୍ରୀ ଭଜନ ରହସ୍ୟ' କ୍ରୟ କଲୁଁ । ତା'ପରେ ଇସ୍କନ୍ ମନ୍ଦିରକୁ ଗଲୁଁ । ସେଠାରେ ବିଭିନ୍ନ ମନ୍ଦିର ନିର୍ମିତ ହୋଇଥିଲା । ମନ୍ଦିରର ଚିଡ଼ିଆଖାନା ଓ ପାର୍କ ଦେଖି ଶ୍ୟାମଙ୍କ ମନ୍ଦିର ଦର୍ଶନ କଲୁଁ । ବହୁ ଯାତ୍ରୀଙ୍କର ଆଗମନ ହୋଇଥାଏ । ପ୍ରଥମେ ନୃସିଂହ ମନ୍ଦିର ଖୋଲାଗଲା, ତା'ପରେ ଖୋଲାଗଲା ଶ୍ୟାମ ଓ ରାଧାଙ୍କ ମନ୍ଦିର । କୀର୍ତ୍ତନ ଚାଲୁଥାଏ । ଅଷ୍ଟସଖୀ ପରିବେଷ୍ଟିତ ରାଧାକୃଷ୍ଣ ଦର୍ଶନ, ଶ୍ରୀ ଚୈତନ୍ୟଙ୍କ ଜୀବନୀ ଆଧାରିତ ଭିତ୍ତିମୂର୍ତ୍ତିଗୁଡ଼ିକ ଦର୍ଶନ କଲୁଁ । ତା'ପରେ ପ୍ରସାଦ କ୍ରୟ କରି ବାରାସତ ପ୍ରତ୍ୟାବର୍ତ୍ତନ କଲୁଁ । ଚବିଶିପ୍ରଗଣା ଓ ନଦିୟା ଜିଲ୍ଲାର ରାସ୍ତାର ଦୁଇ ପାର୍ଶ୍ୱରେ ଗହମ, ସୋରିଷ ଓ ଅନ୍ୟାନ୍ୟ ବହୁ ଫସଲ ଦିଗନ୍ତ ବିସ୍ତାରୀ । ପଥରେ କଲ୍ୟାଣୀ ଓ ଶାନ୍ତିପୁର ରାସ୍ତା ଦେଖିବାକୁ ମିଳିଲା ।

## ଗଙ୍ଗାସାଗର ଯାତ୍ରା :

୨୯/୧୨/୯୨ରେ ଦକ୍ଷିଣ ଚବିଶି ପ୍ରଗଣାର କଲେକ୍ଟରଙ୍କ ବ୍ୟବସ୍ଥାରେ ୧୨.୩୦ ରେ ଶାନ୍ତି ଓ ପୀନୁ ସହ ଗଙ୍ଗାସାଗର ଯାତ୍ରା ଆରମ୍ଭ ହୁଏ । ଡାଏମଣ୍ଡ ହାର୍ବର୍‌ରେ ପହଞ୍ଚି ଅନ୍ୟ ଏକ ଗାଡ଼ିରେ ଯାତ୍ରା କରୁଁ ।

ଡାଏମଣ୍ଡ ହାର୍ବର୍‌ରେ ନୌକା ଓ ଜାହାଜ ଥାଏ । ଗଙ୍ଗା ସେଠି ଅତିବିସ୍ତୃତ, ସମୁଦ୍ର ସହ ମିଶିଛି । ପଶ୍ଚିମବଙ୍ଗ ସରକାରଙ୍କ ଲଞ୍ଚରେ କାକଦ୍ୱୀପ ଛାଡ଼ି ସମୁଦ୍ରରେ ପ୍ରାୟ ୬/୭ ମାଇଲ୍ ଯାତ୍ରା କରି ସାଗର ଦ୍ୱୀପର କଚୁଗାଡ଼ିୟାରେ ୩.୫୦ ରେ ପହଞ୍ଚିଲୁ । ସେଠାରୁ ରୁଦ୍ରପୁର ପଞ୍ଚାୟତ ସମିତି ବି.ଡ଼ି.ଓ.ଙ୍କ କାର୍‌ରେ ଆମେ ଦିନ ୫ଟାରେ ଜିଲ୍ଲା ପରିଷଦର ଗେଷ୍ଟ ହାଉସ୍‌ରେ ପହଞ୍ଚୁ । ୩୦/୧୨/୯୨ ସକାଳୁ ସ୍ନାନ ସାରି ଏକ ଟ୍ରଲି ରିକ୍ସାରେ ଗଙ୍ଗାସାଗର ସଂଗମର ବିଭିନ୍ନ ମନ୍ଦିର ସାଗର ବୁଡ଼ାପକା ସ୍ଥାନ ଦେଖିଲୁଁ । ମନ୍ଦିରଗୁଡ଼ିକ ହେଲା :- (୧) ଭାରତ ସେବାଶ୍ରମର ଗୁରୁଗଙ୍ଗା, ଶିବମନ୍ଦିର, (୨) ଶିବଗଙ୍ଗା ମନ୍ଦିର,

(୩) ଲକ୍ଷ୍ମୀନାରାୟଣ ମନ୍ଦିର, (୪) ସମୁଦ୍ର ତୀରସ୍ଥ ଗଙ୍ଗା, କପିଳ ଓ ସାଗର ରାଜାମନ୍ଦିର, ଇନ୍ଦ୍ରଙ୍କର ଅଷ୍ଟମୂର୍ତ୍ତି, ଦେବୀଙ୍କର ଏକମୂର୍ତ୍ତି, (୫) ଓଁକାରନାଥ ଲକ୍ଷ୍ମୀନାରାୟଣ ମୂର୍ତ୍ତି, ରାମମୂର୍ତ୍ତି ।

ସମୁଦ୍ର କୂଳରେ ଆଗାମୀ ଗଙ୍ଗାସାଗର ମେଳାପାଇଁ ସରକାର ଓ ସାଧାରଣଙ୍କ ତରଫରୁ ବାଉଁଶର ଅସ୍ଥାୟୀ ଗୃହ ନିର୍ମାଣ ଚାଲିଥାଏ । ସାଧୁ ସନ୍ୟାସୀମାନେ ଅସ୍ଥାୟୀ ଭାବରେ ନିଜର ବିଶ୍ରାମ ପାଇଁ ସମୁଦ୍ର କୂଳରେ ଛୋଟ ଛୋଟ ଆଶ୍ରମମାନ ନିର୍ମାଣ କରିଥାନ୍ତି । ସେଇଦିନ ୫ଟାରେ ବାରାସତ ପ୍ରତ୍ୟାବର୍ତ୍ତନ କରୁଁ ।

## ପ୍ରଶାସନିକ ଓ ପରିଚାଳନାଗତ ଅଭିଜ୍ଞତା :

ଦୀର୍ଘକାଳର ଅଧ୍ୟାପନା ଓ ସାହିତ୍ୟ ସାଧନା କାଳରେ ବିଭାଗର ପରିଚାଳନା ସହ ବିଭିନ୍ନ ପ୍ରଶାସନିକ ଅଭିଜ୍ଞତା ଅର୍ଜନର ସୌଭାଗ୍ୟ ମିଳିଥିଲା । ଭଦ୍ରକ କଲେଜ୍‌ରେ ଅବସ୍ଥାପନ କାଳରେ ବିଭାଗ ପରିଚାଳନା ଓ କଲେଜ୍ ଗଭର୍ଣ୍ଣିବଡ଼ିର ଅଧ୍ୟାପକ ପ୍ରତିନିଧି ହେବା ସହ କିଛିକାଳ କଲେଜ୍‌ର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରି ଛାତ୍ର ଓ କର୍ମଚାରୀଙ୍କର ଶ୍ରଦ୍ଧାର ଭାଜନ ହୋଇଥିଲି । ବିଭିନ୍ନ କଲେଜ୍‌ର ଓଡ଼ିଆ ସାହିତ୍ୟ ସମାଜର ଉପସଭାପତି ଭାବରେ ସାହିତ୍ୟ ସମାଜକୁ ସକ୍ରିୟ କରିବା ସଂଗେ ସଂଗେ ଭଦ୍ରକ କଲେଜ୍‌ର ମୁଖପତ୍ର 'ପଲ୍ଲୀଭାରତୀ' ଓ ରେଭେନ୍ସା କଲେଜ୍‌ର ମୁଖପତ୍ର Revenshavian ର ମୁଖ୍ୟ ସଂପାଦକ ଥିଲି ।

ବିଭିନ୍ନ କଲେଜ୍‌ରେ ବିଭିନ୍ନ ସମୟରେ ଦିବାଧାୟୀ ଛାତ୍ରସଂଘର ସେନ୍‌ସର, ନାଟ୍ୟ ସଂସଦର ଉପସଭାପତି, ଗ୍ରନ୍ଥାଗାର ଅର୍ଥ ପରାମର୍ଶଦାତା କମିଟିର ଚେୟାର୍‌ମ୍ୟାନ ଓ କଲେଜ୍ ଡିସିପ୍ଲିନ୍ କମିଟିର ସଭ୍ୟ ଥିଲି ।

ଆଇ.ଏ., ଆଇ.ଏସ୍.ସି. ଠାରୁ ଆରମ୍ଭ କରି ଅନର୍ସ, ଏମ୍.ଏ. ଓ ଏମ୍.ଫିଲ୍ ଶ୍ରେଣୀରେ ଦୀର୍ଘକାଳର ଅଧ୍ୟାପନା ଅଭିଜ୍ଞତା ସହ ଏମ.ଫିଲ୍ ଓ ପି.ଏଚ୍.ଡ଼ି. ଗବେଷକମାନଙ୍କର ତତ୍ତ୍ୱାବଧାରକ ଥିଲି । ଦୀର୍ଘକାଳ ଧରି ବିଭିନ୍ନ ବିଶ୍ୱବିଦ୍ୟାଳୟ, ସରକାରୀ ଓ ବେସରକାରୀ କଲେଜ୍‌ର ଅଧ୍ୟାପକ, ରିଡ଼ର୍ ଓ ପ୍ରଫେସର ନିର୍ବାଚନ ପାଇଁ ବିଷୟ-ବିଶେଷଜ୍ଞ (Subject Expert) ଭାବରେ ନିଯୁକ୍ତି ପାଇଆସିଛି ।

## ବିଭିନ୍ନ କମିଟିର ସଦସ୍ୟ :

ଏହାଛଡ଼ା ୧୯୮୫ ଠାରୁ ୧୯୯୧ ପର୍ଯ୍ୟନ୍ତ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ତା'ର ଅର୍ଥକମିଟିର ସଭ୍ୟ ଥିବା ସଙ୍ଗେସଙ୍ଗେ ଗ୍ରାମ୍ୟ ପାଠାଗାର ପାଇଁ ପୁସ୍ତକ କ୍ରୟ-କମିଟି, ଓଡ଼ିଶା ସରକାରଙ୍କର ସାଂସ୍କୃତିକ ବ୍ୟାପାର ବିଭାଗ ଅଧୀନରେ ପାଣ୍ଡୁଲିପି ମୂଲ୍ୟାୟନ ତଥା ଆର୍ଥିକ ସାହାଯ୍ୟ ମଞ୍ଜୁରି ସବ୍‌କମିଟିରେ ଏବଂ ରାଜାରାମମୋହନ ରାୟ ଲାଇବ୍ରେରୀ ଫାଉଣ୍ଡେସନ୍ କମିଟିର ସଭ୍ୟ ଥିଲି (୧୯୮୪-୮୬, ୧୯୮୯-୧୯୯୬) । ୧୯୮୨ ରୁ ୧୯୮୫

ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ଏକାଡ଼େମିକ୍ କାଉନ୍‌ସିଲ୍‌ର ସଭ୍ୟ ଏବଂ କଣ୍ଟକ୍ଟିଂ ବୋର୍ଡ଼ର ଚେୟାରମ୍ୟାନ ଥିଲି ।

## ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସଂପର୍କ :

ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ନାନା ଭାବରେ ସଂପୃକ୍ତ । ୧୯୬୦ ଠାରୁ ୧୯୬୩ ପର୍ଯ୍ୟନ୍ତ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲି, ବର୍ତ୍ତମାନ ଉକ୍ତ ଅନୁଷ୍ଠାନର ଆଜୀବନ ସଭ୍ୟ । ୧୯୬୪ ଠାରୁ ୧୯୬୭ ପର୍ଯ୍ୟନ୍ତ ବାଲେଶ୍ୱର ଫକୀର ମୋହନ ସାହିତ୍ୟ ପରିଷଦର ଉପସଭାପତି ଏବଂ ୧୯୬୭ ଠାରୁ ୧୯୬୮ ପର୍ଯ୍ୟନ୍ତ ତା'ର ସଭାପତି ଥିଲି । ଭଦ୍ରକ ସାହିତ୍ୟ ପରିଷଦର ସଭ୍ୟ ଥିବା ସଙ୍ଗେସଙ୍ଗେ (୧୯୭୧-୧୯୭୫) ସେଠାରେ ୧୯୮୦ ରେ 'ସାହିତ୍ୟ ସଂସ୍କୃତି ପରିଷଦ' ଗଠନ କରି ୧୯୯୨ ପର୍ଯ୍ୟନ୍ତ ତା'ର ସଭାପତି ଭାବରେ ବିଭିନ୍ନ ପାଠଚକ୍ର ଓ ସାହିତ୍ୟ ଓ ସାଂସ୍କୃତିକ ସଭାମାନ ଅନୁଷ୍ଠାନ କରିଆସିଛି । ଡକ୍ଟର ପୀତାମ୍ବର ସ୍ୱାଇଁ (ବର୍ତ୍ତମାନ ସ୍ୱର୍ଗୀୟ) ଥିଲେ ଏହାର ସାଧାରଣ ସଂପାଦକ ଏବଂ ସାମ୍ବାଦିକ ସୁବଳ ଜେନା (ସ୍ୱର୍ଗୀୟ) ଥିଲେ ସଂଗଠନ ସଂପାଦକ । ୧୯୮୬ ଠାରୁ ଭୁବନେଶ୍ୱର ନାରାୟଣ ବୈରିଶଲ୍ୟ ସ୍ମୃତି ପରିଷଦର ସଭ୍ୟ ରହିଛି । ମୋ ସଂପାଦନାରେ ସ୍ମୃତି ପରିଷଦ ପକ୍ଷରୁ ବୈରିଶଲ୍ୟ ସ୍ମରଣିକା ଓ ତିନୋଟି ଉପାଦେୟ ପୁସ୍ତକ (ସ୍ତବରତ୍ନ ଓ ନିତ୍ୟ ପୂଜାବିଧାନ, ଶ୍ରୀମଦ୍ ଭାଗବତ : ଏକ ଅଧ୍ୟୟନ ଓ ଆମର ଆଧ୍ୟାତ୍ମିକ ଐତିହ୍ୟ) ପ୍ରକାଶିତ ହୋଇଛି । କଟକରେ ପଣ୍ଡିତ ନୀଳକଣ୍ଠ ଦାସ ଶତବାର୍ଷିକୀ ଉତ୍ସବର ଆବାହକ ଥାଇ ନୀଳକଣ୍ଠଙ୍କ ସଂପର୍କରେ ଆଲୋଚନା ସଭାମାନ ଅନୁଷ୍ଠାନ କରିଆସିଛି (୧୯୮୪) । ବର୍ତ୍ତମାନ ଋଷିକେଶର (ମୁନିକିରେତି) ସ୍ୱାମୀ ଶିବାନନ୍ଦଙ୍କର ଦିବ୍ୟଜୀବନ ସଂଘର (Divine Life Socity) ସଭ୍ୟ ।

୧୯୯୨ ଠାରୁ କଟକରେ 'ସାହିତ୍ୟ ଓ ଗବେଷଣା ପ୍ରତିଷ୍ଠାନ' (Academy of Letters and Research) ପ୍ରତିଷ୍ଠା କରି ତା'ର ସଭାପତି ଭାବରେ କାର୍ଯ୍ୟ କରୁଛି । ଏହା ଏକ ରେଜିଷ୍ଟର୍ଡ଼ ଅନୁଷ୍ଠାନ । ଡକ୍ଟର ସୁବୋଧ କୁମାର ଚାଟାର୍ଜୀ ଏବଂ ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ ଏହାର ଉପସଭାପତି ଏବଂ ଡଃ ଖଗେନ୍ଦ୍ରନାଥ ମଲ୍ଲିକ ଏହାର ସାଧାରଣ ସଂପାଦକ ଅଛନ୍ତି । ପ୍ରତିଷ୍ଠାନ ଆନୁକୂଲ୍ୟରେ ବିଭିନ୍ନ ସମୟରେ ସନ୍ଦର୍ଭ ପାଠ, ଆଲୋଚନା ସଭା ଓ ପୁସ୍ତକ ଉଦ୍‌ଘାଟନ ହୋଇଯାଇଛି । ଯୋଜନା ଅନୁସାରେ ବିଭିନ୍ନ ପ୍ରକାର ଅଭିଧାନ ସଂକଳନ, ସାହିତ୍ୟ ସମୀକ୍ଷା ଓ ଗବେଷଣାମୂଳକ ଗ୍ରନ୍ଥ ପ୍ରସ୍ତୁତି ଏହାର ପ୍ରଧାନ ଆଭିମୁଖ୍ୟ । ସଂପ୍ରତି କଟକର ନୀଳାଦ୍ରି ବିହାରଠାରେ ୨୦୦୪ ମସିହାରୁ 'ପ୍ରାଚ୍ୟ ବିଦ୍ୟାପରିଷଦ' ପ୍ରତିଷ୍ଠିତ, ଯା'ର ସଭାପତି ଭାବରେ କାର୍ଯ୍ୟ କରୁଛି । ପରିଷଦରେ ପ୍ରତିମାସ ଏକ ଅଧିବେଶନ ଅନୁଷ୍ଠିତ ହୁଏ ଏବଂ ସାହିତ୍ୟ, ଭାଷା, ସଂସ୍କୃତି, ଧର୍ମ ସଂପର୍କରେ ଗବେଷଣାମୂଳକ ପ୍ରବନ୍ଧ ପାଠ କରାଯାଇ ତା'ର ଆଲୋଚନା ଚାଲେ । ପ୍ରତିଷ୍ଠିତ ହେବା ଦିନରୁ ୪୮ଟି ଅଧିବେଶନ

ଅନୁଷ୍ଠିତ ହୋଇଛି ଏବଂ ପ୍ରଥମ ବାର୍ଷିକୋତ୍ସବରେ 'ସାହିତ୍ୟ ସଂସ୍କୃତି ଓ ଧର୍ମ ଧାରା' ଶୀର୍ଷକ ଏକ ପୁସ୍ତକ ପ୍ରକାଶ କରାଯାଇଛି ।

କଟକରେ ପ୍ରତିଷ୍ଠିତ 'ବିଦ୍ୟାଭାରତୀ' ଅନୁଷ୍ଠାନର କାର୍ଯ୍ୟକାରୀ କମିଟିର ସଭ୍ୟ ଏବଂ ପରେ ତା'ର ଉପସଭାପତି ଭାବରେ (୧୯୮୬) କାର୍ଯ୍ୟ କରିଛି । 'ଜଷ୍ଟିସ୍ ରାଜକିଶୋର ଦାସ ସ୍ମରଣିକା' ର ଥିଲି ସଂପାଦକ (୧୯୯୪) । ବିଭିନ୍ନ ସମୟରେ ଆକାଶବାଣୀ କଟକ ଓ ଦୂରଦର୍ଶନରେ ଯଥାକ୍ରମେ ପ୍ରବନ୍ଧ ପାଠ ଓ ଆଲୋଚନାରେ ଅଂଶ ଗ୍ରହଣ କରିଆସୁଛି ।

## ପତ୍ରିକା ସଂପାଦନା :

'ପଲ୍ଲୀ ଭାରତୀ', 'ଅର୍ଘ୍ୟ' (ଭଦ୍ରକ କଲେଜ), Ravenshavian (ରେଭେନ୍ସା କଲେଜ), 'ସହକାର' ଓ 'ତାରିଣୀ' ପତ୍ରିକାର ମୁଖ୍ୟ ସଂପାଦକ ।

## ସାରସ୍ୱତ ସାଧନା :

ଛାତ୍ରାବସ୍ଥାରୁ କବିସୂର୍ଯ୍ୟ ବଳଦେବ ରଥଙ୍କ ଅନୁସରଣରେ ଚମ୍ପୂଗୀତ (ଆଧାତ୍ମିକ) ରଚନା କରୁଥିଲି । ଚଉତିଶା ରୀତିରେ ରଚିତ ଗୀତଗୁଡ଼ିକ ଆମ ଗ୍ରାମର ଜଣେ ଭାଇ (ସ୍ୱର୍ଗୀୟ ଇନ୍ଦ୍ରମଣି ବଳ) ସେଗୁଡ଼ିକ ଶିଖି ବିଭିନ୍ନ ଉତ୍ସବରେ ଗାଉଥିଲେ ଏବଂ ମହିମା ସଂପ୍ରଦାୟର ସନ୍ନ୍ୟାସୀ ବାବାଜୀ ଭଗବାନ ଦାସ ସେଗୁଡ଼ିକର ପ୍ରଶଂସା କରି ଉତ୍ସାହିତ କରିଥିଲେ । ସଂରକ୍ଷଣ ଅଭାବରୁ ଗୀତଗୁଡ଼ିକର ଅସ୍ତିତ୍ୱ ଲୋପ ପାଇଛି । କେତେକ ଆଧାତ୍ମିକ ପ୍ରବନ୍ଧ ସହ ବୈଦିକ ସାହିତ୍ୟ ଓ ଗାୟତ୍ରୀ ସମ୍ବନ୍ଧୀୟ ରଚନାଗୁଡ଼ିକ ଆମର ଆଧାତ୍ମିକ ଐତିହ୍ୟ ପୁସ୍ତକରେ ପ୍ରକାଶିତ । ଏତଦ୍‌ବ୍ୟତୀତ 'ନିତ୍ୟ ପୂଜାବିଧାନ ଓ ସ୍ତବରତ୍ନ' ପୁସ୍ତକର ମୁଖବନ୍ଧ ଭାବରେ 'ଆମର ସନାତନ ବୈଦିକ ଧର୍ମ' ସଂପର୍କରେ ଦୀର୍ଘ ପ୍ରବନ୍ଧ ରଚନା କରିଛି ।

ସାହିତ୍ୟ ସମାଲୋଚନା, ପ୍ରବନ୍ଧ, ଗବେଷଣା ଏବଂ ଶିଶୁ କିଶୋର-ସାହିତ୍ୟ ରଚନାରେ ଧ୍ୟାନ ଦେଇଆସିଛି । ଛାତ୍ରାବସ୍ଥାରୁ ଅଦ୍ୟାବଧି ଓଡ଼ିଶା ଓ ଓଡ଼ିଶା ବାହାରର ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାମାନଙ୍କରେ (କୋଣାର୍କ, ଝଙ୍କାର, ସହକାର, ଡଗର, ସମାରୋହ, ସମାବେଶ, ଉତ୍କଳ ସାହିତ୍ୟ, ସପ୍ତର୍ଷି, ପାଞ୍ଚଜନ୍ୟ, ଆସନ୍ତାକାଲି, ଗୋକର୍ଣ୍ଣିକା, ଉତ୍କଳ ପ୍ରସଙ୍ଗ, ଅମୃତାୟନ, ପ୍ରତିବେଶୀ, କଳିଙ୍ଗ, ସମାଜ, ମାତୃଭୂମି ପ୍ରଭୃତି ସମ୍ବାଦପତ୍ରର ବିଶେଷ ସଂଖ୍ୟା), ସଂକଳନ ଗ୍ରନ୍ଥ ଓ Encyclopeadia ମାନଙ୍କରେ ଓଡ଼ିଆ ଓ ଇଂରାଜୀରେ ପ୍ରାୟ ତିନି ଶତାଧିକ ସାଧାରଣ ପ୍ରବନ୍ଧ, ସାହିତ୍ୟ ସମାଲୋଚନା ଓ ଗବେଷଣାତ୍ମକ ପ୍ରବନ୍ଧମାନ ପ୍ରକାଶିତ ।

ସାହିତ୍ୟ ସମାଲୋଚନା ଓ ଗବେଷଣା ମୋର ସାହିତ୍ୟ ସାଧନାର ମୁଖ୍ୟ ବିଭାବ । ରଚନାଗୁଡ଼ିକରେ ଗଭୀର ଚିନ୍ତନ, ମନନଶୀଳତା ଓ ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ଲକ୍ଷ୍ୟଣୀୟ ।

ରୀତି ବା ଆଳଙ୍କାରିକ ସାହିତ୍ୟର ଆଲୋଚନା କ୍ଷେତ୍ରରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱ ସଂପର୍କରେ ଅଧ୍ୟୟନ, ତା'ର ଉପଯୋଗ, ଚିନ୍ତାଶୀଳତା ଏବଂ ସାଂପ୍ରତିକ କାଳରେ ତା'ର ପ୍ରାସଙ୍ଗିକତା (relevance) ସଂପର୍କରେ ବିଚାର ବିମର୍ଶ ଦ୍ୱାରା ଆଲୋଚନାଗୁଡ଼ିକୁ ପ୍ରାମାଣିକ କରିବାର ଚେଷ୍ଟା କରିଛି । ପ୍ରାଚୀନ, ମଧ୍ୟଯୁଗ ଏପରିକି ରାଧାନାଥ ଯୁଗର ପରବର୍ତ୍ତୀ ମାନସିଂହ ଓ ସଚ୍ଚି ରାଉତରାୟଙ୍କ ପର୍ଯ୍ୟନ୍ତ ରଚନାର ଯଥାଯଥ ମୂଲ୍ୟାୟନ ପାଇଁ ପ୍ରାଚ୍ୟ ପାଶ୍ଚାତ୍ୟ ସାହିତ୍ୟ ଓ ସାହିତ୍ୟତତ୍ତ୍ୱର ଅନୁଶୀଳନ ଯେ ଏକାନ୍ତ ପ୍ରୟୋଜନ ଏ ଅନୁଭବ ମୋର ହୋଇଛି ।

ବିଭିନ୍ନ ସମାଲୋଚନାମୂଳକ ଗ୍ରନ୍ଥରୁ ସଂସ୍କୃତ ସାହିତ୍ୟର କାବ୍ୟ, ନାଟକ, ଅଳଙ୍କାରଶାସ୍ତ୍ର (ସାହିତ୍ୟ ଶାସ୍ତ୍ର ବା Poetics) ଓ ପ୍ରାକୃତ ସାହିତ୍ୟ ଅଧ୍ୟୟନ ଓ ମନନ ପ୍ରତି ଯଥା ସମ୍ଭବ ଧ୍ୟାନ ଦେଇଛି । ତୁଳନାତ୍ମକ ଅଧ୍ୟୟନ କ୍ଷେତ୍ରରେ ଏହା ବିଶେଷ ସହାୟକ ହୋଇଛି । ବୈଷ୍ଣବ ସାହିତ୍ୟର (ଜ୍ଞାନ ମିଶ୍ରା ଓ ଶୁଦ୍ଧା ଭକ୍ତି) ସମୀକ୍ଷା ପାଇଁ ସଂସ୍କୃତରେ ରଚିତ ମୂଳ ଗୋସ୍ୱାମୀ ଗ୍ରନ୍ଥ, ଆନୁଷଙ୍ଗିକ ଗବେଷଣା ଗ୍ରନ୍ଥ ଓ ବୈଷ୍ଣବୀୟ ଅଳଙ୍କାର ଶାସ୍ତ୍ର (ରୂପ ଗୋସ୍ୱାମୀଙ୍କର ଉଜ୍ଜ୍ୱଳ ନୀଳମଣି, ଭକ୍ତି ରସାମୃତ ସିନ୍ଧୁ, କବିକର୍ଣ୍ଣ ପୁରଙ୍କର ଅଳଙ୍କାର କୌସ୍ତୁଭ) ସଂପର୍କରେ ଅଧ୍ୟୟନ କରିବାକୁ ହୋଇଛି ।

ଭରତମୁନିଙ୍କ ନାଟ୍ୟଶାସ୍ତ୍ର ଠାରୁ ଆରମ୍ଭ କରି ଉଦ୍ଭଟ, ରୁଦ୍ରଟ, ବାମନ, ଦଣ୍ଡୀ, ଆନନ୍ଦବର୍ଦ୍ଧନ, ଅଭିନବଗୁପ୍ତ, କୁନ୍ତକ, ମମ୍ମଟ, ବିଶ୍ୱନାଥ, ଭୋଜରାଜ, ପଣ୍ଡିତ ରାଜ ଜଗନ୍ନାଥ, କ୍ଷେମେନ୍ଦ୍ର ଓ ଅପପୟ ଦୀକ୍ଷିତଙ୍କ ରଚିତ ଅଳଙ୍କାର ଗ୍ରନ୍ଥ, ସାହିତ୍ୟ ଶାସ୍ତ୍ର ସଂପର୍କିତ ଉଚ୍ଚାଙ୍ଗ ଗବେଷଣା ଗ୍ରନ୍ଥ (P.V. Kane ଙ୍କର History of Sanskrit Poetics, Dr. V. Raghavan, Dr. S.K. De. S.N. Dasgupta, ପଣ୍ଡିତ ବଳଦେବ ଉପାଧ୍ୟାୟ, ଶ୍ରୀକୃଷ୍ଣ ଚୈତନ୍ୟ ଓ ଅନ୍ୟ ବହୁ ପଣ୍ଡିତଙ୍କର ଗବେଷଣା ଗ୍ରନ୍ଥ) ଅଧ୍ୟୟନ କରି ସାହିତ୍ୟ ଶାସ୍ତ୍ରର ବିଭିନ୍ନ ବିଭାବ (ରସ, ରୀତି, ଗୁଣ, ଅଳଙ୍କାର, ଧ୍ୱନି, ବକ୍ରୋକ୍ତି, ଔଚିତ୍ୟ) ସଂପର୍କରେ ବିଂଶାଧିକ ଗବେଷଣାମୂଳକ ପ୍ରବନ୍ଧ ରଚନା କରି ଗ୍ରନ୍ଥାକାରେ (ସାହିତ୍ୟ ସମାଲୋଚନାର ଶାସ୍ତ୍ରୀୟ ଭୂମିକା) ପ୍ରକାଶ କରିଛି ।

ସାରଳାଦାସ, ଜଗନ୍ନାଥ ଦାସ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ବ୍ରଜନାଥ, ଅଭିମନ୍ୟୁ, କବିସୂର୍ଯ୍ୟ ବଳଦେବ ରଥ, ଗୋପାଳ କୃଷ୍ଣ, ରାଧାନାଥ, ଫକୀର ମୋହନ, ରାମଶଙ୍କର, ମଧୁସୂଦନ, ନନ୍ଦକିଶୋର, ଗଙ୍ଗାଧର, ଚିନ୍ତାମଣି, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ (ମିଶ୍ର ଓ ମହାପାତ୍ର) ପ୍ରମୁଖଙ୍କ ସଂପର୍କରେ ବହୁ ସମୀକ୍ଷାମୂଳକ ପ୍ରବନ୍ଧ ରଚନା କରିଛି । ତୁଳନାତ୍ମକ ଅଧ୍ୟୟନ ଦୃଷ୍ଟିରୁ ଅଭିଜ୍ଞାନ ଶାକୁନ୍ତଳମ୍ ଓ ପ୍ରଣୟବଲ୍ଲରୀ, ମେହେରଙ୍କ ଇନ୍ଦୁମତୀ, ତପସ୍ୱିନୀ ଓ ସୀତା ବନବାସ, କୀଚକବଧ : ଏକ ସମୀକ୍ଷା, ଗୋବିନ୍ଦ ଲୀଳାମୃତ ଓ ପ୍ରେମ ଚିନ୍ତାମଣି ପ୍ରଭୃତି ଲକ୍ଷ୍ୟଣୀୟ ।

ବିଷୟବସ୍ତୁ, କାଳ ଓ ରଚନାର ପ୍ରକାରଭେଦ ଭିତ୍ତିରେ ସନ୍ଦର୍ଭଗୁଡ଼ିକୁ ବିଶ୍ଲେଷଣ କରାଯାଇପାରେ, ଯଥା- (୧) ଆଧୁନିକ ସାହିତ୍ୟ ସଂପର୍କୀୟ, (୨) ସାରଳା ସାହିତ୍ୟ, (୩) ଶ୍ରୀମଦ୍ ଭାଗବତ, (୪) ନାଥଧର୍ମ ଓ ସାହିତ୍ୟ, (୫) ଶାକ୍ତଧର୍ମ ଓ ଶକ୍ତି ଉପାସନା, (୬) ଶୁଦ୍ଧାଭକ୍ତିର ବୈଷ୍ଣବ ସାହିତ୍ୟ, (୭) ଓଡ଼ିଶୀ ବୈଷ୍ଣବ ଧର୍ମ ଓ ସାହିତ୍ୟ, (୮) ପୌରାଣିକ ସାହିତ୍ୟ, (୯) ମଧ୍ୟଯୁଗୀୟ ରୀତିକାବ୍ୟ ଓ ଚମ୍ପୂ, (୧୦) ଡି.ଲିଟ୍. ସନ୍ଦର୍ଭ, (୧୧) ସଂସ୍କୃତ ସାହିତ୍ୟ ସଂପର୍କୀୟ, (୧୨) ତୁଳନାତ୍ମକ ଅଧ୍ୟୟନ, (୧୩) ସାହିତ୍ୟଶାସ୍ତ୍ର ସଂପର୍କୀୟ, (୧୪) ଧର୍ମ, ସମାଜ, ସଂସ୍କୃତି ଓ ଆଧ୍ୟାତ୍ମିକତା ସଂପର୍କୀୟ, (୧୫) ବିବିଧ, (୧୬) ଇଂରାଜୀ ରଚନା ।

ସମାଲୋଚନା ଓ ଗବେଷଣା ସନ୍ଦର୍ଭ ଗୁଡ଼ିକରେ ଐତିହାସିକ ସମାଲୋଚନା ପଦ୍ଧତି ଅପେକ୍ଷା ଆଳଙ୍କାରିକ ପଦ୍ଧତି ଓ ବସ୍ତୁନିଷ୍ଠ ସମାଲୋଚନା ପଦ୍ଧତି (Objecive or Interpretative Criticism) ଉପରେ ଗୁରୁତ୍ୱ ପ୍ରଦାନ କରିଛି ।

ମୋର ରଚନାଗୁଡ଼ିକ ସଂପର୍କରେ ଆଲୋଚନା କରିବାକୁ ଯାଇ ଅଧ୍ୟାପକ ଚିନ୍ତାମଣି ଭାରତୀ କହନ୍ତି- ''ତାତ୍ତ୍ୱିକ ନିବନ୍ଧଗୁଡ଼ିକରେ ଲେଖକଙ୍କର ମନୀଷା, ଗଭୀର ଚିନ୍ତାଶୀଳତା, ବୌଦ୍ଧିକତା ଏବଂ କାବ୍ୟ ମୂଲ୍ୟାୟନରେ ତାଙ୍କର ରସବୋଧ, ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ଏବଂ କବିର ପ୍ରତିଭା ମୂଲ୍ୟାୟନରେ କବି ସୁଲଭ ପୁନଃ ସର୍ଜନାତ୍ମକ ଦୃଷ୍ଟିଭଙ୍ଗୀ ସମାଲୋଚକ ଓ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରେ । କାବ୍ୟକବିତା ମୂଲ୍ୟାୟନରେ ସ୍ରଷ୍ଟାଙ୍କ ସହିତ ସହୃଦୟ ସମୀକ୍ଷକ ଚିତ୍ତର ଏକରୂପତା (identification) ତାଙ୍କର ସମାଲୋଚନା ସନ୍ଦର୍ଭଗୁଡ଼ିକୁ ହୃଦ୍ୟ କରିପାରିଛି ।

''ତାଙ୍କ ସନ୍ଦର୍ଭର ଭାଷା ଓ ଶୈଳୀ ରଚନାର ପ୍ରକୃତି ଅନୁରୂପ । ସମଗ୍ର ଭାବରେ ବିଚାର କଲେ ତାଙ୍କର ସାହିତ୍ୟ ସମୀକ୍ଷା ଓ ଗବେଷଣା ସନ୍ଦର୍ଭରେ ସହୃଦୟ ପାଠକ ଜଣେ ମନନଶୀଳ ପ୍ରଜ୍ଞାନିଷ୍ଠ ସୃଷ୍ଟିଧର୍ମୀ ସମୀକ୍ଷକଙ୍କୁ ଭେଟେ, ଯାହାଙ୍କର ସାହିତ୍ୟ ମୂଲ୍ୟାୟନରେ ପୁନଃ ସୃଷ୍ଟିର ସ୍ୱାଦ ମିଳିଥାଏ ।'' (ସଂକ୍ଷିପ୍ତ ଜୀବନ ପଞ୍ଜି) ।

## ମୋ ପରିବାରର କଥା :

ପତ୍ନୀ ପ୍ରାଧ୍ୟାପିକା ଡଃ ଶାନ୍ତିଲତା ମହାପାତ୍ର (ବଳ) ଓଡ଼ିଶାର ବିଭିନ୍ନ ସରକାରୀ କଲେଜ୍‌ରେ ଇତିହାସ ବିଭାଗରେ ଅଧ୍ୟାପନା କରି କଟକର ଶୈଳବାଳା ମହାବିଦ୍ୟାଳୟରୁ ୧୯୯୯ରେ ଅବସର ଗ୍ରହଣ କରିଛନ୍ତି । ସେ ମୁଖ୍ୟତଃ ଜଣେ ଐତିହାସିକ ଗଳ୍ପ ଓ ଉପନ୍ୟାସ ଲେଖିକା ଭାବରେ ସୁପରିଚିତା । ସେ ମଧ୍ୟ ଗୀତିକବିତା ରଚନା କରିଛନ୍ତି, ତାଙ୍କର ''ଓମର ଗୀତିକା'' ଓମର ଖାଁଙ୍କର ଗୀତିର ଅନୁବାଦ । ଦେଶ ବିଦେଶ ଭ୍ରମଣରେ ତାଙ୍କର ବିଶେଷ ଶ୍ରଦ୍ଧା । ଭାରତର ବିଭିନ୍ନ ସ୍ଥାନ ଭ୍ରମଣ କରିବା ସହିତ ୧୯୦୬ରେ ଚାରିମାସ ପାଇଁ

ଆମେରିକା (ଯୁକ୍ତରାଷ୍ଟ୍ର) ଭ୍ରମଣରେ ଯାଇ 'ସ୍ମୃତି ଓ ଅନୁଭୂତିରେ ଆମେରିକା' ରଚନା କରିଛନ୍ତି । ଭାରତ ଭ୍ରମଣ ସଂକ୍ରାନ୍ତ ପୁସ୍ତକ ମଧ୍ୟ ରଚନା କରିଛନ୍ତି । ଏ ପର୍ଯ୍ୟନ୍ତ ତାଙ୍କର ଓଡ଼ିଆ ଓ ଇଂରାଜୀରେ କୋଡ଼ିଏ ଖଣ୍ଡ ପୁସ୍ତକ ପ୍ରକାଶିତ । ସେ ତାଙ୍କର "Vaisnavite trend in Oriya Literature" ଶୀର୍ଷକ ଗବେଷଣା ସନ୍ଦର୍ଭ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ପି.ଏଚ୍.ଡ଼ି. ଉପାଧି ଲାଭ କରିଛନ୍ତି । ତାଙ୍କର ସନ୍ଦର୍ଭ "Vaisnavism in Orissa" ଶିରୋନାମାରେ କଲକାତାର Punthi Pustak ଙ୍କ ଦ୍ୱାରା ପ୍ରକାଶିତ । ସେ କବିତା ପାଇଁ ମାତୃଭୂମି ଓ ସହକାରର ମକର ମିଳନୋତ୍ସବରେ ଗଳ୍ପ ପାଇଁ 'ଜୀବନ ରଂଗ' ଓ 'ସୁଚରିତା'ର ବାର୍ଷିକ ଉତ୍ସବରେ ସମ୍ମାନିତ ଓ ପୁରସ୍କୃତ । ତାଙ୍କର 'ପୌରାଣିକ ଉପନ୍ୟାସ', 'ମୁଁ କୈକେୟୀ କହୁଛି' ପାଇଁ ୨୦୦୬ ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି । ନିରଳସ ଭାବରେ ତାଙ୍କର ଲେଖନୀ ଚାଲିଛି ।

ଜ୍ୟେଷ୍ଠପୁତ୍ର ଡାକ୍ତର ମିହିର କୁମାର ବଳ (M.B.B.S., M.S) ସରକାରୀ ଚାକିରି ଛାଡ଼ି ଜଣେ ଚକ୍ଷୁ ବିଶେଷଜ୍ଞ ଭାବରେ ବ୍ରହ୍ମପୁରରେ ଅବସ୍ଥାପିତ । ସେ ନିଜ ପ୍ରତିଷ୍ଠିତ ECOS EYE HOSPITAL ର ଡିରେକ୍ଟର, ପୁତ୍ରବଧୂ ଶଶୀପ୍ରଭା ଜଣେ ଡାକ୍ତରାଣୀ । ପୁତ୍ର, କନ୍ୟା ଓ ପୁତ୍ରବଧୂ ମଧ୍ୟ ଡାକ୍ତର ଓ ଡାକ୍ତରରାଣୀ । ଦ୍ୱିତୀୟ ପୁତ୍ର ତପନ କୁମାର ବଳ (ଏଲ୍.ଏଲ୍.ବି) ସେଣ୍ଟ୍ରାଲ୍ ରିଜର୍ଭ ପୁଲିସ୍ ଫୋର୍ସର ଜଣେ ଇନିସ୍‌ପେକ୍ଟର । ଦୁର୍ଗାପୁର, ଭୁବନେଶ୍ୱର, ପଞ୍ଜାବ, ମଧ୍ୟପ୍ରଦେଶର ନିମଚ, ଦିଲ୍ଲୀ, ଅଗରତାଲା, ପାଟଣା (ବିହାର) ବିଶାଖାପାଟଣା ଓ ଏବେ ପୁନେରେ ଅଫିସ୍ ସୁପରିନ୍‌ଟେଣ୍ଡେଣ୍ଟ ଭାବରେ ଅବସ୍ଥାପିତ ।

ତୃତୀୟ ପୁତ୍ର ଅରୁଣ କୁମାର ବଳ ଜଣେ ପ୍ରଥମ ଶ୍ରେଣୀର ମେଧାବୀ ଛାତ୍ର । ସେ ବିଭିନ୍ନ ସ୍ତରରେ ସରକାରୀ ବୃତ୍ତି ଲାଭ କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ପ୍ରଥମ (ଅନର୍ସ) ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଜାତୀୟ ବୃତ୍ତି ଲାଭ କରିଥିଲେ । ଦିଲ୍ଲୀ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରୁ ଏମ୍.ଏ.ରେ (School of International Studies) ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଫେଲୋସିପ୍ ପାଇଁ ଏମ୍.ଫିଲ୍. ଅଧ୍ୟୟନ କରୁଥିଲେ (Japan studies) ଏବଂ ପରେପରେ ପି.ଏଚ୍.ଡ଼ି. ପାଇଁ ଗବେଷଣା କରୁଥିଲେ । ଇତିମଧ୍ୟରେ ଆଇ.ଏ.ଏସ୍. ରେ ନିର୍ବାଚିତ ହୋଇ ସେ ପଶ୍ଚିମ ବଙ୍ଗରେ ଅବସ୍ଥାପିତ ହେଲେ । ମାଲ୍‌ଦା, କାଟୋୟା (ବର୍ଦ୍ଧମାନ ଜିଲ୍ଲା), ପୁରୁଲିଆ, ଦାର୍ଜିଲିଂ, ଉତ୍ତର ଚବିଶିପ୍ରଗଣା, କଲ୍ୟାଣୀ ପରେ ପୁରୁଲିଆ ଓ ମେଦିନୀପୁର ଜିଲ୍ଲାର କଲେକ୍ଟର ଏବଂ ପଶ୍ଚିମବଙ୍ଗ ଆଇ.ଡ଼ି.ସି.ର କାର୍ଯ୍ୟ ନିର୍ବାହିକା ନିର୍ଦ୍ଦେଶକ ଥିଲେ । ତା'ପରେ ଜେ.ଏମ୍.ଡ଼ି.ସି. (Jute Manufacturing Development Corporation) ର ସେକ୍ରେଟେରୀ ଭବେରେ କୋଲକାତାରେ ଅବସ୍ଥାପିତ ହୋଇ ଆନ୍ତର୍ଜାତିକ କ୍ଷେତ୍ରରେ ଝୋଟ ଶିଳ୍ପର ବିକାଶ ଓ ପ୍ରଚାର ପାଇଁ ବିଭିନ୍ନ ସମୟରେ ପୃଥିବୀର ବହୁଦେଶ (ଦକ୍ଷିଣ ଆଫ୍ରିକା, ଦକ୍ଷିଣ ଆମେରିକା, ୟୁ.ଏସ୍.ଏ., ଇଂଲଣ୍ଡ, ଜର୍ମାନୀ,

ଇଟାଲୀ, ରୁଷିୟା, ଚୀନ୍, ଜାପାନ, ଅଷ୍ଟ୍ରେଲିଆ ଭ୍ରମଣ କରିଛନ୍ତି । ସେ ପଶ୍ଚିମବଙ୍ଗ ସରକାରଙ୍କର ସୁନ୍ଦରବନ ଆଫେୟାର୍ସ ବିଭାଗର ପ୍ରିନ୍ସପାଲ୍ ସେକ୍ରେଟେରୀ ପରେ ଏବେ ପଶ୍ଚିମବଂଗ ଟୁରିଜମ୍ ବିଭାଗର ସେକ୍ରେଟେରୀ ଅଛନ୍ତି । ଛାତ୍ରାବସ୍ଥାରେ ଇଂରାଜୀ, ଓଡ଼ିଆ ଓ ହିନ୍ଦୀରେ ଶ୍ରେଷ୍ଠ ପ୍ରତିଯୋଗୀ, ପ୍ରାବନ୍ଧିକ ଓ ହାସ୍ୟାଭିନେତା (comedian) ଭାବରେ ବହୁ ପୁରସ୍କାର ପ୍ରାପ୍ତ । ହିନ୍ଦୀ, ରାଜସ୍ଥାନୀ ଓ ବଙ୍ଗଳା ଭାଷାରେ ପ୍ରବୀଣତା ଲାଭ କରିଛନ୍ତି । ଦକ୍ଷ ପ୍ରଶାସକ ଭାବରେ ସେ ବିଭିନ୍ନ ଦିଗ ପ୍ରତି ସକ୍ରିୟ ଧ୍ୟାନ ଦେଇ ଶିକ୍ଷା ଓ ସାଂସ୍କୃତିକ ବିକାଶ କ୍ଷେତ୍ରରେ ଲୋକପ୍ରିୟତା ଅର୍ଜନ କରିଛନ୍ତି । ସେ କୋଲକତାର ବିଭିନ୍ନ ଓଡ଼ିଆ ବଂଗଳା ସାଂସ୍କୃତିକ ଅନୁଷ୍ଠାନ ସହିତ ସଂପୃକ୍ତ । ପୁତ୍ରବଧୂ ନିବେଦିତା ପ୍ରଥମ ଶ୍ରେଣୀରେ ଏମ୍.ଏ. ଓ ବି.ଇଡ଼ି. ପାଶ୍ କରି କିଛି କାଳ ଶିକ୍ଷକତା କରିଥିଲେ ।

ଚତୁର୍ଥ ପୁତ୍ର ଅଂଶୁମାନ୍ ପ୍ରଥମେ ଶ୍ରେଣୀରେ ପଦାର୍ଥ ବିଜ୍ଞାନ ଅନର୍ସରେ ବି.ଏସ୍.ସି. ପାଶ୍ କରି କୋଲକତାରେ ଚାଟାର୍ଡ଼ ଏକାଉଣ୍ଟାସି ଅଧ୍ୟୟନ କରୁଥିଲେ (F.C.A., Fellow of Chartard Accountancy). F.C.A. ପାଶ୍ ପରେ ସେ ଯୁକ୍ତରାଷ୍ଟ୍ର ଆମେରିକାର ନିଉଜର୍ସିରେ ଜଣେ ସଫଟ୍‌ୱେୟାର ଟେକ୍ନୋଲୋଜିଷ୍ଟ ଭାବରେ ଅବସ୍ଥାପିତ ଥିଲେ । ବର୍ତ୍ତମାନ ମାସାଚୁସେଟ୍ ଷ୍ଟେଟ୍‌ର ବୋଷ୍ଟନରେ କାମ କରୁଛନ୍ତି ଏବଂ ଫ୍ରାଙ୍କଲିନ୍ ସିଟିରେ ସପରିବାର ରହୁଛନ୍ତି ।

କନ୍ୟା ମହାତପା ଅନର୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍.ଏ. (ସଂସ୍କୃତ)ରେ ଉଚ୍ଚ ପ୍ରଥମ ଶ୍ରେଣୀ, ବି.ଇ.ଡ଼ିରେ ପ୍ରଥମ ଶ୍ରେଣୀ ଏବଂ ଏମ୍.ଫିଲ୍‌ରେ (କଲିକତା ବିଶ୍ୱବିଦ୍ୟାଳୟ) ପ୍ରଥମ ଶ୍ରେଣୀ ଲାଭ କରିଛନ୍ତି । ସେ ଚିତ୍ର ବିଦ୍ୟା ଓ ସଂଗୀତରେ ଡିପ୍ଲୋମା ଏବଂ ହିନ୍ଦୀରେ ରତ୍ନ ପାଶ କରିଛନ୍ତି । ସେ କବି ଜୟଦେବଙ୍କ ଉପରେ ପି.ଏଚ୍.ଡ଼ି. ପାଇଁ ଗବେଷଣା ସନ୍ଦର୍ଭ ଉତ୍କଳ ବିଶ୍ୱବିଦ୍ୟାଳୟରେ ଦାଖଲ କରି ପି.ଏଚ୍‌ଡ଼ି. ଡ଼ିଗ୍ରୀ ଲାଭ କରିଛନ୍ତି ଏବଂ ବୃତ୍ତି ଦୃଷ୍ଟିରୁ ସେ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକତା କରୁଛନ୍ତି ।

ପଞ୍ଚମ ପୁତ୍ର ପିନାକୀ ଅନର୍ସରେ ପ୍ରଥମ ଶ୍ରେଣୀ ହୋଇ ରେଭେନ୍ସା କଲେଜରୁ ଏମ.ଏ. (ଓଡ଼ିଆ) ପ୍ରଥମ ଶ୍ରେଣୀ ଲାଭ କରି (୨୦୦୨), I.P.S.A.R. ରେ M.B.A. ଅଧ୍ୟୟନ କରି ବିଜୁ ପଟ୍ଟନାୟକ ୟୁନିଭରସିଟି ଅଫ୍ ଟେକ୍ନୋଲୋଜିରୁ ପ୍ରଥମ ଶ୍ରେଣୀରେ ପାଶ୍ କରିଛନ୍ତି । ସେ ବାଜାଜ୍ ଏଲିଆନ୍‌ଜ କଂପାନୀର ଚାକିରି ଛାଡ଼ି ଏବେ କର୍‌ପୋରେଶନ ବ୍ୟାଙ୍କର ଚଣ୍ଡୀଗଡ଼ ଜୋନାଲ୍ ଅଫିସ୍‌ରେ ମାର୍କେଟିଂ ଅଫିସର ଅଛନ୍ତି ।

ସାନ ମାମୁଁ (ଦାଦା) ବସନ୍ତ କୁମାର ବଳଙ୍କ ପୁତ୍ର ଶମ୍ଭୁନାଥ ବଳ ଜଣେ ସହକାରୀ ଯନ୍ତ୍ରୀ (ଅବସର ପ୍ରାପ୍ତ) ଏବଂ ଗୋପବନ୍ଧୁ ବଳ ଜଣେ ସୁପରିଚିତ ଶଲ୍ୟଚିକିତ୍ସା ବିଶେଷଜ୍ଞ (ଅବସର ପ୍ରାପ୍ତ) ।

## ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ :

ବାଲ୍ୟକାଳରୁ ଜୀବନରେ ନୀତି ତଥା ଆଧ୍ୟାତ୍ମିକ ଦୃଷ୍ଟିଭଙ୍ଗୀ ପ୍ରତି ରହିଛି ମୋର ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା, ସେଥିପାଇଁ ଜୀବନର ବିଭିନ୍ନ କ୍ଷେତ୍ରରେ କୁଟିଳତା, କୂଟନୀତି, ଛଳନା ବା ଦ୍ୱୈତ ଆଚରଣକୁ ଘୃଣା କରେ । ଅଧ୍ୟୟନ ଓ ଜ୍ଞାନ ନିଜ ଚରିତ୍ର ଓ ଆଚରଣରେ ପ୍ରତିଫଳିତ ନ ହେଲେ ତାହାକୁ ନିଷ୍ଫଳ ମନେ କରେଁ । ମାନସିକ ଶାନ୍ତି ଆତ୍ମସମ୍ମାନ ବୋଧ ଓ ସତ୍ୟାଚରଣକୁ ପରମ ସଂପଦ ମନେକରେଁ । ଆଜି ସମାଜ ଓ ରାଷ୍ଟ୍ରର ବିଭିନ୍ନ କ୍ଷେତ୍ରରେ ନୈତିକ ମୂଲ୍ୟବୋଧ ହ୍ରାସ ପାଇଥିବାରୁ ଅସଦାଚରଣ, ପ୍ରତାରଣା, କୁଟିଳତା ଓ ଦ୍ୱୈତ ବ୍ୟକ୍ତିତ୍ୱର ମାତ୍ରା ବଢ଼ି ଚାଲିଥିବାରୁ ବିଭିନ୍ନ କ୍ଷେତ୍ରରେ ନ୍ୟାୟ, ସୁବିଚାର ଓ ନିରପେକ୍ଷତାର ଏକାନ୍ତ ଅଭାବ ଅନୁଭବ କରେ । କେତେକ କ୍ଷମତାରେ ପ୍ରତିଷ୍ଠିତ ହେଲେ ସହକର୍ମୀ ଓ ଅନ୍ୟମାନଙ୍କ ପ୍ରତି ଔଦ୍ଧତ୍ୟପୂର୍ଣ୍ଣ ଆଚରଣ ପ୍ରଦର୍ଶନ କରିଥାନ୍ତି । ଏ ପ୍ରକାର ବ୍ୟକ୍ତି ଓ ସେମାନଙ୍କର ସ୍ୱାର୍ଥ ସର୍ବସ୍ୱ ଚାଟୁକାରମାନଙ୍କୁ ଦେଖିଲେ ମନରେ ବିତୃଷ୍ଣା ଜାଗେ ।

ଜୀବନର କୌଣସି ଅବସ୍ଥାରେ କର୍ତ୍ତୃତ୍ୱାଭିମାନ ଓ ଅହଙ୍କାର ପୋଷଣକୁ ଜୀବନର ଅଧଃପତନ ମଣେ । ଶ୍ରୀମଦ୍ ଭଗବଦ୍ ଗୀତାରେ ନିଷ୍କାମ ଭାବନା ଯଦିଓ ସମସ୍ତ ସାଧନାର ଚରମ ଆଦର୍ଶ, ସଂସାରର ଜଟିଳତା ମଧ୍ୟରେ ମଣିଷ ପୂରାପୂରି ନିଷ୍କାମ ହୋଇ ନ ପାରିଲେ ମଧ୍ୟ ନିଷ୍କାମ ଉନ୍ମୁଖତା ଉପରେ ଗୁରୁତ୍ୱ ଦିଏଁ । କର୍ତ୍ତବ୍ୟରେ ଅବହେଳା ଓ ପକ୍ଷପାତ ବିଚାର ମୋ ଦୃଷ୍ଟିରେ ଚରମ ବିଶ୍ୱାସଘାତକତା, ସେଥିପାଇଁ ଯେ ମଣିଷ ଧର୍ମ ଓ ନୀତି ଦୃଷ୍ଟିରୁ ଦଣ୍ଡନୀୟ : ଏ ବିଶ୍ୱାସରେ ମୁଁ ଦୃଢ଼ । ଅନାସକ୍ତି ଓ ସ୍ଥିତପ୍ରଜ୍ଞର ଭାବନା ନ ରହିଲେ ଜଗତର ଜଟିଳତା ମଧ୍ୟରେ ଜୀବନ ଧାରଣ ବାସ୍ତବିକ ଅଶ୍ୱସ୍ତିକର ।

ଆଜିକାଲି ଶିକ୍ଷକ ଓ ଅଧ୍ୟାପକ ଜ୍ଞାନବିତରଣକୁ ବ୍ୟବସାୟରେ ପରିଣତ କରି ଦେଲେଣି, କିନ୍ତୁ ଜ୍ଞାନ ବିତରଣ ଓ ବ୍ୟବସାୟ ଏ ଦୁଇଟି ପରସ୍ପର ବିରୋଧୀ । ପ୍ରକୃତ ଜ୍ଞାନ ବିତରଣରେ ଜଗତର କଲ୍ୟାଣ ହୁଏ, ଜ୍ଞାନ ବଢ଼େ, କିନ୍ତୁ ଜ୍ଞାନ ବା ବିଦ୍ୟା ବ୍ୟବସାୟରେ ତାହା ସଂକୁଚିତ ହୋଇଯାଏ ।

ଜୀବନସାରା ଲୋକ ମନରେ ଦାରୁଣ ପୀଡ଼ା ଦେଇ ଯେଉଁମାନେ ଅନ୍ୟାୟ ଓ ଅସଦୁପାୟରେ ଅର୍ଥଠୁଳ କରିଥାନ୍ତି, ସେ ଅର୍ଥରେ ଜୀବନରେ ଶାନ୍ତି ମିଳେ ନାହିଁ, ଆଖି ବୁଜିଲେ ସବୁ ଅନ୍ଧାର ହୋଇଯାଏ । ଧନ କେଉଁଆଡ଼େ ଉଭେଇ ଯାଏ, ଯାଏ କେବଳ ନିଜ ସୂକ୍ଷ୍ମ ଶରୀର ସହ ଅର୍ଜିତ ବାସନା, ନିଜର କର୍ମ । ଏ ଚେତନା ଲୋକଚିତ୍ତରେ ହେଉଥିଲେ ସେମାନେ କେବେ କ୍ଷଣିକ ନଶ୍ୱର ବସ୍ତୁ ପ୍ରତି ଅତିମାତ୍ର ଆସକ୍ତ ରହି ଜୀବନ ଓ ଆତ୍ମାର ଅବମାନନା କରୁ ନଥାନ୍ତେ, ଜୀବନକୁ ବ୍ୟର୍ଥ କରୁ ନଥାନ୍ତେ । ସଦୁପାୟରେ ଅର୍ଜିତ ଧନ ଓ ଲୋକ ହିତରେ ତାର ବିନିଯୋଗରେ ଜୀବନ ଭଗବଦ୍‌ଉନ୍ମୁଖୀ ହୋଇଥାଏ, ସେଥିରେ ମିଳେ ଆନନ୍ଦ । ଜୀବନ ସାର୍ଥକ ହୁଏ ଜଗତର କଲ୍ୟାଣ ସାଧନରେ । ମଣିଷ କେବଳ ନିଜ

ପାଇଁ ଦୁନିଆକୁ ଆସିନାହିଁ, ଜଗତର କଲ୍ୟାଣ ପାଇଁ ସେ ଭଗବତ ପ୍ରେରିତ । ବିଶ୍ୱର ପ୍ରତ୍ୟେକ ବସ୍ତୁ ଓ କର୍ମରେ ସେ ଭଗବତ ଦର୍ଶନ କରିଥାଏ । ପରମାତ୍ମାଙ୍କର ଏକ ସ୍ଫୁଲିଙ୍ଗ ପ୍ରତ୍ୟେକଙ୍କ ଠାରେ ଆତ୍ମା ରୂପରେ ରହିଥିବାରୁ ସ୍ଥୂଳ ଦୃଷ୍ଟିରେ ପ୍ରତ୍ୟେକ ପୃଥକ୍ ଜଣାପଡୁଥିଲେ ମଧ୍ୟ ସୂକ୍ଷ୍ମ ଦୃଷ୍ଟିରେ କୌଣସି ପାର୍ଥକ୍ୟ ନାହିଁ । ସମଗ୍ର ବିଶ୍ୱରେ ଆତ୍ମଦର୍ଶନ : ଏଇ ବେଦାନ୍ତ ବାଣୀ ଜୀବନର ଲକ୍ଷ୍ୟ । ଏ ଚେତନାର ଉଦୟ ହେଲେ ମଣିଷ ଆତ୍ମପର ଭେଦ ଭୁଲିଯାଇ ଜଗତ ଓ ଜୀବନର କଲ୍ୟାଣ ପାଇଁ ନିଜକୁ ଉତ୍ସର୍ଗ କରିଦିଏ ।

ଏଇ ହେଉଛି ଆମର ସାର୍ବଜନୀନ ସନାତନ ଧର୍ମର ନିର୍ଯ୍ୟାସ । ଭାରତର ସାଧକ, ଋଷି, ମହାପୁରୁଷ ଓ ଚିନ୍ତାଶୀଳ ବ୍ୟକ୍ତିମାନେ ଜଗତର ଏଇ କଲ୍ୟାଣକାମୀ ଚିନ୍ତା ଓ ବାଣୀ ଉଦ୍‌ଘୋଷିତ କରିଯାଇଛନ୍ତି । ଏଇ ଉତ୍ତୁଙ୍ଗ ମାନବବାଦୀ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ବେଦ, ଉପନିଷଦ, ବେଦାନ୍ତ ପ୍ରଭୃତିରେ ପ୍ରକାଶ ପାଇ ଜଗତ ସମକ୍ଷରେ ଶାଶ୍ୱତ ଆଲୋକର ଶିଖା ପ୍ରଜ୍ୱଳିତ କରିଛି ।

ଭାରତର ଏଇ ଆଧ୍ୟାତ୍ମିକ ସଂସ୍କୃତିକୁ ଜୀବନ ସାଧନାର ଆଦର୍ଶ କରିଛି, ଏଥିରେ ମୋର ଗଭୀର ପ୍ରତ୍ୟୟ । ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ମୋର କର୍ମସୂଚୀ ଅନ୍ୟମାନଙ୍କ ଠାରୁ ପୃଥକ୍ । ଜୀବନର ପ୍ରତ୍ୟେକ କର୍ମମୂଳରେ ଭଗବତ୍ ନିର୍ଦ୍ଦେଶ ଓ ପ୍ରେରଣା ଅନୁଭବ କରେଁ । ଜଗତ ଓ ଜୀବନ ପ୍ରତି ନିର୍ଲିପ୍ତ ମମତାକୁ ଆଦରି ନେଇଛି । ପ୍ରତ୍ୟେକ ଘଟଣା ପ୍ରତି ରହିଛି ଅସ୍ତ୍ୟର୍ଥକ ବିଶ୍ୱାସ ଭିତ୍ତିକ ଦୃଷ୍ଟିଭଙ୍ଗୀ (Positive attitude).

## ସାୟାହ୍ନେ ସିଂହାବଲୋକନ :

ସୂର୍ଯ୍ୟାସ୍ତର ସମ୍ଭାବନା ନିକଟବର୍ତ୍ତୀ । ବିବିକ୍ତ ବେଳାରେ ଅସ୍ତାୟମାନ ସୂର୍ଯ୍ୟକୁ ଚାହିଁଲେ ମନରେ ଅତୀତର କେତେ ଛବି ନାଚିଯାଏ । ମନ ଆକାଶରେ ଭାସି ଉଠେ ଶୈଶବର ଚଳମାନ ଶୁଭ୍ର ମେଘଖଣ୍ଡ । କେତେବାର ଜେଜେଙ୍କଠାରୁ ଶୁଣିଛି ମୋର ଧରାବତରଣ କଥା ।

ମୋର ଜନ୍ମ ବେଳକୁ ମା' ମୋର ରୋଗଗ୍ରସ୍ତ- ଚିକିତ୍ସା ପାଇଁ ଅଜା ଆଣି ମା' ସହିତ ମୋତେ ନେଇଗଲେ ମାମୁଁ ଘରକୁ । କିନ୍ତୁ ନାନୀ, ଦୁଇ ବଡ଼ଭାଇ ଓ କୋଳର ଶିଶୁ ମୋତେ ଛାଡ଼ି ମା' ଚିରଦିନ ପାଇଁ ଆଖି ବୁଜି ଦେଲା । ନାନୀ ଓ ଦୁଇଭାଇ ମା'କୁ ଜାଣିଥିଲେ, କିନ୍ତୁ ଦୁଇମାସର ଶିଶୁ ମା'କୁ ଜାଣିବ ବା କିପରି ? ମା' କ୍ଷୀର ମୋ ପକ୍ଷରେ ସ୍ୱପ୍ନ ହୋଇଗଲା । କିନ୍ତୁ କେହି କେହି ଅଜ୍ଞାତ ମାତୃ ସ୍ଥାନୀୟା ନାରୀ ମୋ ପରି ମା' ଛେଉଣ୍ଡ ଶିଶୁକୁ ଯେ ସ୍ୱ ସ୍ୱ ବକ୍ଷର କ୍ଷୀର ପାନ କରାଇ ନାହାନ୍ତି, ତା ନୁହେଁ । ଜଗଜ୍ଜନନୀ ବିଭିନ୍ନ ମାତୃ ରୂପରେ ମୋତେ ସ୍ୱତଃ ବକ୍ଷର କ୍ଷୀର ପାନ କରାଇଛନ୍ତି, ସ୍ନେହରେ ଚୁମ୍ବନ ଦେଇଛନ୍ତି ।

୧୯୮୫, ଅଗଷ୍ଟ ୩୧ ରୁ ଅବସର ଗ୍ରହଣ କରେଁ । ଭଗବତ୍ କୃପାରୁ ଅଦ୍ୟାବଧି ଆଳସ୍ୟ ସ୍ପର୍ଶ କରିନାହିଁ । ଲେଖାପଢ଼ା, ପୁସ୍ତକ ପ୍ରକାଶ ଓ ଭାଷଣ ପ୍ରଦାନରେ ସମୟ

ଯାଉଛି । ମୋ ପ୍ରତିଷ୍ଠିତ ତିନୋଟି ସାହିତ୍ୟ, ଗବେଷଣା ଓ ସାଂସ୍କୃତିକ ପ୍ରତିଷ୍ଠାନ ବ୍ୟତୀତ ବହୁ ଅନୁଷ୍ଠାନ ସହ ଜଡ଼ିତ ଅଛି । ବହୁ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହୋଇଛି ।

ଆଜି ୮୨ ବର୍ଷରେ ସଂପୂର୍ଣ୍ଣ ଯେ ନିରୋଗ ରହିଛି, ତା' ନୁହେଁ । ଅବସର ଗ୍ରହଣ ଠାରୁ ଦେହ ରଥ କୌଣସିମତେ ଗଡ଼ି ଚାଲିଥିଲା । ୭୫ ବର୍ଷ ବୟସ ପର୍ଯ୍ୟନ୍ତ ଦେହକୁ ଦୁର୍ବହ ମଣୁ ନଥିଲି । ପ୍ରତ୍ୟହ ନିୟମିତ ପ୍ରାତଃ ଭ୍ରମଣ କରୁଥିଲି, ତିନ, ଚାରି କିଲୋମିଟର ଚାଲି ଯାଇପାରୁଥିଲି । ଅବଶ୍ୟ ୧୯୯୩ ପୂର୍ବରୁ ହୃଦ୍‌ରୋଗ ଦେଖା ଦେଇଥିଲା, ୧୯୯୩ରେ ହୃଦ୍‌ଯନ୍ତ୍ରରେ ଅପରେଶନ୍ ପରେ ଏଯାଏଁ ଭଗବାନ ମୋତେ ଏକ ପ୍ରକାର ସୁସ୍ଥ ରଖିଛନ୍ତି, କିନ୍ତୁ ବିଭିନ୍ନ ପ୍ରକାର ଔଷଧ ସେବନ ନିୟମିତ ଚାଲିଛି ।

କିନ୍ତୁ ଦୁଇବର୍ଷ ହେଲା ପୂର୍ବପରି ଦୀର୍ଘପଥ ପ୍ରାତଃ ଭ୍ରମଣ କରି ହେଉନାହିଁ, ଯଦିଓ ବ୍ରାହ୍ମ ମୁହୂର୍ତ୍ତରୁ ନିଦ୍ରାଭଙ୍ଗ ହେଉଛି, ଗାତ୍ରୋତ୍ଥାନ କରି ନିତ୍ୟକର୍ମ ସାରି ପ୍ରାର୍ଥନା କରୁଛି । ବୈଦିକ ମନ୍ତ୍ର, ଦେବୀସ୍ତୋତ୍ର ଆବୃତ୍ତି କରୁଛି । ଜୀବନ, ଜଗତ ଓ ବିଶ୍ୱସ୍ରଷ୍ଟାଙ୍କ ସଂପର୍କରେ ଚିନ୍ତନ ଓ ମନନ ମନରେ ଶାନ୍ତି ଓ ଆନନ୍ଦ ସଞ୍ଚାର କରୁଛି । ଏ ସଂପର୍କରେ ଗାୟତ୍ରୀ ଉପାସନା ତତ୍ତ୍ୱ, ଆତ୍ମ ସାଧନାର ମୂଳଗ୍ରନ୍ଥ 'ଆକାଶବ୍ରହ୍ମ', 'ଓଁକାର ସାଧନା', ଶ୍ରୀମଦ୍ ଭଗବଦ୍‌ଗୀତା, ଶ୍ରୀମଦ୍ ଭାଗବତ, ରାମକୃଷ୍ଣ, ବିବେକାନନ୍ଦ, ସ୍ୱାମୀ ଶିବାନନ୍ଦ, ଯୋଗୀ ଅରବିନ୍ଦ, ସ୍ୱାମୀ ନିଗମାନନ୍ଦ, ମହାତ୍ମାଗାନ୍ଧୀ, ବାଳଗଙ୍ଗାଧର ତିଳକ ପ୍ରଭୃତି ମହାପୁରୁଷ ଓ ସାଧକଙ୍କର ରଚିତ ଗ୍ରନ୍ଥ, ସେମାନଙ୍କର ଜୀବନୀ ଅଧ୍ୟୟନ କରି ସେମାନଙ୍କର ସାଧନାର ଆଦର୍ଶ ପ୍ରତି ଅନ୍ତରରେ ଶ୍ରଦ୍ଧା ଓ ଭକ୍ତି ଅପ୍ରତିହତ ରଖିଛି ।

ଆଜି ତଥାକଥିତ ଶିକ୍ଷିତ, ନେତା, ଶାସକ, ଚିକିତ୍ସକ, ଆରକ୍ଷୀ, ଅରଣ୍ୟରକ୍ଷକ ମାନଙ୍କଠାରେ ଯେପରି ସମାଜ ଓ ବ୍ୟକ୍ତିଙ୍କ ପ୍ରତି ସେବା ମନୋଭାବ ରହିବାର କଥା, ତାହା ଲକ୍ଷିତ ହେଉନାହିଁ । ନିଜ ଦାୟିତ୍ୱ ଓ କର୍ତ୍ତବ୍ୟ ସଂପର୍କରେ ଶିଥିଳତା ସମାଜ ଓ ରାଷ୍ଟ୍ରର ବିକାଶର ବାଧକ ହୋଇଛି । ନେତା, ଲୋକପ୍ରତିନିଧି ଓ ସେବାସଂସ୍ଥାମାନଙ୍କରେ ଯେପରି ଅହମିକା, କ୍ଷମତା ଓ ଅର୍ଥଲୋଭ ବଢ଼ି ଚାଲିଛି, ଏଥିରେ ସାଧାରଣ ଲୋକେ ସାମାଜିକ ତଥା ରାଷ୍ଟ୍ରୀୟ ନ୍ୟାୟବୋଧ ଓ ସେବାରୁ ବଞ୍ଚିତ ହେଉଛନ୍ତି । ସମାଜରେ ଦୁର୍ନୀତି, ଭ୍ରଷ୍ଟାଚାର, ସଂଭୋଗ ପ୍ରବଣତା, ଅପସଂସ୍କୃତି ବଢ଼ି ଚାଲିବା ସଙ୍ଗେସଙ୍ଗେ ଚୋରି, ଡକାୟତି, ଲୁଣ୍ଠନ ଆଦି ଅମାନୁଷିକତା ବଢ଼ି ଚାଲିଛି । ଆଦର୍ଶ ଓ ସେବାର ଡିଣ୍ଡିମ ପିଟା ଚାଲି ଯେପରି ଆଦର୍ଶ ହୀନତା, ସ୍ୱାର୍ଥପରତା, ନୀତି ହୀନତା ବଢ଼ିଚାଲିଛି, ଏଥିରେ ଚିନ୍ତାଶୀଳ ବ୍ୟକ୍ତିମାନେ ରୁଦ୍ଧଶ୍ୱାସ ଅନୁଭବ କରୁଛନ୍ତି । ଧର୍ମ ଓ ସେବା ନାମରେ କେବଳ ଛଳନାର ଅଭିନୟ ଚାଲିଛି । ସଂସ୍କୃତି ନାମରେ ଅପସଂସ୍କୃତି ବଢ଼ିଚାଲିଛି ।

ସମାଜର ବିକାଶପାଇଁ ନାନା ଯୋଜନା ଓ ପ୍ରକଳ୍ପମାନ ଚାଲିଛି । ଆନ୍ତର୍ଜାତିକ ଅର୍ଥନୈତିକ ସଂସ୍ଥାମାନଙ୍କରୁ ହଜାର ହଜାର କୋଟି ଟଙ୍କା ଋଣ କରା ହେଉଛି, ଅଥଚ

କର୍ତ୍ତାମାନଙ୍କର ଚରମ ଅସାଧୁତା ଫଳରେ ଗଣ ଅର୍ଥର ବାଟମାରଣା ବଢ଼ିଚାଲିଛି । କଥା ଓ କାର୍ଯ୍ୟ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ମଣିଷକୁ ଅମଣିଷ କରି ଦେଉଛି । ଏମାନେ ମାନବ ଜୀବନର ଲକ୍ଷ୍ୟ ସଂପର୍କରେ ଯଦି ସଚେତନ ହେଉଥାନ୍ତେ, ତା' ହେଲେ ବ୍ୟକ୍ତିଗତ ଜୀବନ, ସମାଜ ଓ ରାଷ୍ଟ୍ରରେ ଏତେ ବିଭ୍ରାଟ, ଏତେ ଅବନତି ଦେଖାଯାଉ ନଥାନ୍ତା ।

ମାନବ ଜୀବନ ସୃଷ୍ଟି ମଧ୍ୟରେ ହେଉଛି ଦୁର୍ଲ୍ଲଭ । ଏଇ ଦୁର୍ଲ୍ଲଭ ଜୀବନର ଯେପରି ଅସଦ୍‌ବିନିଯୋଗ ଚାଲିଛି, ଏଥିରେ କି ମୁକ୍ତି ସମ୍ଭବ ? ସୀମିତ ଜୀବନ କାଳ ମଧ୍ୟରେ ଅସଂଯମ, ଅନ୍ୟାୟ, ପ୍ରଲୋଭନ, ଅବିଚାର, କ୍ଷମତା ଓ ଅର୍ଥଲୋଭର ମାତ୍ରା କମ୍ ନୁହେଁ । ମନୁଷ୍ୟକୁ ଦିନେ ଅପରିହାର୍ଯ୍ୟ ମୃତ୍ୟୁର ସମ୍ମୁଖୀନ ହେବାକୁ ହେବ । ଏହା ଜାଣି ମଧ୍ୟ ମଣିଷ କିଛି ଜାଣୁ ନାହିଁ । ଅନ୍ୟାୟ ଅର୍ଜିତ ଐଶ୍ୱର୍ଯ୍ୟର ସ୍ତୂପକୁ ଚାହିଁ ଚାହିଁ ମଣିଷ ଦେହତ୍ୟାଗ କରିବ । ଏଥିରେ ତା'ର ଆତ୍ମା କି ଶାନ୍ତି ପାଇବ ?

ଯୁବସୁଲଭ ଉନ୍ମାଦନା ବଶତଃ ଜୀବନକୁ ଭୋଗ କରିବାର ବାସନା ପ୍ରବଳ ଥିଲା । ପାହାଡ଼ ପର୍ବତ ଲଂଘନ କରିବାରେ କ୍ଲାନ୍ତି ନଥିଲା । ଧନ, ସନ୍ତାନ ଓ ଗୃହର ଅଭାବ ଭଗବାନ ରଖି ନାହାନ୍ତି, କିନ୍ତୁ ଜୀବନର ସାୟାହ୍ନରେ ଏ ସମସ୍ତ ଗୌଣ ହୋଇ ପଡୁଛି । ଆସିଛି ଏକା, ଯିବି ଏକା : ଏ ଭାବନା ଯେତେବେଳେ ଜମାଟ ବାନ୍ଧୁଛି, ସେତେବେଳେ ନିଜକୁ ନିଃସହାୟ ବୋଧ ହେଉଛି, ମନେ ହେଉଛି ଜୀବନରେ ସତେ ଯେପରି ପଥଭ୍ରଷ୍ଟ ହୋଇପଡ଼ିଛି । ଜାଗତିକ କାମନା ବାସନାର ଅବସାନ ଘଟିବା ଦୂରେ ଥାଉ, ଆତ୍ମା ପିଣ୍ଡକୁ ଯେତେବେଳେ ଛାଡ଼ିକରି ଚାଲିଯିବ, ସେତେବେଳେ ସତ୍ୟର ଆଲୋକ ତା' ପକ୍ଷରେ ସୁଲଭ ହେବ ?

ଚର୍ମଲୋଳିତ ହୋଇ ଆସିଲାଣି, ଦୃଷ୍ଟିଶକ୍ତି କ୍ରମଶଃ କ୍ଷୀଣ ହୋଇ ଆସୁଛି । ଘଣ୍ଟାଘଣ୍ଟା ଧରି ଅନର୍ଗଳ ଭାଷଣ ଆଜି ସ୍ୱପ୍ନର ବିଷୟ ହୋଇ ଆସୁଛି । ଦ୍ରୁତ ପଦବିକ୍ଷେପ ଆଜି ଶିଥିଳ ହୋଇ ଆସିଲାଣି । ଦୁଇଟି ପାଦରେ ଦୃଢ଼ ଭାବରେ ଠିଆହୋଇ ପାରୁଥିବା ମଣିଷ ଆଜି ଥରଥର ହେଉଛି । ଦୁଇଟି ପାଦ ସ୍ଥାନରେ ଯଷ୍ଟି ସ୍ୱରୂପ ତୃତୀୟ କୃତ୍ରିମ ପଦ ଆଜି ସାମୟିକ ସମ୍ବଳ ହେଲାଣି । ଏପରି ଅବସ୍ଥାରେ ଦେହରେ ନାନା ରୋଗର ଉପସର୍ଗ । ଅଷ୍ଟୋତ୍ତର ସମ୍ବତ୍ସରର ଆବଶ୍ୟକତା କ'ଣ ? ଚାହୁଁ ଚାହୁଁ କେତେ ଚିହ୍ନା ଆପଣା ଲୋକ ଚାଲିଗଲେଣି ।

ଏପରି ଅବସ୍ଥାରେ ଶାସ୍ତ୍ରବାସନା ଅତୁଟ ରହିଛି । ଗୃହ ମଧ୍ୟରେ ବହୁ ଗ୍ରନ୍ଥ ରହିଛି, କେତେ ପଠିତ, କେତେ ଅପଠିତ । ପୁଣି ପଠିତ ଗ୍ରନ୍ଥମାନଙ୍କର ପ୍ରୟୋଜନୀୟ ଟୀକା ଟିପ୍ପଣୀ ଅଗଣିତ । ଡାଏରୀରେ ଲିପିବଦ୍ଧ । ଏଣେ ଉପନିଷଦର ବାଣୀ ମନେ ପଡ଼ିଯାଏ- ''ନାୟମାତ୍ମା ବଳ ହୀନେନ ଲଭ୍ୟ, ନ ମେଧୟା ନ ବହୁ ନା ଶ୍ରୁତେନ ।'' ତଥାପି ଯେଉଁ କେତେ ଦିନ ରହିଛି, ସମଗ୍ର ବିଶ୍ୱ ପ୍ରକୃତିରେ ସେଇ ପରମାତ୍ମା ଚେତନା ଅପ୍ରତିହତ ରହୁ । ଅନ୍ତିମ ବିଦାୟର ଦିବ୍ୟ ମୁହୂର୍ତ୍ତରେ ନୀରୋଗ ଅବସ୍ଥାରେ ଦିବ୍ୟ ଆଲୋକର ସଂଧାନରେ ଆତ୍ମା ଚାଲିଯାଉ : ଏହାହିଁ ଅନ୍ତିମ କାମନା ।

ଢାବିତ୍ତ ଅବସ୍ଥାରେ 'ଶିକ୍ଷାବିତ୍‌ର ଆତ୍ମଲିପି' ଲେଖାଗଲା । ପାଠକମାନେ ବିଚାର କରିବେ । ଏଇ 'ଆତ୍ମଲିପି' ସହୃଦୟ ପାଠକମାନଙ୍କ ମନରେ କିଂଚିତ୍ ଆନନ୍ଦ ଦେଲେ ଶ୍ରମ ସାର୍ଥକ ମଣିବି । ଅଗଣିତ ସଶ୍ରଦ୍ଧ ପାଠକମାନଙ୍କର ଶ୍ରେୟଃ କାମନା କରି ରହୁଛି ।

ଲେଖକ

୨୫/୫/୨୦୦୯

ଗାୟତ୍ରୀ କୃପା

ନୀଳାଦ୍ରି ବିହାର, କଟକ

## ॥ ଷଷ୍ଠ ଅଧ୍ୟାୟ ॥

## ପରିଶିଷ୍ଟ

## ପ୍ରଫେସର ଗଙ୍ଗାଧର ବଳଙ୍କ ବଂଶାବଳୀ



## ବିଭିନ୍ନ ସେମିନାର୍, ରିଫ୍ରେସର କୋର୍ସ ଓ ପ୍ରାଚ୍ୟବିଦ୍ୟା ସମ୍ମିଳନୀରେ ଯୋଗାଦାନ :

ଓଡ଼ିଶା ଓ ଓଡ଼ିଶା ବାହାରର ବିଭିନ୍ନ ବିଶ୍ୱବିଦ୍ୟାଳୟ, କଲେଜ୍ ଓ ସାଧାରଣ ଅନୁଷ୍ଠାନ (ସାଂସ୍କୃତିକ ଅନୁଷ୍ଠାନ, ସାହିତ୍ୟ ସମ୍ମେଳନ)ମାନଙ୍କରେ ଅନୁଷ୍ଠିତ ସେମିନାର୍, ରିଫ୍ରେସର କୋର୍ସ ଓ ପ୍ରାଚ୍ୟବିଦ୍ୟା ସମ୍ମିଳନୀରେ ଯୋଗଦାନ କରି ଗବେଷଣାମୂଳକ ସନ୍ଦର୍ଭ ଉପସ୍ଥାପନ ଓ ଭାଷଣ ପ୍ରଦାନ କରିବା ସଂଗେସଂଗେ ବିଭିନ୍ନ ଆଲୋଚନାରେ ଭାଗ ନେଇଥିଲି, ତନ୍ମଧ୍ୟରୁ କେତୋଟିର ଉଲ୍ଲେଖ କରାଯାଇଛି-

୧. ପ୍ରାଚୀନ ଓଡ଼ିଆ ସାହିତ୍ୟର ଆଧୁନିକ ଓଡ଼ିଆ ସାହିତ୍ୟକୁ ଦାନ (ବିଶ୍ୱଭାରତୀ ଓଡ଼ିଆ ସେମିନାର୍, ବିଦ୍ୟାଭବନ, ଶାନ୍ତିନିକେତନ, ୧୧/୨/ ୧୯୭୩)।

୨. ଉତ୍କଳୀୟ ସଂସ୍କୃତିର ସଂସ୍କୃତ ସାହିତ୍ୟକୁ ଅବଦାନ। (ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ବାଲେଶ୍ୱରରେ ଆୟୋଜିତ ସେମିନାର୍, ୧୪/୧/୧୯୮୦)।

୩. Cross current between Oriya and Bengali Literature (ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆୟୋଜିତ ସାଂସ୍କୃତିକ ଭାବବିନିମୟ ଯୋଜନାରେ କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗଳା ବିଭାଗରେ ପ୍ରଦତ୍ତ ଭାଷଣ, ୨୮/୩/୧୯୮୨)।

୪. ଓଡ଼ିଶାରେ ସାମାଜିକ ଓ ଧର୍ମୀୟ ସଂସ୍କାର ଆନ୍ଦୋଳନ (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗ ପକ୍ଷରୁ ଆୟୋଜିତ ୟୁ.ଜି.ସି. ସେମିନାର୍‌ରେ ଉପସ୍ଥାପିତ ସନ୍ଦର୍ଭ ଓ ଭାଷଣ, ୨୮/୬/୧୯୮୪)।

୫. ଓଡ଼ିଶା ସାହିତ୍ୟ ଓ ଆଦିବାସୀ ସଂସ୍କୃତି (କୋରାପୁଟରେ ୧୯୮୨, ମେ'ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆୟୋଜିତ ସେମିନାର୍‌ରେ ଆଲୋଚନା।

୬. Orissam Heritage : Her People and Culture (ବିଶ୍ୱଭାରତୀ ବଙ୍ଗଳା ବିଭାଗ ପକ୍ଷରୁ ଆୟୋଜିତ ସେମିନାର୍‌ରେ ଉପସ୍ଥାପିତ ସନ୍ଦର୍ଭ, ୩୧/୩/ ୧୯୮୨)।

୭. Jagannath Cult and National Integration (ଟିଟିଲାଗଡ଼ ଡ଼ି.ଏ.ଭି. କଲେଜ୍ ପକ୍ଷରୁ ଆୟୋଜିତ U.G.C. Seminar ରେ ଉପସ୍ଥାପିତ ସନ୍ଦର୍ଭ। ଗୋଟିଏ ଅଧିବେଶନରେ ସଭାପତି ଭାବରେ କାର୍ଯ୍ୟ ପରିଚାଳନା, ଡିସେମ୍ବର ୧୯୮୬)।

୮. ସାହିତ୍ୟରେ ରୋମାଣ୍ଟିକ୍ ଚେତନା (ଆର୍ତ୍ତବଲ୍ଲଭ ଓଡ଼ିଆ ସେମିନାର୍ ରେଭେନ୍ସା କଲେଜ, କଟକ, ସେପ୍ଟେମ୍ବର, ୧୯୮୨)।

୯. ଭଞ୍ଜକାବ୍ୟ ଓ ନୈଷଧ ଚରିତ (କଟକରେ କଳିଙ୍ଗ ଭାରତୀ ଆୟୋଜିତ ଭଞ୍ଜ ଜୟନ୍ତୀରେ ଉପସ୍ଥାପିତ ସନ୍ଦର୍ଭ, ମେ, ୧୯୫୫)।

୧୦. ସାହିତ୍ୟରେ ଜୀବନ ଦର୍ଶନ (ଉତ୍ତର ଓଡ଼ିଶା ସାଂସ୍କୃତିକ ସମ୍ମେଳନ, ରାଇରଙ୍ଗପୁର, ୧୯୮୦)।

୧୧. ସାମାଜିକ ସଂସ୍କାରରେ ସାହିତ୍ୟର ଭୂମିକା (ବରୁଣେଶ୍ୱର ବକ୍ତୃତାମାଳା ସିରିଜ୍‌ରେ ପ୍ରଦତ୍ତ ଭାଷଣ, ବରୁଣେଶ୍ୱର ମହାବିଦ୍ୟାଳୟ, ଯାଜପୁର, ୧୯୮୬)।

୧୨. ଭୁବନେଶ୍ୱର ଲେଖକ ସାମ୍ମୁଖ୍ୟରେ ବିଭିନ୍ନ ବର୍ଷର ସାହିତ୍ୟୋତ୍ସବରେ (୧୯୮୨, ୧୯୮୩, ୧୯୮୫, ୧୯୮୬) ରାଉରକେଲା, ବାଲେଶ୍ୱର, ପାରଳାଖେମୁଣ୍ଡି ଓ କେନ୍ଦୁଝରରେ ଓଡ଼ିଆ ଭାଷା ଓ ସାହିତ୍ୟ ସଂପର୍କିତ ପ୍ରବନ୍ଧ ଉପସ୍ଥାପନ ଓ ଆଲୋଚନା।

୧୩. ଗଙ୍ଗାଧର ମେହେରଙ୍କ କବିପ୍ରତିଭା (ଗଙ୍ଗାଧର ମେହେର କଲେଜ୍, ସମ୍ବଲପୁର, ୧୯୮୪)।

୧୪. କବିବର ରାଧାନାଥ (ରାଧାନାଥ ପାଠାଗାର, ସୋରୋ ପକ୍ଷରୁ ରାଧାନାଥ ଜୟନ୍ତୀରେ ପ୍ରଦତ୍ତ ଭାଷଣ, ୧୯୭୮ ରୁ ୧୯୮୧)।

୧୫. ସଂସ୍କୃତ ଭାଷାର ମହତ୍ତ୍ୱ (ବିଶ୍ୱସଂସ୍କୃତ ପରିଷଦ, ଭଦ୍ରକ ଶାଖା, ୧୯୮୧)।

୧୬. ଭାଗବତ ଧର୍ମ (କେନ୍ଦୁଝର ବିଜ୍ଞାନ କଲେଜ୍ ବା ଧରଣୀଧର କଲେଜ୍, କେନ୍ଦୁଝରଗଡ଼, ୧୯୬୭)।

୧୭. ମହାକବି କାଳିଦାସ (ଭଦ୍ରକ କଲେଜ୍ ସଂସ୍କୃତ ବିଭାଗ ଦ୍ୱାରା ଆୟୋଜିତ ସେମିନାର୍‌ରେ ପ୍ରଦତ୍ତ ଭାଷଣ, ୧୯୭୮ ରୁ ୧୯୮୧)।

୧୮. ସାରଳା ଦାସ (ସାରଳା ସାହିତ୍ୟ ସଂସଦ, କଟକ, ୧୯୮୩; ଆଦିକବି ସାରଳା ଦାସ ମହାବିଦ୍ୟାଳୟ, ତିର୍ତ୍ତୋଲ, ୧୯୮୭)।

୧୯. ଭକ୍ତଚରଣ ଦାସ (ରାଜସୁନାଖଳା, ୧୯୮୮)।

୨୦. ଓଡ଼ିଆ ଭାଷା ଓ ସାହିତ୍ୟ (ଓଡ଼ିଆ ବିଭାଗ, ବିଶ୍ୱଭାରତୀ, ଶାନ୍ତିନିକେତନ, ୧୯୮୪)।

୨୧. ଶୂନ୍ୟବାଦ (ମହିମାଧର୍ମ ଗବେଷଣା ପରିଷଦ, ଭୁବନେଶ୍ୱର, ୧୯୮୪)।

୨୨. ରାମାୟଣର ଚରିତ୍ର (ପୁରୀ ରାମଦୟା ପରିଷଦ, ୧୯୮୩)।

୨୩. ରାମାୟଣର ମହତ୍ତ୍ୱ (ଭଦ୍ରକ ରାମଦୟା ପରିଷଦ, ୧୯୮୨)।

୨୪. କବି ନୀଳକଣ୍ଠ (ନୀଳକଣ୍ଠ ଶତବାର୍ଷିକୀ, ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୮୪)।

୨୫. ଆଧୁନିକ ଓଡ଼ିଆ ଭାଷା ଓ ସାହିତ୍ୟ ସମସ୍ୟା (ବିଷୁବ ମିଳନ, ପ୍ରଜାତନ୍ତ୍ର ପ୍ରଚାର ସମିତି କଟକ, ୧୯୬୧)।

୨୬. ସାଂପ୍ରତିକ ସାହିତ୍ୟର ପୃଷ୍ଠଭୂମି (ବିଷୁବ ମିଳନ, ପ୍ରଜାତନ୍ତ୍ର ପ୍ରଚାର ସମିତି, ଏକ ସାନ୍ଧ୍ୟ ଅଧିବେଶନରେ ସଭାପତି ଭାଷଣ, ୧୯୭୪)।

୨୭. ବ୍ୟାସକବି ଫକୀର ମୋହନ (ଫକୀର ମୋହନ ସାହିତ୍ୟ ପରିଷଦ, ବାଲେଶ୍ୱର, ୧୯୬୮)।

୨୮. ଶ୍ରୀକୃଷ୍ଣ ଓ ଭାଗବତଧର୍ମ (ସତ୍ୟସାଇ ସେବାସମିତି, ଭଦ୍ରକ, ୧୯୬୯)।

୨୯. ସାହିତ୍ୟ ସମ୍ମେଳନ (ଓଡ଼ିଆ ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୧)।

୩୦. Folk Literature (An International Seminar, Visva Bharati, 1989).

୩୧. ଅଳଙ୍କାର ଶାସ୍ତ୍ର (ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗ ଦ୍ୱାରା ଆୟୋଜିତ ୟୁ.ଜି.ସି. ସେମିନାର୍‌ରେ ପ୍ରଦତ୍ତ ଭାଷଣ, ୧୯୮୪)।

୩୨. ଶକ୍ତି ଉପାସନା (ୟୁନିଭର୍ସ, ମୈତ୍ରୀସରଣି, କଟକ, ୨୨/୯/୧୯୯୦)।

୩୩. ସାରଳା ସାହିତ୍ୟ (ବିଶ୍ୱଭାରତୀ ଓଡ଼ିଆ ବିଭାଗ ଓ ସାରଳା ସାହିତ୍ୟ ସଂସଦ, କଟକ ଆନୁକୂଲ୍ୟରେ ଏକ ସେମିନାର୍, ବିଶ୍ୱଭାରତୀ, ଶାନ୍ତିନିକେତନ, ୧୯୯୫)।

୩୪. ନିଖିଳ ଭାରତ ପ୍ରାଚ୍ୟବିଦ୍ୟା ସମ୍ମିଳନୀରେ ଯୋଗଦାନ, କୃଷି ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର, ୧୯୬୧)।

୩୫. ଭାଷା ଓ ସାହିତ୍ୟ ସମାଲୋଚନା (ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା ଆୟୋଜିତ ରିଫ୍ରେସର କୋର୍ସରେ ଯୋଗଦାନ ଓ ଆଲୋଚନା, ବାଣୀବିହାର, ୧୯୭୯)।

୩୬. ବୈଷ୍ଣବ ସାହିତ୍ୟ (ୟୁ.ଜି.ସି. ଆନୁକୂଲ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଆୟୋଜିତ ରିଫ୍ରେସର୍ କୋର୍ସରେ ପ୍ରଦତ୍ତ ଭାଷଣ, ୧୯୯୫)।

୩୭. ସାହିତ୍ୟଶାସ୍ତ୍ର (ୟୁ.ଜି.ସି. ଆନୁକୂଲ୍ୟରେ ଉତ୍କଳ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ପକ୍ଷରୁ ରିଫ୍ରେସର୍ କୋର୍ସରେ ପ୍ରଦତ୍ତ ଭାଷଣ)।

୩୮. ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଆବେଗ ଓ ଆବେଦନ (ଉତ୍କଳ ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗ, ରଜତ ଜୟନ୍ତୀ, ୫/୧୨/୧୯୯୪)।

୩୯. ଉପେନ୍ଦ୍ର ଭଞ୍ଜଙ୍କର ବର୍ଣ୍ଣନା ଚାତୁରୀ ଓ ଆଳଙ୍କାରିକ କୃତିତ୍ୱ (ଭଞ୍ଜ ଜୟନ୍ତୀ, କଳିଙ୍ଗ ଭାରତୀ, କଟକ, ୨୨/୫/୨୦୦୨)।

## ପ୍ରକାଶିତ ପୁସ୍ତକାବଳୀ :

ମୋର ପ୍ରକାଶିତ ପୁସ୍ତକଗୁଡ଼ିକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ, ଯଥା- (କ) ସାହିତ୍ୟ ସମୀକ୍ଷାମୂଳକ ଗ୍ରନ୍ଥ, (ଖ) ସାଧାରଣ ପୁସ୍ତକ ଓ (ଗ) ସଂପାଦିତ ଗ୍ରନ୍ଥ।

## (କ) ସାହିତ୍ୟ ସମୀକ୍ଷାମୂଳକ ଗ୍ରନ୍ଥ

**୧. ସାହିତ୍ୟାଲୋକ :**

ପ୍ରକାଶକ : ନିଉଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ ୧୯୬୪, ପୃ. ୧୬୪ । ଏଥିରେ ବୈଷ୍ଣବ ସାହିତ୍ୟ, ରୀତି ସାହିତ୍ୟ, ସଂସ୍କୃତ ନାଟକ ଓ ପୌରାଣିକ ସାହିତ୍ୟ ସଂପର୍କରେ ସାତଗୋଟି ନିବନ୍ଧ ସନ୍ନିବେଶିତ ।

**୨. ସାହିତ୍ୟ ଆଲୋଚନା :**

ପ୍ରକାଶକ : ଗ୍ରନ୍ଥମନ୍ଦିର, ବିନୋଦ ବିହାରୀ, କଟକ-୨, ୧୯୬୫, କ୍ରାଉନ. ପୃ. ୩୦୫ । ଏଥିରେ ସନ୍ନିବେଶିତ ଆଠଟି ସନ୍ଦର୍ଭ ଆଧୁନିକ ଓଡ଼ିଆ ସାହିତ୍ୟ ସଂପର୍କୀୟ । ଏଥିରେ କବିବର ରାଧାନାଥ, ଗଙ୍ଗାଧର ମେହେର, ନନ୍ଦକିଶୋର ଓ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ରଚନାର ଆଲୋଚନା ସହ ଓଡ଼ିଆ ସାହିତ୍ୟକୁ ସଂସ୍କୃତ ସାହିତ୍ୟର ଦାନ ଓ ପ୍ୟାରୋଡ଼ି ବା ଲାଳିକା ସଂପର୍କରେ ଆଲୋଚନା ରହିଛି । ମେହେରଙ୍କ ପ୍ରଣୟବଲ୍ଲରୀ ଓ କାଳିଦାସଙ୍କର ଅଭିଜ୍ଞାନ ଶାକୁନ୍ତଳମ୍‌ର ଦୀର୍ଘ ତୁଳନାତ୍ମକ ଆଲୋଚନା ରହିଛି ।

**୩. ଆଲୋକ ଓ ଆଲୋଚନା :**

ପ୍ରକାଶକ : ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨, ୧୯୭୦, କ୍ରାଉନ୍, ପୃ. ୧୭୭ । ଏଥିରେ ନବଶିକ୍ଷା ଓ ଆଧୁନିକ ସାହିତ୍ୟ ସଂପର୍କରେ ବାରଗୋଟି ପ୍ରବନ୍ଧ ରହିଛି ।

**୪. ସାହିତ୍ୟ ଜିଜ୍ଞାସା :**

ପ୍ରକାଶକ : ଓଡ଼ିଶା ବୁକ୍‌ଷ୍ଟୋର, ବିନୋଦ ବିହାରୀ, କଟକ-୨ । ୧ମ ସଂସ୍କରଣ: ୧୯୭୧ ଓ ଦ୍ୱିତୀୟ ସଂସ୍କରଣ : ୧୯୮୩ । ୨ୟ ସଂସ୍କରଣରେ ଅଳଙ୍କାର ଓ ମଧ୍ୟଯୁଗୀୟ ସାହିତ୍ୟ ସଂପର୍କିତ ପ୍ରବନ୍ଧଗୁଡ଼ିକୁ ପୃଥକ୍ କରାଯାଇ ଶାକ୍ତଧର୍ମ ଓ ସାହିତ୍ୟ, ନାଥ ସାହିତ୍ୟ, ପୌରାଣିକ, ସାରଳା ଓ ବୈଷ୍ଣବ ସାହିତ୍ୟ ସଂପର୍କିତ ନିବନ୍ଧଗୁଡ଼ିକୁ ସନ୍ନିବେଶିତ କରାଯାଇଛି । ଡିମାଇ ପୃ. ୨୬୬ ।

**୫. କବିବର ରାଧାନାଥ ଓ ଉଷା :**

ପ୍ରକାଶକ : ସାହିତ୍ୟ ଜଗତ୍, ବାଲେଶ୍ୱର, ୧୯୬୬, କ୍ରାଉନ୍, ପୃ. ୭୯ । ଏଥିରେ ଉଷା କାବ୍ୟର ବିସ୍ତୃତ ସମୀକ୍ଷା କରାଯାଇଛି ।

**୬. ବୈଷ୍ଣବ ସାହିତ୍ୟର ତାତ୍ତ୍ୱିକ ଭୂମିକା :**

ପ୍ରକାଶକ : ବିଦ୍ୟାପୁରୀ, ବାଲୁବଜାର, କଟକ-୨, ୧ମ ସଂସ୍କରଣ-୧୯୮୨, ଦ୍ୱିତୀୟ ସଂସ୍କରଣ : ୨୦୦୦ । ଏଥିରେ ଶୁଦ୍ଧାଭକ୍ତିର ବୈଷ୍ଣବ ସାହିତ୍ୟ ଓ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ ସଂପର୍କରେ ୧୪ଟି ପ୍ରବନ୍ଧ ରହିଛି । ଡିମାଇ, ପୃ. ୧୯୮ ।

୭. ମେହେର ସୃଷ୍ଟି ସମୀକ୍ଷା :

ପ୍ରକାଶକ : ସାଥୀମହଲ, ବିନୋଦ ବିହାରୀ, କଟକ-୨, ୧୯୮୩, ଡିମାଇ, ପୃ. ୧୮୮ । ଏଥିରେ 'ସୌନ୍ଦର୍ଯ୍ୟତତ୍ତ୍ୱ ଓ ମେହରଙ୍କର ସୌନ୍ଦର୍ଯ୍ୟବୋଧ' ସନ୍ଦର୍ଭ ସହ 'ଇନ୍ଦୁମତୀ' ଓ 'କୀଚକବଧ' କାବ୍ୟର ସମୀକ୍ଷା କରାଯାଇଛି । ପୁଣି ପ୍ରଣୟବଲ୍ଲରୀ ଓ ଅଭିଜ୍ଞାନ ଶାକୁନ୍ତଳମ୍ ଏବଂ ତପସ୍ୱିନୀ ଓ ସୀତା ବନବାସର (ନନ୍ଦକିଶୋର ବଳ) ତୁଳନାତ୍ମକ ସମୀକ୍ଷା ଏଥିରେ ସନ୍ନିବେଶିତ ।

୮. ସାହିତ୍ୟିକ ବିଚାର ବିମର୍ଶ :

ପ୍ରକାଶକ : ନିଉଷ୍ଟୁଡ଼େଣ୍ଟସ୍ ଷ୍ଟୋର, କଟକ-୨, ୧୯୮୩, ଡ଼ିମାଇ, ପୃ. ୨୬୫ । ଏଥିରେ ସଂସ୍କୃତ ସାହିତ୍ୟ ସଂପର୍କରେ ତିନୋଟି, ଆଧୁନିକ ସାହିତ୍ୟ ସଂପର୍କରେ ତେରଟି ଏବଂ ସାଂପ୍ରତିକ ହିନ୍ଦୀ ସାହିତ୍ୟ ସଂପର୍କରେ ଗୋଟିଏ ପ୍ରବନ୍ଧ ସନ୍ନିବେଶିତ ।

୯. ଗୋପାଳକୃଷ୍ଣ ସୃଷ୍ଟି ସମୀକ୍ଷା : (ଡ଼ି.ଲିଟ୍. ସନ୍ଦର୍ଭ)

ପ୍ରକାଶକ : ଗଙ୍ଗାଧର ବଳ, ୧୯୮୫, ଡିମାଇ, ପୃ. ୪୫୮ । ଏହା ମୋର ଡି.ଲିଟ୍. ସନ୍ଦର୍ଭ, ଗୀତିକବି ଗୋପାଳକୃଷ୍ଣଙ୍କ ସଂପର୍କରେ ଏକ ପ୍ରାମାଣିକ ଗବେଷଣାମୂଳକ ସନ୍ଦର୍ଭ । ଏଥିରେ କବି ପରିଚିତି, ସଂଗୀତଶାସ୍ତ୍ର, ସଂଗୀତ ରଚନା, ପ୍ରେମପ୍ରଧାନ ବୈଷ୍ଣବ କାବ୍ୟ ଓ ଗୀତିକାବ୍ୟର ପରଂପରା ସଂପର୍କରେ ଆଲୋଚନା କରାଯାଇ ଗୋପାଳକୃଷ୍ଣ ଗୀତି ସମ୍ଭାର (ସଂସ୍କୃତ ଓ ଓଡ଼ିଆ) ସଂପର୍କରେ ବିସ୍ତୃତ ବସ୍ତୁନିଷ୍ଠ (Objecive) ଓ ତୁଳନାତ୍ମକ ସମୀକ୍ଷା କରାଯାଇଛି । ସଂସ୍କୃତ ବୈଷ୍ଣବ କାବ୍ୟ, ନାଟକ, ଅଳଙ୍କାର ଓ ତାତ୍ତ୍ୱିକ ଗ୍ରନ୍ଥମାନଙ୍କରୁ ବହୁ ତୁଳନାତ୍ମକ ଉଦ୍ଧୃତି ଦିଆଯାଇଛି ।

୧୦. ସାହିତ୍ୟ ତତ୍ତ୍ୱ ଓ ସାହିତ୍ୟ ସମୀକ୍ଷା :

ପ୍ରକାଶକ : ନାଳନ୍ଦା, ବିନୋଦ ବିହାରୀ, କଟକ-୨, ୧୯୮୮, ଡିମାଇ, ପୃ. ୧୫୬ । ଅଳଙ୍କାର, ବକ୍ରୋକ୍ତି, ରୀତି, ଧ୍ୱନି, ଔଚିତ୍ୟ ଓ ସାହିତ୍ୟ ସଂବାଦ ସଂପର୍କରେ ତାତ୍ତ୍ୱିକ ବିଚାର କରାଯାଇ ଭରତମୁନିଙ୍କ ନାଟ୍ୟତତ୍ତ୍ୱ, ସଂସ୍କୃତ ନାଟକର ସୂତ୍ରଧାର ଓ ବିଦୂଷକ, ସଂସ୍କୃତରେ ଋତୁକାବ୍ୟ ଓ ସଂସ୍କୃତ ସାହିତ୍ୟକୁ ଉତ୍କଳୀୟ ସଂସ୍କୃତିର ଦାନ ସଂପର୍କରେ ଆଲୋଚନା କରାଯାଇଛି ।

୧୧. ଶ୍ରୀମଦ୍ ଭାଗବତ : ଏକ ଅଧ୍ୟୟନ

ପ୍ରକାଶକ : ନାରାୟଣ ବୈରିଶଲ୍ୟ ସ୍ମୃତି ପରିଷଦ, ଶବର ସାହି, ଭୁବନେଶ୍ୱରର ୧୯୮୯, ଡିମାଇ, ପୃ.୬୨ । ଏଥିରେ ସଂସ୍କୃତ ଭାଗବତର ଉତ୍ପତ୍ତି ସଂପର୍କୀୟ ମୁଖବନ୍ଧ ସହ ଓଡ଼ିଆ ଭାଗବତ (ଜଗନ୍ନାଥ ଦାସ) ସଂପର୍କରେ ଦଶଟି ପ୍ରବନ୍ଧ ରହିଛି । ସଂସ୍କୃତ ଭାଗବତରୁ ତୁଳନାତ୍ମକ ଉଦ୍ଧୃତି ଦିଆଯାଇଛି ।

**୧୨. ରୀତିକାବ୍ୟ ସଂପର୍କରେ : (ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ)**

ପ୍ରକାଶକ : ଓଡ଼ିଶା ବୁକ୍‌ଷ୍ଟୋର, ବିନୋଦ ବିହାରୀ, କଟକ-୨, ୧୯୯୧, ଡିମାଇ, ପୃ. ୧୫୯ ।

ଏଥିରେ ଓଡ଼ିଆ କାବ୍ୟରେ ପ୍ରାକୃତ ସାହିତ୍ୟର ପରମ୍ପରା ସଂପର୍କରେ ଆଲୋଚନା କରାଯାଇ ଓଡ଼ିଆ ଆଳଙ୍କାରିକ କାବ୍ୟର ପୃଷ୍ଠଭୂମି, ଓଡ଼ିଆ ରୀତିକାବ୍ୟରେ, ସୌନ୍ଦର୍ଯ୍ୟ ଚେତନା, ଓଡ଼ିଆ ରୀତି କାବ୍ୟରେ ମାନବିକ ମୂଲ୍ୟବୋଧ, ଭଞ୍ଜକାବ୍ୟ ଓ ନୈଷଧ ଚରିତମ ସଂପର୍କରେ ତୁଳନାତ୍ମକ ବିଚାର କରାଯାଇ ନୈଷଧ ଚରିତରୁ ପ୍ରୟୋଜନୀୟ ଉଦ୍ଧୃତି ଦିଆଯାଇଛି । ଆଳଙ୍କାରିକ କାବ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ କବି ପ୍ରତିଭାର ବୈଶିଷ୍ଟ୍ୟ ଉପରେ ଆଲୋକପାତ କରାଯାଇ 'ଭଞ୍ଜୀୟ ରୀତି' ଶୀର୍ଷକ ସନ୍ଦର୍ଭରେ ତିନୋଟି ଭାଗରେ ଉପେନ୍ଦ୍ର ଭଞ୍ଜଙ୍କ ରଚନା ଶୈଳୀ ସଂପର୍କରେ ଆଲୋଚନା କରାଯାଇଛି । ସମସ୍ତ ପ୍ରବନ୍ଧ ମୌଳିକ ଚିନ୍ତାମୂଳକ ।

ଏହା ପ୍ରବନ୍ଧ ଓ ସମାଲୋଚନା ବିଭାଗରେ ୧୯୯୩ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଁ ଶ୍ରେଷ୍ଠ ବିବେଚିତ ।

**୧୩. ସାହିତ୍ୟ ସମାଲୋଚନାର ଶାସ୍ତ୍ରୀୟ ଭୂମିକା :**

ପ୍ରକାଶକ : ଆଶା ପୁସ୍ତକାଳୟ, ବ୍ରହ୍ମପୁର, ଜି. ଗଞ୍ଜାମ, ୧୯୮୯, ଡିମାଇ, ପୃ. ୨୪୯ । ଏହା ପ୍ରାଚ୍ୟ ସାହିତ୍ୟତତ୍ତ୍ୱ (Oriental theory of literature) ସଂପର୍କରେ ଏକ ଉଚ୍ଚାଙ୍ଗ ତାତ୍ତ୍ୱିକ ଗ୍ରନ୍ଥ । ବିଭିନ୍ନ ସନ୍ଦର୍ଭରେ ପାଶ୍ଚାତ୍ୟ ସାହିତ୍ୟତତ୍ତ୍ୱ ସହ ତୁଳନାତ୍ମକ ଅଧ୍ୟୟନ କରାଯାଇଛି । ଏଥିରେ ସାହିତ୍ୟ, କାବ୍ୟ ସଂଜ୍ଞା ସମୀକ୍ଷା, କଳ୍ପନା, ଭାବ, ରସ, ବୈଷ୍ଣବୀୟ ରସଶାସ୍ତ୍ର, ରୀତି, ବକ୍ରୋକ୍ତି, ଅଳଙ୍କାର, ଧ୍ୱନି, ଔଚିତ୍ୟ, ରମଣୀୟତା ଓ ସୌନ୍ଦର୍ଯ୍ୟତତ୍ତ୍ୱ ସଂପର୍କରେ ୨୨ଟି ସନ୍ଦର୍ଭ ରହିଛି ।

**୧୪. ଉପେନ୍ଦ୍ରଭଞ୍ଜ :**

ପ୍ରକାଶକ : କେନ୍ଦ୍ରସାହିତ୍ୟ ଏକାଡ଼େମୀ, ୧ମ ସଂସ୍କରଣ, ୨୦୦୨, ଡିମାଇ, ପୃ. ୨୦୫ । ଏଥିରେ ଉପେନ୍ଦ୍ର ଭଞ୍ଜଙ୍କର ସଂକ୍ଷିପ୍ତ ଜୀବନୀ ସହ ତାଙ୍କ ପ୍ରଧାନ କାବ୍ୟଗୁଡ଼ିକର ସମୀକ୍ଷା କରାଯାଇଛି ଏବଂ ଭଞ୍ଜ ରଚନାର ସାଧାରଣ ସମୀକ୍ଷା, ଭଞ୍ଜୀୟ ରୀତି (ଶୈଳୀ), ଭାଷା ଓ ଅଳଙ୍କାର ସଂପର୍କରେ ଆଲୋଚନା କରାଯାଇ କବିଙ୍କ ଉପରେ ପୂର୍ବସୁରିଙ୍କର (ସଂସ୍କୃତ ଓ ଓଡ଼ିଆ କବି) ପ୍ରଭାବ ସଂପର୍କର ବିଚାର କରାଯାଇଛି । ଶେଷ ଅଧ୍ୟାୟରେ ଭାରତୀୟ ସାହିତ୍ୟ ପରିପ୍ରେକ୍ଷୀରେ ଉପେନ୍ଦ୍ର ଭଞ୍ଜଙ୍କ ସ୍ଥାନ ସଂପର୍କରେ ଆଲୋଚନା କରାଯାଇଛି ।

**୧୫. ସମୀକ୍ଷା ଦ୍ୱାଦଶୀ :**

ପ୍ରକାଶକ : ଆର୍ଯ୍ୟ ପ୍ରକାଶନ, ବାଦାମବାଡ଼ି, କଟକ-୧୨, ପ୍ରଥମ ସଂସ୍କରଣ, ୨୦୦୦, ଡିମାଇ, ପୃ. ୧୯୬ ।

ଏଥିରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଷୟରେ ବାରଟି ଉଚ୍ଚାଙ୍ଗ ସନ୍ଦର୍ଭ ସନ୍ନିବେଶିତ, ଯଥା- ଓଡ଼ିଶାର ସାଂସ୍କୃତିକ ପରିଚୟରେ ପ୍ରାଚୀନ ଓଡ଼ିଆ ସାହିତ୍ୟ, ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଆବେଗ ଓ ଆବେଦନ, ପୁରାଣ : ଏକ ବିହଙ୍ଗ ଦୃଷ୍ଟି; ପୁରାଣରେ ମାନବବାଦ, ରାମକଥାର ପରଂପରା, ବାଲ୍ମୀକି ରାମାୟଣ ଓ ସାରସ୍ୱତ ରାମାୟଣ (ତୁଳନାତ୍ମକ ଅଧ୍ୟୟନ), ଶ୍ରୀମଦ୍ ଭାଗବତ ଓ ଜଗନ୍ନାଥ ଦାସ, ରୀତିକାବ୍ୟର ସ୍ୱରୂପ ଓ ପରଂପରା, ସାଂପ୍ରତିକ ପରିପ୍ରେକ୍ଷୀରେ ରୀତିକାବ୍ୟର ପ୍ରାସଙ୍ଗିକତା, ଗୀତି ଓ ଗୀତିକାର, କୁମାର ସମ୍ଭବ ଓ ଅମ୍ବିକା ବିଳାସ (ତୁଳନାତ୍ମକ ଅଧ୍ୟୟନ), ସମର ତରଂଗ ଓ କବି ବ୍ରଜନାଥ ବଡ଼ଜେନା ।

**୧୬. ଆମର ଆଧ୍ୟାତ୍ମିକ ଐତିହ୍ୟ :**

ପ୍ରକାଶକ : ନାରାୟଣ ବୈରିଶଲ୍ୟ ସ୍ମୃତି ପରିଷଦ, ଶବର ସାହି, ଭୁବନେଶ୍ୱର-୬, ୧୯୯୦, ଡିମାଇ, ପୃ. ୧୩୬ ।

ଏଥିରେ ସନାତନ ହିନ୍ଦୁଧର୍ମ ଓ ପୂଜ୍ୟପୂଜା ପ୍ରବନ୍ଧ ସହ ବୈଦିକ ସାହିତ୍ୟ ସଂପର୍କରେ ଆଠ ଗୋଟି ଉଚ୍ଚାଙ୍ଗ ପ୍ରବନ୍ଧ ସନ୍ନିବିଷ୍ଟ । ଏହାର ମୁଖବନ୍ଧ ମଧ୍ୟ ବୈଦିକ, ଉପନିଷଦୀୟ ତଥା ବୈଦାନ୍ତିକ ଧର୍ମ ସମ୍ବନ୍ଧରେ ଏକ ଉପାଦେୟ ପ୍ରବନ୍ଧ ।

**୧୭. ରସକଲ୍ଲୋଳ :**

ପ୍ରକାଶକ : ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, ବିନୋଦ ବିହାରୀ, କଟକ-୨, ୧୯୬୪ । ଏଥିରେ କାବ୍ୟଟିର ସମୀକ୍ଷାମୂଳକ ଟୀକା ପ୍ରଦତ୍ତ ।

**୧୮. ସାରଳା ସାହିତ୍ୟ ଓ ଅନ୍ୟାନ୍ୟ ନିବନ୍ଧ :**

ପ୍ରକାଶକ : କଟକ ଟ୍ରେଡ଼ିଂ କଂପାନୀ ।

**୧୯. ଶିବ ଉପାସନା :**

ପ୍ରକାଶକ : କଟକ ଟ୍ରେଡ଼ିଂ କଂପାନୀ ।

**୨୦. ସଂସ୍କୃତ ଓ ସଂସ୍କୃତି :**

ପ୍ରକାଶକ : ତ୍ରିରଙ୍ଗା ସଂସ୍କୃତ ଓ ସଂସ୍କୃତି ପରିଷଦ ।

**୨୨. ମଥୁରା ମଙ୍ଗଳ :**

ମଥୁରା ମଙ୍ଗଳର ସଟୀକ ସଂସ୍କରଣ ।

## (ଖ) ସାଧାରଣ ପୁସ୍ତକ :

### ୧. ଅମୃତ ପୁତ୍ର :

ପ୍ରକାଶକ : ନିଉଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ-୨, ୧୯୬୦, କ୍ରାଉନ୍, ପୃ. ୧୫୧ । ଏଥିରେ ମନୋଜ୍ଞ ଭାଷା ଭଙ୍ଗୀରେ ଗଳ୍ପ ଶୈଳୀରେ ଭାରତ ଓ ଭାରତ ବାହାରର ଦଶ ଜଣ ସନ୍ଥଙ୍କର ଜୀବନୀ ସ୍ଥାନ ପାଇଛି ।

### ୨. ସ୍ରଷ୍ଟା ଓ ସୃଷ୍ଟି : (ପୁରସ୍କୃତ)

ପ୍ରଥମ ମୁଦ୍ରଣ, ୧୯୬୧, ୨ୟ ମୁଦ୍ରଣ, ୧୯୮୮ । ବାଣୀଭଣ୍ଡାର (ରାଣୀହାଟ) ତରଫରୁ ପ୍ରକାଶିତ ଏହି ଶିଶୁ ସାହିତ୍ୟ ପୁସ୍ତକଟି ଓଡ଼ିଶା ରାଜ୍ୟ ସରକାରଙ୍କର ଶିଶୁ ସାହିତ୍ୟ କମିଟି ପକ୍ଷରୁ ୧୯୬୨ ରେ ପୁରସ୍କାର ଲାଭ କରିଛି । ବିଦ୍ୟାପୁରୀ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଛି । ଏଥିରେ ଭାରତ ଓ ଭାରତ ବାହାରର ଚଉଦଜଣ ବିଖ୍ୟାତ କବି, ନାଟ୍ୟକାର, ଓ ବିପ୍ଳବୀଙ୍କର ସଂକ୍ଷିପ୍ତ ଜୀବନୀ ଗଳ୍ପ ଶୈଳୀରେ ଲିଖିତ ହୋଇଛି ।

### ୩. ଅତୀତର ଅଭୁଲା କାହାଣୀ : (କିଶୋର ଗଳ୍ପ)

ପ୍ରକାଶକ : ଛାତ୍ର ସାଥୀ, ୧୯୭୬ । ଏଥିରେ ବେଦ, ଉପନିଷଦ, ଜାତକ, ମହାଭାରତ, Old Testament ଓ New Testament ର କାହାଣୀର କଙ୍କାଳ ଉପରେ କେତୋଟି ଚରିତ୍ରର କାହାଣୀ ଗଳ୍ପଭଙ୍ଗୀରେ ରଚିତ ।

### ୪. ଆଦିବାସୀ କାହାଣୀ : (ଶିଶୁଗଳ୍ପ)

ପ୍ରକାଶକ : ନିଉଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ-୨, ୧୯୬୨ । ଏଥିରେ Verrier Elwin ଙ୍କରTribal Myths of Orissa ପୁସ୍ତକର କେତୋଟି ନିର୍ବାଚିତ କାହାଣୀ ଅବଲମ୍ବନରେ ନିଜସ୍ୱ ଭଙ୍ଗୀରେ ଗଳ୍ପ ପୁସ୍ତକଟି ରଚିତ ।

### ୫. କଥା କଳିକା : (ଶିଶୁ ଗଳ୍ପ)

ପ୍ରକାଶକ : କଟକ ପବ୍ଲିଶିଂ ହାଉସ, ୧୯୬୨, ୨ୟ ସଂସ୍କରଣ, ୧୯୮୩ । ଏହା ମନୋଜ୍ଞ ଭଙ୍ଗୀରେ ବାଇଶିଟି ଚିତ୍ତାକର୍ଷକ ଗଳ୍ପର ଏକ ଭବ୍ୟ ସଂକଳନ ।

### ୬. ମୂକ ରାଜକନ୍ୟା ଓ ଅନ୍ୟାନ୍ୟ କାହାଣୀ : (ଶିଶୁ ଗଳ୍ପ)

ପ୍ରକାଶକ : ଛାତ୍ର ସାଥୀ, ୧୯୭୪, ଡିମାଇ, ପୃ. ୯୬। ସତରଟି ଚିତ୍ତାକର୍ଷକ ଗଳ୍ପର ଏକ ସୁନ୍ଦର ସଂକଳନ ।

### ୭. ଶିକ୍ଷାବିତ୍‌ର ଆତ୍ମଲିପି :

କିୟଦଂଶ 'ପ୍ରଗତିବାଦୀ' ଏବଂ ପ୍ରଜାତନ୍ତ୍ର ଦୈନିକରେ 'ଅବାଞ୍ଛିତର ଆତ୍ମଲିପି' ଶିରୋନାମରେ ଏବଂ ବିଜୟିନୀ ପବ୍ଲିକେଶନ୍ସ ଦ୍ୱାରା ଗ୍ରନ୍ଥ ରୂପରେ ପ୍ରକାଶିତ ।

## (ଗ) ସଂପାଦିତ ଗ୍ରନ୍ଥ

**୧. ମହାମାନବର ସାଗର ତୀରେ :**

ପ୍ରକାଶକ : ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ କେନ୍ଦ୍ର, ବାଲେଶ୍ୱର, ୧୯୭୦ । ମହାତ୍ମାଗାନ୍ଧୀଙ୍କ ସଂପର୍କରେ ବିଭିନ୍ନ ଲେଖାର ଏକ ସଂକଳନ ।

**୨. ସାଂସ୍କୃତିକୀ :**

ପ୍ରକାଶକ : ତାରାତାରିଣୀ ବୁକ୍‌ଷ୍ଟୋର, ବାଲୁବଜାର, କଟକ, ୧୯୮୩ । ପ୍ରଫେସର ଡକ୍ଟର କାହ୍ନୁଚରଣ ମିଶ୍ରଙ୍କର ଷଷ୍ଟିପୂର୍ତ୍ତି ଉପଲକ୍ଷେ ତାଙ୍କର ସଂକ୍ଷିପ୍ତ ଜୀବନୀ ଏବଂ ବହୁ ବିଦ୍ୱାନଙ୍କର ଉପାଦେୟ ସାହିତ୍ୟ ସମୀକ୍ଷାମୂଳକ ପ୍ରବନ୍ଧର ଏକ ଭବ୍ୟ ସଂକଳନ ।

**୩. ସ୍ତବରତ୍ନ ଓ ନିତ୍ୟ ପୂଜାବିଧାନ :**

ପ୍ରକାଶକ : ନାରାୟଣ ବୈରିଶଲ୍ୟ ସ୍ମୃତି ପରିଷଦ, ଶବର ସାହି, ଭୁବନେଶ୍ୱାର-୬, ୧୯୮୮, ଡିମାଇ, ପୃ. ୩୬୮ ।

ଏଥିରେ ବୈଦିକ, ସ୍ମାର୍ତ୍ତ, ପୌରାଣିକ, ଶୈବ, ଶାକ୍ତ, ତାନ୍ତ୍ରିକ ଓ ବୈଷ୍ଣବ ମତାନୁସାରେ ବିଭିନ୍ନ ଦେବାଦେବୀଙ୍କର ସ୍ତବ (ଅର୍ଥ ସହ) ଓ ପୂଜାବିଧାନର ଉଲ୍ଲେଖ ରହିଛି । ଏଥିରେ ବୈଦିକ ସନାତନ ଧର୍ମ ସଂପର୍କରେ ଦୀର୍ଘ ମୁଖବନ୍ଧ ସହ (ମତ୍ ଲିଖିତ) ମହାମେଧାନନ୍ଦ ନାଥ (ଦୁଃଖିଶ୍ୟାମ ପଟ୍ଟନାୟକ)ଙ୍କର ଉପାଦେୟ ପ୍ରାକ୍-କଥନୀ ରହିଛି । ଓଡ଼ିଆ ଭାଷାରେ ଏହା ଏକ ବୃହତ୍ ବିଶୁଦ୍ଧ ସ୍ତବ ସଞ୍ଚୟନ ।

## (ଘ) ପ୍ରକାଶ ଅପେକ୍ଷାରେ

**୧. ସାହିତ୍ୟ ସମୀକ୍ଷା**

ଅଠରଟି ସାହିତ୍ୟ ସମାଲୋଚନାମୂଳକ ସନ୍ଦର୍ଭ ।

**୨. ଧର୍ମ, ସଂସ୍କୃତି ଓ ସାହିତ୍ୟ**

୨୮ଟି ଉପାଦେୟ ନିବନ୍ଧ ।

**୩. ଓଡ଼ିଆ ଭାଷା ଓ ସାହିତ୍ୟର ଦିଗନ୍ତ**

୧୪ ଟି ପ୍ରବନ୍ଧ । (ଆଶା ପୁସ୍ତକାଳୟ)

**୪. ବୈଷ୍ଣବ ସାହିତ୍ୟ**

୧୨ଟି ପ୍ରବନ୍ଧ । (ଅପୂର୍ବା ପ୍ରକାଶନୀ)

**୬. ଗୋପାଳକୃଷ୍ଣ ପଦ୍ୟାବଳୀ**

ପରିମାର୍ଜିତ ସଂସ୍କରଣ । (ଗ୍ରନ୍ଥମନ୍ଦିର)

**୭. ଭଞ୍ଜକାବ୍ୟ ସଞ୍ଚୟନ**

ଉପେନ୍ଦ୍ରଭଞ୍ଜଙ୍କର ବିଭିନ୍ନ କାବ୍ୟରୁ ନିର୍ବାଚିତ ଶ୍ରେଷ୍ଠ ଛାନ୍ଦ ତଥା ଛାନ୍ଦାଂଶର ସଟୀକ ସଞ୍ଚୟନ ।

**୮. ଉପେନ୍ଦ୍ରଭଞ୍ଜ ଏବଂ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କବି**

ବୁକ୍‌ସ୍ ଇଣ୍ଟରନେସନାଲ୍, ନିଉ ଦିଲ୍ଲୀ ଓ ଭୁବନେଶ୍ୱର ।

## (ଡ) ବିବିଧ

**୧. ପ୍ରାୟ ବାଇଶିରୁ ଊର୍ଦ୍ଧ୍ୱ ଅନ୍ୟ ସଂକଳନ ଗ୍ରନ୍ଥମାନଙ୍କରେ ବହୁ ଉପାଦେୟ ସମୀକ୍ଷାମୂଳକ ସନ୍ଦର୍ଭ ପ୍ରକାଶିତ । ତନ୍ମଧ୍ୟରୁ କେତୋଟିର ଉଲ୍ଲେଖ କରାଯାଉଛି-**

(i) ପ୍ରେମ ଚିନ୍ତାମଣି ଓ ଗୋବିନ୍ଦ ଲୀଳାମୃତମ୍ : ଏକ ତୁଳନାତ୍ମକ ଅଧ୍ୟୟନ, ଅଭିମନ୍ୟୁ ମାନସ, ପ୍ରକାଶନ : ସାମନ୍ତ ସିଂହାର ସାହିତ୍ୟ ପରିଷଦ, ରାଉରକେଲା, ୧୯୮୭ ।

(ii) ବୈଷ୍ଣବ କାବ୍ୟରେ ପ୍ରେମ ଓ ରସତତ୍ତ୍ୱ ଓ ବିଦଗ୍ଧ ଚିନ୍ତାମଣି, ତଦ୍ରୈବ ।

(iii) ଆଳଙ୍କାରିକ କାବ୍ୟ ଓ ଉପେନ୍ଦ୍ରଭଞ୍ଜ, ଉପେନ୍ଦ୍ରଭଞ୍ଜ ପରିକ୍ରମା । ପ୍ରକା: ଉପେନ୍ଦ୍ରଭଞ୍ଜ କଲ୍‌ଚରାଲ୍ ଏକାଡ଼େମୀ, ଭଞ୍ଜନଗର, ୧୯୮୩ ।

(iv) ନନାଙ୍କ ପାଞ୍ଜି : ଏକ ଅଭିନବ ଦିଗ୍‌ନିର୍ଦ୍ଦେଶ, ବ୍ୟାସକବି ଫକୀର ମୋହନ, ସାରଳା ସାହିତ୍ୟ ସଂସଦ, ୧୯୯୩ ।

(v) ଭଞ୍ଜକାବ୍ୟ ଓ ନୈଷଧ ଚରିତ, ଆମ ସାହିତ୍ୟ ଆମ ଉପେନ୍ଦ୍ର, ସଂପାଦକ : ପରମାନନ୍ଦ ଅଧିକାରୀ ପ୍ରଭୃତି ।

**(୨) କବିତା ଓ ଆଧ୍ୟାତ୍ମିକ ଗୀତି**

(i) ବିଭିନ୍ନ ସମୟରେ ରଚିତ ୨୦ଟି ଆଧ୍ୟାତ୍ମିକ ଗୀତି, ଗୋଟିଏ ପଲ୍ଲୀ ଗୀତି, ଦୁଇଟି ଶିଶୁ କବିତା ସଂକଳନ । ଅଧିକାଂଶ କବିତା 'ଡଗର' ଓ 'ଅର୍ଘ୍ୟ'ରେ ପ୍ରକାଶିତ ।

(ii) ଅନେକଗୁଡ଼ିଏ ନୂତନ କବିତା, ଭକ୍ତିଗୀତି ଓ 'ପାର୍ବତୀ ତପସ୍ୟା' ନାମରେ ଗୋଟିଏ କ୍ଷୁଦ୍ରକାବ୍ୟ ବିଭିନ୍ନ ଛନ୍ଦରେ ରଚନା କରାଯାଇଛି ।

**(୩) ଗଳ୍ପ ଓ ଏକାଙ୍କିକା (ରୂପକଧର୍ମୀ)**

(i) ପତ୍ନୀ ବିୟୋଗ ପରେ 'ଶିଖା' ନାମକ ଗଳ୍ପ ଓ 'ମାଛ ଓ ମଣିଷ' ନାମରେ ଅନ୍ୟ ଏକ ଗଳ୍ପ (ଅସମିୟା 'ମାଛ୍ ଆରୁ ମାନୁହ' ଗଳ୍ପର ଅନୁବାଦ ଏବଂ ଆକାଶବାଣୀରେ ପଠିତ) 'ଡଗର'ରେ ପ୍ରକାଶ ପାଇଥିଲା ।

(ii) 'ନବସୃଷ୍ଟି' ଓ 'ଅଭିଯୋଗ' ଶୀର୍ଷକ ଦୁଇଟି ରୂପକଧର୍ମୀ ଏକାଙ୍କିକା ବହୁ ପୂର୍ବରୁ ଭଦ୍ରକରେ ରଚନା କରିଥିଲି । 'ନବସୃଷ୍ଟି' ଏକାଙ୍କିକାଟି ଭଦ୍ରକ କଲେଜ୍ ସାଂସ୍କୃତିକ ସପ୍ତାହ ପାଳନ ସମୟରେ (୧୯୫୬ ବା ୫୭) ଅଭିନୀତ ହୋଇଥିଲା । ଦୁଇଟିଯାକ ଏକାଙ୍କିକା ଭଦ୍ରକ କଲେଜ୍ ସାହିତ୍ୟ ସମାଜ ମୁଖପତ୍ର 'ଅର୍ଘ୍ୟ'ରେ ପ୍ରକାଶ ପାଇଥିଲା ।

(୪) ଏବେ ବହୁ ସାଂପ୍ରତିକ ସମସ୍ୟାକୁ (ଆଧ୍ୟାତ୍ମିକ, ନୈତିକ, ସାମାଜିକ, ଭାରତୀୟ ଓ ଆନ୍ତର୍ଜାତିକ) ନେଇ ବିଭିନ୍ନ ସମୟରେ ବହୁ କ୍ଷୁଦ୍ର ପ୍ରବନ୍ଧ ରଚନା ଚାଲିଛି, ଯେଉଁଗୁଡ଼ିକ ପତ୍ରପତ୍ରିକା ମାନଙ୍କରେ ପ୍ରକାଶିତ ହେଉଛି ।

(୫) ଇଂରାଜୀ ରଚନା

ଓଡ଼ିଶାର ମଧ୍ୟଯୁଗର କେତେକ କବି ଓ କାବ୍ୟ ସଂପର୍କରେ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପ୍ରକାଶିତ Encyclopaedia of Indian Literature ରେ (E.I.L.) ମୋର ନ'ଟି କ୍ଷୁଦ୍ର ପ୍ରବନ୍ଧ ଏବଂ କଲିକାତାର M.P. Birla Foundation ପ୍ରକାଶିତ Encyclopaedia Asiana ରେ ଦଶଟି ଲେଖା ପ୍ରକାଶିତ । ଏହାଛଡ଼ା 'ଶ୍ରୀମଦ୍ ଭାଗବତ ଓ ଜଗନ୍ନାଥ ଦାଶ' ଶୀର୍ଷକ ପ୍ରବନ୍ଧଟି ଅଧ୍ୟାପକ ଶୁଭେନ୍ଦୁ ମୁଣ୍ଡଙ୍କ ଦ୍ୱାରା ଇଂରାଜୀରେ ଅନୂଦିତ ହୋଇ ଜଗନ୍ନାଥ ଦାଶଙ୍କର ପଞ୍ଚଶତ ବର୍ଷ ପୂର୍ତ୍ତି ଉପଲକ୍ଷେ ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ ପକ୍ଷରୁ ଏକ ପୁସ୍ତକରେ ପ୍ରକାଶିତ ହୋଇଛି । ଏହାଛଡ଼ା ଆଉ କେତୋଟି ପ୍ରବନ୍ଧ ମୋ ଦ୍ୱାରା ରଚିତ ଓ ନିର୍ଦ୍ଦେଶିତ, ଯଥା-

(i) Orissan Heritage : Her people and culture, Vission, March, 1982.

(ii) Prominent poets of Keonjhar District, Keonjhar District Gazetteer, 1980.

(iii) Contribution of women to Oriya Literature.

(iv) Contribution of Bhadrak to Oriya Literature, (Paper presented in the Orissa History Congress, Bhadrak session, 1992.

(v) Mughul Tamasa : A unique specimen of Folk drama prevalent at Bhadrak; Paper presented by Dr. S.L. Dei unde the guidance of Dr. Bal in a Seminar conducted by Balasore District Administration in 1980 and was published in a book entitled, "Culture and Heritage of Balasore."

(୬) (i) ଗାୟତ୍ରୀ ଉପାସନା (ଯନ୍ତ୍ରସ୍ଥ), (ii) ବୃହତ୍ ସ୍ତବ ଓ ସୂକ୍ତି ସଞ୍ଚୟନ (ପ୍ରସ୍ତୁତି ପଥରେ), (iii) ହିନ୍ଦୁଧର୍ମର ପ୍ରାରମ୍ଭିକ ପ୍ରସ୍ଥାନ (ଯନ୍ତ୍ରସ୍ଥ)

## ସାରସ୍ୱତ ସମ୍ମାନ ଓ ପୁରସ୍କାର :

ସାହିତ୍ୟ ଏକାଡ଼େମୀ ପୁରସ୍କାରଠାରୁ ଆରମ୍ଭ କରି ବିଭିନ୍ନ ପୁରସ୍କାର ଓ ସମ୍ମାନ କଳେବଳେ କୌଶଳେ ହାସଲ କରିବାପାଇଁ ଆଜି କ୍ଷମତା ଓ ପ୍ରତିପତ୍ତିର ପ୍ରଚ୍ଛନ୍ନ ବିନିଯୋଗ ଚାଲିଛି, ପୁଣି ଆବଶ୍ୟକ ସ୍ଥଳେ ତୋଷାମଦର ପ୍ରହେଳିକା ମଧ୍ୟ ତା'ର ଜାଲ ବିସ୍ତାର କରିଚାଲିଛି । ଯୁଗର ଏ ନିନ୍ଦନୀୟ ପ୍ରବୃତ୍ତିକୁ ଲକ୍ଷ୍ୟ କରି ଜଣେ ଗୁଜୁରାଟୀ ସାହିତ୍ୟିକ କିଛି ବର୍ଷ ତଳେ ସାହିତ୍ୟ ଏକାଡ଼େମୀକୁ ଭାଙ୍ଗି ଦେବାପାଇଁ Illustrated Weekly ରେ ଏକ ଆକ୍ଷେପୋକ୍ତି ପୂର୍ଣ୍ଣ ପ୍ରବନ୍ଧ ଲେଖିଥିଲେ ।

ସାରସ୍ୱତ ସମ୍ମାନ ଓ ପୁରସ୍କାର ସ୍ୱତଃସ୍ଫୂର୍ତ୍ତ ଭାବରେ ଆସିଲେ ସେଥିରେ ଉତ୍ସାହ ଓ ଆନନ୍ଦ ଥାଏ, ଯୋଗାଡ଼ରେ ତାହା ଥାଏନା । ସାହିତ୍ୟ ସାଧନା ମୂଳରେ ଏକ ଅନାସକ୍ତ କଲ୍ୟାଣକାରୀ ଦୃଷ୍ଟିଭଙ୍ଗୀ ରହିଲେ ପୁରସ୍କାର ପ୍ରତି ଲେଖକର ଧ୍ୟାନ ରହେନା, କିନ୍ତୁ ସାହିତ୍ୟ-ସାଧନା ପୁରସ୍କାର ଅଭିମୁଖୀ ହେଲେ ସେଠି, ଯଥାର୍ଥ ସାଧନା ହୁଏ ନାହିଁ, ସାହିତ୍ୟ ନାମରେ ନାନା ଅସାଧୁତା ଓ ଅପସଂସ୍କୃତି ମୁଣ୍ଡ ଟେକେ ।

ସାହିତ୍ୟ ସାଧନାକୁ ଜୀବନରେ ଆନନ୍ଦ ପ୍ରାପ୍ତିର ଅନ୍ୟତମ ମାଧ୍ୟମ ରୂପେ ଗ୍ରହଣ କରିଥିବାରୁ ଏ ପରିଣତ ବୟସରେ ମଧ୍ୟ ଅଧ୍ୟୟନ, ମନନ ଓ ଲେଖାର ଅଭ୍ୟାସ ଅପ୍ରତିହତ ରହିଛି । ଲେଖକ ସ୍ୱତଃସ୍ଫୂର୍ତ୍ତ ଭାବରେ ସମ୍ମାନ ପାଇଲେ, ପ୍ରେରଣା ଓ ଉତ୍ସାହର ପତ୍ରଟିଏ ପାଇଲେ ସେଥିରେ ଆନନ୍ଦ ଥାଏ । ମୁଁ ମୋର ବିଭିନ୍ନ ଲେଖାପାଇଁ କେତେକ ଉତ୍ସାହଜନକ ପତ୍ର ବିଭିନ୍ନ ସମୟରେ ପାଇଛି (ପରିଶିଷ୍ଟରେ ଦ୍ରଷ୍ଟବ୍ୟ) ସେଇଟା ମୋ ପକ୍ଷରେ ପ୍ରକୃତ ପୁରସ୍କାର; କିନ୍ତୁ ବ୍ୟାବହାରିକ ଦୃଷ୍ଟିରୁ କେତେକ ଅନୁଷ୍ଠାନ ସ୍ୱତଃସ୍ଫୂର୍ତ୍ତ ଭାବରେ ମୋତେ, ସମ୍ମାନିତ ଓ ପୁରସ୍କୃତ କରିଛନ୍ତି, ଯଥା-

**(୧) ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର (୧୯୯୩)**

ପ୍ରବନ୍ଧ ଓ ସମାଲୋଚନା ବିଭାଗରେ ଶ୍ରେଷ୍ଠ ବିବେଚିତ ମୋର 'ରୀତିକାବ୍ୟ ସଂପର୍କରେ' ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ୧୯୯୩ ମସିହା ପାଇଁ ଦଶହଜାର ମୁଦ୍ରା ପୁରସ୍କାର, ତାମ୍ରଲେଖ (ସମ୍ମାନପତ୍ର) ଆଦି ପ୍ରାପ୍ତି (ତା ୧୨/୫/୧୯୯୭ରେ) ।

**(୨) ସାରଳା ସମ୍ମାନ (୧୯୯୭)**

ସାରଳା ସାହିତ୍ୟ ସଂସଦ, କଟକ ପକ୍ଷରୁ ମୋର ସାମଗ୍ରିକ କୃତି ପାଇଁ ସପ୍ତଦଶ ବାର୍ଷିକ ଉତ୍ସବରେ ୧୦ ହଜାର ଟଙ୍କା ପୁରସ୍କାର, ତାମ୍ରପତ୍ର ଓ ଉପଢୌକନ ପ୍ରାପ୍ତି (ତା୨୦/୫/୧୯୯୮) ।

**(୩) ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର (୧୯୯୧)**

ଶ୍ରୀକ୍ଷେତ୍ର ଲେଖକ ସାନ୍ନିଧ୍ୟ (ପୁରୀ) ପକ୍ଷରୁ ୧୯୯୧ ରେ ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ଓ ମାନପତ୍ର ପ୍ରାପ୍ତି ।

**(୪) ଗୋକର୍ଣ୍ଣିକା ପୁରସ୍କାର (୧୯୯୪)**

ଗୋକର୍ଣ୍ଣିକା ସାହିତ୍ୟ ସମାଜ ପକ୍ଷରୁ ୧୯୯୪ରେ ପୁରସ୍କାର ଓ ମାନପତ୍ର ପ୍ରାପ୍ତି ।

**(୫) ଶିଶୁସାହିତ୍ୟ ପୁରସ୍କାର (୧୯୬୨)**

ଓଡ଼ିଶା ସରକାରଙ୍କ ଶିଶୁ ସାହିତ୍ୟ କମିଟି ପକ୍ଷରୁ ୧୯୬୨ରେ ମୋର 'ସ୍ରଷ୍ଟା ଓ ସୃଷ୍ଟି' ପୁସ୍ତକ ପାଇଁ ପୁରସ୍କାର ।

**(୬) ଝଙ୍କାର ପୁରସ୍କାର (୧୯୭୭)**

କଟକ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ୧୯୭୭ର ବିଷୁବ ମିଳନ ଉତ୍ସବରେ ନିବନ୍ଧକାର ତଥା ସାହିତ୍ୟ ସମାଲୋଚକ ଭାବରେ ପୁରସ୍କାର ।

**(୭) ଆଦିକବି ଉପାୟନ (୧୯୯୪)**

ବାୟା ଅବଧୂତ ମହାବିଦ୍ୟାଳୟ କନିମୂଳ (ତିର୍ତ୍ତୋଲ) ପକ୍ଷରୁ ସମଗ୍ର ସାହିତ୍ୟ କୃତି ପାଇଁ ଆଦିକବି ଉପାୟନ ଓ ମାନପତ୍ର ।

**(୮) ଉତ୍କଳ ପାଠକ ସଂସଦ ସାରସ୍ୱତ ସମ୍ମାନ (୧୯୯୪)**

'ଉତ୍କଳ ପାଠକ ସଂସଦ' ପକ୍ଷରୁ ୧୯୯୪ ରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ଜଣେ ପ୍ରତିଭାଶାଳୀ ଲେଖକ, ସମୀକ୍ଷକ ଓ ଗବେଷକ ଭାବରେ ସାରସ୍ୱତ ସମ୍ବର୍ଦ୍ଧନା, ମାନପତ୍ର ଓ ଉପାୟନ ପ୍ରାପ୍ତି ।

**(୯) ଓଡ଼ିଶା ପୂଜ୍ୟପୂଜା ଏକାଡ଼େମୀ (କଟକ) ସାରସ୍ୱତ ସମ୍ମାନ (୧୯୯୫)**

ଓଡ଼ିଶା ପୂଜ୍ୟପୂଜା ଏକାଡ଼େମୀ (କଟକ) ପକ୍ଷରୁ ୧୯୯୫ରେ ସାରସ୍ୱତ ସମ୍ବର୍ଦ୍ଧନା, ମାନପତ୍ର, ଉପାୟନ ଓ 'ସାହିତ୍ୟ ସରସ୍ୱତୀ' ସମ୍ମାନ ପ୍ରାପ୍ତି ।

**(୧୦) ମାତୃଭୂମି ଓ ସହକାର ସମ୍ମାନ (୧୯୮୭)**

ମାତୃଭୂମି ଓ ସହକାରର ମକର ମିଳନୋତ୍ସବରେ ୧୯୮୭ ରେ ସାହିତ୍ୟ ସମାଲୋଚକ ଓ ପ୍ରାବନ୍ଧିକ ଭାବରେ ପୁରସ୍କାର ।

**(୧୧) ଜୀବନରଙ୍ଗ ସମ୍ମାନ (୧୯୮୭)**

'ଜୀବନ ରଙ୍ଗ' ପକ୍ଷରୁ ୧୯୮୭ରେ ସାହିତ୍ୟ ସମାଲୋଚକ ଭାବରେ ସମ୍ମାନିତ ।

**(୧୨) ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ପୁରସ୍କାର (୨୦୦୦)**

ଉତ୍କଳ ସାହିତ୍ୟ ସମାଜର ବାର୍ଷିକୋତ୍ସବରେ ପ୍ରବନ୍ଧ ଓ ସମାଲୋଚନା ପାଇଁ ପଣ୍ଡିତ ଗୋପୀନାଥ ଶର୍ମା ପୁରସ୍କାର ପ୍ରାପ୍ତି ।

**(୧୩) 'ଚଲାପଥ' ସମ୍ମାନ (୧୯୯୭)**

ରାଜ୍ୟସ୍ତରୀୟ ଲେଖକ ସମ୍ମିଳନୀରେ ୧୯୯୭ରେ ରଜତ ଜୟନ୍ତୀ ସମାରୋହରେ 'ଚଲାପଥ' ପକ୍ଷରୁ ସାହିତ୍ୟିକ ସମ୍ମାନ ଓ ମାନପତ୍ର ।

**(୧୪) ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ପକ୍ଷରୁ ସାରସ୍ୱତ ସମ୍ବର୍ଦ୍ଧନା (୧୯୯୪)**

ସମ୍ବଲପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ରଜତ ଜୟନ୍ତୀ ଉତ୍ସବରେ (ଡିସେମ୍ବର, ୧୯୯୪) ସାରସ୍ୱତ ସମ୍ବର୍ଦ୍ଧନା, ମାନପତ୍ର ଓ ଉପାୟନ ।

**(୧୫) ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗ ପକ୍ଷରୁ ସାରସ୍ୱତ ସମ୍ବର୍ଦ୍ଧନା (୧୯୯୪)**

ଉତ୍କଳ ବିଶ୍ୱବିଦ୍ୟାଳୟ ଉପାଧ୍ୟୁତ୍ତର ଓଡ଼ିଆ ବିଭାଗର ରଜତ ଜୟନ୍ତୀ ଉତ୍ସବରେ (ଡିସେମ୍ବର, ୧୯୯୪) ସାରସ୍ୱତ ସମ୍ବର୍ଦ୍ଧନା, ମାନପତ୍ର ଓ ଉପାୟନ ।

**(୧୬) ରେଭେନ୍ସା କଲେଜ୍ ଓଡ଼ିଆ ବିଭାଗ ପକ୍ଷରୁ ସାରସ୍ୱତ ସମ୍ବର୍ଦ୍ଧନା (୧୯୯୭)**

ରେଭେନ୍ସା କଲେଜ୍ ଓଡ଼ିଆ ବିଭାଗ ପକ୍ଷରୁ ୧୯୯୭ରେ ସ୍ୱର୍ଣ୍ଣଜୟନ୍ତୀ ଉତ୍ସବରେ ସାରସ୍ୱତ ସମ୍ବର୍ଦ୍ଧନା, ମାନପତ୍ର ଓ ଉପାୟନ ।

**(୧୭) ନିଖିଳ ଉତ୍କଳ ଓଡ଼ିଆ ଅଧ୍ୟାପକ ସମ୍ମେଳନରେ ସାରସ୍ୱତ ସମ୍ବର୍ଦ୍ଧନା (୧୯୯୮)**

ନିଖିଳ ଉତ୍କଳ ଓଡ଼ିଆ ଅଧ୍ୟାପକ ସମ୍ମେଳନରେ ୧୯୯୮ରେ ସାରସ୍ୱତ ସମ୍ବର୍ଦ୍ଧନା, ମାନପତ୍ର ଓ ଉପଢୌକନ ।

**(୧୮) ଫକୀର ମୋହନ ସାହିତ୍ୟ ପରିଷଦ ପକ୍ଷରୁ ସମ୍ବର୍ଦ୍ଧନା ଓ ମାନପତ୍ର (୧୯୯୮)**

ବାଲେଶ୍ୱର ଫକୀର ମୋହନ ସାହିତ୍ୟ ପରିଷଦର ସୁବର୍ଣ୍ଣ ଜୟନ୍ତୀ ଓ ବ୍ୟାସକବି ଫକୀର ମୋହନଙ୍କର ୧୫୬ ତମ ଜୟନ୍ତୀ ଉତ୍ସବରେ (୧୯୯୮) ସାହିତ୍ୟିକ ଓ ପରିଷଦର ପ୍ରାକ୍ତନ ସଭାପତି ଭାବରେ ସାରସ୍ୱତ ସମ୍ବର୍ଦ୍ଧନା, ମାନପତ୍ର ଓ ଉପଢୌକନ ।

(୧୯) ପ୍ରଜ୍ଞାତନ୍ତ୍ର ପ୍ରଚାର ସମିତି (କଟକ) ଆନୁକୂଲ୍ୟରେ ୧୯୭୪ରେ ବିଷୁବ ମିଳନର ପ୍ରଥମ ସାନ୍ଧ୍ୟ ଅଧିବେଶନରେ ସଭାପତି ଭାବରେ ସମ୍ମାନିତ ।

(୨୦) **'ଖବର ବିଚାର' ବାର୍ଷିକୋତ୍ସବରେ ସାରସ୍ୱତ ସମ୍ବର୍ଦ୍ଧନା ଓ ମାନପତ୍ର**
'ଖବର ବିଚାର' କଟକର ବାର୍ଷିକୋତ୍ସବରେ ଲେଖକ ଭାବରେ ସମ୍ବର୍ଦ୍ଧିତ (୨୦/୬/୧୯୯୭) ।

(୨୧) ତାରିଣୀ ଫାଉଣ୍ଡେସନ ଟ୍ରଷ୍ଟ, କେନ୍ଦୁଝର ପକ୍ଷରୁ 'ତାରିଣୀ ସମ୍ମାନ' ପ୍ରଦାନ ଉତ୍ସବରେ ତାରିଣୀ ସମ୍ମାନ ମନୋନୟନ କମିଟିର ଅଧ୍ୟକ୍ଷ ଭାବରେ ସମ୍ମାନିତ (୧୪/୪/୨୦୦୧) ।

(୨୨) **କଳିଙ୍ଗ ଭାରତୀ ପକ୍ଷରୁ ସାରସ୍ୱତ ସମ୍ବର୍ଦ୍ଧନା (୨୦୦୨)**
କଳିଙ୍ଗ ଭାରତୀର (କଟକ) ରଜତଜୟନ୍ତୀ ସମାରୋହର ଉଦ୍‌ଯାପନ ଦିବସରେ ସମ୍ବର୍ଦ୍ଧିତ (ମାନପତ୍ର ଓ ଉପଢୌକନ ପ୍ରାପ୍ତି), (୨୨/୫/୨୦୦୨) ।

(୨୩) ଅଧ୍ୟାପକ ପୀତାମ୍ବର ସ୍ୱାଇଁ ସ୍ମୃତି ସଂସଦ ପକ୍ଷରୁ ୨୦୦୪ (ଜାନୁୟାରୀ)ରେ ସ୍ୱତନ୍ତ୍ର-ସାହିତ୍ୟିକ ପ୍ରତିଭା ଭାବରେ ସାରସ୍ୱତ ସମ୍ବର୍ଦ୍ଧନା, ମାନପତ୍ର ଓ ଉପଢୌକନ ପ୍ରାପ୍ତି ।



## କେତୋଟି ସମ୍ମାନ, ସମ୍ବର୍ଦ୍ଧନା ଓ ପୁରସ୍କାର ପ୍ରାପ୍ତି ପତ୍ରର ପ୍ରତିଲିପି

### ଅଷ୍ଟବିଂଶ ବିଷୁବ ମିଳନ - ୧୯୭୭

**ଡଃ ଗଙ୍ଗାଧର ବଳ**

ସାହିତ୍ୟ ସାଧନାରେ ଆପଣଙ୍କର ନିଷ୍ଠା ଓ ଗଭୀର ଅନୁଶୀଳନ ଆପଣଙ୍କୁ ଓଡ଼ିଆ ସାହିତ୍ୟ ଜଗତରେ ଜଣେ ସଫଳ ସମାଲୋଚକର ଗୌରବ ପ୍ରଦାନ କରିଛି । ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟର ବିଶ୍ଳେଷଣ କରି ତାତ୍ତ୍ୱିକ ନିବନ୍ଧ ରଚନାରେ ଆପଣ ସ୍ୱକୀୟ କୃତିର ପରିଚୟ ଦେଇଛନ୍ତି ।

ଆପଣଙ୍କର ଏହି ନିଷ୍ଠା ଓ ସାଧନାର ସ୍ୱୀକୃତି ସ୍ୱରୂପ ଅଷ୍ଟବିଂଶ ବିଷୁବ ମିଳନର ଶୁଭ ଅବସରରେ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଏକହଜାର ଟଙ୍କା ଉପହାର ସହ ଆପଣଙ୍କୁ ସମ୍ମାନିତ କରୁଛୁ ।

| | | | |
|---|---|---|---|
| ସ୍ୱା/- | ସ୍ୱା/- | ସ୍ୱା/- | ସ୍ୱା/- |
| ସଭାପତି | ମୁଖ୍ୟଅତିଥି | ଚେୟାରମ୍ୟାନ | ଚେୟାରମ୍ୟାନ |
| | | ଅଭିନନ୍ଦନ ସମିତି | ପ୍ରଜାତନ୍ତ୍ର ପ୍ରଚାର ସମିତି |

# ଅତିବଡ଼ୀ ଜଗନ୍ନାଥ ଦାସ ସମ୍ମାନ

## ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ, ପୁରୀ

### ଅତିବଡ଼ୀ ଜଗନ୍ନାଥ ଦାସ ପଞ୍ଚଶତ ବାର୍ଷିକୀ ଉତ୍ସବ - ୧୯୯୧

**ଡକ୍ଟର ଗଙ୍ଗାଧର ବଳ**

ହେ ମହାନ ସାଧକ !

ଆପଣ ଜୀବନର ପ୍ରତିଟି ମୁହୂର୍ତ୍ତ ସାହିତ୍ୟ ସାଧନାରେ ଅତିବାହିତ କରି ଆସିଛନ୍ତି । ଏବେବି ଆପଣଙ୍କ ଲେଖନୀ ଅବିରାମ ଭାବେ ଆଗେଇ ଚାଲିଛି ; ଅନେକ ଗବେଷଣାତ୍ମକ ନିବନ୍ଧ ଲେଖି ଆପଣ ପାଠକ ମହଲରେ ସୁପରିଚିତ ହୋଇପାରିଛନ୍ତି ।

ହେ ମହାନ ସାହିତ୍ୟିକ !

ଆପଣ ମହାପୁରୁଷ ଅତିବଡ଼ୀ ଦାସଙ୍କ ସୃଷ୍ଟିକୁ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ସର୍ବଜନ ବିଦିତ କରିବାରେ ଯେଉଁ ଅକ୍ଳାନ୍ତ ପ୍ରଚେଷ୍ଟା ପ୍ରଦର୍ଶନ କରି ଆସିଛନ୍ତି, ସେଥିପାଇଁ ଆପଣ ଅଭିନନ୍ଦନୀୟ ।

ଆଜି ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ ପରମପୂଜ୍ୟ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ପୁଣ୍ୟ ଜନ୍ମ ତିଥିରେ ଅତିବଡ଼ୀ ସାହିତ୍ୟର ଗବେଷକ ଭାବେ ଆପଣଙ୍କୁ ''ଅତିବଡ଼ୀ ଜଗନ୍ନାଥ ଦାସ ସମ୍ମାନ''ରେ ସମ୍ମାନିତ କରିବାର ସୁଯୋଗ ପାଇଥିବାରୁ ଧନ୍ୟ ।

| | | | |
|---|---|---|---|
| ସ୍ୱା/- | ସ୍ୱା/- | ସ୍ୱା/- | ସ୍ୱା/- |
| ସଦାଶିବ ମିଶ୍ର | ମନୋରମା ମହାପାତ୍ର | ଶରତ କୁମାର କର | ପ୍ରସନ୍ନ ମହାନ୍ତି |
| ସାଧାରଣ ସଂପାଦକ | ସମ୍ମାନିତ ଅତିଥି | ମୁଖ୍ୟଅତିଥି | ସଭାପତି |

## ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର
## ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର
## ପୁରସ୍କାର - ୧୧୯୩

୧୯୯୦ ରୁ ୧୯୯୨ ମସିହା ମଧ୍ୟରେ ପ୍ରକାଶିତ ଓଡ଼ିଆ ଭାଷାରେ ରଚିତ ପ୍ରବନ୍ଧ ଓ ସମାଲୋଚନା ବିଭାଗର ପୁସ୍ତକଗୁଡ଼ିକ ମଧ୍ୟରେ 'ରୀତିକାବ୍ୟ ସଂପର୍କରେ' ସମାଲୋଚନା ଗ୍ରନ୍ଥ ସର୍ବୋତ୍କୃଷ୍ଟ ବିବେଚିତ ହୋଇଥିବାରୁ ଏହାର ଲେଖକ ଡକ୍ଟର ଗଙ୍ଗାଧର ବଳଙ୍କୁ ତାଙ୍କର ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ଏହି ତାମ୍ରଲେଖ ସହ ଦଶ ସହସ୍ର ମୁଦ୍ରା ଉପାୟନ ରୂପେ ପ୍ରଦାନ କରାଗଲା ।

ହରପ୍ରସାଦ ପରିଚ୍ଛା ପଟ୍ଟନାୟକ
ସଚିବ
ତା୧୨/୦୫/୧୧୯୭

କିଶୋରୀ ଚରଣ ଦାସ
ସଭାପତି

# ଉତ୍କଳ ପାଠକ ସଂସଦର
# ରଜତ ଜୟନ୍ତୀ ଉତ୍ସବରେ ସମ୍ମାନିତ

*ପ୍ରବୀଣ ଗବେଷକ, ସୁପ୍ରସିଦ୍ଧ ସମାଲୋଚକ*

**ଡକ୍ଟର ଗଙ୍ଗାଧର ବଳ ମହୋଦୟ**

ମହାଶୟ,

ଆପଣ ଜଣେ ବରେଣ୍ୟ ଶିକ୍ଷାବିତ୍ ଭାବେ ଅସଂଖ୍ୟ ଛାତ୍ରଛାତ୍ରୀଙ୍କୁ ସୁମଣିଷ କରି ଏ ଜାତିର ଜଣେ ନମସ୍ୟ ଗୁରୁରେ ପରିଣତ ହୋଇଛନ୍ତି । ଆପଣଙ୍କ ନିଷ୍ଠା, ସାଧନା, ଗବେଷଣା ତଥା ବାଣୀ ଆରାଧନା ଅନନ୍ୟ ସାଧାରଣ । ଆପଣ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ଉପରେ ଗବେଷଣା ପ୍ରସୂତ ଯେଉଁ ନିବନ୍ଧ ଗୁଡ଼ିକ ରଚନା କରିଛନ୍ତି ତାହା ଓଡ଼ିଆ ସାହିତ୍ୟର ଅମୂଲ୍ୟ ସଂପଦ । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ଅଧିକାଂଶ ସମୟରେ ଆପଣ ଯେଉଁ ନିବନ୍ଧ ପ୍ରକାଶ କରନ୍ତି ତାହା ଗବେଷଣା ପାଇଁ ନୂତନ ଦିଗ୍‌ଦର୍ଶନ ଦିଏ ।

ହେ ବରେଣ୍ୟ ଶିକ୍ଷାବିତ୍ ; ଗବେଷକ, ସମାଲୋଚକ ଛାତ୍ରବତ୍ସଳ ବିଦ୍ୱାନ ପଣ୍ଡିତ ପ୍ରବର ! ଆପଣଙ୍କ ସାଧନାସିଦ୍ଧ କୃତିକୁ ସ୍ମରଣ କରି 'ଉତ୍କଳ ପାଠକ ସଂସଦ' ଆଜି ରଜତ ଜୟନ୍ତୀର ଶୁଭ ଅବସରରେ ଆପଣଙ୍କୁ ସମ୍ମାନିତ କରୁଛି ଓ ଆପଣଙ୍କର ଦୀର୍ଘ ନିରାମୟ ଜୀବନ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି ।

ଉତ୍କଳ ପାଠକ ସଂସଦ

୨୦/୦୩/୧୯୯୪
କଟକ

# ସୁବର୍ଣ୍ଣ ଜୟନ୍ତୀ ସମାରୋହ

## ସ୍ନାତକୋତ୍ତର ଓଡ଼ିଆ ବିଭାଗ, ରେଭେନ୍ସା କଲେଜ, କଟକ

### ପ୍ରଫେସର ଡଃ ଗଙ୍ଗାଧର ବଳ

ମହୋଦୟେଷୁ,

ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା କ୍ଷେତ୍ରରେ ଆପଣ ଜଣେ ଯଶସ୍ୱୀ ପୁରୁଷ । ଦୀର୍ଘ ଚାଳିଶ ବର୍ଷ ଧରି ଆପଣ ପ୍ରାଚୀନ ଏବଂ ମଧ୍ୟଯୁଗୀୟ ସାହିତ୍ୟ, ବିଶେଷ କରି ବୈଷ୍ଣବଧର୍ମ ଦର୍ଶନର ବାଙ୍ମୟ ବାରିଧି ମନ୍ଥନ କରି ଅଶେଷ ରତ୍ନାଳଙ୍କାରରେ ଉତ୍କଳ ଭାରତୀକୁ ଭୂଷିତ କରିଛନ୍ତି । ଆପଣଙ୍କର ବିଦ୍‌ବତ୍ତା, ରସସୃଷ୍ଟି ଏବଂ ସର୍ବୋପରି ତପୀଜନସୁଲଭ ଅନ୍ତର୍ଦୃଷ୍ଟି ସର୍ବତ୍ର ବନ୍ଦନୀୟ । ଆପଣ କର୍ମବୀର, ସ୍ଥିତଧୀ ପରି ଜ୍ଞାନ ମୁଦ୍ରାରେ ସଦା ଅବିଚଳ ।

ହେ ସାଧକ ! ଆପଣ ଏହି ବିଭାଗର ପ୍ରଫେସର ରୂପେ ଉତ୍ତମ ସଂଗଠନ ଓ ପରିଚାଳନାର କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ଆପରଙ୍କର ଛାତ୍ରବତ୍ସଳତା ଓ ବନ୍ଧୁପ୍ରୀତି ଏକାନ୍ତ ସ୍ମରଣୀୟ ।

ଆଜିର ଏହି ସୁବର୍ଣ୍ଣ ଜୟନ୍ତୀ ଅବସରରେ ଓଡ଼ିଆ ବିଭାଗର ଅଧ୍ୟାପକ, ଅଧ୍ୟାପିକା ଓ ଛାତ୍ରଛାତ୍ରୀମାନେ ଆପଣଙ୍କୁ ବିନମ୍ର ପ୍ରଣତି ଜଣାଇବା ସଙ୍ଗେ ସଙ୍ଗେ ଆପଣଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛନ୍ତି ।

ଆପଣଙ୍କର ଗୁଣମୁଗ୍ଧ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ରେଭେନ୍ସା କଲେଜ, କଟକ

ଡଃ ଗିରିଜା ପ୍ରସାଦ ଆଚାର୍ଯ୍ୟ
ଅଧ୍ୟକ୍ଷ

ସେକ୍ ମତଲୁବ୍ ଅଲ୍ଲୀ
ମୁଖ୍ୟ ଅତିଥି
୧୦/୦୫/୧୯୯୭



# ନୀଳଶୈଳ

# Neela Shaila

ବୃହତ୍ତମ ସାମାଜସେବା ସାଂସ୍କୃତିକ ଜାତୀୟ ଅନୁଷ୍ଠାନ

**Largest Socio-Cultural National Organisttion**

ରେଜିଷ୍ଟ୍ରସନ୍ ନଂ-୭୦୫୫/୫୪, ସ୍ଥାପିତ-ତା୪/୧୦/୧୯୭୨

କେନ୍ଦ୍ର ବିଦ୍ୟାଳୟ-ଝାଞ୍ଜିରୀମଙ୍ଗଳା, କଟକ-୭୫୩୦୦୯ (ଓଡ଼ିଶା)

**Head Office - Jhanjirimangala, Cuttack-753009, Orissa**

## ରଜତ ଜୟନ୍ତୀ ସମ୍ବତ୍ସର

ଉତ୍କଳ ଦିବସ, ତା୧/୪/୧୯୯୭ ମଙ୍ଗଳବାର

ବାରବାଟୀଦୁର୍ଗ, କଟକ

## ନୀଳଶୈଳ ପୁରସ୍କାର

ଶ୍ରୀଯୁକ୍ତ ଡଃ ଗଙ୍ଗାଧର ବଳ, କଟକ

ଓଡ଼ିଶାରେ ଶିକ୍ଷାର ବିକାଶ ତଥା ଓଡ଼ିଆ ସାହିତ୍ୟର ସମୃଦ୍ଧି କ୍ଷେତ୍ରରେ ଆପଣଙ୍କ ମହନୀୟ ଓ ଉଲ୍ଲେଖନୀୟ ଅବଦାନ ପାଇଁ ମାନପତ୍ର ଓ ପୁରସ୍କାର ପ୍ରଦାନ କରାଗଲା ।

| ସ୍ୱା/- | ସ୍ୱା/- | ସ୍ୱା/- |
|---|---|---|
| ଯୁଗଳ କିଶୋର ମହାନ୍ତି | ରାଜକିଶୋର ରାଜ | ଶ୍ରୀ ବଟକୃଷ୍ଣ ସ୍ୱାଇଁ |
| ଉପଦେଷ୍ଟା | ସଭାପତି | ସାଧାରଣ ସଂପାଦକ |



# ଗୋପୀନାଥ ନନ୍ଦ ପ୍ରବନ୍ଧ ଓ ସମାଲୋଚନା ସମ୍ମାନ

## ଡଃ ଗଙ୍ଗାଧର ବଳ

ମହୋଦୟେଷୁ,

ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା କ୍ଷେତ୍ରରେ ଆପଣ ଜଣେ ସଫଳ ବ୍ୟକ୍ତିତ୍ୱ । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ବାଙ୍ମୟ ବାରିଧି ମନ୍ଥନ କରି ଆପଣ ବହୁ ମୂଲ୍ୟବାନ ରତ୍ନରେ ଉତ୍କଳ ଭାରତୀଙ୍କୁ ଭୂଷିତ କରିଛନ୍ତି । ଆପଣଙ୍କ ମନୀଷା, ଗଭୀର ଚିନ୍ତାଶୀଳତା, ବୌଦ୍ଧିକତା ଏବଂ କାବ୍ୟମୂଲ୍ୟାୟନର ନିବିଡ଼ ରସବୋଧ ଓ ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ଏକାନ୍ତ ପ୍ରଶଂସନୀୟ । ବୌଦ୍ଧିକଚିନ୍ତା-ଚେତନା ଓ ତଥ୍ୟାତ୍ମକ ବିଶ୍ଳେଷଣ ଆପଣଙ୍କ ଲେଖାଗୁଡ଼ିକୁ ସଫଳ, ସରସ ଓ ସୁଖପାଠ୍ୟ କରିପାରିଛି ।

ବିଗତ ଚାରି ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ଆପଣଙ୍କ ଲେଖନୀ ନିଃସୃତ ପ୍ରବନ୍ଧ ଓ ଆଲୋଚନା ଗୁଡ଼ିକ ଓଡ଼ିଶାର ବିଦଗ୍ଧ ପାଠକ ସମାଜର ଦୃଷ୍ଟି ଆକର୍ଷଣ କରିଆସିଛି । 'ସାହିତ୍ୟାଲୋକ', 'ଗୋପାଳକୃଷ୍ଣ ସୃଷ୍ଟି ସମୀକ୍ଷା', 'ବୈଷ୍ଣବ ସାହିତ୍ୟର ତାତ୍ତ୍ୱିକ ଭୂମିକା', 'ସାହିତ୍ୟ ଜିଜ୍ଞାସା', 'ସାହିତ୍ୟିକ ବିଚାର ବିମର୍ଶ', 'ସମୀକ୍ଷା ଦ୍ୱାଦଶୀ' ଓ 'ଆମର ଆଧ୍ୟାତ୍ମିକ ଐତିହ୍ୟ' ଭଳି ଗ୍ରନ୍ଥ ଆପଣଙ୍କ ବଳିଷ୍ଠ ଲେଖନୀର ପରିଚାୟକ । ଉନ୍ନତ ଭାଷା ଓ ରଚନାଶୈଳୀ ସହ ଆଳଙ୍କାରିକ ଓ ବସ୍ତୁନିଷ୍ଠ ପଦ୍ଧତିପାଇଁ ଆପଣ ବିଶେଷ ରୂପେ ସ୍ମରଣୀୟ ।

ଉତ୍କଳ ସାହିତ୍ୟ ସମାଜର ୯୮ତମ ବାର୍ଷିକ ଉତ୍ସବରେ ଆପଣଙ୍କୁ ଶ୍ରେଷ୍ଠ ପ୍ରାବନ୍ଧିକ ଓ ସମାଲୋଚକ ଭାବରେ ସମ୍ମାନିତ କରି ଆମେ ଗର୍ବିତ । ଏହି ଅବସରରେ ଆପଣଙ୍କ ସୃଜନଶୀଳ ପ୍ରତିଭାର ଉତ୍ତରୋତ୍ତର ଉନ୍ନତି କାମନା କରୁଛୁ ।

ସ୍ୱା/-

ପଠାଣି ପଟ୍ଟନାୟକ

ସଭାପତି

ଉତ୍କଳ ସାହିତ୍ୟ ସମାଜ, କଟକ

ତା.୨୫/୬/୨୦୦୦ରିଖ

# ଫଟୋ ପୃଷ୍ଠା





ଲେଖକ ଗଙ୍ଗାଧର ବଳ
ଓ
ପତ୍ନୀ ଶାନ୍ତି ମହାପାତ୍ର(ବଳ)



ଲେଖକ ଗଙ୍ଗାଧର ବଳଙ୍କ ପୁତ୍ରକନ୍ୟାଗଣ

ବାମପାଖରୁ- ମିହିର କୁମାର, ତପନ କୁମାର, ଅରୁଣ କୁମାର, ଅଂଶୁମାନ,
କନ୍ୟା ମହାତପା ଓ ପିନାକୀ






ବାୟା ଅବଧୂତ କଲେଜରେ ବକ୍ତୃତା ପ୍ରଦାନ



୧୯୯୮ ମସିହା ମହାସପ୍ତମୀ ତିଥିରେ 'ଜନସୁଧା' ସାହିତ୍ୟପତ୍ରର ଜନ୍ମସଂଖ୍ୟା
ଉନ୍ମୋଚନ ଅବସରରେ ଶ୍ରୀରାମଚନ୍ଦ୍ର ଭବନ ପରିସରରେ
ପତ୍ରିକା ସଂପାଦକ ଦିଲୀପ କୁମାର ବେଉରା, ପ୍ରାଧ୍ୟାପିକା ଡ. ରେଖା ମହାନ୍ତି,
ପ୍ରାଧ୍ୟାପକ ପଠାଣି ପଟ୍ଟନାୟକ, ପ୍ରଫେସର ଗଙ୍ଗାଧର ବଳ
ଓ ମୁଖ୍ୟ ସଂପାଦକ ମୃତ୍ୟୁଞ୍ଜୟ ନାୟକ

ପ୍ରଫେସର ଡକ୍ଟର ଗଙ୍ଗାଧର ବଳ (୧୯୨୭-୨୦୧୦) ଓଡ଼ିଆ ଶିକ୍ଷା-ସାହିତ୍ୟ କ୍ଷେତ୍ରରେ ଅନ୍ୟତମ ଅଭିଭାବକତୁଲ୍ୟ ବ୍ୟକ୍ତିତ୍ୱ । ପ୍ରାଚୀନ-ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ପ୍ରାଚ୍ୟ ବିଦ୍ୟା ଲକ୍ଷଣରେ ବୀକ୍ଷଣକାର ଭାବେ ତାଙ୍କ ପ୍ରତିଷ୍ଠା ଅସପତ୍ନ । ଜଣେ ନିରଳସ ଅନୁରାଗୀ, ଅନୁସନ୍ଧିତ୍ସୁ ଓ ଅନ୍ୱେଷୁ ଭାବେ ସାହିତ୍ୟ ବିଦ୍ୟା ଓ ସାହିତ୍ୟ ସୃଷ୍ଟି ସହ ଆତ୍ମିକ ସଂପର୍କ ଆମରଣ ଅବ୍ୟାହତ ରଖିଥିବା ଉଜ୍ଜ୍ୱଳ ଆଚାର୍ଯ୍ୟ ଭାବେ ସେ ସ୍ମରଣୀୟ ।

"ଶିକ୍ଷାବିତ୍‌ର ଆତ୍ମଲିପି" ପ୍ରଫେସର ବଳଙ୍କ ଆତ୍ମଜୀବନୀ ଚରିତ ନିଶ୍ଚୟ ତା' ସହିତ ଶିକ୍ଷା-ଶିକ୍ଷାର୍ଥୀ-ଶିକ୍ଷକଙ୍କୁ ନିରନ୍ତର ଅନୁପ୍ରେରିତ କରିପାରୁଥିବା ଆଦର୍ଶ ଗ୍ରନ୍ଥ । ଗ୍ରନ୍ଥଟି ପାଠକମାନଙ୍କୁ ପଥଦିଶାରୀ ହୋଇପାରିବ, ଏହି ଶୁଭବିଶ୍ୱାସ ଆମର ରହିଛି ।

ପ୍ରକାଶକ




ISBN 81-89881-51-5
9788189881511